**ଅର୍କକ୍ଷେତ୍ର କୋଣାର୍କ**

**ଅନିଲ ଦେ**

ପ୍ରକାଶକ : ଆମ ଓଡ଼ିଶା
୪ ଆର୍ ୧/୨, ଇଉନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ : ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ
ଭୁବନେଶ୍ୱର-୭୫୧୦୦୭

ପ୍ରଥମ ସଂସ୍କରଣ : ଅଗଷ୍ଟ, ୨୦୧୨



ପ୍ରଚ୍ଛଦ : ଶଶିକାନ୍ତ ରାଉତ

**ମୂଲ୍ୟ : ଟ. ୪୦୦/-**

**ARKAKSHETRA KONARKA**
**Anil Dey**

Publisher : Aama Odisha
4R 1/2, Unit-3, Bhubaneswar-751001
e-mail : aamaodisha@gmail.com

Printed at : Sriram Screen Printing
Bhubaneswar-751007

1st edition : August, 2012



Cover design : Sashikant Rout

Price : ₹ 400/-

ISBN 81-89436-33-9



# ଅର୍କକ୍ଷେତ୍ର କୋଣାର୍କ

# ଭୂମିକା

କୋଣାର୍କ ଉପରେ ବହୁ ମୂଲ୍ୟବାନ ପୁସ୍ତକ ଲେଖା ସରିଛି; ପୁଣି କାହିଁକି ଏ ପ୍ରୟାସ ? ଭାରତୀୟ-ଆର୍ଯ୍ୟ ସ୍ଥାପତ୍ୟର ଶେଷ ଅବିମିଶ୍ରିତ ନିଦର୍ଶନ, ବିଶ୍ୱର ବିସ୍ମୟ କୋଣାର୍କ, ମୂଳତଃ ଓଡ଼ିଶା ଦେଶର କୀର୍ତ୍ତି; କିନ୍ତୁ ଏ ସଂପର୍କରେ ମାତୃଭାଷାରେ ଲିଖିତ ପୁସ୍ତକର ଘୋର ଅଭାବ । ଅଧିକାଂଶ ପୁସ୍ତକ ରଚିତ ହୋଇଛି ଇଂରାଜୀ ଭାଷାରେ; ଏପରିକି ତିନି ଚାରି ଖଣ୍ଡ ବଙ୍ଗଳା ଭାଷାରେ ରଚିତ ପୁସ୍ତକ ବି ଅଛି, କିନ୍ତୁ ଖଣ୍ଡିଏକୁ ଛାଡ଼ିଦେଲେ, ଓଡ଼ିଆ ଭାଷାରେ ଲିଖିତ ପୂର୍ଣ୍ଣାଙ୍ଗ ପୁସ୍ତକ ନାହିଁ ।

ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କର 'କୋଣାର୍କ' ପ୍ରକାଶ ପାଏ ୧୯୧୯ ସାଲରେ । ତାଙ୍କ ପରେ ଅତିକ୍ରାନ୍ତ ପ୍ରାୟ ଶହେ ବର୍ଷ ମଧ୍ୟରେ ବହୁ ନୂତନ ତଥ୍ୟ ଉଦ୍‌ଘାଟିତ ହେଲାଣି, କିନ୍ତୁ କୃପାସିନ୍ଧୁଙ୍କ କୋଣାର୍କ ରହିଯାଇଛି ଓଡ଼ିଆ ପାଠକ ନିକଟରେ ଆଦରଣୀୟ ହୋଇ । ଗ୍ରନ୍ଥଟିର ଚତୁର୍ଥ ମୁଦ୍ରଣ ସରିଲାଣି ୧୯୯୯ ସାଲରୁ । ଏହାର କାରଣ, ପୁସ୍ତକଟି ସରଳ ଓଡ଼ିଆ ଭାଷାରେ ଲିଖିତ ଏବଂ ଓଡ଼ିଆ ପାଠକ ଏବେ ମଧ୍ୟ କୋଣାର୍କ ପାଇଁ ଆଗ୍ରହୀ । ନୂତନ ସଂଯୋଜନ ଛଡ଼ା କୋଣାର୍କର ବୈଷୟିକ ଦିଗଟି ବିଶେଷ ଆଲୋଚନାର ଦାବି ରଖେ । ଏଇସବୁ କାରଣରୁ ଓଡ଼ିଆ ଭାଷାରେ ଏ ମହାନ କୀର୍ତ୍ତିର ପୁନଃ ପରିଚିତି ଜରୁରି । ଏଣୁ, ଏହି ନମ୍ର ପ୍ରୟାସ ।

ମୋର ବିଶ୍ୱାସ, ଉପସ୍ଥାପିତ ନିର୍ଣ୍ଣୟଗୁଡ଼ିକ ସହିତ କିଛି ବିଦଗ୍ଧ ପାଠକ ସହମତ ହେବେ ନାହିଁ । ଏହା ସ୍ୱାଭାବିକ । କାରଣ କୋଣାର୍କ ପ୍ରସ୍ତରରେ ରଚିତ ମହାକାବ୍ୟ ଏବଂ ଯୁଗଯୁଗ ଧରି ଏପିକ୍‌ର ବ୍ୟାଖ୍ୟା ହୋଇ ଚାଲିଥିବ । ତଥ୍ୟଗତ ପାର୍ଥକ୍ୟ ମଧ୍ୟ ଥାଇପାରେ । କୋଣାର୍କର ଇତିହାସ କୁହେଳିକା-ଆଚ୍ଛନ୍ନ; ତଥ୍ୟ ଏବଂ କିମ୍ବଦନ୍ତୀ ଏପରି ଛନ୍ଦି ହୋଇଯାଇଛି ଯେ ସତ୍ୟଦର୍ଶନ ସହଜ ନୁହେଁ । ତଥାପି ବିଜ୍ଞାନର ଆଲୋକରେ କେତେକ ଜନଶ୍ରୁତିର ମୂଲ୍ୟାୟନ ନିମନ୍ତେ ଚେଷ୍ଟା କରିଛି । ସମାଧାନ ସବୁବେଳେ ଜନପ୍ରିୟ ହୋଇ ପାରିନାହିଁ । ଆଶା କରିବି, ଅଭିଜ୍ଞ ଗବେଷକମାନେ ଆଗକୁ ଏ ନୂତନ, ବିଜ୍ଞାନଭିତ୍ତିକ ଅନୁସନ୍ଧାନ ଚାଲୁ ରଖିବେ ।

ଏ ଗ୍ରନ୍ଥଟି ଆଦୌ ଲେଖା ହୋଇନଥାନ୍ତା, ଯଦି ସାହାଯ୍ୟର ହାତ ପ୍ରସାରିତ ହୋଇନଥାନ୍ତା 'ଆମ ଓଡ଼ିଶା'ର ପ୍ରକାଶନ ସଂପାଦକ ଅସିତ ମହାନ୍ତିଙ୍କଠାରୁ । ଦୁଇ ବର୍ଷ ପୂର୍ବେ ସମ୍ବାଦରେ ପ୍ରକାଶିତ ମୋର ଗୋଟିଏ ଛୋଟ ଲେଖାର ଖିଅ ଧରି ଅସିତବାବୁ ପ୍ରଥମେ ମୋତେ ଲେଖାନ୍ତି 'ପୌରୁଷ', ଜାନୁଆରି ୨୦୧୦ ସଂଖ୍ୟାର ପ୍ରଚ୍ଛଦ ପ୍ରସଙ୍ଗ ଏବଂ ତା'ପରେ କୋଣାର୍କ ଉପରେ ଗୋଟିଏ ପୂର୍ଣ୍ଣାଙ୍ଗ ଗ୍ରନ୍ଥ ଲେଖିବାକୁ ଏକରକମ ବାଧ୍ୟ କରନ୍ତି । ଏହାପରେ ବହୁ ରାତି ଉଜାଗର ଓ ବହୁ ଦିସ୍ତା କାଗଜ ଲେଖା, ଚିରା ପରେ ଶେଷ ହୁଏ 'ଅର୍କକ୍ଷେତ୍ର କୋଣାର୍କ' । ଏ ପୁସ୍ତକର ଭଲମନ୍ଦ ପାଠକ ବିଚାର କରିବେ । କିନ୍ତୁ ବହୁ ବର୍ଷ ପରେ, କୋଣାର୍କ ଉପରେ ଓଡ଼ିଆ ଭାଷାରେ ଲିଖିତ, ତଥ୍ୟ ସମୃଦ୍ଧ ପୂର୍ଣ୍ଣାଙ୍ଗ ପୁସ୍ତକଟିଏ ପାଠକଙ୍କୁ ଉପହାର ଦେବାର କୃତିତ୍ୱ, 'ଆମ ଓଡ଼ିଶା' ଓ ବିଶେଷ ରୂପେ ଅସିତବାବୁଙ୍କର ।

ମୁଁ ପେସାଦାର ଐତିହାସିକ ନୁହେଁ । କୋଣାର୍କ ଉପରେ ଲେଖିବାର ଏକମାତ୍ର ଅଧିକାର, ଆଦ୍ୟ ଯୌବନରୁ ଆରମ୍ଭ କରି ପରବର୍ତ୍ତୀ ଛଅ ଦଶନ୍ଧିରୁ ଉର୍ଦ୍ଧ୍ୱ ସମୟ ଧରି ଏହି ମହାନ କୀର୍ତ୍ତି ତା'ର ଚୁମ୍ବକୀୟ ଆକର୍ଷଣରେ ବାରମ୍ବାର ମୋତେ ନିଜ ପାଖକୁ ଟାଣିଛି ଏବଂ ସେଇ ସୂତ୍ରରେ ମୁଁ

କିଛି ପଠନ ଓ ଅନୁଶୀଳନ କରିଛି । କିନ୍ତୁ ଲେଖିବାକୁ ବସି ଦେଖିଲି, ସ୍ମୃତି ଯଥେଷ୍ଟ ନୁହେଁ । ପ୍ରୟୋଜନ ବହୁ ପୁସ୍ତକର । ଏ ବହିର ଶେଷରେ ଯେଉଁ ଗ୍ରନ୍ଥସୂଚୀ ଦିଆଯାଇଛି, ସେଥିରେ ସ୍ଥାନିତ ଅଧିକାଂଶ ପୁସ୍ତକ କଟକ ସହରର ପାଠାଗାରମାନଙ୍କରେ ନାହିଁ । ବୟସର ଆଧିକ୍ୟ ଓ ଆର୍ଥିକ ସାହାଯ୍ୟର ଅଭାବ (ସେ ଦିଗରେ ଚେଷ୍ଟା ସୁଦ୍ଧା କରିନାହିଁ) ଦୃଷ୍ଟିରୁ ଏପରି ଗୋଟିଏ ଗବେଷଣା ପାଇଁ ଭୁବନେଶ୍ୱର, କଲିକତା, ଦିଲ୍ଲୀ ସ୍ଥିତ ଲାଇବ୍ରେରୀ ତଥା ମ୍ୟୁଜିୟମ୍ ଖୋଜି ବୁଲିବାରେ ବାଧା ଥିଲା । କିନ୍ତୁ ଅଯାଚିତ ସାହାଯ୍ୟର ହସ୍ତ ପ୍ରସାରିତ ହୋଇଛି କେତେକ ବନ୍ଧୁଙ୍କ ନିକଟରୁ । ନିଜସ୍ୱ ସଞ୍ଚୟରୁ ହେଉ, ବଜାରରୁ ଖୋଜି ଆଣି ହେଉ ଅଥବା ଦୁଷ୍ପ୍ରାପ୍ୟ ଗ୍ରନ୍ଥର ଜେରକ୍ସ କପି ହେଉ, ଅଧିକାଂଶ ପୁସ୍ତକ ସେହିମାନେ ହିଁ ଯୋଗାଇଦେଇଛନ୍ତି । କେତେଖଣ୍ଡ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ଅବଶ୍ୟ ମୋର ନିଜସ୍ୱ ସଞ୍ଚୟରେ ଥିଲା । ଏ ଦିଗରେ ସକୃତଜ୍ଞ ସ୍ୱୀକୃତିରେ ଆଗେ ଆସିବେ ଶ୍ରୀ ନାରାୟଣ ପ୍ରସାଦ ନନ୍ଦ ଏବଂ ପରକୁ ପର ଶ୍ରୀ ଅସିତ ମହାନ୍ତି, ଶ୍ରୀ ରମାକାନ୍ତ ଜେନା, ଶ୍ରୀ ଜ୍ଞାନାଶିଷ ଜେନା, ଶ୍ରୀମତୀ ନମିତା ପଟ୍ଟନାୟକ ଓ ଶ୍ରୀ ତପନ ମହାପାତ୍ର । ଆଗ-ପଛ କରି ସଜାହେଲେ ମଧ୍ୟ କାହାରି ଅବଦାନ ଗୌଣ ନୁହେଁ, କାରଣ ପୁସ୍ତକସୂଚୀରୁ ଖଣ୍ଡିଏ ପୁସ୍ତକ କାଢ଼ିନେଲେ କୌଣସି ନା କୌଣସି ଉପପାଦ୍ୟ ବିଘ୍ନିତ ହେବ ।

ଅବସରପ୍ରାପ୍ତ ଅଧ୍ୟାପକ ରମାକାନ୍ତ ଜେନା ମୋର ପ୍ରତିବେଶୀ । ବିଷୟଟିର ପରିକଳ୍ପନା କଥା ଶୁଣି ଏ ମହାଶୟ ଏତେ ଉତ୍ତେଜିତ ହୋଇଉଠିଲେ ଯେ ପ୍ରତିଦିନ ପାଠ ନେଲା ଭଳି ଲେଖାଟିର ଅଗ୍ରଗତି ଜାଣିବାଠାରୁ ପ୍ରୁଫ୍ ସଂଶୋଧନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସ୍ୱଇଚ୍ଛାରେ କଲେ । ପ୍ରୁଫ୍ ସଂଶୋଧନ ଯେ କେତେ କଷ୍ଟସାଧ୍ୟ ଓ ମୂଲ୍ୟବାନ କାର୍ଯ୍ୟ, ଏ ମହାଶୟଙ୍କୁ ନ ଦେଖିଲେ ବୁଝା ପଡ଼ିବ ନାହିଁ । ଗୋଟିଏ ତଥ୍ୟମୂଳକ ଲେଖାରେ ଗୋଟିଏ ଅକ୍ଷର କିମ୍ବା ସଂଖ୍ୟା, ସଂପୂର୍ଣ୍ଣ ଉପସ୍ଥାପନାକୁ ଓଲଟ ପାଲଟ କରିଦେଇ ପାରେ । ରମାକାନ୍ତବାବୁଙ୍କର ଯେତେ ଗୁଣଗାନ କରିଲେ ମଧ୍ୟ ଊଣା ହେବ ।

ଦିଲ୍ଲୀ ନିବାସୀ ଜ୍ଞାନାଶିଷ ଜେନା ଜଣେ ଅତି କର୍ମବ୍ୟସ୍ତ ପରିବେଶବିତ୍ । କିନ୍ତୁ ଐତିହ୍ୟ ସଚେତନତା ମଧ୍ୟ ଏ ଯୁବକଙ୍କର ବିଶେଷତ୍ୱ । ଛୁଟି ନେଇ ଆସି, କୋଣାର୍କରେ ଦୁଇ ତିନି ଦିନ କଟାଇ, ମୋର ପ୍ରୟୋଜନ ଅନୁଯାୟୀ ବହୁ ଆଲୋକ ଚିତ୍ର, ସେ ତାଙ୍କର ଶକ୍ତିଶାଳୀ କ୍ୟାମେରାରେ ବନ୍ଦୀ କଲେ, ଯାହା ଏ ପୁସ୍ତକର ଗୋଟିଏ ବିଶେଷ ସମ୍ପଦ । ପୁତ୍ରପ୍ରତିମ ଜ୍ଞାନାଶିଷଙ୍କୁ ଧନ୍ୟବାଦ କ'ଣ ଦେବି, ଆଶୀର୍ବାଦ କରୁଛି ।

ମୋର ବୌଦ୍ଧିକ ଉତ୍ତମାର୍ଣ୍ଣ ଅନେକ । ଏମାନେ ବିଭିନ୍ନ ସମୟରେ କୋଣାର୍କ ସମ୍ବନ୍ଧୀୟ ନାନା ବିଷୟରେ ଦିଗ୍‌ଦର୍ଶନ ଦେଇ ମୋତେ ଋଣୀ କରିଦେଇଛନ୍ତି । ଶ୍ରଦ୍ଧାର ସହିତ ସ୍ମରଣ କରୁଛି, ପଦ୍ମଶ୍ରୀ ଇଂ ଡକ୍ଟର ଗୋପାଳ ଚନ୍ଦ୍ର ମିତ୍ର, ଦିଲ୍ଲୀ ନିବାସୀ ଅବସରପ୍ରାପ୍ତ ଆଇ.ଏ.ଏସ୍. ତଥା ଗବେଷକ ଡକ୍ଟର ଜେ.ପି. ଦାସ, ଅଧ୍ୟାପକ ଦୀପାସ୍ୟ କୁଣ୍ଡୁ, ବନ୍ଧୁ ତଥା କବି ଶୈଳଜ ରବି, ଆଡ୍‌ଭୋକେଟ୍ ନମିତା ପଟ୍ଟନାୟକ, ବାଙ୍କୀର ଶ୍ରୀ ବ୍ରଜବନ୍ଧୁ ପାଳ ଏବଂ ଆହୁରି ଅନେକଙ୍କୁ ।

ଶୁଷ୍କ ଇତିହାସ ରଚନା ମୋର ଉଦ୍ଦେଶ୍ୟ ନଥିଲା । କୋଣାର୍କ ଭଳି ଗୋଟିଏ ବିରଳ ସୃଷ୍ଟି ଲୋପପାଇ ଯାଉଛି । ଦାୟୀ- ବୈଷୟିକ ଉନ୍ନତିରେ ମତ୍ତ ଆତ୍ମବିସ୍ମୃତ ଜାତି; ଏ.ଏସ୍.ଆଇ. ନିମିତ୍ତ ମାତ୍ର । ତାହା ହୋଇ ନଥିଲେ ବିଗତ ଷାଠିଏ ବର୍ଷ ଧରି ଗୋଟିକ ପରେ ଗୋଟିଏ ଅନେକ ନିଷ୍ଫଳ ଆଲୋଚନାସଭାର ନାଟକ ହେଉ ନଥାନ୍ତା; ଐତିହ୍ୟ-ସଚେତନମାନଙ୍କର ରୋଷ ନିଶ୍ଚିତ ଭାବେ କାର୍ଯ୍ୟକାରୀ ପଦକ୍ଷେପ ନେବାରେ ସହାୟକ ହୋଇ ଥାଆନ୍ତା । ମୋର ଏ ସାମାନ୍ୟ ପ୍ରଚେଷ୍ଟା ଏ ଆତ୍ମବିସ୍ମୃତ ଜାତିକୁ ଯଦି କିଛି ପରିମାଣରେ ସଚଳ କରିବାକୁ ସକ୍ଷମ ହୁଏ ତେବେ ଶ୍ରମ ସାର୍ଥକ ହେବ ।

***ଅରୁଣୋଦୟ ନଗର*** — **ଅନିଲ ଦେ**

***କଟକ-୭୫୩୦୧୨***

# ସୂଚିପତ୍ର

**ପ୍ରଥମ ପରିଚ୍ଛେଦ**

**ଇତିହାସ**

## ଦ୍ୱିତୀୟ ପରିଚ୍ଛେଦ
## ନିର୍ମାଣ ଓ ପତନ



## ତୃତୀୟ ପରିଚ୍ଛେଦ
## ସ୍ଥାପତ୍ୟ

## ଚତୁର୍ଥ ପରିଚ୍ଛେଦ
## ଭାସ୍କର୍ଯ୍ୟ

## ପଞ୍ଚମ ପରିଚ୍ଛେଦ
## କିମ୍ବଦନ୍ତୀ ଓ କାବ୍ୟ

**ଷଷ୍ଠ ପରିଚ୍ଛେଦ**

**ସଂରକ୍ଷଣ**





# ଗଙ୍ଗବଂଶର ଲାଙ୍ଗୁଳା ନରସିଂହଦେବ

ତ୍ରୟୋଦଶ ଶତାବ୍ଦୀରେ ଲାଙ୍ଗୁଳା ନରସିଂହ ଦେବ କୋଣାର୍କ ଦେଉଳ ତୋଳିଲେ । ଏହା ସର୍ବଜନବିଦିତ । ଏ ମନ୍ଦିରର ଗଠନକାଳ ଓ ନରସିଂହଦେବଙ୍କ ଶାସନକାଳ ନେଇ ମତଦ୍ୱୈଧ ଅଛି । ଏପରିକି ଏ ମନ୍ଦିର ନରସିଂହ ଦେବ ଗଢ଼ି ନଥିଲେ- ଏହା ମଧ୍ୟ ଜଣେ ଗବେଷକ କହିଛନ୍ତି । ଏ ସମସ୍ତ ବିଭ୍ରାନ୍ତି ମୂଳରେ ଅଛନ୍ତି ପ୍ରସିଦ୍ଧ ଆଇନ-ଇ-ଆକ୍‌ବରୀ ପ୍ରଣେତା ଆବୁଲ୍ ଫଜଲ, ଯାହା ଯଥା ସ୍ଥାନରେ ଆଲୋଚିତ ହେବ ।

ବୌଦ୍ଧ ଯୁଗ ପୂର୍ବରୁ ପ୍ରମାଣସିଦ୍ଧ ଧାରାବାହିକ ଇତିହାସ ଲେଖିବାର ପ୍ରଥା ପ୍ରଚଳିତ ନଥିଲା ।[୧] ଖ୍ରୀଷ୍ଟପୂର୍ବ ୨୬୨ରେ ଧଉଳିଗିରିରେ ଲିଖିତ ଅଶୋକଙ୍କ ଶିଳାଲିପି ଅଥବା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ହାତୀଗୁମ୍ଫାରେ ଲିଖିତ ଖାରବେଳଙ୍କ ଶିଳାଲିପି ଭଳି ଏତେ ବିସ୍ତୃତ ଭାବେ ସେ ସମୟର ପରିଚୟ, ଏ ଦୁଇଟି ଶିଳାଲିପି ପୂର୍ବରୁ ଅଥବା ପରେ, ଓଡ଼ିଶାରେ ହୋଇନାହିଁ । ଇତିହାସର ଅନ୍ଧଗଳିରେ ବାଟ ଖୋଜୁଥିବା ଗବେଷକମାନେ ସାଧାରଣତଃ ତିନୋଟି ପନ୍ଥା ଅନୁସରଣ କରିଥା'ନ୍ତି ।

୧. ଲିଖିତ ତଥ୍ୟ; ପ୍ରସ୍ତର ଲିପି, ତାଳପତ୍ର, ତାମ୍ରପଟ୍ଟା ଏବଂ ଏ ଯୁଗରେ ଛାପା ଅକ୍ଷରରେ ପ୍ରକାଶିତ ପୁସ୍ତକ, ପ୍ରବନ୍ଧ ଇତ୍ୟାଦି ।

୨. ଶାସ୍ତ୍ର ଓ ପୁରାଣ ।

୩. କିମ୍ବଦନ୍ତୀ

ଏହା ମଧ୍ୟରୁ କିମ୍ବଦନ୍ତୀ ସବୁଠାରୁ ଅଳ୍ପ ନିର୍ଭରଯୋଗ୍ୟ ବିବେଚିତ ହୋଇଥାଏ । କିନ୍ତୁ ଗବେଷକ ଯେତେବେଳେ ଅନ୍ୟ ବାଟ କିଛି ନ ପାଏ, କିମ୍ବଦନ୍ତୀର ଖିଅ ଧରି ଆଗେଇ ଥାଏ । କିଛି ସତ୍ୟର ମେରୁଦଣ୍ଡ ନଥାଇ କିମ୍ବଦନ୍ତୀ ହୁଏନା; ହୁଏତ ପଲ୍ଲବାୟିତ ଗଳ୍ପ ପଛରେ ସତ୍ୟ ଲୁଚି ଯାଇଥାଏ ।

ଦ୍ୱିତୀୟ ପନ୍ଥା ମଧ୍ୟ ଏ ଅଭିଯୋଗ ବାହାରେ ନୁହେଁ । ଅନେକେ ଶାସ୍ତ୍ର ପୁରାଣକୁ ଗାଲୁ ଗଳ୍ପ ବୋଲି ଭାବି ଶିଳାଲିପି, ତାମ୍ରପଟ୍ଟା ଅଥବା ତାଳପତ୍ର ଏକମାତ୍ର ବିଶ୍ୱାସଯୋଗ୍ୟ ପ୍ରମାଣ (epigraphic evidence)ବୋଲି ଭାବନ୍ତି । ଏହା ମଧ୍ୟ ସଂପୂର୍ଣ୍ଣ ସତ୍ୟ ନୁହେଁ । ଲିପିକାର ଅନେକ ସମୟରେ ନିଜସ୍ୱ ବିଶ୍ୱାସ, ଚିନ୍ତାଧାରା, ଏପରିକି ଉପରିସ୍ଥ କର୍ତ୍ତାଙ୍କ ଇଙ୍ଗିତରେ ନିହାଣ ଅଥବା କରଣୀ ଚଳାଇଥାଏ । ଅନେକ ଐତିହାସିକ ଖୋଦିତ ଲିପିର ପ୍ରମାଣ (epigraphic evidence) ବାହାରେ କିଛି ମାନିବାକୁ ନାରାଜ । ଡକ୍ଟର କେ.ସି.ପାଣିଗ୍ରାହୀ ଏବଂ ଚାର୍ଲସ୍ ଲୁଇସ୍ ଫ୍ୟାବ୍ରି ଦୁହିଁଙ୍କ ମତ, ଏ ପ୍ରମାଣ ମଧ୍ୟ ଅଭ୍ରାନ୍ତ ନୁହେଁ । ଗୋଟିଏ ମନ୍ଦିର ତାହାର ଦୀର୍ଘ ଜୀବନକାଳର ବିଭିନ୍ନ ସମୟରେ ବିଭିନ୍ନ ଶିଳାଲେଖା ସାଇତି ରଖିଥାଇପାରେ ।[୨] ସମସ୍ତ ବସ୍ତୁ ନାନା ଦିଗରୁ ତଉଲ କରି ସିଦ୍ଧାନ୍ତରେ ଉପନୀତ ହେବା ନିର୍ବିକାର ଗବେଷକର କାର୍ଯ୍ୟ । ଫାବ୍ରି କହିଛନ୍ତି, "No learning of any kind can get on together without hypothesis and conjuncture"[୩]

ଷ୍ଟର୍ଲିଂଙ୍କଠାରୁ (୧୮୨୫) ଆରମ୍ଭ କରି ଆଜିକାର କରୁଣାସାଗରଙ୍କ ପର୍ଯ୍ୟନ୍ତ ଅଧିକାଂଶ ଗବେଷକ ମତ ଦେଇ ଥାଆନ୍ତି, ପ୍ରଥମ ନରସିଂହଦେବଙ୍କ ଶାସନକାଳ ୧୨୩୮-୧୨୬୪ ଖ୍ରୀଷ୍ଟାବ୍ଦ । ଭିନ୍ନ ଭିନ୍ନ ମତ ଆସୁଛି ଆବୁଲ୍ ଫଜଲ, ଫର୍ଗୁସନ୍ ଓ ବିଶନ୍ ସ୍ୱରୂପଙ୍କଠାରୁ । ଆବୁଲ୍ ଫଜଲ, ନରସିଂହଦେବଙ୍କ ଶାସନକାଳ, ଆହୁରି ୭୩୦ ବର୍ଷ ପଛେଇ ଦେଇଛନ୍ତି ।[୪] ଆବୁଲ୍ ଫଜଲ୍, ଆଇନ-ଇ-ଆକବରୀ ଲେଖିଥିଲେ ୧୫୮୦ ଖ୍ରୀଷ୍ଟାବ୍ଦରେ । ତେବେ ତାଙ୍କ ମତ ନରସିଂହଦେବ ୮୫୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜା ଥିଲେ । ଆବୁଲ୍ ଫଜଲ୍ କିନ୍ତୁ ନିଜେ କୋଣାର୍କ ଦେଖି ନଥିଲେ, ଯଦିଓ ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ସେ ଓଡ଼ିଶା ଆସିଥିବା କଥା କୃପାସିନ୍ଧୁ କହିଛନ୍ତି ।[୫] ଆବୁଲ୍ ଫଜଲ୍‌ଙ୍କ ବୟାନର ଇଂରାଜୀ ତର୍ଜମା ନିମ୍ନରେ ଦିଆଗଲା । କୃପାସିନ୍ଧୁ ଗ୍ଲାଡ୍‌ଉଇନ୍‌ଙ୍କ ଅନୁବାଦ ଅନୁସରଣ କରିଛନ୍ତି । ଯାହା Colonel Jarrettଙ୍କ ଅନୁବାଦ ସହିତ ମିଳୁଛି ।

"It is said that some what 730 years ago, Raja Narasingh Deo completed the stupendus fabric and left this mighty memorial to posterity." (Translation by Colonel Jarrett, Bibl Ind.vol-II, P.128)[୬]

ଅର୍ଥାତ୍ ଶୁଣା କଥାରେ ଇତିହାସ ଲେଖିଗଲେ ଆବୁଲ୍ ଫଜଲ୍ । କର୍ଣ୍ଣେଲ୍ ଜାରେଟ୍‌ଙ୍କ ଇଂରାଜୀ ଅନୁବାଦର ଗୋଟିଏ ଅଂଶ କରୁଣାସାଗର ଉପସ୍ଥାପନ କରିଛନ୍ତି [୭], ଯେଉଁଥିରେ ଏ ମନ୍ଦିରର ଉଚ୍ଛ୍ୱସିତ ପ୍ରଶଂସା ଲିପିବଦ୍ଧ ହୋଇଛି । କେତେକ ମନ୍ତବ୍ୟ ବିଭ୍ରାନ୍ତିକର, ଯାହା କରୁଣାସାଗର ମଧ୍ୟ ଲକ୍ଷ୍ୟ କରିଛନ୍ତି (reference-59, Page-149) । ଆବୁଲ୍ ଫଜଲ୍ ଲେଖିଛନ୍ତି, ଦେବାଲ (wall)ର ଉଚ୍ଚତା ୧୫୦ ହାତ ଏବଂ ବେଧ ୧୯ ହାତ ଅର୍ଥାତ୍ ୨୨୫ ଫୁଟ୍ ଉଚ୍ଚ ଏବଂ ୨୮.୫ ଫୁଟ୍ ମୋଟା । ଏହା ଯେବେ ବେଢ଼ାର ଦେବାଲ୍‌କୁ ଲକ୍ଷ୍ୟକରି ଲେଖାହୋଇଥାଏ, ତେବେ ତାହା ସଂପୂର୍ଣ୍ଣ ଅବାସ୍ତବ । ମନମୋହନ ଗାଙ୍ଗୁଲୀ ନେଇଥିବା ମାପଃ ବେଧ-୫ଫୁଟ ଓ ଉଚ୍ଚତା ୧୪ ଫୁଟ୍ (ପୃଷ୍ଠା ୪୪୧-O&H.R.) । ତେବେ ଆବୁଲ୍ ଫଜଲ ଯଦି ରେଖଦେଉଳର ଉଚ୍ଚତା କଥା କହୁଥାଆନ୍ତି ତେବେ ତାହା ଅଧିକାଂଶ ସତ ହୋଇପାରେ । ନାନା ବୈଜ୍ଞାନିକ ପନ୍ଥାରେ ଆକଳିତ ବିମାନର ଉଚ୍ଚତା ୨୨୮ ଫୁଟ୍ ଏବଂ ରହପାଗଠାରେ ବେଧ ୨୪ଫୁଟ୍୬ଇଞ୍ଚ୍ । (ବିସ୍ତୃତ ଆଲୋଚନା ତୃତୀୟ ପରିଚ୍ଛେଦରେ ଦେଖନ୍ତୁ ।) କିନ୍ତୁ ରେଖ ଦେଉଳର କ୍ରମ ବକ୍ର ଗମ୍ବୁଜକୁ ଦେବାଲ୍ ରୂପେ ବର୍ଣ୍ଣନା କରିବାର କୌଣସି କାରଣ ନାହିଁ । ଏକମାତ୍ର କାରଣ, ଆବୁଲ୍ ଫଜଲ ଦେଖିଛନ୍ତି କିଛି, ଶୁଣିଛନ୍ତି କିଛି ଏବଂ ଗୋଳେଇ ମିଶେଇ ପକେଇଛନ୍ତି ସବୁକିଛି । ସେହିପରି ମନ୍ଦିର ସମ୍ମୁଖର ''octagonal column''ଯାହା ବୋଧହୁଏ ଅରୁଣସ୍ତମ୍ଭକୁ ବୁଝାଉଛି, କୌଣସି ପ୍ରକାରେ ୫୦ ଗଜ ଅର୍ଥାତ୍ ୧୫୦ ଫୁଟ୍ ହୋଇପାରେନା । ଅରୁଣସ୍ତମ୍ଭ ବର୍ତ୍ତମାନ ପୁରୀ ମନ୍ଦିର ସମ୍ମୁଖରେ ଅଛି ଏବଂ ତାହାର ଉଚ୍ଚତା ୩୪ ଫୁଟ୍ ।

ଶୁଣା କଥାରେ ହେଲେ ମଧ୍ୟ ଆବୁଲ୍ ଫଜଲଙ୍କ ଇତିହାସ ଏତିକି ସୂଚିତ କରୁଛି ଯେ, ବହୁବର୍ଷ ପୂର୍ବେ ଏଠାରେ ଗୋଟିଏ ସୂର୍ଯ୍ୟ ମନ୍ଦିର ଥିଲା, ଯାହା ଲୋକମୁଖରେ ପ୍ରଚାର ଲଭିଥିଲା । ବିଷୟଟି ଗୁରୁତ୍ୱପୂର୍ଣ୍ଣ । ଏହା, ପରେ ଆସିବ ।

ଫର୍ଗୁସନ ବିଶ୍ୱାସ କରିବାକୁ ଅକ୍ଷମ, ୧୧୭୪ ଖ୍ରୀଷ୍ଟାବ୍ଦରେ ଗଠିତ ପୁରୀ ଜଗନ୍ନାଥ ମନ୍ଦିରରେ ଶିଳ୍ପକଳାର ଘୋର ଅବନତି ପରେ କୋଣାର୍କ ଭଳି ଏତେ ଉଚ୍ଚମାନର ଶିଳ୍ପ ସୃଷ୍ଟି ହୋଇପାରେ ![୮] ବିଶନ୍ ସ୍ୱରୂପ ମଧ୍ୟ ଏ ମତର ବଡ଼ ସମର୍ଥକ । ସେ ମାଦଳାପାଞ୍ଜିର ଆଉ ଗୋଟିଏ ଶ୍ଳୋକର କଦର୍ଥ କରି ଆଉ ପାଦେ ଆଗେଇ ଯାଇ କହିଛନ୍ତି, କୋଣାର୍କ ପୁରନ୍ଦର କେଶରୀଙ୍କ ସୃଷ୍ଟି ଏବଂ ନରସିଂହ ଦେବ ନାଟ ମନ୍ଦିରଟି ମାତ୍ର ଗଢ଼ିଥିଲେ ।[୯]

ଉଚ୍ଚମାନ ଓ ନିମ୍ନମାନର ଶିଳ୍ପ ବିଚାରରେ ମନ୍ଦିର ଗଠନର ସମୟ ସ୍ଥିର କରିବା ଅବାସ୍ତବ । ଆଜି ମଧ୍ୟ ଦୁର୍ଗାପୂଜା ଓ ଅନ୍ୟାନ୍ୟ ପର୍ବପର୍ବାଣିରେ ଗଢ଼ା ଯାଉଥିବା ମୂର୍ତ୍ତି ସବୁର ଶିଳ୍ପମାନ ସାହି ସାହି ଭିତରେ ଭିନ୍ନ ଭିନ୍ନ ହୋଇଥାଏ । କାରଣଟି ମୂଳତଃ ଅର୍ଥନୈତିକ । ସଦ୍ୟ ଦେଶ ଜୟ କରିଥିବା ଚୋଡ଼ଗଙ୍ଗଦେବ ପୁରୀ ମନ୍ଦିର ପୁନର୍ଗଠନ କ୍ଷେତ୍ରରେ କିପରି ଅର୍ଥ ବରାଦ କରି ପାରିଥିଲେ ଏବଂ କାର୍ଯ୍ୟଟିରେ କି ପ୍ରକାର ପ୍ରାଥମିକତା ଦେଇଥିଲେ; ନରସିଂହ ଦେବ କୋଣାର୍କ ଦେଉଳ କ୍ଷେତ୍ରରେ ଅର୍ଥ ଓ କାର୍ଯ୍ୟରେ କି ପ୍ରକାର ପ୍ରାଥମିକତା ଦେଇଥିଲେ, ତାହାର ପ୍ରତିଫଳନ ସ୍ୱାଭାବିକ । ମନେ ରଖିବାକୁ ହେବ, କୋଣାର୍କପାଇଁ ଓଡ଼ିଶାର ୧୨ ବର୍ଷର ରାଜସ୍ୱ ବ୍ୟୟ ହୋଇଥିଲା । ଅନ୍ୟ ଗୋଟିଏ ମତାନୁସାରେ ଅର୍ଥ ଆସିଥିଲା ଦାକ୍ଷିଣାତ୍ୟ ଯୁଦ୍ଧରୁ । ସେ ଯାହାହେଉ, ଏ ମନ୍ଦିର ପାଇଁ ଦୃଶ୍ୟତଃ ବ୍ୟୟ ହୋଇଥିବ ବିପୁଳ ଅର୍ଥ । ଫର୍ଗୁସନ୍‌ଙ୍କ ମତ ଗ୍ରହଣଯୋଗ୍ୟ ହେଉନାହିଁ ।


ଫଟୋ-୧ : ଜଗନ୍ନାଥଙ୍କ ପୂଜା

କୋଣାର୍କ ପୁରୀ ମନ୍ଦିର ପୂର୍ବରୁ ନିର୍ମାଣ ହୋଇ ନଥିଲା । ଏହାର ଆଉ ଗୋଟିଏ ପ୍ରମାଣ ଉପସ୍ଥାପନ କରାଯାଇପାରେ । ବ୍ରିଟିଶ୍ ଅମଳରେ କୋଣାର୍କର ଭଗ୍ନସ୍ତୂପ ଅପସାରଣ କରିବା ଅବସରରେ (୧୯୦୨-୦୫) ଖଣ୍ଡିଏ ପ୍ରସ୍ତର ପଟା ମିଳିଥିଲା, ଯେଉଁଥିରେ ଖୋଦିତ ହୋଇଥିଲା ମହିଷମର୍ଦ୍ଦିନୀ, ଜଗନ୍ନାଥ, ଶିବଲିଙ୍ଗ ଏବଂ ଯୋଡ଼ହସ୍ତରେ ଦଣ୍ଡାୟମାନ ରାଜାଙ୍କ ମୂର୍ତ୍ତି ।[୧୦] ଜଗନ୍ନାଥ ମନ୍ଦିର ଗଢ଼ାହେବାର ବହୁ ପୂର୍ବରୁ କୋଣାର୍କ ଗଢ଼ା ହୋଇଥିଲେ ଏହା ସମ୍ଭବ ହୁଅନ୍ତା ନାହିଁ । ଏବେ ମଧ୍ୟ ପ୍ରଥମପୃଷ୍ଠ ଗାତ୍ରରେ ଜଗନ୍ନାଥ ପୂଜାର ଗୋଟିଏ ଖୋଦେଇ କାର୍ଯ୍ୟ ମିଳିବ ଯାହାର ଫଟୋଚିତ୍ର ଦିଆଗଲା । (ଫଟୋ-୧)

ଆଇନ୍-ଇ-ଆକ୍‌ବରୀରେ ଆବୁଲ୍ ଫଜଲ କହିଛନ୍ତି, ''୭୩୦ ବର୍ଷ ପୂର୍ବେ, ଅର୍ଥାତ୍ ୮୫୦ ଖ୍ରୀଷ୍ଟାବ୍ଦରେ (୧୫୮୦ ଖ୍ରୀଷ୍ଟାବ୍ଦରେ ଆବୁଲ୍ ଫଜଲ୍‌ଙ୍କ ଓଡ଼ିଶା ଆଗମନର ୭୩୦ ବର୍ଷ ପୂର୍ବରୁ ) ନରସିଂହ ଦେବ ଏ ବିଶାଳ କୋଣାର୍କ ଦେଉଳ ତୋଳିଥିଲେ । ୮୫୦ ବେଳକୁ ଓଡ଼ିଶାରେ ଗଙ୍ଗବଂଶର ଆବିର୍ଭାବ ମଧ୍ୟ ହୋଇ ନଥିଲା । ଆବୁଲ୍ ଫଜଲ୍ ଶୁଣାକଥାରେ ଇତିହାସ ରଚନା କରିଥିବାରୁ କେତୋଟି ବିଷୟ ଗୋଳେଇ ମିଶେଇ ପକେଇଛନ୍ତି । ଆବୁଲ୍ ଫଜଲ କିନ୍ତୁ ପରିଷ୍କାର କହିଛନ୍ତି, ମନ୍ଦିର ନରସିଂହଦେବ ଗଢ଼ିଥିଲେ ।

ବିଶନ୍ ସ୍ୱରୂପ ଆବୁଲ୍ ଫଜଲଙ୍କୁ ପ୍ରମାଣ ରୂପେ ଧରିଛନ୍ତି କିନ୍ତୁ ନରସିଂହଦେବ କୋଣାର୍କର ସ୍ରଷ୍ଟା, ମାନୁ ନାହାନ୍ତି । ଏହା ଦୃଶ୍ୟତଃ କୁ-ଯୁକ୍ତି । ବିଷୟଟି ଆଗକୁ ଆହୁରି ଆଲୋଚିତ ହେବ ।

ମନମୋହନ ଗାଙ୍ଗୁଲୀ ଗୋଟିଏ ବିଦଗ୍ଧ ଆଲୋଚନାର ସୂତ୍ରପାତ କରିଛନ୍ତି । ଗଙ୍ଗବଂଶର ଗୋଟିଏ ତମ୍ବାପଟାରେ ଲିଖିତ ବଂଶାବଳୀ ମତେ ନରସିଂହଦେବଙ୍କ ସିଂହାସନାରୋହଣ ୧୨୫୮ ଖ୍ରୀଷ୍ଟାବ୍ଦ ।[୧୧] ଗାଙ୍ଗୁଲୀ ପୁଣି ଗବେଷକ ବାବୁ ମନମୋହନ ଚକ୍ରବର୍ତ୍ତୀଙ୍କ ତଥ୍ୟ ଉପସ୍ଥାପନ କରି କହିଛନ୍ତି, ଚକ୍ରବର୍ତ୍ତୀଙ୍କ ମତାନୁସାରେ ନରସିଂହ ଦେବଙ୍କ ରାଜତ୍ୱ ୧୨୩୮ ଖ୍ରୀଷ୍ଟାବ୍ଦ ଠାରୁ ୧୨୬୪ । ଗବେଷଣାଟି Asiatic Society of Bengal- Vol-XXII ( P-120 )ରେ ପ୍ରକାଶିତ ହୋଇଥିଲା ।[୧୨] ପଣ୍ଡିତ କୃପାସିନ୍ଧୁ ମିଶ୍ର ମଧ୍ୟ ଏ ସନ୍ଦର୍ଭଟିର ଉଲ୍ଲେଖ କରିଛନ୍ତି ଓ ତାହା ଉପରେ ନିର୍ଭର କରିଛନ୍ତି ।[୧୩] ଏଠାରେ ଉଲ୍ଲେଖଯୋଗ୍ୟ, ଗାଙ୍ଗୁଲୀ ଶକାବ୍ଦ ସହିତ ୭୮ ଯୋଡ଼ି ଇଂରାଜୀ ବର୍ଷ କରିଛନ୍ତି । କରୁଣାସାଗର ୭୬ ବର୍ଷ ଯୋଡ଼ିଛନ୍ତି । ( Konark - Vol-I page-31 )

ଗାଙ୍ଗୁଲୀଙ୍କ କଥିତ ତମ୍ବାପଟ୍ଟା ଅନୁସାରେ, କୋଣାର୍କ ମନ୍ଦିର ନରସିଂହଦେବଙ୍କ ରାଜତ୍ୱ କାଳର ଅଷ୍ଟାଦଶ ବର୍ଷରେ ମନ୍ଦିର ନିର୍ମାଣ ସଂପୂର୍ଣ୍ଣହେଲା । ତମ୍ବାପଟ୍ଟାରେ ନରସିଂହଦେବଙ୍କ ସିଂହାସନ ଆରୋହଣ ୧୨୫୮ ଖ୍ରୀଷ୍ଟାବ୍ଦ । ୧୨୫୮ ସହିତ ୧୮ ବର୍ଷ ମିଶାଇଲେ ୧୨୭୬ ଖ୍ରୀଷ୍ଟାବ୍ଦ ହେବ । ମାଦଳା ପାଞ୍ଜିର ଆଉ ଗୋଟିଏ ଶ୍ଲୋକ ମତେ ମନ୍ଦିର ପ୍ରତିଷ୍ଠା ହୋଇଥିଲା ୧୨୭୮ ଖ୍ରୀଷ୍ଟାବ୍ଦରେ (ଗାଙ୍ଗୁଲୀ,Page-479) । ଫରକଟି ସାମାନ୍ୟ ।[୧୪] କିନ୍ତୁ ମୂଳ ଗୋଳମାଳ ଅନ୍ୟତ୍ର । ଚକ୍ରବର୍ତ୍ତୀଙ୍କ ଗବେଷଣାକୁ ନିର୍ଭର କଲେ ନରସିଂହଙ୍କ ସିଂହାସନ ଆରୋହଣ ୧୨୩୮, ତମ୍ବାପଟ୍ଟା ବଂଶାବଳୀ ଅନୁଯାୟୀ ୧୨୫୮ ଖ୍ରୀଷ୍ଟାବ୍ଦ । ଗାଙ୍ଗୁଲୀ ଏ ବିଭ୍ରାନ୍ତି ସମାଧାନର ଚେଷ୍ଟା କରି ନାହାନ୍ତି ।

କୃପାସିନ୍ଧୁ କହିଛନ୍ତି, ମାଦଳା ପାଞ୍ଜି ଅଭ୍ରାନ୍ତ ଓ ପାଞ୍ଜି ଅନୁସାରେ ନରସିଂହଦେବ ସିଂହାସନ ଆରୋହଣ କରିଥିଲେ ୧୨୩୭ ଖ୍ରୀଷ୍ଟାବ୍ଦରେ ।[୧୫] ଷ୍ଟାର୍ଲିଂ ମାଦଳାପାଞ୍ଜିର 'ରାଜ ଚରିତ୍ର' ଓ 'ବଂଶାବଳୀ' ନାମକ ଦୁଇଟି ଗ୍ରନ୍ଥ ଉପରେ ନିର୍ଭର କରି ଏ ତଥ୍ୟ ଉପସ୍ଥାପନ କରିଛନ୍ତି ।[୧୬] ଏହା ଫଳରେ ବିଭ୍ରାନ୍ତି ଆହୁରି ବଢ଼ୁଛି । ମାଦଳାପାଞ୍ଜି ଯେବେ ଅଭ୍ରାନ୍ତ ତେବେ ମନ୍ଦିର ପ୍ରତିଷ୍ଠା ୧୨୭୮ ଖ୍ରୀଷ୍ଟାବ୍ଦରେ ହୋଇଥିବା ମାନିବାକୁ ପଡ଼ିବ । ମନ୍ଦିର ଗଠନକାଳ ଯେବେ ନରସିଂହଦେବଙ୍କ ସିଂହାସନ ଆରୋହଣଠାରୁ ୧୮ ବର୍ଷ ହୋଇଥାଏ - ପାଞ୍ଜିର ଅନ୍ୟ ଗୋଟିଏ ଅନୁଶାସନ ଅନୁଯାୟୀ ୧୨ ବର୍ଷ - ତେବେ ନରସିଂହଦେବ ସିଂହାସନ ଆରୋହଣ କରିଥିଲେ ୧୨୬୦ ଅଥବା ୧୨୬୬ ଖ୍ରୀଷ୍ଟାବ୍ଦରେ, ଯାହା ସେଇ ମାଦଳାପାଞ୍ଜିବର୍ଣ୍ଣିତ ୧୨୩୭ ଖ୍ରୀଷ୍ଟାବ୍ଦ ପାଖାପାଖି ମଧ୍ୟ ନୁହେଁ ।

ଉପରୋକ୍ତ ଦୁଇଟି ଗ୍ରନ୍ଥରେ ଲେଖାଅଛି ଚୋଡ଼ଗଙ୍ଗଦେବ ଓଡ଼ିଶାର ରାଜା ହୋଇଥିଲେ ୧୦୫୪ ଶକାବ୍ଦ ଆଶ୍ୱିନ ୧୩ ରେ, ଅର୍ଥାତ୍ ୧୧୩୨ ଖ୍ରୀଷ୍ଟାବ୍ଦରେ । ସେଥିରୁ ହିସାବ କରି କୃପାସିନ୍ଧୁ କହିଛନ୍ତି, ନରସିଂହ ଦେବଙ୍କ ସିଂହାସନ ଆରୋହଣ ୧୨୩୭ ଖ୍ରୀଷ୍ଟାବ୍ଦ । କିନ୍ତୁ ଏହା ଗାଙ୍ଗୁଲୀ ପ୍ରଦତ୍ତ ବଂଶାବଳୀର ୧୨୫୮ ଖ୍ରୀଷ୍ଟାବ୍ଦ ସହିତ ମିଶୁ ନାହିଁ । ଚୋଡ଼ଗଙ୍ଗଦେବଙ୍କ ସିଂହାସନ ଆରୋହଣ ବର୍ଷରେ ମଧ୍ୟ ପ୍ରାୟ ଶହେ ବର୍ଷ ଫରକ୍ ।

କଟକ ଜିଲ୍ଲା କେନ୍ଦୁପାଟଣା ଗ୍ରାମର ଜମିଦାରଙ୍କ ଘରୁ ଦ୍ୱିତୀୟ ନରସିଂହଦେବଙ୍କ ଅମଳର ଦୁଇଟି ତମ୍ବାପଟ୍ଟା ଉଦ୍ଧାର କରି ଗବେଷକ ନଗେନ୍ଦ୍ରନାଥ ବସୁ Asiatic Society of Bengalରେ ଗୋଟିଏ ସନ୍ଦର୍ଭ ଲେଖନ୍ତି । ଏହା, ପରେ ଓଡ଼ିଆ ପତ୍ରିକା 'ମୁକୁର'ରେ ପ୍ରକାଶିତ ହୋଇ ହଲଚଲ ସୃଷ୍ଟି କରେ ।[୧୭] ଯଦିଓ କୃପାସିନ୍ଧୁ ଏ ତମ୍ବାପଟ୍ଟା ବିଶ୍ୱାସଯୋଗ୍ୟ ନୁହେଁ ବୋଲି କହିଛନ୍ତି ଏଥିରୁ କେତେକ ଶ୍ଲୋକ ଅନୁବାଦ କରି ଆଠଜଣ ରାଜାଙ୍କ ଶାସନକାଳ ଉପସ୍ଥାପିତ କରିଛନ୍ତି (କୃପାସିନ୍ଧୁ-କୋଣାର୍କ-ପୃ୧୪୧) । ଏହା ଗାଙ୍ଗୁଲୀ ପ୍ରଦତ୍ତ ତଥ୍ୟରୁ ଫରକ ହେଉଛି । ତେବେ କ'ଣ ଦୁହେଁ ଦୁଇଟି ଭିନ୍ନ ଭିନ୍ନ ତମ୍ବାପଟାର ବୟାନ ଉପସ୍ଥାପନ କରିଛନ୍ତି ? ଯେହେତୁ ଗାଙ୍ଗୁଲୀ ପ୍ରଦତ୍ତ ତାଲିକାଟି[୧୮] ଏହାପରେ କାର୍ଯ୍ୟରେ ଲାଗିବ, କିଛି ଉପପାଦିତ ତଥ୍ୟ ଏବଂ କୃପାସିନ୍ଧୁ ପ୍ରଦତ୍ତ ହିସାବ ଯୋଡ଼ି ତାଲିକାଟି ନିମ୍ନରେ ପ୍ରଦତ୍ତ ହେଲା । ଏହାପରେ ତାଲିକାଟି ବଂଶାବଳୀ ନାମରେ ଆଲୋଚିତ ହେବ ।

## ସାରଣୀ - ୧

# ବଂଶାବଳୀ

| ନାମ | ସିଂହାସନ ଆରୋହଣ | ଉପପାଦିତ ଶାସନ କାଳ | କୃପାସିନ୍ଧୁ ପ୍ରଦତ୍ତ ଶାସନ କାଳ |
|---|---|---|---|
| ୧ | ୨ | ୩ | ୪ ଅଙ୍କ/ଇଂ.ବର୍ଷ |
| ଚୋଡ଼ଗଙ୍ଗ ଦେବ | ୯୯୯ ଶକ -୧୦୭୫ ଖ୍ରୀ.ଅ. | ୭୦ | |
| କାମାର୍ଣ୍ଣବ ଦେବ | ୧୧୪୫ ଖ୍ରୀ.ଅ. | ୧୦ | ୧୦ / ୦୮ |
| ରାଘବ | ୧୧୫୫ ଖ୍ରୀ.ଅ. | ୧୫ | ୧୫ / ୧୨ |
| ରାଜରାଜ (୨) | ୧୧୭୦ ଖ୍ରୀ.ଅ. | ୨୫ | ୨୫ / ୨୦ |
| ଅନିୟଙ୍କଦେବ / ଅନଙ୍ଗଭୀମଦେବ (୧) | ୧୧୯୫ ଖ୍ରୀ.ଅ. | ୧୦ | ୧୦ / ୦୮ |
| ରାଜରାଜ(୩) | ୧୨୦୫ ଖ୍ରୀ.ଅ. | ୨୦ | ୧୭ / ୧୪ |
| ଅନିୟଙ୍କଦେବ-ଅନଙ୍ଗଭୀମଦେବ (୨) | ୧୨୨୫ ଖ୍ରୀ.ଅ. | ୩୩ | ୩୪ / ୨୮ |
| ନରସିଂହ ଦେବ (୧) | ୧୨୫୮ ଖ୍ରୀ.ଅ. | | ୩୩ / ୨୭ |
| ଭାନୁଦେବ (ବର୍ତ୍ତମାନ ସଂଯୋଜିତ) | | | ୧୮ / ୧୫ |
| | ମୋଟ | ୧୮୩ | |

ସାରଣୀର ପ୍ରଥମ ଓ ଦ୍ୱିତୀୟ ସ୍ତମ୍ଭ ଗାଙ୍ଗୁଲୀ ପ୍ରଦତ୍ତ ତଥ୍ୟ ଅନୁଯାୟୀ **(O &HR, P-480)** ଏବଂ ଚତୁର୍ଥ ସ୍ତମ୍ଭର ପ୍ରଥମ ବିଭାଗ, ଅର୍ଥାତ୍ ବର୍ଷ ପର୍ଯ୍ୟନ୍ତ କୃପାସିନ୍ଧୁଙ୍କ ତଥ୍ୟାନୁଯାୟୀ (କୋଣାର୍କ-ପୃ-୧୪୧) ଗଠିତ ହୋଇଛି । ତେବେ କୃପାସିନ୍ଧୁ କେଉଁ ବର୍ଷ କଥା କହିଛନ୍ତି- ଅଙ୍କ ବର୍ଷ ଅଥବା ଇଂରାଜୀ ବର୍ଷ ? ଯେହେତୁ ବର୍ଷ କଡ଼ରେ ବନ୍ଧନୀ ମଧ୍ୟରେ ଅନୁଶାସନର ଶ୍ଳୋକ ସଂଖ୍ୟା ଦିଆଯାଇଛି ଏବଂ ଶ୍ଳୋକ ରଚନା ସମୟରେ ଇଂରାଜୀ ବର୍ଷର ପ୍ରଚଳନ ନଥିଲା । ସେ ଯୁଗରେ, ପ୍ରଚଳିତ ଅଙ୍କକୁ କରୁଣାସାଗରଙ୍କ ସୂତ୍ର ଅନୁଯାୟୀ (୩୩ = ୨୭ ଇଂରାଜୀ ବର୍ଷ **- Page-18**) । ଦ୍ୱିତୀୟ ଭାଗରେ ଇଂରାଜୀ ବର୍ଷରେ ରୂପାନ୍ତରିତ କରାଗଲା । କୃପାସିନ୍ଧୁ କହିଥିବା ୨୧ ଅଙ୍କକୁ ୧୭ ବର୍ଷ ମଧ୍ୟ ଏ କନ୍‌ଭରସନ୍ ଫ୍ୟାକ୍ଟର ସହିତ ମିଶିଯାଉଛି । ଗାଙ୍ଗୁଲୀ 'ଶକ'କୁ ପ୍ରଥମରୁ ହିଁ ଇଂରାଜୀ ADରେ ପରିବର୍ତ୍ତନ କରିଛନ୍ତି । ଅନଙ୍ଗଭୀମ (୧) ଯାଏ ଯେବେ ଇଂରାଜୀ ବର୍ଷ ଏବଂ ଶକ ସମାନ ରହିଲା, ତାଙ୍କ ପରେ ମିଳୁନାହିଁ କାହିଁକି ? ସ୍ତମ୍ଭ ୩ ଓ ୪ ଭଲ ରୂପେ ନିରୀକ୍ଷଣ କରିଲେ କଥାର ତାତ୍ପର୍ଯ୍ୟ ଜଣାପଡ଼ିବ । ଏ ବିଭ୍ରାନ୍ତିର ସମାଧାନ ହୋଇଯିବ ୨ୟ ସାରଣୀ ଗଢ଼ିଲା ବେଳକୁ ।

ବଂଶାବଳୀରେ ଶାସନ ବର୍ଷର ଫରକ୍ ଛଡ଼ା ଗୋଟିଏ ଗୁରୁତର ପ୍ରଶ୍ନ ଉଠୁଛି । ଚୋଡ଼ଗଙ୍ଗଦେବ ଉତ୍କଳ ଜୟ କରି ଓଡ଼ିଶା ଆସିଥିଲେ । ସେତେବେଳେ ତାଙ୍କ ବୟସ ଯଦି ଅନ୍ୟୂନ ୩୦ ହୋଇଥାଏ, ସିଏ ୧୦୦ବର୍ଷ ବୟସ ଯାଏ ରାଜ୍ୟ ଶାସନ କରିଥିଲେ । ସେ ସମୟର ରାଜନୈତିକ ଉତ୍‌ଥାନପତନ କାଳରେ ଏହା ସମ୍ଭବ ମନେ ହୁଏନା । କୃପାସିନ୍ଧୁ ମଧ୍ୟ ଏ ପ୍ରଶ୍ନ ଉଠେଇଛନ୍ତି କିନ୍ତୁ କୌଣସି ସମାଧାନ ଦିଗକୁ ଆଗେଇ ନାହାଁନ୍ତି । କାରଣ ସେ ମାଦଳାପାଞ୍ଜିକୁ ଅଭ୍ରାନ୍ତ ଭାବି ଅନ୍ୟ କୌଣସି ସହଯୋଗୀ ପ୍ରମାଣ ଆବଶ୍ୟକ ମନେ କରି ନାହାନ୍ତି ।

ଅଧିକାଂଶ ଐତିହାସିକ, ୧ମ ନରସିଂହ ଦେବଙ୍କ ସିଂହାସନାରୋହଣ ୧୨୩୮ ଖ୍ରୀଷ୍ଟାବ୍ଦ ମାନୁଛନ୍ତି, ଯାହା ମୂଳତଃ ମାଦଳାପାଞ୍ଜି ଉପରେ ନିର୍ଭର କରୁଛି । ମାଦଳାପାଞ୍ଜିରେ ମଧ୍ୟ କିଛି ସ୍ୱ-ବିରୋଧ ଓ ଅତିଶୟୋକ୍ତି ଅଛି । କିନ୍ତୁ ମାଦଳାପାଞ୍ଜିକୁ ଛାଡ଼ି ମଧ୍ୟ ହେବ ନାହିଁ । କାରଣ, ଓଡ଼ିଶାରେ କ୍ରମାନ୍ୱୟରେ ଲିଖିତ ମୁଖ୍ୟ ଘଟଣାଗୁଡ଼ିକର ଉପସ୍ଥାପନା ଏକମାତ୍ର ମାଦଳାପାଞ୍ଜି ।

ଯେପରି ନରସିଂହଦେବଙ୍କ ସିଂହାସନ ଆରୋହଣର ବର୍ଷ ନେଇ ବିରୋଧ ଅଛି, ବଂଶର ମୂଳ ଚୋଡ଼ଗଙ୍ଗଦେବଙ୍କ ଶାସନକାଳ ମଧ୍ୟ ସେହିପରି ବିବାଦମୁକ୍ତ ନୁହେଁ । ଚୋଡ଼ଗଙ୍ଗଦେବଙ୍କ ସିଂହାସନ ଆରୋହଣର ବର୍ଷ ବିଭିନ୍ନ ସୂତ୍ର ମତେ ନିମ୍ନ ପ୍ରକାରର ।

| | | |
|---|---|---|
| ବଂଶାବଳୀ | – | ୧୦୭୫ ଖ୍ରୀଷ୍ଟାବ୍ଦ |
| ଷ୍ଟାର୍ଲିଂ-ମାଦଳାପାଞ୍ଜି | – | ୧୧୩୨ ଖ୍ରୀଷ୍ଟାବ୍ଦ/୧୦୫୪ ଶକାବ୍ଦ (କୃପାସିନ୍ଧୁ, ପୃ-୧୪୦) |
| କରୁଣାସାଗର | – | ୧୧୧୨ ଖ୍ରୀଷ୍ଟାବ୍ଦ[୧୯] |

ବଂଶାବଳୀ ଅନୁଯାୟୀ ଚୋଡ଼ଗଙ୍ଗଦେବଙ୍କଠାରୁ ନରସିଂହଦେବଙ୍କ ସିଂହାସନ ଆରୋହଣ ୧୮୩ବର୍ଷ । ଯେବେ ନରସିଂହଦେବଙ୍କ ସିଂହାସନ ଆରୋହଣ ୧୨୩୮ ଖ୍ରୀଷ୍ଟାବ୍ଦ ହୁଏ ଚୋଡ଼ଗଙ୍ଗଦେବ ରାଜା ହୋଇଥିବେ ୧୦୫୫ ଖ୍ରୀଷ୍ଟାବ୍ଦରେ, ୧୦୭୫ରେ ନୁହେଁ । ଏହା ହିସାବ ମାତ୍ର, ନିର୍ଣ୍ଣୟ ନୁହେଁ ।

ଚୋଡ଼ଗଙ୍ଗଦେବଙ୍କୁ ଗଙ୍ଗବଂଶର ସୃଷ୍ଟିକର୍ତ୍ତା ଏବଂ ଓଡ଼ିଶା ସେ ସମୟରେ ଗୋଟିଏ ସ୍ୱତନ୍ତ୍ର ଦେଶ ଭାବିନେଲାରୁ ଏପରି ବିଭ୍ରାନ୍ତି ସୃଷ୍ଟି ହୋଇଛି । ଚୋଡ଼ଗଙ୍ଗଦେବଙ୍କ ପୂର୍ବେ ମଧ୍ୟ ଗଙ୍ଗବଂଶ ଥିଲା । ଆଗକୁ ଯାଇ ଦେଖାଯାଉ ଯୁକ୍ତିଯୁକ୍ତ ଭାବେ ଏ ଜଟ ଛଡ଼ାଯିବ କିପରି ? ବହୁ ବର୍ଷ ପୂର୍ବେ ଗଙ୍ଗବଂଶର ଦୁଇଟି ଧାରା ପ୍ରବାହିତ ହେଉଥିଲା: ପଶ୍ଚିମ-ଗଙ୍ଗବଂଶ ଓ ପୂର୍ବ-ଗଙ୍ଗବଂଶ । ପଶ୍ଚିମ-ଗଙ୍ଗବଂଶ ମୂଳତଃ କର୍ଣ୍ଣାଟକରେ ରାଜତ୍ୱ କରୁଥିଲେ ଏବଂ ପୂର୍ବ-ଗଙ୍ଗବଂଶର ରାଜତ୍ୱ ଥିଲା ଗୋଦାବରୀର ଉତ୍ତର ପଟେ । ଦୁଇଟି ଧାରା ମଧ୍ୟରେ କୌଣସି ଯୋଗସୂତ୍ର ଥିଲା କି ନାହିଁ ଜଣାନାହିଁ । ତେବେ ପଶ୍ଚିମ-ଗଙ୍ଗବଂଶ ଥିଲା ଅଧିକ ପୁରାତନ - ତୃତୀୟ ଶତାବ୍ଦୀରୁ ଦଶମ ଶତାବ୍ଦୀ । ପୂର୍ବ-ଗଙ୍ଗବଂଶର ଶାସନକାଳ ଏକାଦଶ ଶତାବ୍ଦୀରୁ ପଞ୍ଚଦଶ ଶତାବ୍ଦୀଯାଏ ବିସ୍ତୃତ ଥିଲା ।[୨୦]

ଯେଉଁ ସମୟର କଥା କୁହାଯାଉଛି ସେ ସମୟରେ କୌଣସି ରାଜ୍ୟର କୌଣସି ନିର୍ଦ୍ଦିଷ୍ଟ ସୀମା ନଥିଲା । ଗଙ୍ଗବଂଶ ଛଡ଼ା ଦକ୍ଷିଣରେ ପଲ୍ଲଭ, ଚାଲୁକ୍ୟ, କଦମ୍ବ ଏବଂ ଉତ୍ତରରେ କେଶରୀ ବଂଶ ଛଡ଼ା ଛୋଟ ବଡ଼ ବହୁ ନରପତି ରାଜୁତି କରୁଥିଲେ । ଏମାନେ ସର୍ବଦା ସଚେଷ୍ଟ ଥିଲେ, ଯୁଦ୍ଧ ଦ୍ୱାରା ଅଥବା ବୈବାହିକ ସଂପର୍କ ସ୍ଥାପନ କରି ନିଜ ନିଜ ରାଜ୍ୟର ସୀମା ବୃଦ୍ଧି କରିବାକୁ ।

ଆଜିକାର ଓଡ଼ିଶାର ରୂପ ସେ ଯୁଗରେ ନଥିଲା । କଳିଙ୍ଗ ନାମକ ଗୋଟିଏ ଉନ୍ନତ ଦେଶ କଥା ମହାଭାରତରେ ଉଲ୍ଲେଖ ଅଛି । ବାଲିଙ୍କ ସ୍ତ୍ରୀ ସୁଦେଷ୍ଣା, ମୁନି ଦୀର୍ଘାତ୍ମାଙ୍କ ଦ୍ୱାରା ପାଞ୍ଚଟି ପୁତ୍ର ଉତ୍ପାଦନ କଲେ - ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସମହ । ଏମାନଙ୍କ ରାଜ୍ୟଗୁଡ଼ିକ ଏମାନଙ୍କ ନାମ ବହନ କଲା । କ୍ରମେ କଳିଙ୍ଗ ଓ ବଙ୍ଗ ଛଡ଼ା ଅନ୍ୟ ରାଜ୍ୟଗୁଡ଼ିକ ହଜିଗଲା । ବ୍ରହ୍ମପୁରାଣ ଅନୁଯାୟୀ ଦୀର୍ଘାତ୍ମା ଉତଥ୍ୟଙ୍କ ପୁତ୍ର, ଯେଉଁ ଉତଥ୍ୟଙ୍କ ନାମ ଋଗ୍‌ବେଦରେ ମିଳୁଛି । ମନେହୁଏ, କଳିଙ୍ଗର ଖ୍ୟାତି ବୈଦିକ ଯୁଗ ଯାଏ ଲମ୍ବିଥିଲା । ମହାଭାରତରେ ଆହୁରି ମିଳୁଛି, ଦୁର୍ଯ୍ୟୋଧନ କଳିଙ୍ଗରାଜ ଚିତ୍ରାଙ୍ଗଦଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ମହାଭାରତ ସମୟରେ କଳିଙ୍ଗର ସୀମାରେଖା ଥିଲା; ଉତ୍ତରରେ ବୈତରଣୀ, ଦକ୍ଷିଣରେ ଗୋଦାବରୀ, ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ଛୋଟ ଛୋଟ ରାଜ୍ୟସମୂହ । ଉତ୍କଳର ସୀମାରେଖା ସେସମୟରେ ଦକ୍ଷିଣରେ ବୈତରଣୀ ଓ ଉତ୍ତରରେ ତାମ୍ରଲିପ୍ତ ଅଥବା ଆଜିକାର ତମଲୁକ୍ ଯାଏ ବିସ୍ତୃତ ଥିଲା । କଳିଙ୍ଗ ଓ ଉତ୍କଳ ନାମରେ ଦୁଇଟି ଭୂଖଣ୍ଡର ଆଂଶିକ ମିଳନ-ବିଚ୍ଛେଦ (ଜୟ-ପରାଜୟ) ଲାଗି ରହିଥିଲା । ରାଜନୈତିକ ଭଙ୍ଗାଗଢ଼ା ଛଡ଼ା ନଦୀମାତୃକ ଦେଶଟିରେ ଭୌଗୋଳିକ ଭଙ୍ଗାଗଢ଼ା ମଧ୍ୟ ଲାଗି ରହିଥିଲା । ସମୁଦ୍ରାଭିମୁଖୀ ଶତ ଶତ ନଦୀନାଳର ନିୟତ ମିଳନ-ବିଚ୍ଛେଦ ଫଳରେ ଭୂମିର ନକ୍ସା ଘନଘନ ବଦଳି ଯାଉଥିଲା । କଳିଙ୍ଗର ସୀମାରେଖା ଦକ୍ଷିଣରେ ଗୋଦାବରୀଠାରୁ ଉତ୍ତରରେ ଉତ୍କଳର ସୀମାରେଖା ଯାଏ ବିସ୍ତୃତ ଥିଲା ।[୨୧] କ୍ରମେ କଳିଙ୍ଗ ଉତ୍କଳକୁ ଆତ୍ମସାତ୍ କରିନେଲା । ନରସିଂହଦେବଙ୍କ ସମୟରେ ରାଜ୍ୟସୀମା ଗୋଦାବରୀଠାରୁ ଗୌଡ଼ବଙ୍ଗଯାଏ ବିସ୍ତାର ଲାଭ କରିଥିଲା ।

## ଓଡ଼ିଶା ଗଙ୍ଗବଂଶର ଇତିହାସ[୨୨]

ଚୋଡ଼ଗଙ୍ଗଦେବଙ୍କ ଉତ୍‌ଥାନ ପୂର୍ବରୁ ଗଙ୍ଗ ବଂଶର ରାଜଧାନୀ ଥିଲା କଳିଙ୍ଗ ନଗର, ଯାହା ବଂଶଧାରା ନଦୀ ତୀରରେ ଅବସ୍ଥିତ ଓ ଆଜି ଆନ୍ଧ୍ରର ଶ୍ରୀକାକୁଳମ୍ ଜିଲ୍ଲାରେ ନଗରୀ-କଟକ ନାମରେ ପରିଚିତ । ଗଙ୍ଗବଂଶର ରାଜାମାନେ କଳିଙ୍ଗନଗର ରାଜଧାନୀଠାରେ ପ୍ରାୟ ୪୦୦ ବର୍ଷ ରାଜତ୍ୱ କରିଥିଲେ । କ୍ରମେ ରାଜ୍ୟସୀମା ଦକ୍ଷିଣରେ ସୀମାଚଳ ପର୍ବତ ଶ୍ରେଣୀ ଓ ଉତ୍ତରରେ ଋଷିକୁଲ୍ୟା ନଦୀ ଯାଏ ସଂକୁଚିତ ହୋଇ ଯାଇଥିଲା । ଚାରିଶହ ବର୍ଷ ମଧ୍ୟରେ କିଏ କିଏ ରାଜତ୍ୱ କରୁଥିଲେ ଜଣାପଡୁ ନାହିଁ । ତେବେ ଦଶମ ଶତାବ୍ଦୀରେ ରାଜା ମଧୁକାମାର୍ଣ୍ଣବଦେବ ଏବଂ ତାଙ୍କ ପୁତ୍ର ବଜ୍ରହସ୍ତଦେବଙ୍କ ନାମ ଆସିଯାଉଛି । ମଧୁକାମାର୍ଣ୍ଣବ ମଧୁକେଶ୍ୱର ଶିବ ମନ୍ଦିର ଗଢ଼ିଥିଲେ ଏବଂ ରାଜାମାନେ ଶୈବ ଥିଲେ ଯଦିଓ ଶ୍ରୀକୂର୍ମପାତକଠାରେ ବୈଷ୍ଣବ ଧର୍ମଚର୍ଚ୍ଚା ମଧ୍ୟ ଥିଲା । ନୃତ୍ୟ କଳା, ସଂସ୍କୃତ ଭାଷା ଚର୍ଚ୍ଚା, ଦର୍ଶନ ଚର୍ଚ୍ଚା ଏବଂ ବିଶେଷକରି ବୈଷ୍ଣବ ଧର୍ମଚର୍ଚ୍ଚାର କେନ୍ଦ୍ର ରୂପେ କଳିଙ୍ଗନଗରଠାରୁ ୧୯କିଲୋମିଟର ଦୂରରେ ଶ୍ରୀକୂର୍ମପାତକ ନାମକ ଗୋଟିଏ କେନ୍ଦ୍ର ବଜ୍ରହସ୍ତଦେବ ଗଢ଼ି ତୋଳିଥିଲେ । ପରବର୍ତ୍ତୀ ଯୁଗରେ ଏଠାରୁ ଓଡ଼ିଶା ସହ ସାଂସ୍କୃତିକ ଆଦାନ ପ୍ରଦାନର ଇତିହାସ ମିଳୁଛି ।

ଚୋଡ଼ଗଙ୍ଗ ପିତୃହୀନ ହୁଅନ୍ତି ମାତ୍ର ୫ବର୍ଷ ବୟସରେ । ପିତାଙ୍କ ନାମ ମହାରାଜା ଦେବେନ୍ଦ୍ର ବର୍ମା ରାଜରାଜ ଦେବ ଏବଂ ମାତା ରାଜସୁନ୍ଦରୀ ଦେବୀ । ରାଜସୁନ୍ଦରୀ କାଞ୍ଚି ଅଧିପତି ମହାରାଜା କୁଳତୁଙ୍ଗ ରାଜେନ୍ଦ୍ର ଚୋଳଙ୍କ କନ୍ୟା ଥିଲେ । ଅସୁରକ୍ଷିତ ରାଜ୍ୟ ରକ୍ଷା କରିବାକୁ ଆଗେଇ ଆସିଲେ ରାଜସୁନ୍ଦରୀଙ୍କ ଭ୍ରାତା ବେଙ୍ଗି ରାଜ୍ୟର ଅଧିପତି ବୀର ଚୋଡ଼ । ପାଞ୍ଚବର୍ଷର ଭଣଜାକୁ ସିଂହାସନରେ ବସାଇ ନିଜ କନ୍ୟା କସ୍ତୁରୀ କାମୋଦିନୀ ସହ ବିବାହ ଦେଲେ ବୀର ଚୋଡ଼ । ଏହାଛଡ଼ା ବୀର ଚୋଡ଼ ବହୁ ଜ୍ଞାନୀ ଶିକ୍ଷକ ନିୟୋଜିତ କଲେ ଏମାନଙ୍କର ଶିକ୍ଷାଦୀକ୍ଷା ପାଇଁ ।

ଚୋଡ଼ଗଙ୍ଗ ପିତୃହୀନ ହୁଅନ୍ତି ୧୦୭୭ ଖ୍ରୀଷ୍ଟାବ୍ଦରେ, ଅର୍ଥାତ୍ ତାଙ୍କ ଜନ୍ମ ୧୦୭୨ ଖ୍ରୀଷ୍ଟାବ୍ଦରେ । ବୟଃପ୍ରାପ୍ତି ସହ ଚୋଡ଼ଗଙ୍ଗଦେବ ବିରାଟ ସୈନ୍ୟବାହିନୀ ଗଢ଼ି ପାର୍ଶ୍ୱବର୍ତ୍ତୀ ରାଜ୍ୟ ଆକ୍ରମଣ କରି ନିଜ ଦେଶର ସୀମା ବଢ଼ାଇବାକୁ ଲାଗିଲେ । ଉତ୍ତରପାର୍ଶ୍ୱରେ ଉତ୍କଳ ଅଧିପତି ଥିଲେ ସେତେବେଳେ ସୋମବଂଶୀ କର୍ଣ୍ଣଦେବ । ଉତ୍କଳ ଜୟ କରିବା ପରେ ଚୋଡ଼ଗଙ୍ଗ ଦେବ ଚାଲୁକ୍ୟ ଓ ତା'ପରେ ବେଙ୍ଗି (ହୁଏତ ସେତେବେଳେ ମାମୁ ବୀର ଚୋଡ଼ ବିତାଡ଼ିତ ହୋଇ ଅନ୍ୟ କେହି ରାଜତ୍ୱ କରୁଥିଲେ) ଏବଂ ଶେଷରେ ବଙ୍ଗ ଦେଶର ପାଳ ରାଜ୍ୟ ଜୟ କଲେ । ରାଜ୍ୟ ସୀମା ପୁଣି ବଢ଼ିଗଲା ଗୋଦାବରୀଠାରୁ ଗଙ୍ଗା ଯାଏ । ରାଜ୍ୟଶାସନ ପ୍ରୟୋଜନରେ କେନ୍ଦ୍ରୀୟସ୍ଥାନ କଟକକୁ ରାଜଧାନୀ ସ୍ଥାନାନ୍ତରିତ ହେଲା ୧୧୧୨ ଖ୍ରୀଷ୍ଟାବ୍ଦରେ । ସେତେବେଳେ ଚୋଡ଼ଗଙ୍ଗଦେବଙ୍କ ବୟସ ୪୦ । ଉତ୍କଳ ବିଲୁପ୍ତ ହେଲା । କଳିଙ୍ଗ ନାମ ଲୋପ ହୋଇ ଓଡ଼ିଶା ହେବାକୁ ଆହୁରି ବହୁବର୍ଷ ଅପେକ୍ଷା କରିବାକୁ ପଡ଼ିବ । ଚୋଡ଼ଗଙ୍ଗ କିନ୍ତୁ ସେ ସମୟରେ କଟକରେ ରହିଲେ ନାହିଁ । ଏଡ଼େ ବିଶାଳ ଯୁଦ୍ଧବିଧ୍ୱସ୍ତ ଦେଶରେ ଶାନ୍ତି ଫେରାଇ ଆଣିବାକୁ ସମୟ ଲାଗିଲା । ୧୧୨୬ ଖ୍ରୀଷ୍ଟାବ୍ଦରେ ଚୋଡ଼ଗଙ୍ଗଦେବ ସପରିବାର ସ୍ଥାୟୀ ଭାବେ ବସବାସ କଲେ କଟକରେ, ନୂତନ ରାଜଧାନୀରେ । ସେତେବେଳେ ତାଙ୍କ ବୟସ ୫୪ । ୧୦୫୦ ଶକାବ୍ଦ(୧୧୨୮ ଖ୍ରୀଷ୍ଟାବ୍ଦ) ତାଙ୍କ ଶାସନର ପ୍ରଥମ ବର୍ଷ ଧରା ହେବ ବୋଲି ପୁରୀ ମୁକ୍ତିମଣ୍ଡପ ନିକଟସ୍ଥ ନୃସିଂହ ମନ୍ଦିର ଗାତ୍ରରେ ଶିଳାଲିପି ଲେଖା ହେଲା । ତାଙ୍କର ନାମ ଆଗରେ ଯୁକ୍ତ ହେଲା, 'ପରମ ମାହେଶ୍ୱର, ପରମ ବୈଷ୍ଣବ ଓ ପରମ ବ୍ରାହ୍ମଣ୍ୟ' । ଚୋଡଗଙ୍ଗଦେବ ମୂଳତଃ ଶୈବ ଥିଲେ ଏବଂ ତାଙ୍କର ଗୁରୁ ଥିଲେ ମଧୁକେଶ୍ୱର ମନ୍ଦିରର ଜଣେ ସାଧୁ । କିନ୍ତୁ ଏ ଦେଶକୁ ଆସି ବୈଷ୍ଣବ ହୋଇଗଲେ । ତାଙ୍କର ବୈଷ୍ଣବ ଗୁରୁ ଆସିଲେ କୂର୍ମପାତକରୁ ଏବଂ ସେ ପୁରୀ ଜଗନ୍ନାଥ ଦେଉଳ ଗଢ଼ିବାକୁ ଲାଗିଲେ । (ଚୋଡ଼ଗଙ୍ଗ ନୂତନ ମନ୍ଦିର ଗଢ଼ିଲେ ଅଥବା ପୁରାତନ ମନ୍ଦିରର ପୁନର୍ଗଠନ କଲେ ଏହା ନେଇ ମତଦ୍ୱୈଧ ଅଛି) । ୧୧୪୨ ଖ୍ରୀଷ୍ଟାବ୍ଦରେ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବ ଦେବଙ୍କ ରାଜ୍ୟାଭିଷେକ ପୁରୀ ଶ୍ରୀମନ୍ଦିରରେ କରିଦେଇ ନିଜେ ରହିଗଲେ ପୁରୀଠାରେ । ସେତେବେଳେ ତାଙ୍କ ବୟସ ୭୦ ।

ପୂର୍ବ କଥିତ 'ବଂଶାବଳୀ'ର ପୁନରାଲୋଚନା ପାଇଁ ଚୋଡ଼ଗଙ୍ଗଦେବଙ୍କ ଉତ୍‌ଥାନର ଗୋଟିଏ କାଳକ୍ରମ ନିମ୍ନରେ ଉପସ୍ଥାପିତ ହେଲା ।

| | | | | |
|---|---|---|---|---|
| ୧୦୭୨ ଖ୍ରୀଷ୍ଟାବ୍ଦ | – | ଜନ୍ମ | | |
| ୧୦୭୭ ଖ୍ରୀଷ୍ଟାବ୍ଦ | – | କଳିଙ୍ଗ ସିଂହାସନ ଆରୋହଣ | – | ବୟସ - ୦୫ |
| ୧୧୧୨ ଖ୍ରୀଷ୍ଟାବ୍ଦ | – | ଉତ୍କଳ ଜୟ | – | ବୟସ - ୪୦ |
| ୧୧୨୬ ଖ୍ରୀଷ୍ଟାବ୍ଦ | – | ସ୍ଥାୟୀ କଟକ ବାସ | – | ବୟସ - ୫୪ |
| ୧୧୪୨ ଖ୍ରୀଷ୍ଟାବ୍ଦ | – | କାମାର୍ଣ୍ଣବଙ୍କୁ ସିଂହାସନ ଦାନ | – | ବୟସ - ୭୦ |

ଏହାପରେ କେତେବର୍ଷ ବଞ୍ଚିଥିଲେ, ତ୍ରିପାଠୀ କହି ନାହାନ୍ତି । ଏ ଇତିହାସ ଶ୍ରୀ ଅଜିତ୍ କୁମାର ତ୍ରିପାଠୀଙ୍କ ଲିଖିତ ଗୋଟିଏ ସନ୍ଦର୍ଭରୁ ଇଣ୍ଟରନେଟ୍ ମାଧ୍ୟମରେ ପ୍ରାପ୍ତ । ଉପରୋକ୍ତ ହିସାବ ଅନେକଗୁଡ଼ିଏ ଅସମାହିତ ପ୍ରଶ୍ନର ଯୁକ୍ତିଗ୍ରାହ୍ୟ ଉତ୍ତର ଦେଉଛି ।

୧. ଚୋଡ଼ଗଙ୍ଗଦେବ ୭୦ ବର୍ଷ ନୁହେଁ ୩୦ ବର୍ଷ ଉତ୍କଳ ଶାସନ କରିଥିଲେ ।

୨. ୧୧୧୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଜୟକରି ବଂଶ ସ୍ଥାପନ; କରୁଣାସାଗରଙ୍କ ସହିତ ମିଳିଯାଉଛି ।

୩. ୧୧୪୨ ଖ୍ରୀଷ୍ଟାବ୍ଦରେ କାମାର୍ଣ୍ଣବଦେବଙ୍କ ସିଂହାସନ ଆରୋହଣ ତାମ୍ରପଟ୍ଟାର ୩୭ ନମ୍ବର ଶ୍ଳୋକ ସହିତ ମିଶି ଯାଉଛି (୧୦୬୪ ଶକ+୭୮= ୧୧୪୨ ଖ୍ରୀଷ୍ଟାବ୍ଦ) ।

କୃପାସିନ୍ଧୁ ସେ ତାମ୍ରପଟ୍ଟାକୁ ବିଶ୍ୱାସ କରୁ ନାହାନ୍ତି କିନ୍ତୁ ଶ୍ଳୋକଗୁଡ଼ିକର ଅନୁବାଦ ଉପସ୍ଥାପିତ କରିଛନ୍ତି । (ପୃ-୧୪୧)

ବର୍ତ୍ତମାନ ବଂଶାବଳୀକୁ ପୁନର୍ଗଠନ କରାଯାଇପାରେ ।

## ସାରଣୀ - ୨

# ପୁନର୍ଗଠିତ ବଂଶାବଳୀ

| ନାମ | ଶାସନକାଳ | ସିଂହାସନ ଆରୋହଣ |
|---|---|---|
| ଚୋଡଗଙ୍ଗଦେବ | *୩୦ ବର୍ଷ | *୧୧୧୨ ଖ୍ରୀଷ୍ଟାବ୍ଦ |
| କାମାର୍ଣ୍ଣବ | ୮ ବର୍ଷ | *୧୧୪୨ ଖ୍ରୀଷ୍ଟାବ୍ଦ |
| ରାଘବ | ୧୨ ବର୍ଷ | ୧୧୫୦ ଖ୍ରୀଷ୍ଟାବ୍ଦ |
| ରାଜରାଜ(୨) | ୨୦ ବର୍ଷ | ୧୧୬୨ ଖ୍ରୀଷ୍ଟାବ୍ଦ |
| ଅନଙ୍ଗଭୀମଦେବ(୧) | ୮ ବର୍ଷ | ୧୧୮୨ ଖ୍ରୀଷ୍ଟାବ୍ଦ |
| ରାଜରାଜ(୩) | ୧୪ ବର୍ଷ | ୧୧୯୦ ଖ୍ରୀଷ୍ଟାବ୍ଦ |
| ଅନଙ୍ଗଭୀମଦେବ(୨) | ୨୮ ବର୍ଷ | ୧୨୦୪ ଖ୍ରୀଷ୍ଟାବ୍ଦ |
| ନରସିଂହ ଦେବ(୧) | ୨୭ ବର୍ଷ | ୧୨୩୨ ଖ୍ରୀଷ୍ଟାବ୍ଦ |

*ତ୍ରିପାଠୀଙ୍କ ସନ୍ଦର୍ଭରୁ ଚୋଡ଼ଗଙ୍ଗଦେବଙ୍କ ଉତ୍କଳ ଜୟର ବର୍ଷ ଏବଂ ପୁତ୍ର କାମାର୍ଣ୍ଣବଙ୍କ ଆରୋହଣର ବର୍ଷ ତଥା ଚୋଡ଼ଗଙ୍ଗଦେବଙ୍କର ଅକଳିତ ଶାସନ କାଳ ଉପରୋକ୍ତ ସାରଣୀରେ ରଖାଗଲା । ୧ ନମ୍ବର ସାରଣୀର ଚତୁର୍ଥ ସ୍ତମ୍ଭର ଦ୍ୱିତୀୟ ଭାଗରେ ପରବର୍ତ୍ତୀ ରାଜାମାନଙ୍କର ଶାସନ କାଳ (ଇଂରାଜୀ ମତେ) ଯାହା ମିଳିଛି ସେଗୁଡ଼ିକ ଜଣେ ଜଣେ କରି ମିଶେଇ କରି ଗଲେ କାମାର୍ଣ୍ଣବ ପରବର୍ତ୍ତୀ ଛଅ ଜଣ ରାଜାଙ୍କର ସିଂହାସନ ଆରୋହଣର ବର୍ଷ ମିଳିଯାଉଛି । ବର୍ତ୍ତମାନ ନରସିଂହଦେବଙ୍କର ସିଂହାସନ ଆରୋହଣର ବର୍ଷ ମିଳି ଆସୁଛି ୧୨୩୨ ।

ଗାଙ୍ଗୁଲୀ ପ୍ରଦତ୍ତ ତାମ୍ରପଟ୍ଟା ନାମଗୁଡ଼ିକ ଛଡ଼ା ସଂପୂର୍ଣ୍ଣ କାଟ ଖାଉଛି । କୃପାସିନ୍ଧୁ ପ୍ରଦତ୍ତ ତାମ୍ରପଟ୍ଟାର ବର୍ଷ ହିସାବ ପ୍ରଥମ ଦୁଇଟି ଛଡ଼ା ବିରୋଧ ସତ୍ତ୍ୱେ ରହୁଛି । ନରସିଂହଦେବଙ୍କ ସିଂହାସନ ଆରୋହଣର ବର୍ଷ ସଂଖ୍ୟାଧିକ ମତ ସହିତ ପ୍ରାୟ ମିଳିଯାଉଛି । ପାଞ୍ଚ ଛଅବର୍ଷର ଫରକ ଧର୍ତ୍ତବ୍ୟ ନୁହେଁ । ତାହା ମଧ୍ୟ ନ ରହିପାରେ ଶକ ବର୍ଷକୁ ଇଂରାଜୀ ବର୍ଷରେ ପରିବର୍ତ୍ତନଜନିତ ଭଗ୍ନାଂଶଗୁଡ଼ିକ ହିସାବକୁ ନେଲେ । ନରସିଂହଦେବଙ୍କ ଶାସନକାଳ ନିରୂପଣ କରିବାକୁ ଆହୁରି କିଛି ତଥ୍ୟ ଅନୁସନ୍ଧାନ କରାଯାଇପାରେ ।

ଉପରୋକ୍ତ ବଂଶାବଳୀରେ ଗାଙ୍ଗୁଲୀ ଯାହାଙ୍କୁ ଅନିୟଙ୍କଦେବ (୨) ଅଥବା ଅନଙ୍ଗଭୀମଦେବ (୨) ଲେଖିଛନ୍ତି (କୃପାସିନ୍ଧୁ ଉପସ୍ଥାପିତ ବଂଶାବଳୀରେ ମଧ୍ୟ ତାହା ହିଁ ଲେଖାଯାଇଛି) ଡକ୍ଟର କରୁଣାସାଗର ବେହେରା ତାହାଙ୍କୁ ଅନଙ୍ଗଭୀମ ଦେବ (୩) କହୁଛନ୍ତି । ଏହା ଅର୍ଥ ଚୋଡ଼ଗଙ୍ଗଦେବଙ୍କ ପୂର୍ବରୁ ମଧ୍ୟ ଜଣେ କେହି ଅନଙ୍ଗଦେବ ଥିଲେ । ସେ ଯାହାହେଉ, ଯେହେତୁ ଏହାପରେ କହିବାକୁ ଯାଉଥିବା ଇତିହାସର ତଥ୍ୟ ବହୁଳାଂଶେ କରୁଣାସାଗରଙ୍କ ଗ୍ରନ୍ଥ ଉପରେ ନିର୍ଭର କରୁଛି ।[୨୩] ଆମେ ମଧ୍ୟ ପ୍ରଥମ ନରସିଂହଦେବଙ୍କ ପିତା, ୩ୟ ଅନଙ୍ଗଭୀମଦେବ ଧରି ଆଗେଇବା ।

## ଲାଙ୍ଗୁଳା ନରସିଂହଦେବଙ୍କ ଯୁଦ୍ଧ :

ଦକ୍ଷିଣରେ କାକତୀୟ ନୃପତିମାନଙ୍କ ସହିତ ଗଙ୍ଗବଂଶର ଯୁଦ୍ଧ, ବଂଶ ପରମ୍ପରାକ୍ରମେ ଚାଲିଥିଲା, ଯାହାର ସମାପ୍ତି ଘଟିଲା ଲାଙ୍ଗୁଳା ନରସିଂହଦେବଙ୍କ ଶାସନ କାଳରେ । ସେ ଯୁଦ୍ଧରେ କେତେବେଳେ ଏମାନେ, କେତେବେଳେ ସେମାନେ ହାରନ୍ତି । ଯେଉଁ ଚୋଡ଼ଗଙ୍ଗଦେବଙ୍କ ରାଜ୍ୟସୀମା ସୀମାଚଳ ପର୍ବତଶ୍ରେଣୀଠାରୁ ଋଷିକୂଲ୍ୟା ନଦୀ ଯାଏ ସଂକୁଚିତ ହୋଇ ଯାଇଥିଲା ସେଇ ଚୋଡ଼ଗଙ୍ଗଦେବ ନିଜ ବାହୁବଳରେ ଗୋଦାବରୀଠାରୁ ଗଙ୍ଗା ଯାଏ ରାଜ୍ୟ ବିସ୍ତାର କରି ପାରିଥିଲେ । କିନ୍ତୁ ପରବର୍ତ୍ତୀ ଛଅ ପ୍ରଜନ୍ମରେ ରାଜ୍ୟସୀମା ପୁଣି ସଂକୁଚିତ ହୋଇ ଯାଇଥିଲା ଏବଂ ତୃତୀୟ ଅନଙ୍ଗଭୀମଦେବଙ୍କୁ ଗୋଦାବରୀ ଉପତ୍ୟକାରେ ଦଖଲ ରଖିବାକୁ ପ୍ରବଳ ପରାକ୍ରାନ୍ତ କାକତୀୟ ନୃପତି ଗଣପତିଙ୍କ ସହିତ ଅବିରାମ ଯୁଦ୍ଧ କରିବାକୁ ପଡୁଥିଲା ।

୧୨୧୭ ଖ୍ରୀଷ୍ଟାବ୍ଦରେ କଳିଙ୍ଗବାହିନୀ ପୂର୍ବ ଓ ଦକ୍ଷିଣ ଗୋଦାବରୀ ଅଞ୍ଚଳରୁ ଭେଲାନ୍ତି ଯୁଦ୍ଧନାୟକମାନଙ୍କୁ ବିତାଡ଼ିତ କରିଲେ । (ଦକ୍ଷାରମମ୍ ଅନୁଶାସନ) । ଏହାପରେ ଭେଙ୍ଗି ନରପତି ବିତାଡ଼ିତ ହେଲେ ଦକ୍ଷିଣ ଗୋଦାବରୀର ଆନ୍ଧ୍ର ଅଞ୍ଚଳରୁ । ପୁନର୍ଗଠିତ ବଂଶାବଳୀରୁ ଦେଖାଯାଏ, ଏହା ଅନଙ୍ଗଭୀମ ଦେବଙ୍କ ଶାସନକାଳରେ ପଡ଼ୁଛି ଏବଂ ନରସିଂହଦେବ ସିଂହାସନ ଗ୍ରହଣ କରିବାକୁ ଆହୁରି ୨୧ ବର୍ଷ ଅଛି ।

୧୨୩୭- ଗଣପତି କିନ୍ତୁ ଏ କୋଡ଼ିଏବର୍ଷ ଯୁଦ୍ଧ ଜାରି ରଖିଥିଲେ । ଏଇ ବର୍ଷ ଗଙ୍ଗମାନଙ୍କ ପକ୍ଷରୁ ଲଢୁଥିବା କୁଳତୁଙ୍ଗା ରାଜେନ୍ଦ୍ର ଚୋଡ଼ଙ୍କୁ ଗଣପତିଙ୍କ ସେନାନାୟକ ମାଲ୍ୟାଲା ହେମାଦ୍ରି ପରାଜିତ କଲେ ।

ପୁନର୍ଗଠିତ ବଂଶାବଳୀରୁ ଦେଖାଯାଏ, ଏ ଘଟଣାଗୁଡ଼ିକ ଘଟିଥିଲା ଅନଙ୍ଗଭୀମଦେବଙ୍କ ରାଜତ୍ୱ କାଳରେ । ଅନ୍ୟ ଗୋଟିଏ ସୂତ୍ରରୁ ମନେହୁଏ, ଯୁବକ ନରସିଂହଦେବ ଏ ଯୁଦ୍ଧରେ ଭାଗ ନେଇଥିଲେ । ମାଦଳାପାଞ୍ଜି ଉଦ୍ଧାର କରି ଷ୍ଟେଲା କର୍ମରୀଶ୍ କହିଛନ୍ତି, ମାତ୍ର ୧୮ ବର୍ଷ ବୟସରେ ନରସିଂହଦେବ ପିତାଙ୍କ ବାହିନୀର ସର୍ବାଧିନାୟକ ହୋଇ ଯୁଦ୍ଧ କରିବାକୁ ଦକ୍ଷିଣକୁ ଯାଇଥିଲେ ଏବଂ ତିନି ବର୍ଷ ପରେ ଫେରିଥିଲେ ବିପୁଳ ଧନ ସମ୍ପତ୍ତି ଧରି ।[୨୪] ଏ ପ୍ରସଙ୍ଗ ପରେ ଆଉଥରେ ଉଠିବ କିନ୍ତୁ ଏଠାରେ ଗୋଟିଏ ପ୍ରଶ୍ନ ଉଠୁଛି- କଳିଙ୍ଗ ସେନାଙ୍କୁ ହଟେଇ ଦିଆଗଲା ନା ସେମାନେ ହଟି ଆସିଲେ ? ଆଗକୁ ଇତିହାସ କହିବ, ଆଗେଇ ପଛେଇ ଯୁଦ୍ଧ କରିବା କୌଶଳରେ ନରସିଂହଦେବ ଅତି ଦକ୍ଷ ଥିଲେ । ୧୮ ବର୍ଷର ଯୁବକ ତିନିବର୍ଷ ପରେ ୨୧ ବର୍ଷରେ ଉପନୀତ ହୋଇଥିବେ ଏବଂ ହୁଏତ ଅନଙ୍ଗଭୀମଦେବଙ୍କ ଅକାଳ ମୃତ୍ୟୁ (ପ୍ରତିଷ୍ଠିତ ହୋଇନାହିଁ) ଫେରି ଆସିବାକୁ ବାଧ୍ୟ କରିଥିବ ତାଙ୍କୁ । ମାଦଳାପାଞ୍ଜି ମତରେ ପ୍ରଥମ ନରସିଂହଦେବଙ୍କର ସିଂହାସନ ଆରୋହଣ ୧୨୩୭ ଖ୍ରୀଷ୍ଟାବ୍ଦରେ ।[୨୫] ଏହା ବର୍ତ୍ତମାନ ପ୍ରତିଷ୍ଠିତ; ୧୨୩୭ ଅଥବା ୧୨୩୮ ଗୋଟିଏ ବଡ଼ ବିବାଦ ନୁହେଁ ।

ନରସିଂହଦେବ ରାଜ୍ୟଭାର ନେବା ପରେ ଆକ୍ରମଣାତ୍ମକ ଯୁଦ୍ଧ କାର୍ଯ୍ୟ ତେଜି ଦେଲେ । ଲିଙ୍ଗରାଜ ମନ୍ଦିର ଗାତ୍ରରେ ଖୋଦିତ ଶିଳାଲିପିରୁ ଜଣାପଡ଼ୁଛି, ସିଂହାସନ ଆରୋହଣର ଚାରିବର୍ଷ ପରେ ଗୋଟିଏ ନିର୍ଣ୍ଣାୟକ ଯୁଦ୍ଧ ଜୟ କରିଥିଲେ ଲାଙ୍ଗୁଳା ନରସିଂହଦେବ ।[୨୬] କରୁଣାସାଗର ସେ ଯୁଦ୍ଧଜୟର ବର୍ଷ ଦେଇ ନାହାନ୍ତି କିନ୍ତୁ ପୂର୍ବାପର ପ୍ରତିଷ୍ଠିତ ଘଟଣା ଓ ସମୟକୁ ବିଚାରକୁ ନେଲେ ଏହା ୧୨୪୨ ଖ୍ରୀଷ୍ଟାବ୍ଦ ହେବା ସମ୍ଭବ, ଯାହାକୁ ଷ୍ଟେଲା କର୍ମରୀଶ୍ ଓ୍ୱରଙ୍ଗଲ୍ ଯୁଦ୍ଧ ରୂପେ ବର୍ଣ୍ଣନା କରିଛନ୍ତି ।[୨୭]

ଯୁଦ୍ଧ କିନ୍ତୁ ସେହିଠାରେ ବନ୍ଦ ହେଲା ନାହିଁ । ଗୋଟିଏ ବଡ଼ ଯୁଦ୍ଧରେ ଗଣପତିଙ୍କ ବିଶ୍ୱସ୍ତ ମିତ୍ର ଗୋଦାବରୀ ତୀରରୁ କଳିଙ୍ଗ ସେନାଙ୍କୁ ହଟେଇ ଦେଲେ । ଏ ଯୁଦ୍ଧ ଠିକ୍ କେବେ ଘଟିଥିଲା କରୁଣାସାଗର ନିର୍ଣ୍ଣୟ କରି ନାହାନ୍ତି, କିନ୍ତୁ ଦକ୍ଷାରମମ୍ ଅନୁଶାସନ ଅନୁଯାୟୀ ୧୨୬୨ ଖ୍ରୀଷ୍ଟାବ୍ଦରେ, ପାଣ୍ଡ୍ୟା ଓ କଳିଙ୍ଗସେନାଙ୍କ ସଣ୍ଢୁଆସି ଆକ୍ରମଣରେ ଗଣପତି ଅଧିକୃତ ଅଞ୍ଚଳରୁ ହଟିଗଲେ । ପ୍ରସଙ୍ଗତଃ ଏଠାରେ କୁହାଯାଇପାରେ, ନରସିଂହଦେବ ପାଣ୍ଡ୍ୟା ରାଜାଙ୍କ କନ୍ୟାଙ୍କୁ ବିବାହ କରିଥିଲେ ।[୨୮] ନରସିଂହଦେବଙ୍କ ବିମାତା ପୁତ୍ର ଦଣ୍ଡନାୟକ, ନରସିଂହଦେବଙ୍କ ତରଫରେ ଯୁଦ୍ଧ କରି କାଞ୍ଚିରେ ବିଜୟ ସ୍ତମ୍ଭ ପୋତିଲେ କିନ୍ତୁ ମଦୁରାର ଜଟାବର୍ମନ ପାଣ୍ଡ୍ୟା ୧୨୫୦ ଖ୍ରୀଷ୍ଟାବ୍ଦଠାରୁ ୧୨୬୦ ମଧ୍ୟରେ କାଞ୍ଚି ଅଧିକାର କରିନେଲେ ।[୨୯]

ନରସିଂହଦେବଙ୍କ ଶାସନର ଏକାଦଶ ବର୍ଷରେ ଲିଖିତ ଗୋଟିଏ ଶିଳାଲିପି ଅନୁଯାୟୀ ସେ ଏକାଦଶ ରୁଦ୍ରଙ୍କ ପୂଜାପାଇଁ ଚୋଡ଼ ଦେଶ, ପାଣ୍ଡ୍ୟାଦେଶ ଓ କାଞ୍ଚି ଦେଶରେ ଜମି ଦାନ କରିଥିଲେ । ୧୨୫୦ ଖ୍ରୀଷ୍ଟାବ୍ଦ ପରେ ଦକ୍ଷିଣରେ ନରସିଂହଦେବଙ୍କ ରାଜନୈତିକ ଶତ୍ରୁ କେହି ରହିଲେ ନାହିଁ ଯଦିଓ ଗଣପତି ୧୨୬୧ ଖ୍ରୀଷ୍ଟାବ୍ଦ ଯାଏ ବଞ୍ଚିଥିଲେ; ସେ ଯଥେଷ୍ଟ ଦୁର୍ବଳ ହୋଇ ଯାଇଥିଲେ । ଦକ୍ଷିଣରୁ ଦେଶ ପ୍ରତି ଭୟ ରହିଲା ନାହିଁ ।

ମାଦଳାପାଞ୍ଜିମତେ ନରସିଂହଦେବ ୧୨ ବର୍ଷ ଯୁଦ୍ଧ ଜାରି ରଖିଥିଲେ । ତାଙ୍କ ରାଜ୍ୟ ଭାର ଗ୍ରହଣ ୧୨୩୮ ଖ୍ରୀଷ୍ଟାବ୍ଦ ହେଲେ ବାରବର୍ଷ ମିଶି ହେଉଛି ୧୨୫୦ ଖ୍ରୀଷ୍ଟାବ୍ଦ । ଯଦିଓ ମାଦଳାପାଞ୍ଜି କହୁଛି କଳିଙ୍ଗ ସେନା ରାମେଶ୍ୱରମ୍ ସେତୁବନ୍ଧ ଯାଏ ଦଖଲ ନେଇ ଯାଇଥିଲେ, ତାହା ଟିକେ ଅତିରଞ୍ଜିତ । ନିର୍ଣ୍ଣାୟକ ଯୁଦ୍ଧଗୁଡ଼ିକ କିନ୍ତୁ ପ୍ରତିଷ୍ଠିତ ହେଉଛି ନରସିଂହଦେବଙ୍କ ଅକଳିତ ରାଜତ୍ୱ କାଳରେ ।

ନରସିଂହଦେବଙ୍କ ସିଂହାସନ ଆରୋହଣର କିଛିବର୍ଷ ପୂର୍ବରୁ ଉତ୍ତର ସୀମାନ୍ତରେ ମୁସଲମାନ ଆକ୍ରମଣର ସଜବାଜ ଚାଲିଥିଲା । ୧୨୦୫ ଖ୍ରୀଷ୍ଟାବ୍ଦରେ ମହମ୍ମଦ-ଇ-ବଖ୍ତିଆର୍ ଦୁଇଜଣ ଅମୀରଙ୍କୁ ଓଡ଼ିଶା ଆକ୍ରମଣ କରିବାକୁ ପଠାଇଲେ । ସମୟଟା ଥିଲା ରାଜାରାଜଙ୍କ ଶାସନ କାଳର ଶେଷ ଏବଂ ଅନଙ୍ଗଭୀମଙ୍କ ଶାସନକାଳର ଆରମ୍ଭ । (ପୁନର୍ଗଠିତ ବଂଶାବଳୀ ଦ୍ରଷ୍ଟବ୍ୟ) । ଯୁଦ୍ଧ କିନ୍ତୁ ହେଲା ନାହିଁ । ବାଟରେ ବଖ୍ତିୟାରଙ୍କ ମୃତ୍ୟୁ ଖବର ପାଇ ଅମୀରମାନେ ଫେରିଗଲେ ।[୩୦] ଏହା ପରେ ମଧ୍ୟ ମୁସଲମାନ ଆକ୍ରମଣ ହୋଇଥିଲା । କିନ୍ତୁ ଅନଙ୍ଗଭୀମଦେବ ଦୃଢ଼ତାର ସହିତ ତାହା ପ୍ରତିହତ କରିଥିଲେ ।[୩୧]

ନରସିଂହଦେବ ଶାସନଭାର ନେବା ପରେ ମୁସଲମାନଙ୍କ ବିରୋଧରେ ଆକ୍ରମଣାତ୍ମକ ରଣକୌଶଳ ଗଢ଼ିଲେ । ସେ ଯୁଗରେ ଜଣେ ହିନ୍ଦୁ ରାଜା ପକ୍ଷରେ ଏହା ଅଚିନ୍ତନୀୟ ଥିଲା । ତବ୍‌କ୍ୱିତ-ଇ-ନସିରୀ ମତେ (ପୃ-୭୩୮) ସେ ଯୁଦ୍ଧ ଚାଲିଥିଲା ୨୧ ଜୁନ୍ ୧୨୪୩ ଠାରୁ ୯ ଜୁନ୍ ୧୨୪୪ ଯାଏ । ବଙ୍ଗ ଦେଶର ମୁସଲମାନ ଶାସକ, ଏପରି ଆକ୍ରମଣ କଥା ଚିନ୍ତା ମଧ୍ୟ କରି ନ ଥିବେ । କଳିଙ୍ଗସେନା ଲକ୍ଷ୍ମଣାବତୀ ଅଞ୍ଚଳକୁ ଦଖଲ କରିନେଲା । ବଙ୍ଗ ଦେଶର କ୍ଷିପ୍ତ ଶାସକ ତୁଘ୍ରିଲ୍-ଇ-ତୁଘନ ଖାନ୍ ୧୬ ଏପ୍ରିଲ୍ ୧୨୪୪ରେ, ଓଡ଼ିଶା ସୀମାନ୍ତ କଟାସିନ୍ ଆଡ଼େ ମାଡ଼ି ଆସିଲେ ।

ତବ୍କ୍ୱିତ୍-ଇ-ନସିରୀର ଲେଖକ ମିନାତ୍-ଇ-ସିରାଜ୍ ନିଜେ ତୁଘନ୍ ଖାନ୍‌ଙ୍କ ସଙ୍ଗରେ ଥିଲେ । ତାଙ୍କ ବିବରଣୀ War-Reporter ସୁଲଭ ଚଟକ୍‌ଦାର ହୋଇଥାଇପାରେ କିନ୍ତୁ ମିତ୍ରପକ୍ଷର ଉଲ୍ଲାସର କାରଣ ହେଲା ନାହିଁ । ସେ ଲେଖିଛନ୍ତି, ଆଗଉଥିବା ମୁସଲମାନ ବାହିନୀ ସମ୍ମୁଖରୁ କଳିଙ୍ଗ ବାହିନୀ ଏତେ ବେଗରେ ପଳାୟନ କରିଲେ ଯେ ଲୁଟ୍ କରିବାକୁ ଏକମାତ୍ର ହାତୀ ଗୋବର ଛଡ଼ା ମୁସଲମାନ ବାହିନୀ କିଛି ପାଇଲେ ନାହିଁ । ଶ୍ରାନ୍ତ ମୁସଲମାନ ସୈନ୍ୟ ଯେତେବେଳେ ମଧ୍ୟାହ୍ନ ଭୋଜନ ପାଇଁ ଛାଉଣିକୁ ଫେରୁଛନ୍ତି, ବାଉଁଶ ବଣ ଭିତରୁ କଳିଙ୍ଗ ଯୋଦ୍ଧା ହଠାତ୍ ଚାରିପଟୁ ବାହାରି ଆସି ଏପରି ପ୍ରହାର କଲେ ଯେ ତୁଘନ ଖାନ୍ ବହୁ ଯୋଦ୍ଧା ହରେଇ ଫେରିଗଲେ ଲକ୍ଷ୍ମଣାବତୀକୁ । ପ୍ରବଳ ପ୍ରତିପକ୍ଷ ବିରୋଧରେ ଏହା ଥିଲା ନରସିଂହଦେବଙ୍କର ଅବ୍ୟର୍ଥ ରଣକୌଶଳ, ଯାହା ଆଜି ମଧ୍ୟ ଆଧୁନିକ ଯୁଦ୍ଧରେ ସମୟେ ସମୟେ ବ୍ୟବହୃତ ହୋଇଥାଏ ।

ଏହା ପରବର୍ଷ ନରସିଂହଦେବ ପୁଣି ହଠାତ୍ ଆକ୍ରମଣ କରି ମୁସଲମାନ ସୈନ୍ୟମାନଙ୍କୁ ଲକ୍ଷ୍ମଣାବତୀ ଦୁର୍ଗଯାଏ ତଡ଼ି ନେଲେ । ବାଟରେ ଲଖ୍‌ନୋର ମୌଜାର ଶାସକ ଫକର-ଉଲ୍-ମୁଲକ୍-କରିମ୍-ଉଦ୍-ଦିନ୍ ଲଘାରୀ ପରାଜିତ ହେଲେ । ଏହା ଥିଲା ୧୪ ମାର୍ଚ୍ଚ ୧୨୪୫ ଏବଂ ଏ ଆକ୍ରମଣର ସେନାନାୟକ ଥିଲେ ନରସିଂହଦେବଙ୍କ ଜାମାତା କୌଣସି ଏକ ସାମନ୍ତରାୟ । ସାମନ୍ତରାୟ ନରସିଂହ ଦେବଙ୍କ ଜାମାତା ହେବା ସମ୍ଭବ ମନେ ହେଉ ନାହିଁ । କାରଣ ପାଣ୍ଡ୍ୟା ରାଜକନ୍ୟାଙ୍କୁ ବିବାହ କରି ପାରି ଥାଆନ୍ତି ଯୁଦ୍ଧରୁ ଫେରି ୧୨୩୭ ଖ୍ରୀଷ୍ଟାବ୍ଦରେ । ୧୨୪୫ ବେଳକୁ ତାଙ୍କ ସନ୍ତାନର ବୟସ ୭ ବର୍ଷ ମାତ୍ର, ଜାମାତାଙ୍କ ବୟସ କେତେ ଏବଂ ସେଇ ବାଳକ ବୟସରେ ସେନାନାୟକ ହେବା ସମ୍ଭବ କି ? ଅଥଚ କରୁଣାସାଗର ସାମନ୍ତରାୟଙ୍କ ପରିଚୟ ଦେବାକୁ ଯାଇ ଲେଖୁଛନ୍ତି, Who is styled the 'Son-in-law of the Rae"( Konark-Vol-I, P-21)। ଅବଶ୍ୟ କୌତୁକରେ ରାଜାଙ୍କ ଅତିପ୍ରିୟ ସେନାନାୟକଙ୍କୁ ଏପରି ସମ୍ବୋଧନ କରାଯାଇ ଥାଇପାରେ ।

ତୁଘନ୍ ଖାନ୍ ବାହାରି ଆସିଲେ । ଯୁଦ୍ଧ କରିବାକୁ କିନ୍ତୁ ତିଷ୍ଠି ନପାରି ଦୁର୍ଗ ମଧ୍ୟକୁ ପଳାୟନ କଲେ। ଦୁର୍ଗ ରହିଲା ଅବରୋଧରେ । ଦ୍ୱିତୀୟ ଦିନ ଯେତେବେଳେ ଖବର ଆସିଲା ଦୋଆବ୍ ଓ ଅଉଧରୁ ସାହାଯ୍ୟ ଆସୁଛି ତୁଘନ୍ ଖାନ୍‌ଙ୍କ ନିକଟକୁ, କଳିଙ୍ଗ ବାହିନୀ ପୁଣି ପଛେଇଗଲେ ନିଜ ସୀମା ମଧ୍ୟକୁ । ସାହାଯ୍ୟକାରୀ ବାହିନୀର ସେନାପତି ତୁମର ଖାନ୍ ଲକ୍ଷ୍ମଣାବତୀ ପହଞ୍ଚି ତୁଘନ୍ ଖାନ୍‌ଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ନିଜେ ଗଡ଼ ଦଖଲ କରିଗଲେ । ଏ ଗଣ୍ଡଗୋଳର ସୁଯୋଗ ନେଇ କଳିଙ୍ଗ ବାହିନୀ ବେଶ୍ କିଛି ମୁସଲିମ୍ ଅଞ୍ଚଳ ଲୁଣ୍ଠନ କଲେ ଏବଂ କିଛି ଅଂଶ ଦଖଲ କରିଗଲେ । ମିଜାଜ୍-ଇ-ସିରାଜ୍ ଏ ବିବରଣୀ ତାଙ୍କ ଅନବଦ୍ୟ ଭାଷାରେ ଲିପିବଦ୍ଧ କରିଲେ ତବ୍କ୍ୱିତ୍-ଇ-ନସରୀରେ । ଏହା ମାଦଳା ପାଞ୍ଜିରେ ପଞ୍ଜୀକୃତ ହେଲା ଏବଂ ସ୍ୱର୍ଣ୍ଣାକ୍ଷରରେ ଲେଖାହେଲା ନରସିଂହ ପରବର୍ତ୍ତୀ ନୃପତିମାନଙ୍କ ତମ୍ବାପଟାରେ ।

ବେଶ୍ କିଛି ବର୍ଷ ଶାନ୍ତି କାଏମ୍ ରହିଲା। ବଙ୍ଗ ଶାସକ ନରସିଂହଦେବଙ୍କୁ ଉତ୍ୟକ୍ତ କରିବାକୁ ଚାହିଁଲେ ନାହିଁ, କିନ୍ତୁ ୧୨୪୯ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ମଣାବତୀ ଶାସକ ଇଖତିୟାର୍-ଉଦ୍-ଦିନ୍-ଉଜ୍‌ବୁକ୍-ଇ-ତୁଘ୍ରିଲ୍ ଖାନ୍ ଚେଷ୍ଟା କରିଲେ ଉଦ୍ଧାର କରିବାକୁ ସେଇସବୁ ଅଞ୍ଚଳ, ଯାହା ୧୨୪୫ ଯୁଦ୍ଧରେ ସେନାପତି ସାମନ୍ତରାୟ ଦଖଲ କରି ରଖିଥିଲେ । ପ୍ରଥମ ଆକ୍ରମଣରେ ସାମନ୍ତରାୟ ହାରିଲେ । ଦ୍ୱିତୀୟ ଯୁଦ୍ଧରେ ମଧ୍ୟ ସାମନ୍ତରାୟ ପୁଣି ହାରିଲେ । କିନ୍ତୁ ତୃତୀୟ ଯୁଦ୍ଧରେ ହାରି ଯାଇ ମାଲିକ୍ ଉଜ୍‌ବୁକ୍ ପଳାୟନ କରିଲେ । (ତବ୍କ୍ୱିତ୍-ଇ-ନସିରୀ ପୃ ୭୬୩)। ପରବର୍ଷ ମାଲିକ ଉଜ୍‌ବୁକ୍ ଦିଲ୍ଲୀରୁ ସାହାଯ୍ୟ ଆଣି କଳିଙ୍ଗ ସେନାଙ୍କୁ ଠେଲି ନେଇଗଲେ ଉମୁର୍‌ଦାନ୍ ଯାଏ (ଆଜିକାର ଅମର୍ଦ୍ଦାରୋଡ଼୍ ହୋଇପାରେ)। ପ୍ରଫେସର ହବିବୁଲ୍ଲାଙ୍କ ମତରେ ସ୍ଥାନଟି ହୁଗୁଲି-ମେଦିନାପୁର ସୀମାନ୍ତର ଗଡ଼-ମନ୍ଦାରଣ। [୩୨]

ଏହାପରେ ଆଉ ନ ଆଗେଇ ମାଲିକ୍ ଉଜ୍‌ବୁକ୍ ନଦୀୟା ଦିଗକୁ ଆଗେଇଲେ ଏବଂ କାମରୂପ ଜୟକରିବାକୁ ଯିବା ବାଟରେ ମୃତ୍ୟୁବରଣ କଲେ ୧୨୫୭ ସାଲରେ । ତ୍ରୟୋଦଶ ଶତାବ୍ଦୀର ବାକି ସମୟ ଓଡ଼ିଶାରେ ଶାନ୍ତି ବିରାଜମାନ ହୋଇଥିଲା ।

ଓଡ଼ିଶାର ଗୋଟିଏ ସମୟର ଇତିହାସ ଏତେ ବିସ୍ତୃତ ଭାବେ ଉପସ୍ଥାପିତ କରାଗଲା ଏହା ପ୍ରମାଣ କରିବାକୁ, ଗୋଟିଏ କି ଯୋଡ଼ିଏ ଛାଡ଼ିଦେଲେ ବାକି ସବୁ ବର୍ଷ ଓ ଘଟଣା ଘଟିଛି ୧୨୩୮ ଠାରୁ ୧୨୬୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏବଂ ନରସିଂହ ଦେବଙ୍କୁ ସଂପୃକ୍ତ କରି । ଏତେ ଗୁଡ଼ିଏ ଇତିହାସ, ଶିଳାଲିପି, ତାମ୍ରପଟ୍ଟା, ଅନୁଶାସନ ଓ ଏତେଗୁଡ଼ିକ ଐତିହାସିକ ନାମ କଳ୍ପିତ କାହାଣୀ ହୋଇ ପାରେନା। ଏହାହିଁ ଶେଷ ଓ ସର୍ବୋତ୍କୃଷ୍ଟ ପ୍ରମାଣ, ଲାଙ୍ଗୁଳା ନରସିଂହଦେବଙ୍କ ଶାସନକାଳ ୧୨୩୮ ଠାରୁ ୧୨୬୪ ଖ୍ରୀଷ୍ଟାବ୍ଦ ।

## କୋଣାର୍କ ମନ୍ଦିର ତୋଳାହେବାର କାଳ :

ବର୍ତ୍ତମାନ ଦେଖାଯାଉ କୋଣାର୍କ ମନ୍ଦିର କେବେ ନିର୍ମାଣ ହେଲା ଏବଂ ତାହା ପ୍ରଥମ ନରସିଂହ ଦେବଙ୍କ ଅମଳରେ ଅଥବା ନୁହେଁ। ମାଦଳାପାଞ୍ଜିର ଗୋଟିଏ ଶ୍ଳୋକ ଯାହାର ଉଦ୍ଧୃତି ଅଧିକାଂଶ ଐତିହାସିକ ଦେଇଥାଆନ୍ତି, ତାହା ନିମ୍ନରେ ପ୍ରଦତ୍ତ ହେଲା ।

''ସପୁଚ୍ଛ ନରସିଂହେନ କ୍ଷେତ୍ରଶ୍ୱରଣାଂଶୁମାଳିନଃ ।
ପ୍ରାସାଦଃ କାରିତୋ ରାଜ୍ଞା ଶକେ ଦ୍ୱାଦଶକେ ଶତେ ।''

ଅର୍ଥାତ୍ ଅଂଶୁମାଳୀ (ସୂର୍ଯ୍ୟ) ଦେବଙ୍କ ମନ୍ଦିର ଲାଙ୍ଗୁଳା ନରସିଂହ ଦେବ ୧୨୦୦ ଶକାବ୍ଦରେ ତୋଳାଇ ଥିଲେ ।[୩୩] ୧୨୦୦ ଶକାବ୍ଦ ଅର୍ଥାତ୍ ୧୨୭୮ ଖ୍ରୀଷ୍ଟାବ୍ଦ (କରୁଣାସାଗରଙ୍କ ହିସାବରେ ୧୨୭୬), ନରସିଂହଦେବଙ୍କ ଶାସନକାଳ (୧୨୩୮ ଠାରୁ ୧୨୬୪) ମଧ୍ୟରେ ପଡୁ ନାହିଁ । ମନ୍ଦିର ତ ବର୍ଷେ ଦୁଇ ବର୍ଷରେ ଗଢ଼ାଯାଏନା । 'ଗଢ଼ିଥିଲେ' ଅର୍ଥ ହେବ ମନ୍ଦିର ପ୍ରତିଷ୍ଠା କରିଥିଲେ ।

ମନମୋହନ ଗାଙ୍ଗୁଲୀ କିନ୍ତୁ ଏଥିରେ କୌଣସି ବିଭ୍ରାନ୍ତି ଦେଖି ନାହାନ୍ତି । କାରଣ ତାଙ୍କ ପ୍ରଦତ୍ତ ବଂଶାବଳୀରେ ନରସିଂହଦେବ ୧୨୫୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଥିଲେ ଏବଂ ସେହି ଶ୍ଳୋକର ଅନ୍ୟ ଗୋଟିଏ ପାଠ ଅନୁଯାୟୀ ୪୫ ବର୍ଷ ରାଜତ୍ୱ କରିଥିଲେ । (କୃପାସିନ୍ଧୁ, ପୃ-୧୩୯) । ଗାଙ୍ଗୁଲି ଅବଶ୍ୟ ମନମୋହନ ଚକ୍ରବର୍ତ୍ତୀଙ୍କ ବହୁଳ ସ୍ୱୀକୃତ ମତ-୧୨୩୮ ଠାରୁ ୧୨୬୪ର ଉଲ୍ଲେଖ କରିଛନ୍ତି କିନ୍ତୁ ବିବାଦର ସମାଧାନକୁ ଯାଇ ନାହାନ୍ତି । (ଗାଙ୍ଗୁଲୀ, ପୃ-୪୭୯)

କୃପାସିନ୍ଧୁ ଷ୍ଟର୍ଲିଂଙ୍କ ମତ ଉଦ୍ଧାର କରି [୩୪] କହିଛନ୍ତି ୧୨୪୧ ସାଲରେ ଅର୍ଥାତ୍ ନରସିଂହଦେବ ସିଂହାସନ ଆରୋହଣ କରିବାର ମାତ୍ର ୪ବର୍ଷ ପରେ (କୃପାସିନ୍ଧୁ ମାଦଳାପାଞ୍ଜିରୁ ବୁଲାବାଟରେ ଉପପାଦିତ କରି ୧୨୩୭ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ ଧରିଛନ୍ତି) ମନ୍ଦିର କାର୍ଯ୍ୟ ଶେଷ ହେଲା । ୪ ଅଥବା ୫ବର୍ଷ ଏ ବିଶାଳ କାର୍ଯ୍ୟପାଇଁ ଅବିଶ୍ୱାସ୍ୟ । କିନ୍ତୁ କିଏ କହୁଛି, ମନ୍ଦିର ଗଠନ ଆରମ୍ଭ ହେଲା ନରସିଂହଦେବଙ୍କ ସିଂହାସନ ଆରୋହଣର ଚତୁର୍ଥ ବର୍ଷ । ଏ ବିବାଦକୁ ଟିକେ ପରେ ଆସିବା ।

ଡକ୍ଟର କରୁଣାସାଗର ବେହେରା ଅନେକଗୁଡ଼ିଏ ମତର ଉଦ୍ଧୃତି ଦେଇଛନ୍ତି ।[୩୫] ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତ ଉପରୋକ୍ତ ଶ୍ଳୋକଟି ଅର୍ଥାତ୍ ପୁଚ୍ଛନରସିଂହେନ ସିଂହାସନ.... ଇତ୍ୟାଦି, "Modern fabrication" କିନ୍ତୁ Surveyor General R.H Colebrook ୧୮୦୭ ଖ୍ରୀଷ୍ଟାବ୍ଦରେ ଏହାର ଉଲ୍ଲେଖ କରିଛନ୍ତି । 'ଓଡ୍ରଦେଶ ରାଜବଂଶାବଳୀ'ରୁ କଲିନ୍ ମ୍ୟାକେଞ୍ଜି ଏହାର ଉଦ୍ଧୃତି ଦେଇଛନ୍ତି । ଆହୁରି ମଧ୍ୟ ଅଛନ୍ତି R.L. Mitra । କରୁଣାସାଗର କହିଛନ୍ତି, "But inspite of this, the date is hardly tenable" ଯେବେ ଏହା ସମର୍ଥନୀୟ ନୁହେଁ, ତେବେ କ'ଣ ସମର୍ଥନୀୟ ? ସେ ଦିଗକୁ ନ ଆଗେଇ ପୁଣି କହୁଛନ୍ତି ଷ୍ଟର୍ଲିଂଙ୍କ ମତରେ, ମନ୍ଦିର ଗଢ଼ାହେଲା ୧୨୪୧ ଖ୍ରୀଷ୍ଟାବ୍ଦରେ କିନ୍ତୁ ସେ ମତ ସମର୍ଥନରେ ଷ୍ଟର୍ଲିଂ କିଛି ପ୍ରମାଣ ଦେଇ ନାହାନ୍ତି । ସେ ଆହୁରି ମଧ୍ୟ ଆର୍.ଜେ. ମେହେଟ୍ଟା ଓ ଜେ.ଏଚ୍ ଡାଭେଙ୍କ ମତ ଉଦ୍ଧାର କରି ସେମାନେ ନିର୍ଭର କରିଥିବା ତମ୍ବାପଟ୍ଟା ବିଶ୍ୱାସଯୋଗ୍ୟ ନୁହେଁ ବୋଲି କହିଛନ୍ତି । ପୁନଶ୍ଚ ଡକ୍ଟର ଆର୍. ସି. ହାଜରାଙ୍କ ମତ (୧୨୫୧ ଖ୍ରୀଷ୍ଟାବ୍ଦ)କୁ ଗ୍ରହଣଯୋଗ୍ୟ ମାନୁନାହାନ୍ତି କରୁଣା ସାଗର, କାରଣ ତାଙ୍କ ମତରେ ଶ୍ରୀକୂର୍ମମ୍ ଅନୁଶାସନ ଏପରି କିଛି କହୁନାହିଁ ।' ପଣ୍ଡିତମାନଙ୍କ ମଧ୍ୟରେ ମତଦ୍ୱୈଧ ଥାଏ; ଅଧିକାଂଶ ପାଠକ, କୁହାଯାଉଥିବା ସୂତ୍ରଗୁଡ଼ିକର ମୂଳ ଦଲିଲ୍ ଆଉ ଥରେ ପାଠ କରି ସତ୍ୟ, ମିଥ୍ୟା ବିଚାର କରିବେ ନାହିଁ, କିନ୍ତୁ ଯୁକ୍ତିସଂଗତ ବିଚାର କହେ, ରାୟ ଦେଇ ସାରିବା ପରେ ( hardly tenable ) ପୁଣି ସାକ୍ଷ୍ୟ ପରୀକ୍ଷା କରିବା ଉଚିତ ନୁହେଁ ।

ପରିଚ୍ଛେଦର ଶେଷ ଅନୁଚ୍ଛେଦରେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତ ଉଦ୍ଧାର କରି କରୁଣାସାଗର କହିଛନ୍ତି, ବଙ୍ଗ ଦେଶର ମୁସଲମାନମାନଙ୍କୁ ଦମନ କରିବା ପରେ ଦେଶରେ ଯେଉଁ ଶାନ୍ତ ବାତାବରଣ ସୃଷ୍ଟି ହେଲା, ସେଥିରେ ଏ ବିଶାଳ ମନ୍ଦିର ଗଢ଼ିବାକୁ ସମୟ ଓ ଅର୍ଥ ନରସିଂହଦେବ ବ୍ୟୟ କରିପାରିଥାଆନ୍ତି । ଏହା ପରେ କହିବାକୁ ଯାଉଥିବା ଇତିହାସ ସହିତ ଏ ମତାମତର ସାମଞ୍ଜସ୍ୟ ଅଛି ।

ଯୁବରାଜ ନରସିଂହଦେବ ଦକ୍ଷିଣର ଯୁଦ୍ଧରୁ ପ୍ରଚୁର ଧନ ସମ୍ପତ୍ତି ଧରି ଫେରି ଆସିଲେ ୧୨୩୭ ଖ୍ରୀଷ୍ଟାବ୍ଦରେ । ଷ୍ଟେଲା କର୍ମରୀଶ୍ ଦେଇଥିବା ତଥ୍ୟାନୁଯାୟୀ ନରସିଂହଦେବଙ୍କ ମାତା କସ୍ତୁରୀ ଦେବୀ ଚାହିଁଲେ, ସେ ଅର୍ଥ ଅର୍କକ୍ଷେତ୍ରରେ ଗୋଟିଏ ବୃହତ୍ ସୂର୍ଯ୍ୟମନ୍ଦିର ଗଢ଼ିବାରେ ବ୍ୟୟିତ ହେଉ । କାରଣ ଚାରିଟି ମୁଖ୍ୟ କ୍ଷେତ୍ର ମଧ୍ୟରେ ଏକମାତ୍ର ଅର୍କକ୍ଷେତ୍ରରେ ସେ ଯାଏ ସୂର୍ଯ୍ୟଙ୍କ ଉପଯୁକ୍ତ ମନ୍ଦିର ନଥିଲା । କାର୍ଯ୍ୟ ଆରମ୍ଭ ହେଲା ଯେତେବେଳେ ନରସିଂହଦେବ ଆହୁରି ଯୁବରାଜ ଥିଲେ । ଷ୍ଟେଲାଙ୍କ ତଥ୍ୟ ଅନୁସାରେ ଯଦିଓ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା ନରସିଂହଦେବଙ୍କ ରାଜ୍ୟଶାସନର ପଞ୍ଚମ ଅଙ୍କରେ, ନକ୍ସା, ଯୋଜନା ଓ ପଥର କାଟିବାର କାର୍ଯ୍ୟ ଛଅବର୍ଷ ଆଗରୁ ଆରମ୍ଭ ହୋଇ ଯାଇଥିଲା । ଷ୍ଟେଲା ଆହୁରି ପ୍ରୟୋଜନୀୟ ତଥ୍ୟ ଉପସ୍ଥାପିତ କରିଛନ୍ତି, ଯାହା ଉଚିତ ସ୍ଥାନରେ ବ୍ୟବହାର କରାଯିବ କିନ୍ତୁ ସେ କୋଣାର୍କ ମନ୍ଦିର ପ୍ରତିଷ୍ଠାର କୌଣସି ବର୍ଷ ମାସ ଦେଇ ନାହାନ୍ତି । ତାଙ୍କର ତଥ୍ୟଗୁଡ଼ିକ ମାଦଳାପାଞ୍ଜି ଓ ଇଦାନୀଂ ଆବିଷ୍କୃତ 'ବାୟା ଚକଡ଼ା'(ବ୍ୟୟ ଚକଡ଼ା କି ?)ରୁ ପାଇଥିବା ସ୍ୱୀକାର କରିଛନ୍ତି । ସେ ଏହା ମଧ୍ୟ କହିଛନ୍ତି, ବାୟା ଚକଡ଼ାର ବିଶ୍ୱସନୀୟତା ନେଇ ପ୍ରଶ୍ନ ଉଠାଇଛନ୍ତି କିଛି ଜର୍ମନ ଓ ଭାରତୀୟ ପଣ୍ଡିତ[୩୬] କିନ୍ତୁ କାରଣଗୁଡ଼ିକ ଆଲୋଚନା କରି ନାହାନ୍ତି । ସେ ଆଲୋଚନା ଅନ୍ୟତ୍ର କରାଯିବ । କିନ୍ତୁ ବର୍ତ୍ତମାନ ଏତିକି କହିଲେ ଗ୍ରହଣଯୋଗ୍ୟ ହେବ, କୋଣାର୍କ ଦେଉଳର ଗଠନ ସମୟ ଉପରେ କିଛି ଆଲୋକପାତ ହେଲା ।

ନରସିଂହଦେବଙ୍କ ସମୟର ବହୁ ପୂର୍ବରୁ ଓଡିଶାରେ ଚାରିଟି କ୍ଷେତ୍ର ଥିଲା ଏବଂ ଦେଶରେ ବହୁ ଦେବଦେବୀଙ୍କ ପୂଜା ସହିତ ସୂର୍ଯ୍ୟନାରାୟଣଙ୍କ ପୂଜାର ପ୍ରଚଳନ ମଧ୍ୟ ଥିଲା । ପରବର୍ତ୍ତୀ ପରିଚ୍ଛେଦରେ ଏ ଆଲୋଚନା ବିଶଦ୍ ଭାବେ ହେବ ।

ପୁରାଣମାନଙ୍କରେ କୋଣାର୍କକୁ ସୂର୍ଯ୍ୟଙ୍କ ବିଭିନ୍ନ ନାମ ସହିତ ଯୁକ୍ତ କରି ନିମ୍ନ ରୂପେ ବର୍ଣ୍ଣିତ ହୋଇଛି ।[୩୭]

| | | |
|---|---|---|
| ବ୍ରହ୍ମପୁରାଣ | – | କୋଣାଦିତ୍ୟ |
| ସ୍କନ୍ଦପୁରାଣ | – | ସୂର୍ଯ୍ୟକ୍ଷେତ୍ର |
| ପ୍ରାଚୀମାହାତ୍ମ୍ୟ | – | ଅର୍କକ୍ଷେତ୍ର / ରବିକ୍ଷେତ୍ର |
| ଭବିଷ୍ୟ ପୁରାଣ | – | ମିତ୍ରବନ |
| ଶାମ୍ବ ପୁରାଣ | – | ମୈତ୍ରବନ |
| କପିଳ ସଂହିତା | – | ରବିକ୍ଷେତ୍ର / ମୈତ୍ରେୟ ବନ । |

କେତେକ ଗବେଷକ କହୁଛନ୍ତି, ବର୍ତ୍ତମାନର କୋଣାର୍କ ଦେଉଳ ତୋଳା ହେବା ପରବର୍ତ୍ତୀ ସମୟରେ ଶାମ୍ବପୁରାଣରେ କିଛି ଅନୁପ୍ରବେଶ ଘଟିଛି ।[୩୮] ଏହା ଅବଶ୍ୟ ସ୍ୱୀକାର୍ଯ୍ୟ, ଶାମ୍ବପୁରାଣ ଗୋଟିଏ ପୁରାତନ ପୁରାଣ ଏବଂ ସେଥିରେ ସୂର୍ଯ୍ୟପୂଜା କଥା ଅଛି ।

'ପୁରୁଷୋତ୍ତମ ମାହାତ୍ମ୍ୟ'ରେ ବର୍ଣ୍ଣିତ ଅଛି, ବିଷ୍ଣୁ ଗୟାସୁରକୁ ବଧକରି ବିଜୟ ଚିହ୍ନ ସ୍ୱରୂପ ପୁରୀରେ ଶଙ୍ଖ, ଭୁବନେଶ୍ୱରରେ ଚକ୍ର, ଯାଜପୁରରେ ଗଦା, କୋଣାର୍କରେ ପଦ୍ମ ଓ ଗୟାରେ ପାଦଚିହ୍ନ ରଖିଦେଲେ ।[୩୯] ପୁରାଣ, ଇତିହାସ ନୁହେଁ । ବହୁ କାଳରୁ ପ୍ରଚଳିତ ପୁରାଣର ମୂଲ୍ୟ ଏତିକି ଯେ ସେଥିରେ କଥିତ ସ୍ଥାନର ନାମ ଯେବେ ବର୍ତ୍ତମାନ ସମୟରେ ମଧ୍ୟ ଚାଲୁଥାଏ ତେବେ ତାହାର ଐତିହାସିକ ମୂଲ୍ୟ ଅଛି ।

ଦାକ୍ଷିଣାତ୍ୟ ଯୁଦ୍ଧ ପ୍ରତ୍ୟାଗତ ଯୁବରାଜ ନରସିଂହଦେବ, ମାତା କସ୍ତୁରାଦେବୀଙ୍କ ସହିତ କ'ଣ କଥା ହୋଇଥିଲେ ପୂର୍ବେ ବର୍ଣ୍ଣିତ ହୋଇଛି । ବିଶ୍ୱାସ କରାଯାଇପାରେ, କୋଣାର୍କରେ ଗୋଟିଏ ସୂର୍ଯ୍ୟକ୍ଷେତ୍ର ଥିଲା ଏବଂ ରାଣୀ ସେଠାରେ ଗୋଟିଏ ବଡ଼ ମନ୍ଦିର ଗଢ଼ିବାକୁ ଚାହିଁଥିଲେ । ଚାରିଟି କ୍ଷେତ୍ର ମଧ୍ୟରୁ ଯାଜପୁରଠାରେ ମଧ୍ୟ ପୁରୀ ଅଥବା ଭୁବନେଶ୍ୱର ଭଳି ବିଶାଳ ମନ୍ଦିର ନଥିଲା । ତେବେ ସେ କ୍ଷେତ୍ର ଚୟନ ନକରି ଅପେକ୍ଷାକୃତ ସ୍ୱଳ୍ପଖ୍ୟାତ କୋଣାର୍କକୁ କାହିଁକି ଚୟନ କଲେ ?

କେଶରୀ ବଂଶର ସ୍ଥପତି ଯଯାତି କେଶରୀ ଯାଜପୁରକୁ ନିଜ ରାଜଧାନୀ କରି ତୋଳିଥିଲେ । କେଶରୀ ବଂଶ ହାତରୁ ଦେଶ ଛଡ଼ାଇ ନେଇଥିଲେ ଗଙ୍ଗବଂଶର ନରପତି ଚୋଡ଼ଗଙ୍ଗଦେବ । ଗଙ୍ଗ ବଂଶର ଜଣେ ସାମ୍ରାଜ୍ଞୀ ଅବଶ୍ୟ ଚାହିଁ ନଥିବେ ପରାଜିତ ପକ୍ଷର ରାଜଧାନୀକୁ ଅଧିକ ପ୍ରସିଦ୍ଧି ଆଣିଦେବାକୁ । ଏହାଛଡ଼ା ୫୧ ପୀଠର ଅନ୍ୟତମ ଜାଗ୍ରତ ଦେବୀ ବିରଜା ଓ ଦଶାଶ୍ୱମେଧ ଘାଟ ପାଇଁ ଯାଜପୁରର ପ୍ରସିଦ୍ଧି ଥିଲା । ଏହାଛଡ଼ା ଆହୁରି ମଧ୍ୟ ଥିଲା ଯଯାତିକେଶରୀ ପରିକଳ୍ପିତ ଓ ତାଙ୍କ ପୁତ୍ର ଲଲାଟେନ୍ଦୁଙ୍କ ଦ୍ୱାରା ଗଠିତ ଏକାଦଶ ଶତାବ୍ଦୀର ପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିର । ସେସବୁ ତୁଳନାରେ ସୂର୍ଯ୍ୟକ୍ଷେତ୍ରର ଖ୍ୟାତି ଅଳ୍ପ ଥିଲା । ନରସିଂହଦେବଙ୍କର ଶାରୀରିକ ବୈକଲ୍ୟ ମଧ୍ୟ ଗୋଟିଏ କାରଣ ହୋଇଥାଇପାରେ ବୋଲି କିଛି ଐତିହାସିକ କହିଥାଆନ୍ତି । ତାଙ୍କର ମେରୁଦଣ୍ଡ ଶେଷରେ କିଛି ବୃଦ୍ଧି ଥିଲା ଯେଉଁ କାରଣରୁ ତାଙ୍କୁ 'ଲାଙ୍ଗୁଡ଼ା' କୁହାଯାଉଥିଲା । ହୁଏତ ପୌରାଣିକ ପୁରୁଷ ଶାମ୍ବ ଭଳି ସେ ମଧ୍ୟ ସୂର୍ଯ୍ୟ ପୂଜା କରି ଶାରୀରିକ ବୈକଲ୍ୟରୁ ମୁକ୍ତି ପାଇବାର ଚିନ୍ତା କରିଥାଇ ପାରନ୍ତି ।

ଆହୁରି ମଧ୍ୟ ଗୋଟିଏ କାରଣ ଥାଇପାରେ, ଯାହା ଏ ଲେଖକର ନିଜସ୍ୱ ମତ ଏବଂ ଯାହା ଗଢ଼ିଉଠିଛି ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱ ସମୟ ଧରି କୋଣାର୍କ ଅନୁଶୀଳନ ଫଳରେ । ପୂରା କାଳରେ ରାଜାମାନେ ରାଜ୍ୟ ଜୟ କରୁଥିଲେ କାହିଁକି ? ଧନ ସମ୍ପତ୍ତି ଅର୍ଜନ ଗୋଟିଏ ଗୌଣ କାରଣ । ମୁଖ୍ୟ ଉଦ୍ଦେଶ୍ୟ ଥିଲା, ଗୋଟିଏ ବିଶାଳ ଓ ସମୃଦ୍ଧ ଭୂଖଣ୍ଡରେ ରାଜନୈତିକ ସ୍ଥିରତା, ଅର୍ଥନୈତିକ ବିକାଶ ଓ ବୌଦ୍ଧିକ ବିକାଶ ସୃଷ୍ଟି କରିବା । ୭୨୪ ଠାରୁ ୭୬୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ହିନ୍ଦୁ ଲଳିତାଦିତ୍ୟ କନ୍ୟାକୁମାରୀଠାରୁ କାଶ୍ମୀର ଯାଏ ରାଜ୍ୟକୁ ଗୋଟିଏ ଶାସନଡୋରିରେ ବାନ୍ଧି ବର୍ତ୍ତମାନର ପହେଲ ଗାଁ ଠାରୁ ୩୨ କିଲୋମିଟର ଦୂରରେ ପ୍ରସିଦ୍ଧ ମାର୍ତ୍ତଣ୍ଡ ମନ୍ଦିର ଗଢ଼ିଥିଲେ କାହିଁକି ? ସେ ହୁଏତ ସୂର୍ଯ୍ୟ ପୂଜାରେ ସର୍ବଧର୍ମ ସମନ୍ୱୟର ସୂତ୍ର ଗୋଟିଏ ଖୋଜି ପାଇଥିଲେ । ଧର୍ମ ମତ ନିର୍ବିଶେଷରେ ସୂର୍ଯ୍ୟଙ୍କ କରୁଣା ସମସ୍ତଙ୍କ ଉପରେ ବର୍ଷିତ ହୋଇଥାଏ । ସୂର୍ଯ୍ୟପୂଜା ପ୍ରକୃତ ପକ୍ଷେ ଧର୍ମ ନିରପେକ୍ଷ । ବିଶ୍ୱର ସର୍ବ ବୃହତ ଓ ସର୍ବଶ୍ରେଷ୍ଠ ମନ୍ଦିର ଗଢ଼ି ତୋଳିବା ପଛରେ ଏଇ ଆଦର୍ଶ ହୁଏତ ନରସିଂହଦେବଙ୍କ ମନରେ କାର୍ଯ୍ୟ କରିଥିଲା । ଏପରି ଚିନ୍ତା ଖାଲି ଏ ସାମାନ୍ୟ ଲେଖକ ମନକୁ ଛୁଇଁନାହିଁ । ସୁଲେଖକ ହରପ୍ରସାଦ ଦାସ ମଧ୍ୟ ''ଓଡ଼ିଆ ଜାତିର ଜୀବନ କଥା''ରେ ଏହିପରି ମତବ୍ୟକ୍ତ କରିଛନ୍ତି । ସେ ଲେଖିଛନ୍ତି -''ଯିଏ ଯାହାର ହୁଅନ୍ତୁ, ସୂର୍ଯ୍ୟ ସମସ୍ତଙ୍କର, ସେଠି ଧର୍ମଭେଦ ନାହିଁ କି ପନ୍ଥା ଭେଦ ନାହିଁ । ପ୍ରଥମ ଗଜପତି ନରସିଂହଦେବ । ଅଖଣ୍ଡ ଭାରତର ପ୍ରଥମ ଚିନ୍ତକ ନରସିଂହ ଦେବ.... ।'' (ସମ୍ବାଦ-୧୯-୯-୨୦୦୯)

'ନରସିଂହଦେବ, ଅଖଣ୍ଡ ଭାରତର ପ୍ରଥମ ଚିନ୍ତକ'– ଏହା ସତ୍ୟ ନୁହେଁ କିନ୍ତୁ ଏକଥା ସତ୍ୟ, ନରସିଂହଦେବ ଚାହିଁଥିଲେ ଗୋଟିଏ ବିଶାଳ ଶାନ୍ତିପୂର୍ଣ୍ଣ ଦେଶ ଯେଉଁଠାରେ ଧର୍ମଭେଦ ଭାବ ନରହି ସୂର୍ଯ୍ୟଦେବତାଙ୍କ ସର୍ବବ୍ୟାପକତା ପ୍ରଭାବରେ ସର୍ବତ୍ର ଶାନ୍ତି ବିରାଜମାନ କରିବ ।

ପଣ୍ଡିତ କୃପାସିନ୍ଧୁ ମିଶ୍ର କୋଣାର୍କ ମନ୍ଦିରର ଗଠନ କାଳ ନିର୍ଣ୍ଣୟ କରିବାକୁ ଯାଇ ମାଦଳାପାଞ୍ଜିରୁ ନିମ୍ନୋକ୍ତ ଘଟଣାଗୁଡ଼ିକ ବ୍ୟକ୍ତ କରିଛନ୍ତି ।[୪୦]

ଶାମ୍ବ ପାପମୁକ୍ତ ହୋଇ ଦ୍ୱାରକା ପ୍ରସ୍ଥାନ କରିବା ଦିନଠାରୁ କୋଣାର୍କ କ୍ଷେତ୍ରରେ ଚନ୍ଦ୍ରଭାଗା ଉପରେ ନିର୍ମିତ ମନ୍ଦିରରେ ମିତ୍ରାଦିତ୍ୟ ସୂର୍ଯ୍ୟ ପ୍ରତିଷ୍ଠିତ ହୋଇଥିଲେ । ତତ୍‌ପରେ ରାଜାମାନେ ବହୁ ଯୁଗଧରି ସେହିଠାରେ ସୂର୍ଯ୍ୟ ଉପାସନା କରି ଆସୁଥିଲେ । କେଶରୀ ବଂଶୀୟ ୪୪ ଜଣ ରାଜାଙ୍କ ମଧ୍ୟରେ ତ୍ରିଂଶତମ ରାଜା ପୁରନ୍ଦର କେଶରୀ ଏହି ସ୍ଥାନରେ ଗୋଟିଏ ମନ୍ଦିର ନିର୍ମାଣ କଲେ ଏବଂ ସୂର୍ଯ୍ୟଦେବଙ୍କ ପୂଜାପାଇଁ ଆଠଟି ବ୍ରାହ୍ମଣଶାସନ ବସେଇ ଦେଲେ । ଏହାର ବହୁକାଳ ପରେ ଗଙ୍ଗବଂଶର ଅନଙ୍ଗଭୀମଦେବଙ୍କ ପୁତ୍ର ବଡ଼ରାୟ ନରସିଂହଦେବ ପୁରନ୍ଦର କେଶରୀଙ୍କ ମନ୍ଦିର ଜୀର୍ଣ୍ଣ ହୋଇଥିବାର ଦେଖି ତାହା ସମ୍ମୁଖରେ ପଦ୍ମତୋଳା ନାମକ ଗଣ୍ଡ ଉପରେ ନୂତନ ମନ୍ଦିରଟିଏ ଗଢ଼ିବାକୁ ଆପଣାର ଦ୍ୱିତୀୟ ମନ୍ତ୍ରୀ ଶିବ ସାମନ୍ତରାୟ ମହାପାତ୍ରଙ୍କ ଉପରେ ଭାର ଦେଲେ । ମନ୍ଦିର ନିର୍ମାଣ ଶେଷ ହେଲା ଏବଂ ପୁରନ୍ଦରଙ୍କ ମନ୍ଦିରରୁ ବିଗ୍ରହ ଆଣି ନୂତନ ମନ୍ଦିରରେ ପ୍ରତିଷ୍ଠା କରାଗଲା । ଏହା ପରେ କୃପାସିନ୍ଧୁ ପୁଣି ମାଦଳା ପାଞ୍ଜିରେ ବର୍ଣ୍ଣିତ ଗୋଟିଏ ମୋହରର ପାଠୋଦ୍ଧାର କରି କହିଛନ୍ତି, "୧୨୦୪ ଶକାବ୍ଦ ଅର୍ଥାତ୍ ୧୨୮୨ ଖ୍ରୀଷ୍ଟାବ୍ଦ ଯାଏ ନରସିଂହ ଦେବ ୪୫ ବର୍ଷ ରାଜତ୍ୱ କରିଥିଲେ ଏବଂ ଅଂଶୁମାଳୀ (ସୂର୍ଯ୍ୟ)ଙ୍କ ମନ୍ଦିର ୧୨୦୦ ଶକାବ୍ଦ ଅର୍ଥାତ୍ ୧୨୭୮ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠିତ ହୋଇଥିଲା ।

ବଂଶ ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବଙ୍କ ୭୦ ବର୍ଷ ରାଜତ୍ୱ କଲା ଭଳି ଏହା ମଧ୍ୟ ଅବାସ୍ତବ ମନେ ହେଉଛି । ଦ୍ୱିତୀୟ ନରସିଂହଦେବ ତାଙ୍କର ବିଖ୍ୟାତ ପୂର୍ବଜ ପ୍ରଥମ ନରସିଂହଦେବଙ୍କ ପ୍ରଶସ୍ତି ଗାନକରିବାପାଇଁ ୧୨୯୫ ଖ୍ରୀଷ୍ଟାବ୍ଦରେ ଗୋଟିଏ ତମ୍ବାପଟ୍ଟା ଅନୁଶାସନ ପ୍ରକାଶ କରିଥିଲେ ।[୪୧] ପ୍ରଥମ ନରସିଂହଦେବ ଯେବେ ୧୨୮୨ ଯାଏ ସିଂହାସନରେ ଥିଲେ, ଏ ତାମ୍ରପଟ୍ଟା ଢଳା ଯାଇଥିଲା ମାତ୍ର ୧୪ ବର୍ଷ ପରେ । ମଝିର ପ୍ରଜନ୍ମଗୁଡ଼ିକ କୁଆଡ଼େ ଗଲେ ? ଏପରିକି କୃପାସିନ୍ଧୁ ପ୍ରଦତ୍ତ ବଂଶାବଳୀ ୧ନମ୍ବର ସାରଣୀ ଅନୁଯାୟୀ ପ୍ରଥମ ନରସିଂହଦେବଙ୍କ ପୁତ୍ର ଭାନୁଦେବ ୧୫ ବର୍ଷ ରାଜତ୍ୱ କରିଥିଲେ । ପରବର୍ତ୍ତୀ ରାଜାମାନଙ୍କ ଶାସନ କାଳର ଗୋଟିଏ ତାଲିକା ଇଣ୍ଟରନେଟ୍‌ରୁ ମିଳୁଛି, ଯାହା ନିମ୍ନରେ ଉଦ୍ଧୃତ ହେଲା ।

| | | |
|---|---|---|
| ନରସିଂହଦେବ (୧) | – | ୧୨୩୮-୧୨୬୪ ଖ୍ରୀଷ୍ଟାବ୍ଦ |
| ଭାନୁଦେବ (୧) | – | ୧୨୬୪-୧୨୭୯ ଖ୍ରୀଷ୍ଟାବ୍ଦ |
| ନରସିଂହଦେବ (୨) | – | ୧୨୭୯-୧୩୦୬ ଖ୍ରୀଷ୍ଟାବ୍ଦ |
| ଭାନୁଦେବ (୨) | – | ୧୩୦୬-୧୩୨୮ ଖ୍ରୀଷ୍ଟାବ୍ଦ |
| ନରସିଂହଦେବ (୩) | – | ୧୩୨୮-୧୩୫୨ ଖ୍ରୀଷ୍ଟାବ୍ଦ |
| ଭାନୁଦେବ (୩) | – | ୧୩୫୨-୧୩୭୮ ଖ୍ରୀଷ୍ଟାବ୍ଦ |
| ନରସିଂହଦେବ (୪) | – | ୧୩୭୮-୧୪୧୪ ଖ୍ରୀଷ୍ଟାବ୍ଦ |
| ଭାନୁଦେବ (୪) | – | ୧୪୧୪-୧୪୩୪ ଖ୍ରୀଷ୍ଟାବ୍ଦ |

କୃପାସିନ୍ଧୁ ପ୍ରଦତ୍ତ ମାଦଳା ପାଞ୍ଜି ପାଠ ଅନୁଯାୟୀ ଯେବେ ପ୍ରଥମ ନରସିଂହଦେବ ୧୨୮୨ ଯାଏ ରାଜତ୍ୱ କରିଥିଲେ ଏବଂ ମନ୍ଦିର ନିର୍ମାଣ ଶେଷ ହେଲା ୧୨୭୮ ଖ୍ରୀଷ୍ଟାବ୍ଦରେ ପ୍ରଥମ ନରସିଂହଦେବଙ୍କ ପୁତ୍ର ପ୍ରଥମ ଭାନୁଦେବଙ୍କୁ ସଂପୂର୍ଣ୍ଣ ବାଦ୍ ଦେବାକୁ ପଡ଼ିବ । ଏହା ଐତିହାସିକ ଅସତ୍ୟ ହେବ ।

କରୁଣାସାଗରଙ୍କ ମତରେ ଓଡ଼ିଶାରେ ଗଙ୍ଗବଂଶ ରାଜତ୍ୱ କରିଥିଲେ ୧୧୧୨ ଖ୍ରୀଷ୍ଟାବ୍ଦଠାରୁ ୧୪୩୫ ଖ୍ରୀଷ୍ଟାବ୍ଦ ଯାଏ । (**Konark-Vol-I, P-80**) ୧୧୧୨ ଚୋଡ଼ଗଙ୍ଗଦେବଙ୍କ ଆଗମନ ପ୍ରତିଷ୍ଠିତ ହୋଇଛି, ଏହା ପୂର୍ବେ ନରସିଂହଦେବଙ୍କ ଶାସନକାଳ ବହୁବାର ପ୍ରମାଣିତ ହୋଇଛି, ବଂଶର ଶେଷ ନରପତି ଚତୁର୍ଥ ଭାନୁଦେବଙ୍କ ଶାସନକାଳ କରୁଣାସାଗରଙ୍କ ତଥ୍ୟ ସହିତ ମିଶି ଯାଉଛି । ଉପରୋକ୍ତ ବଂଶ ତାଲିକାକୁ ସନ୍ଦେହ କରିବାର କିଛି କାରଣ ନାହିଁ ।

ମାଦଳାପାଞ୍ଜିରେ ବର୍ଣ୍ଣିତ ମୋହର, ଯେଉଁଥିରେ ନରସିଂହଦେବ ୧୨୮୨ଯାଏ ରାଜତ୍ୱ କରିଥିବା କଥା କୁହାଯାଇଛି, ବିଶ୍ୱାସଯୋଗ୍ୟ ନୁହେଁ । ଦେଖାଯାଉଛି ମାଦଳା ପାଞ୍ଜି ମଧ୍ୟ ସଂପୂର୍ଣ୍ଣ ନିର୍ଭରଯୋଗ୍ୟ ନୁହେଁ । ବର୍ଷର ଗଣ୍ଡଗୋଳ ଥିଲେ ମଧ୍ୟ ଉପରୋକ୍ତ ତଥ୍ୟରୁ ଗୋଟିଏ ସାରକଥା ବାହାରୁଛି, ବହୁ ବର୍ଷ ପୂର୍ବେ କେଶରୀ ବଂଶର କେହି ଜଣେ ରାଜା (ପୁରନ୍ଦର କେଶରୀ ମଧ୍ୟ ବିବାଦାତ୍ମକ) କୋଣାର୍କ ଚନ୍ଦ୍ରଭାଗାଠାରେ ଗୋଟିଏ ସୂର୍ଯ୍ୟ ମନ୍ଦିର ଗଢ଼ିଥିଲେ, ଯାହା ସମ୍ମୁଖରେ ବହୁ ବର୍ଷ ପରେ ନରସିଂହଦେବ ଆଉ ଗୋଟିଏ ମନ୍ଦିର ଗଢ଼ିଲେ ।

ପଣ୍ଡିତ କୃପାସିନ୍ଧୁଙ୍କ ବ୍ୟତୀତ ଅନ୍ୟାନ୍ୟ ପ୍ରତିଷ୍ଠିତ ଐତିହାସିକମାନେ ମଧ୍ୟ ବିଭିନ୍ନ ତଥ୍ୟ ଉପସ୍ଥାପନ କରିଛନ୍ତି, ଯାହା ପ୍ରାୟଶଃ ପରସ୍ପର ବିରୋଧୀ । ଅଙ୍କ ବର୍ଷର ହିସାବ, ବିଷୟଟିକୁ ଆହୁରି ଜଟିଳ କରିଛି ।

ଏଲିସ୍‌ବୋନ୍‌ର ବାୟାଚକଡ଼ାର leaf- I ର ପାଦଟୀକାରେ ବିଷୟଟିର ବ୍ୟାଖ୍ୟା କରିବାର ଚେଷ୍ଟା କରିଛନ୍ତି ।[୪୨]

'ଗଙ୍ଗବଂଶରେ ରାଜକୀୟ ବର୍ଷକୁ 'ଅଙ୍କ' କୁହାଯାଉଥିଲା । ଭାଦ୍ର ମାସ ଶୁକ୍ଳ ଦ୍ୱାଦଶୀ – ଯାହାକୁ ଶୂନ୍ୟ ଦିନ ଗଣା ହେଉଥିଲା । ସେ ଦିନରୁ ପରବର୍ତ୍ତୀ ଶୂନ୍ୟ ଦିନ ଯାଏ ଗୋଟିଏ ଅଙ୍କ ଧରା ଯାଉଥିଲା । ଏ ପଦ୍ଧତିରେ ପ୍ରଥମ ବର୍ଷ ଏବଂ ଅନ୍ୟ ସମସ୍ତ ବର୍ଷ ଯାହା ଶେଷ ହେବ ଶୂନ୍ୟ ଅଥବା ୬ ସଂଖ୍ୟାରେ, ଆଦୌ ଧରା ହେବ ନାହିଁ । ଏହାପରେ ବୋନର୍ କହିଛନ୍ତି :

"It is now generally accepted by historians that the reign of Raja Narasingh - I began in 1238 AD and the period between his coronation and his first Sunya day would have been considered as his second anka. His third anka therefore would have started on the first Sunya day, September 1238 AD. Thus it works out as follows -

September 1238 to Sept 1239 = 3rd anka (first full year after coronation)

September 1239 to Sept 1240 = 4th anka (second year after coronation)

September 1240 to Sept 1241 = 5th anka (third year after coronation)

September 1241 to Sept 1242 = 7th anka (fourth year after coronation)

Only in Ms-2 which is a later copy of Baya Chakada, the 7 anka is called the 6th anka."

ଭାରତୀୟ କ୍ୟାଲେଣ୍ଡର ଯାହା ଚନ୍ଦ୍ର ପକ୍ଷ ଅନୁସାରେ ଗଣନା କରାଯାଇଥାଏ, ସାଧାରଣତଃ ସୌରଚକ୍ର ନିର୍ଭର ଇଂରାଜୀ କ୍ୟାଲେଣ୍ଡରରୁ କିଛି ଭିନ୍ନ ହୋଇଥାଏ । ଏହା ଉପସ୍ଥାପିତ ତଥ୍ୟମାନଙ୍କରେ ପ୍ରତିଫଳିତ ହେଉଛି । ସେ ଯାହାହେଉ ବାୟାଚକଡ଼ାରୁ ମନ୍ଦିର ନିର୍ମାଣ ଆରମ୍ଭ ଏବଂ ଶେଷ ହେବାର ସୁସ୍ପଷ୍ଟ ବର୍ଷ ମାସ ମିଳୁଛି ଯାହା ଆହୁରି ସମୀକ୍ଷା-ସାପେକ୍ଷ ।

ନରସିଂହଦେବଙ୍କର ରାଜତ୍ୱର ପଞ୍ଚମ ଅଙ୍କର ଶେଷ ଦିଗକୁ ମହାରାଜ ଆଦେଶ ଦେଲେ, ଅର୍କକ୍ଷେତ୍ରରେ ରଥ ଆକାରରେ ସୂର୍ଯ୍ୟଦେବଙ୍କ ରଥ ନିର୍ମାଣ ହେଉ । ( leaf- I, New light, page-47 )

ଭୂମି ପୂଜା ହେଲା ସପ୍ତମ ଅଙ୍କରେ କନ୍ୟା ଶୁକ୍ଳ ପକ୍ଷ ଦଶମୀ ବୃହସ୍ପତିବାର ( leaf- II, New light, page-48 )। ବୋନର୍‌ଙ୍କ ଗଣନା ଅନୁସାରେ ରାଜ୍ୟାଭିଷେକର ଚତୁର୍ଥ ବର୍ଷରେ ଅର୍ଥାତ୍ ୧୨୪୨ ଖ୍ରୀଷ୍ଟାବ୍ଦରେ ।

ଉପରୋକ୍ତ ତଥ୍ୟର ସ୍ୱୀକୃତି ମିଳୁଛି ମାଦଳାପାଞ୍ଜି ନରସିଂହଦେବଙ୍କର ୬ ନମ୍ବର ବିଡ଼ାରୁ ( New light appendix- XIII, page-227 )। ମାଦଳାପାଞ୍ଜିର କିଛି ତଥ୍ୟ ବାୟାଚକଡ଼ାଠାରୁ ଭିନ୍ନ । ଏଠାରେ ଅଛି ୧୨୦୦ କର୍ମୀ ନିୟୋଜିତ ହେଲେ ଏବଂ ରାଜା ଗୌଡ଼ ବଙ୍ଗର ବାଦଶାହ ବିରୁଦ୍ଧରେ ଯୁଦ୍ଧକୁ ଗଲେ ।

ଷଷ୍ଠ ଅଙ୍କର ପୌଷପୂର୍ଣ୍ଣିମା ଦିନ ବିଭିନ୍ନ ଅଞ୍ଚଳରୁ ୨୩୨୪ ଜଣ ଯୁବକ ମନ୍ଦିର କାର୍ଯ୍ୟପାଇଁ ନିଯୁକ୍ତ ହେଲେ, ଯେଉଁଥିରୁ ୫୦୦ ସୈନ୍ୟ ବାହିନୀରେ ସାମିଲ ହୋଇ ମହାରାଜାଙ୍କ ସହ ବିଜୟକୋଣ୍ଡା (ବିଜୟୱାଡ଼ା) ଗଲେ। ବାକି ୧୭୯୪ ରୁପ୍‌ସା କ୍ୟାମ୍ପରେ ରହିଲେ । ( I-III-9-New light, P-51 ) ପାଦଟୀକାରେ ବୋନ୍‌ର କହୁଛନ୍ତି, ଲିଙ୍ଗରାଜ ମନ୍ଦିର ଗାତ୍ରର ଶିଳାଲେଖ ଅନୁଯାୟୀ ଏହା ଥିଲା ଦକ୍ଷିଣରେ ଗଣପତିଙ୍କ ବିରୁଦ୍ଧରେ ଯୁଦ୍ଧ ଯାହା ରାଜ୍ୟାଭିଷେକ ପରେ ଚତୁର୍ଥ ବର୍ଷରେ, ଅର୍ଥାତ୍ ୧୨୪୨ ଖ୍ରୀଷ୍ଟାବ୍ଦରେ ଘଟିଥିଲା ।

Leaf LXXIର ତୃତୀୟ ଅନୁଚ୍ଛେଦରେ ଲେଖାହେଲା ମହାଭାସ୍କର (ସୂର୍ଯ୍ୟ)ଙ୍କ ବିଗ୍ରହ ସ୍ଥାପନା ହେଲା ମାଘ ଶୁକ୍ଳ ସପ୍ତମୀ ରବିବାର ୧୧୭୯ ଶକାବ୍ଦ (୧୨୫୮ ଖ୍ରୀଷ୍ଟାବ୍ଦ । ( New light , page-176 )

ବାୟାଚକଡ଼ା ଓ ବୋନ୍‌ର ବର୍ଣ୍ଣିତ ମାଦଳାପାଞ୍ଜିରୁ ମିଳୁଛି ମନ୍ଦିରର ଭୂମିପୂଜା ହେଲା ୧୨୪୨ ଖ୍ରୀ.ଅ. କନ୍ୟା-ଶୁକ୍ଳପକ୍ଷ ବୃହସ୍ପତିବାର ଓ ପ୍ରତିଷ୍ଠା ହେଲା ୧୨୫୮ ଖ୍ରୀଷ୍ଟାବ୍ଦ ମାଘ-ଶୁକ୍ଳପକ୍ଷ ସପ୍ତମୀ ଦିନ ।

ଷ୍ଟେଲା କର୍ମରୀଶ୍ ବାୟାଚକଡ଼ା ଓ ମାଦଳାପାଞ୍ଜି ନିର୍ଭର କରି ତଥ୍ୟ ବାଢ଼ିଛନ୍ତି କିନ୍ତୁ ମନେହୁଏ ସେ ମଧ୍ୟ 'ଅଙ୍କ' ବର୍ଷର ବିଭ୍ରାନ୍ତିରେ ଭୋଗିଛନ୍ତି। ସେ ମଧ୍ୟ କହିଛନ୍ତି ନିର୍ମାଣକାର୍ଯ୍ୟ ଆରମ୍ଭ ହେଲା ନରସିଂହ ରାଜତ୍ୱର ପଞ୍ଚମ ଅଙ୍କର ଶେଷ ଭାଗରେ କିନ୍ତୁ ସଠିକ୍ ସମୟଟି କହୁଛନ୍ତି ସିଂହାସନ ଆରୋହଣର ତୃତୀୟ ବର୍ଷରେ- ୧୨୪୧ଠାରୁ ସେପ୍ଟେମ୍ବର ୧୨୪୨ ମଧ୍ୟରେ । ଶେଷ ହେଲା ୧୨ବର୍ଷ ୧୦ ମାସ ୧୪ ଦିନ ପରେ ୧୮ ଅଙ୍କ ବର୍ଷରେ । ସେ ଏହା ମଧ୍ୟ ସ୍ୱୀକାର କରୁଛନ୍ତି ବିଗ୍ରହ ପ୍ରତିଷ୍ଠା ହେଲା ୧୨୫୮ ଖ୍ରୀଷ୍ଟାବ୍ଦ ମାଘ ଶୁକ୍ଳପକ୍ଷ ସପ୍ତମୀ ଦିନ । କିନ୍ତୁ ୧୨୪୨ ସହିତ ୧୩ ବର୍ଷ (୧୨-୧୦-୧୪) ମିଶେଇଲେ ହେବ ୧୨୫୫ ଖ୍ରୀଷ୍ଟାବ୍ଦ ୧୨୫୮ ନୁହେଁ । ଅନ୍ୟ ଦିଗରୁ ଦେଖିଲେ ୧୨୪୨ ଠାରୁ ୧୨୫୮ ୧୬ ବର୍ଷ, ୧୩ ବର୍ଷ ନୁହେଁ ।[୪୩]

ଦ୍ୱିତୀୟ ନରସିଂହଦେବଙ୍କ ଦ୍ୱାରା ରଚିତ ଶକାବ୍ଦ ୧୨୧୭ (୧୨୯୫ ଖ୍ରୀ.ଅ.)ର ତମ୍ବାପଟ୍ଟାର ପାଠୋଦ୍ଧାର କରି କରୁଣାସାଗର କହୁଛନ୍ତି ପ୍ରଥମ ନରସିଂହଦେବ କୋଣାର୍କଠାରେ ସୂର୍ଯ୍ୟ ମନ୍ଦିର ନିର୍ମାଣ କରିଥିଲେ ଏବଂ ତାଙ୍କର ତଥ୍ୟର ଉତ୍ସ କୌଣସି ଏକ P. Roy ସଂପାଦିତ History of Chemistry in Ancient and Medieval India, P-213।(୪୪) ସେଥିରେ କିନ୍ତୁ ବର୍ଷ, ମାସ, ତାରିଖ କିଛି ଲେଖା ନାହିଁ । ଏହା ଆଶ୍ଚର୍ଯ୍ୟଜନକ। ସେ ଯୁଗରେ ପ୍ରତି କଥାରେ ରାଜାଙ୍କ ଅଙ୍କ, ପକ୍ଷ, ତିଥି ଲେଖା ହେଉଥିଲା । ତମ୍ବାପଟ୍ଟାଟି କେତେଦୂର ବିଶ୍ୱାସଯୋଗ୍ୟ, ସନ୍ଦେହର ଅବକାଶ ରହିଛି। ଏହାପରେ କରୁଣାସାଗର ପୁଣି କହିଛନ୍ତି, "Besides epigraphic evidence, literary evidence in Sanskrit and Oriya support the view that Narasinghadev built the Konark Temple." । ଏହା ପରେ ଡକ୍ଟର ବେହେରା ଜଗନ୍ନାଥ ମନ୍ଦିରରେ ରକ୍ଷିତ ତାଳପତ୍ର ପୋଥି ଉପରେ ନିର୍ଭର କରି ନିମ୍ନୋକ୍ତ ତଥ୍ୟ ଉପସ୍ଥାପନ କରିଛନ୍ତି ।

ଲାଙ୍ଗୁଳା ନରସିଂହଦେବ ତାଙ୍କ ଶାସନର ତୃତୀୟ ଅଙ୍କରେ କୋଣାର୍କ ମନ୍ଦିରର ଭିତ୍ତିସ୍ଥାପନ କରି ମନ୍ଦିର ନିର୍ମାଣଦାୟିତ୍ୱ ଶିବେଇ ସାମନ୍ତରା ମହାପାତ୍ରଙ୍କୁ ଦେଇ ଦକ୍ଷିଣକୁ ୧୨ ବର୍ଷ ଯୁଦ୍ଧ ପାଇଁ ଚାଲିଗଲେ । (ମାଦଳାପାଞ୍ଜି, ପୃ-୩୫) । ଏ ବିଷୟରେ ନିମ୍ନୋକ୍ତ ଗ୍ରନ୍ଥଗୁଡ଼ିକ ପାଠକରି ସେ ଅଧିକା କିଛି ପାଇଲେ ନାହିଁ । ପୋଥିଗୁଡ଼ିକ, ଜଗନ୍ନାଥ କୈଫିୟତ୍ (ତେଲୁଗୁ), ଓଡ୍ରଦେଶ ରାଜବଂଶାବଳୀ (ସଂସ୍କୃତ) ପୁରୁଷୋତ୍ତମ ଚନ୍ଦ୍ରିକା , (ବଙ୍ଗଳାରେ ଲିଖିତ ମାଦଳାପାଞ୍ଜିର ଅନୁବାଦ) ବାମଦେବ ସଂହିତା ଏବଂ ଗଙ୍ଗବଂଶାନୁଚରିତ (ବାସୁଦେବ ସୋମଯାଜୀ) ।

ଏହାପରେ, ଆବୁଲ୍ ଫଜଲ୍‌ଙ୍କ ଇତିହାସ ଓ ବିଶନ୍ ସ୍ୱରୂପଙ୍କ ଭ୍ରାନ୍ତ ନିର୍ଣ୍ଣୟ ଅପ୍ରମାଣ କରିବାକୁ ଅଢ଼େଇପୃଷ୍ଠା ବ୍ୟୟ କରିବା ପରେ କରୁଣାସାଗର କହିଛନ୍ତି:

The Temple of Konark was built during his ( Narasinghadev ) reign and no exact date is available for the begining or its completion." ଏକା ନିଃଶ୍ୱାସରେ ଯୋଡ଼ିଲେ,"According to the Madalapanji, the temple was begun in the 2nd Anka year (according to another version 3rd Anka year) and was consecrated on the 22nd Anka year of the monarch" Madalapanji P-35-36. (୪୫)

ଉପରୋକ୍ତ ମାଦଳାପାଞ୍ଜିରେ ଆଉ ଦୁଇଟି ବର୍ଷ କଥା ଉଠୁଛି, ତୃତୀୟ ଅଙ୍କ ବର୍ଷ ଓ ୨୨ ଅଙ୍କ ବର୍ଷ। ବୋନ୍‌ର ଓ କର୍ମରୀଶ୍ ବିଡ଼ା ସଂଖ୍ୟା ଦେଇଥିଲେ, ଏ କେତେ ନମ୍ବର ବିଡ଼ା ଏବଂ କେଉଁ ରାଜାଙ୍କ ସମୟର ? କର୍ମରୀଶ୍ ଗଣନା କରି କହିଥିଲେ -

୧୩ ଅଙ୍କ ବର୍ଷ = ୧୦ ଇଂରାଜୀ ବର୍ଷ । ତେଣୁ ୨୨ ଅଙ୍କ ବର୍ଷ ୧୬.୭୬ ଅଥବା ୧୭ ଇଂରାଜୀ ବର୍ଷ । କିନ୍ତୁ ଏ ୧୬ ଅଥବା ୧୭ ବର୍ଷ କେବେ ଠାରୁ ? ଏଲିସ୍ ବୋନ୍‌ର ଓ ଷ୍ଟେଲା କର୍ମରୀଶ୍ କହିଥିବା ମନ୍ଦିର ପ୍ରତିଷ୍ଠା ବର୍ଷ ୧୨୫୮ ନରସିଂହଦେବଙ୍କ ରାଜ୍ୟାଭିଷେକରୁ ୨୦ ବର୍ଷ ଏବଂ ସେମାନେ ହିଁ କହିଥିବା ନିର୍ମାଣ ଆରମ୍ଭ ବର୍ଷ ଠାରୁ ୧୬ ବର୍ଷ । ଏହା ସହିତ ପୁଣି ଆବୁଲ୍ ଫଜଲ୍ କଥିତ ଏବଂ ବହୁଳ ପ୍ରଚଳିତ ୧୨ ବର୍ଷ ନିର୍ମାଣ କାର୍ଯ୍ୟରେ ଲାଗିଥିବା କଥା ମଧ୍ୟ ଅଛି । ଏ ସମସ୍ତ ସମ୍ଭାବ୍ୟ ବର୍ଷ ବିବେଚନା କରି ଇଂରାଜୀ କ୍ୟାଲେଣ୍ଡର ଅନୁଯାୟୀ ଆରମ୍ଭ ଏବଂ ଶେଷ ହେବା ବର୍ଷ ୩ ନମ୍ବର ସାରଣୀରେ ସଜାଗଲା ।

## ସାରଣୀ-୩

# ମନ୍ଦିର ନିର୍ମାଣର ସମ୍ଭାବ୍ୟ ବର୍ଷ

| ମନ୍ଦିର ଆରମ୍ଭ ହେବାର ସମ୍ଭାବ୍ୟ ବର୍ଷ | | | ନିର୍ମାଣ ଶେଷ ହେବାର ସମ୍ଭାବ୍ୟ ବର୍ଷ | |
|---|---|---|---|---|
| ରାଜ୍ୟାଭିଷେକର | ୧ମ ବର୍ଷ | – ୧୨୩୮ ଖ୍ରୀଷ୍ଟାବ୍ଦ | ୧୨୩୮ ଠାରୁ ୧୨ ବର୍ଷ | – ୧୨୫୦ ଖ୍ରୀଷ୍ଟାବ୍ଦ |
| | ୨ୟ ବର୍ଷ | – ୧୨୩୯ ଖ୍ରୀଷ୍ଟାବ୍ଦ | ୧୨୩୯ ଠାରୁ ୧୨ ବର୍ଷ | – ୧୨୫୧ ଖ୍ରୀଷ୍ଟାବ୍ଦ |
| | ୩ୟ ବର୍ଷ | – ୧୨୪୦ ଖ୍ରୀଷ୍ଟାବ୍ଦ | ୧୨୪୦ ଠାରୁ ୧୨ ବର୍ଷ | – ୧୨୫୨ ଖ୍ରୀଷ୍ଟାବ୍ଦ |
| | ୪ର୍ଥ ବର୍ଷ | – ୧୨୪୧ ଖ୍ରୀଷ୍ଟାବ୍ଦ | ୧୨୪୧ ଠାରୁ ୧୨ ବର୍ଷ | – ୧୨୫୩ ଖ୍ରୀଷ୍ଟାବ୍ଦ |
| | ୫ମ ବର୍ଷ | – ୧୨୩୦ ଖ୍ରୀଷ୍ଟାବ୍ଦ | ୧୨୪୨ ଠାରୁ ୧୨ ବର୍ଷ | – ୧୨୫୪ ଖ୍ରୀଷ୍ଟାବ୍ଦ |
| | | | ୧୨୩୯ ଠାରୁ ୧୬ ବର୍ଷ | – ୧୨୫୫ ଖ୍ରୀଷ୍ଟାବ୍ଦ |
| | | | ୧୨୪୦ ଠାରୁ ୧୬ ବର୍ଷ | – ୧୨୫୬ ଖ୍ରୀଷ୍ଟାବ୍ଦ |
| | | | ୧୨୪୧ ଠାରୁ ୧୬ ବର୍ଷ | – ୧୨୫୭ ଖ୍ରୀଷ୍ଟାବ୍ଦ |

୧୨୪୨ ଠାରୁ ୧୬ ବର୍ଷ – ୧୨୫୮ ଖ୍ରୀଷ୍ଟାବ୍ଦ

୧୨୪୨ ଠାରୁ ୧୭ ବର୍ଷ – ୧୨୫୯ ଖ୍ରୀଷ୍ଟାବ୍ଦ

୧୨୪୨ ଠାରୁ ୧୮ ବର୍ଷ – ୧୨୬୦ ଖ୍ରୀଷ୍ଟାବ୍ଦ

ଶକ ବଂଶରୁ ପରିବର୍ତ୍ତନଜନିତ ଭଗ୍ନାଂଶ ବିଚାରକୁ ନେଇ ଆଉ ଗୋଟିଏ ବର୍ଷ ଧରାଯାଉ – ୧୨୬୦ ଖ୍ରୀଷ୍ଟାବ୍ଦ

ଉପରୋକ୍ତ ବର୍ଷଗୁଡ଼ିକ ମଧ୍ୟରୁ ସହଜ ବୁଦ୍ଧିରେ କେତେଗୁଡ଼ିଏ କାଟି ଦିଆଯାଇ ପାରେ। ରଣକ୍ଳାନ୍ତ ଯୁବରାଜ ନରସିଂହଦେବ ସଦ୍ୟ ସିଂହାସନ ଆରୋହଣ କରିଛନ୍ତି। ପୂର୍ବ ପ୍ରସ୍ତୁତି ବିନା କୋଣାର୍କ ଭଳି ଗୋଟିଏ ବିଶାଳ ଯୋଜନାର ଭିତ୍ତି ସ୍ଥାପନ ସମ୍ଭବ ନୁହେଁ । ପଦ୍ମତୋଳା ଗଣ୍ଡ ପୋତିବା ଆହୁରି ବାକି । ମାତୃ ଆଦେଶରେ ବରଂ ସୂର୍ଯ୍ୟ ଦେଉଳ ତୋଳିବାର ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ କରିଥିବା ସ୍ୱାଭାବିକ । ଖାଲି ୧୨୩୮ ପ୍ରଥମ ବର୍ଷ କାହିଁକି ଏକା କାରଣରୁ ୧୨୪୧ ଯାଏ କାଟ୍ ଖାଇବା ଯୁକ୍ତିଯୁକ୍ତ ମନେହୁଏ । ତେଣୁ କାଟ୍ ଖାଉଛନ୍ତି ୧୨୫୦ ଠାରୁ ୧୨୫୩ ।

ପୂର୍ବେ ବର୍ଣ୍ଣିତ ନରସିଂହଦେବଙ୍କର ଯୁଦ୍ଧଯାତ୍ରା ଦକ୍ଷିଣରେ ବିଭିନ୍ନ ନରପତିଙ୍କ ସହ ଓ ଉତ୍ତରରେ ବଙ୍ଗଦେଶର ମୁସଲମାନ ଶାସକମାନଙ୍କ ସହିତ ୧୨୪୨ ଠାରୁ ୧୨୫୭ ପର୍ଯ୍ୟନ୍ତ ତାଙ୍କୁ ଅତ୍ୟନ୍ତ ବ୍ୟସ୍ତ ରଖିଥିଲା । ଶାନ୍ତି ମିଳିଲା ୧୨୫୭ ପରେ । ଯଦିଓ ମଝିରେ ମଝିରେ ଦେଶକୁ ଫେରିଛନ୍ତି ଏବଂ କୋଣାର୍କ ଯୋଜନାରେ ବହୁ ସମୟ ବ୍ୟୟ କରିଛନ୍ତି । ୧୨୫୭ ପୂର୍ବରୁ ମନ୍ଦିରର ପ୍ରତିଷ୍ଠା ଉତ୍ସବ କରିବାକୁ ସମୟ ଦେବା କଷ୍ଟକର ଥିଲା । ମନ୍ଦିର ନିର୍ମାଣ ଶେଷ ହେବାରେ ବିଳମ୍ବ, ଅନ୍ୟ ବିଷୟ । ଏସବୁ ଦୃଷ୍ଟିରୁ ମାଦଳାପାଞ୍ଜି ବର୍ଣ୍ଣିତ ୧୨୫୮ ଖ୍ରୀଷ୍ଟାବ୍ଦକୁ ଯୁକ୍ତିଯୁକ୍ତ ମନେ ହେଉଛି ।

କେବଳ ବଳିଷ୍ଠ ଯୁକ୍ତି ଦ୍ୱାରା ଏଭଳି ଏକ ଗମ୍ଭୀର ବିଷୟରେ ଶେଷ ନିଷ୍ପତ୍ତି ନେବା ଠିକ୍ ହେବ ନାହିଁ । ତେଣୁ ଗୋଟିଏ ଅପ୍ରଚଳିତ ଅନ୍ୱେଷଣ ପନ୍ଥା ଚିନ୍ତା କରାଗଲା, ଯାହା ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ଉପସ୍ଥାପିତ ହୋଇଛି ।

କୌଣସି ଏକ ଶୁକ୍ଳପକ୍ଷ ମାଘ ସପ୍ତମୀ ଦିନ ସୂର୍ଯ୍ୟୋଦୟ ସହିତ ଚନ୍ଦ୍ରଭାଗାରେ ବୁଡ଼ ପରେ ସୂର୍ଯ୍ୟ ବିଗ୍ରହ ପ୍ରତିଷ୍ଠା କଥା ଖାଲି ମାଦଳାପାଞ୍ଜି କହୁନାହିଁ ଅନ୍ୟତ୍ର ମଧ୍ୟ ଲିପିବଦ୍ଧ ହୋଇଛି । ଏ ବିଷୟରେ କୃପାସିନ୍ଧୁ, ବିଶନ୍ ସ୍ୱରୂପଙ୍କ ମତ ଉଲ୍ଲେଖ କରି ତାହା ଖଣ୍ଡନ କରିଛନ୍ତି ।[୪୬] ବିଶନ୍ ସ୍ୱରୂପ ଯଦିଓ ଶୁକ୍ଳ ପକ୍ଷ ମାଘ ସପ୍ତମୀ ଦିନ ସୂର୍ଯ୍ୟୋଦୟ ସମୟରେ ବୁଡ଼ ଦେବାର ବର୍ଣ୍ଣନା କରିଛନ୍ତି । ଏପରିକି Equinoxes ଅର୍ଥାତ୍ ସୂର୍ଯ୍ୟଙ୍କ ପଥପରିବର୍ତ୍ତନ କଥା କହିଛନ୍ତି । ସେ ନିର୍ଦ୍ଦିଷ୍ଟ ଅଗ୍ନି କୋଣରୁ ସୂର୍ଯ୍ୟୋଦୟ କଥା କହି ନାହାନ୍ତି ।[୪୭] ମନେହୁଏ, ଇତିହାସର ଗତିପଥରେ କୌଣସି ସମୟରେ ଈଶାନ କୋଣରୁ ସୂର୍ଯ୍ୟୋଦୟର ସିଦ୍ଧାନ୍ତ ଗୁଡ଼େଇ ହୋଇଯାଇଛି । କୃପାସିନ୍ଧୁ ଏ ବିଷୟରେ ତାଙ୍କର ଭକ୍ତିଭାଜନ ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟଙ୍କର ମତ ଆହ୍ୱାନ କରିଥିଲେ । ଅଧ୍ୟାପକ ଯୋଗେଶ ଚନ୍ଦ୍ରଙ୍କ ଉତ୍ତର, ଯାହାର ଉଦ୍ଧାର କୃପାସିନ୍ଧୁଙ୍କ ପୁସ୍ତକରେ ହୋଇଛି, ତାହାର ପୁନରୁଦ୍ଧାର କରାଗଲା ।[୪୬]

"A little consideration will show that such (Sun rising in Agnikonia, i.e. $45^0$ to South from the East) could never have been the case. No one could ever see the Sunrise due S-E from any place in India, not to speak of Orissa. Therefore, either it was not true Agnikona as it was not any place in India. If Mr. Swarup has based his calculation entirely on this Agnikona theory, It is wrong.

If It is not true Agnikona which I think was not meant, then the only possible explanation is that the Sun had to be seen to rise on the day when he had reached the southern limit of his course, i.e. the end of his Dakshinayana and beginining of his sUttarayana. We know that this happened on the 7th day of the bright half of Magha long long ago."

ଅଧ୍ୟାପକ ଯୋଗେଶ ଚନ୍ଦ୍ର ରାୟ ଜଣେ ଖ୍ୟାତିମାନ୍ ଜ୍ୟୋତିର୍ବିଦ୍ ରୂପେ ଏବେ ମଧ୍ୟ ସ୍ୱୀକୃତ । କିନ୍ତୁ ମାମଲା ତୁଟୁ ନାହିଁ । ମାଘ ଶୁକ୍ଳ ପକ୍ଷ ସପ୍ତମୀ ତ ସବୁବର୍ଷ ହେବ, ସାରଣୀ ୩ରେ ପ୍ରଦତ୍ତ ଶେଷ ସାତ ବର୍ଷର କେଉଁ ବର୍ଷ ଘଟଣାଟି ଘଟିଥିଲା ? ମୋ ବିଚାରରେ ବିଗ୍ରହ ସୂର୍ଯ୍ୟ କିରଣ ସ୍ନାତ ହେବା ଗୋଟିଏ ନିର୍ଣ୍ଣାୟକ ଘଟଣା, କିନ୍ତୁ ସନ୍ଦେହ ଥିଲା ଜଗମୋହନ ପୂର୍ବ ଦ୍ୱାରଠାରୁ ପ୍ରାୟ ୧୬୦ ଫୁଟ୍ ଦୂରରେ ଗର୍ଭଗୃହ ମଧ୍ୟରେ ସୂର୍ଯ୍ୟକିରଣ ଆଦୌ ପ୍ରବିଷ୍ଟ ହେବ କି ନାହିଁ ? ବିଶ୍ୱାସଟି ଖାଲି କୋଣାର୍କରେ ନୁହେଁ ଗୁଜରାଟ ମୋଧେରା ସୂର୍ଯ୍ୟ ମନ୍ଦିରରେ ମଧ୍ୟ ପ୍ରଚଳିତ । ଲେଖକ ଏ ବିଷୟରେ ଭାରତର ତିନିଟି ତାରାଘର (ପ୍ଲାନେଟୋରିୟମ୍) ସହିତ ଯୋଗାଯୋଗ କରିଥିଲେ; ଭୁବନେଶ୍ୱର ପଠାଣିସାମନ୍ତ ପ୍ଲାନେଟୋରିୟମ୍, କୋଲକାତାର ବିଡଲା ଓ ଚେନ୍ନାଇର ବିଡ଼ଲା ପ୍ଲାନେଟୋରିୟମ୍ । ତେରିରେ

ହେଲେ ମଧ୍ୟ ସାହାଯ୍ୟ ଆସିଲା ପଠାଣି ସାମନ୍ତ ପ୍ଲାନେ ଟୋରିୟମ୍‌ର ଡକ୍ଟର ଶୁଭେନ୍ଦୁ ପଟ୍ଟନାୟକଙ୍କ ଠାରୁ । ଲେଖକ ତାଙ୍କୁ ନିମ୍ନୋକ୍ତ ପ୍ରାରମ୍ଭିକ ତଥ୍ୟ ଯୋଗେଇ ଦେଇଥିଲେ ।

କୋଣାର୍କର ଅବସ୍ଥିତି ୧୯°-୫୩' ଅକ୍ଷାଂଶ ଓ ୧୬°-୬' ଦ୍ରାଘିମା ଉପରେ । ମନ୍ଦିରଟି ସଠିକ୍ ପୂର୍ବ-ପଶ୍ଚିମ ରେଖାରେ ବସାଯାଇଛି, ଯାହା Prismatic Compass ଦ୍ୱାରା ପ୍ରତିଷ୍ଠିତ ।[୪୮] ଗୋଟିଏ ରେଖାଚିତ୍ର ଦ୍ୱାରା ପ୍ରତିଷ୍ଠିତ ହେଲା, ସୂର୍ଯ୍ୟକିରଣ ଗତି କରିଲେ ମଧ୍ୟ କେତେ ଡିଗ୍ରୀକୋଣ ମଧ୍ୟରେ ସୀମିତ ରହିବ । ରେଖାଚିତ୍ରଟି ନିମ୍ନରେ ପ୍ରଦତ୍ତହେଲା ।




**ରେଖାଚିତ୍ର-୧ : ସୂର୍ଯ୍ୟାଲୋକର ଗତିପଥ (ଜଗମୋହନ ଓ ବିମାନର ଭୂମି ନକ୍ସା)**

ଏହା ସହିତ ମୋର ପ୍ରଶ୍ନ ଥିଲା (୧) ସୂର୍ଯ୍ୟକିରଣ ଆଦୌ ବିଗ୍ରହ ଉପରେ ପଡ଼ିବ କି ? (୨) ତାହା କୌଣସି ବର୍ଷ ମାଘ ଶୁକ୍ଳପକ୍ଷ ସପ୍ତମୀ ଦିନ ହେବ କି ? ଏବଂ (୩) ସେଦିନ ଆଲୋଚିତ ପାଞ୍ଚ ବର୍ଷ ମଧ୍ୟରେ କେଉଁବର୍ଷ ପଡ଼ିବ କି ? ଆଲୋଚନା ମଧ୍ୟରେ ପାଞ୍ଚ ବର୍ଷ ସହିତ ଆହୁରି ସମ୍ଭାବ୍ୟ ୩ ବର୍ଷ ଯୋଡ଼ା ହେଲା । ଡକ୍ଟର ପଟ୍ଟନାୟକ ଯୋଡ଼ିଏ ସଫ୍‌ଟଓୟାର୍‌ର ସାହାଯ୍ୟ ନେଇ ନିମ୍ନୋକ୍ତ ନିର୍ଣ୍ଣୟଗୁଡ଼ିକ ପ୍ରଥମ ଦଫାରେ ଉପସ୍ଥାପିତ କରିଥିଲେ । ସେ ଆହୁରି ମଧ୍ୟ, ଯୋଗେଶ ଚନ୍ଦ୍ରଙ୍କ ମତାମତର ପ୍ରାଞ୍ଜଳ ବ୍ୟାଖ୍ୟାଟିଏ ଦେଲେ ।

୧. ସୂର୍ଯ୍ୟ କୌଣସିମତେ ଅଗ୍ନି କୋଣ ଅର୍ଥାତ୍ ୪୫°ରୁ ଉଠିପାରେନା କାରଣ ଉତ୍ତରାୟଣ ଓ ଦକ୍ଷିଣାୟନରେ ମଧ୍ୟବିନ୍ଦୁରୁ ଏହାର ଚଳନ ସର୍ବାଧିକ ୨୩-୪୪° ।

୨. ବର୍ଷ ମଧ୍ୟରେ ଦୁଇ ଥର, ୧ନଂ ରେଖାଚିତ୍ରରେ ପ୍ରଦର୍ଶିତ ସ୍ଥାନରେ, ବିଗ୍ରହ ଉପରେ ସୂର୍ଯ୍ୟକିରଣ ପଡ଼ିବ ମାର୍ଚ୍ଚ ୨୧ ଓ ସେପ୍ଟେମ୍ବର ୨୨ ତାରିଖରେ।

୩. ରେଖାଚିତ୍ରରେ ଉପସ୍ଥାପିତ କୋଣକୁ ବିଚାରକୁ ନେଲେ, ସୂର୍ଯ୍ୟକିରଣ ପଡ଼ିବାର ସ୍ଥାୟିତ୍ୱ ୧୦ ଦିନଠାରୁ ୧୫ ଦିନ ମାତ୍ର ।

୪. ମାଘ ସପ୍ତମୀ ପଡ଼ିପାରେ ଜାନୁଆରି ୧୫ ଠାରୁ ମାର୍ଚ୍ଚ ୩୦ ମଧ୍ୟରେ ।

ସେପ୍ଟେମ୍ବର ମାସ ବିଚାରକୁ ନେବାର ଆବଶ୍ୟକତା ନାହିଁ କାରଣ ମାଘ ମାସ କୌଣସି ବର୍ଷ ସେପ୍ଟେମ୍ବର ମାସରେ ପଡ଼ିବ ନାହିଁ । ଯେହେତୁ ସୂର୍ଯ୍ୟକିରଣ ପଡ଼ିବାର ସ୍ଥାୟିତ୍ୱ ୧୦/୧୫ ଦିନ, ପ୍ରତିବର୍ଷ କିରଣ ପଡ଼ିବାର ସ୍ଥାୟିତ୍ୱ ଖୁବ୍ ବେଶୀ ହେଲେ **ମାର୍ଚ୍ଚ ୧୩ ଠାରୁ ୨୯**

**ମଧ୍ୟରେ** । ଲେଖକର ପରବର୍ତ୍ତୀ ପ୍ରଶ୍ନ ଥିଲା ଆଲୋଚିତ ଆଠ ବର୍ଷର କୌଣସି ବର୍ଷରେ ମାଘ ସପ୍ତମୀ ଉପରୋକ୍ତ ୧୫/୧୬ ଦିନ ମଧ୍ୟରେ ପଡ଼ିବ କି ? ଶୁଭେନ୍ଦୁବାବୁଙ୍କ ମତାମତ ନିମ୍ନରେ ଦିଆଗଲା । (ଆଲୋଚନା ମାଧ୍ୟମରେ ୧୨୫୩ ମଧ୍ୟ ବିଚାରକୁ ନିଆଯାଇଥିଲା ।)

| **ବର୍ଷ** | **ମାଘ ସପ୍ତମୀ ତାରିଖ** |
|---|---|
| ୧୨୫୩ | ଜାନୁଆରି ୨୦, ଗୁରୁବାର |
| ୧୨୫୪ | ଜାନୁଆରି ୨୭, ମଙ୍ଗଳବାର |
| ୧୨୫୫ | ଜାନୁଆରି ୨୦, ସୋମବାର |
| ୧୨୫୬ | ଜାନୁଆରି ୨୦, ଗୁରୁବାର |
| ୧୨୫୭ | ଜାନୁଆରି ୨୭, ଶନିବାର |
| ୧୨୫୮ | ଜାନୁଆରି ୨୭, ରବିବାର |
| ୧୨୫୯ | ଜାନୁଆରି ୨୪, ସୋମବାର |
| ୧୨୬୦ | ଜାନୁଆରି ୨୭, ମଙ୍ଗଳବାର |

ତାଙ୍କ ମତରେ, ଏ ଗଣନା ଭାରତୀୟ କ୍ୟାଲେଣ୍ଡର ଅନୁଯାୟୀ କରାଯାଇଛି, ଯାହା ସହିତ ଓଡ଼ିଶାରେ ପ୍ରଚଳିତ ପାଞ୍ଜିମାନଙ୍କର ଗଣନାରେ ୧୫ ଦିନର ବ୍ୟବଧାନ ମଧ୍ୟ ସମୟେ ସମୟେ ହୋଇଥାଏ । ୧୫ ଦିନର ବ୍ୟବଧାନ ଉପରୋକ୍ତ ହିସାବରେ ମିଶାଇଲେ ମଧ୍ୟ ଆଲୋଚିତ **କୌଣସି ବର୍ଷ ମାଘ ସପ୍ତମୀ ମାର୍ଚ୍ଚ ୧୩ଠାରୁ ଏପ୍ରିଲ୍-୬ ମଧ୍ୟରେ ପଡୁ ନାହିଁ** । ତେଣୁ ସେ ଦିନମାନଙ୍କରେ ସୂର୍ଯ୍ୟକିରଣ ମଧ୍ୟ ବିଗ୍ରହ ଉପରେ ପଡୁନାହିଁ । ମିଳିଥିବା ଦୁଇଟି ଇ-ମେଲ୍‌ର ନକଲ ପରିଶିଷ୍ଟରେ ଦିଆଗଲା ।

ମାଦଳାପାଞ୍ଜି ଓ ବାୟାଚକଡ଼ା ନିର୍ଭର କରି ବୋନ୍‌ର କହିଛନ୍ତି, ଭୂମିପୂଜା ହୋଇଥିଲା, ୧୯୪୨ କନ୍ୟା ଶୁକ୍ଳ ପକ୍ଷ ଦଶମୀ ବୃହସ୍ପତି ବାର । ଡକ୍ଟର ଶୁଭେନ୍ଦୁ ପଟ୍ଟନାୟକଙ୍କ ଗଣନାରେ ତାରିଖଟି ସେଇ ବର୍ଷର ସେପ୍ଟେମ୍ବର ୨୫ ।

ମାଘ ସପ୍ତମୀ ଦିନ ଯଦିଓ ବିଗ୍ରହ ସୂର୍ଯ୍ୟସ୍ନାତ ହେବାର କିମ୍ବଦନ୍ତୀ ପ୍ରତିଷ୍ଠିତ ହେଲା ନାହିଁ, ଅନ୍ୟ ଗୋଟିଏ ତଥ୍ୟରୁ ମନ୍ଦିର ପ୍ରତିଷ୍ଠା ହେବାର ବର୍ଷ, ତାରିଖ ସଠିକ୍ ଭାବେ ନିର୍ଣ୍ଣିତ ହେଉଛି । ବାୟାଚକଡ଼ାମତେ ସେଦିନ ଖାଲି ମାଘ ସପ୍ତମୀ ନୁହେଁ, ଗୋଟିଏ ରବିବାର ମଧ୍ୟ ଥିଲା । ଏହା ମିଳିଯାଉଛି ଉପରୋକ୍ତ ସାରଣୀର ୧୨୫୮ ଜାନୁଆରି ୨୭ ତାରିଖ ସହିତ । ଏହା ମଧ୍ୟ ମାଦଳାପାଞ୍ଜିର ମତ (୬ ନମ୍ବର ବିଡ଼ା) । ଆହୁରି ସହମତ ମିଳୁଛି ସ୍ୱାମୀ କାନୁ ପିଲ୍ଲାଇ ରଚିତ Indian Ephimeris, Vol-IVରୁ (Boner-Newlight-P-176) ।

ଆହୁରି ଗୋଟିଏ ରବିବାର ପଡୁଥିଲା ୧୨୫୨ ଜାନୁଆରି ୨୧ ତାରିଖ ଦିନ କିନ୍ତୁ ୧୨୪୨ର ଭୂମି ପୂଜାଠାରୁ ଏହା ମାତ୍ର ୧୦ ବର୍ଷ ଯେତେବେଳେ ନରସିଂହ ଦେବ ଦକ୍ଷିଣରେ ଯୁଦ୍ଧରତ; ସମୟଟି କୋଣାର୍କ ଗଢ଼ିବାପାଇଁ ଅତି କମ୍ ଏବଂ ୧୦ ବର୍ଷ କଥା କେହି କହୁନାହାନ୍ତି । ୧୨୫୨ ଗ୍ରହଣଯୋଗ୍ୟ ନୁହେଁ । ତେଣୁ ଏହା ସିଦ୍ଧାନ୍ତ ନିଆଯାଇପାରେ ଯେ ଭୂମିପୂଜା **୧୨୪୨ଖ୍ରୀଷ୍ଟାବ୍ଦ, ସେପ୍ଟେମ୍ବର୨୫** ଓ ମନ୍ଦିର ପ୍ରତିଷ୍ଠା ଦିବସ **୧୨୫୮ ଖ୍ରୀଷ୍ଟାବ୍ଦ, ଜାନୁଆରି ୨୭** ।

## ବାୟା ଚକଡ଼ା : (New light on the Sun Temple)

ଅଳ୍ପକାଳ ପୂର୍ବେ କେତେକ ତାଳପତ୍ର ପୋଥି ଆବିଷ୍କୃତ ହୋଇଛି, ଯାହାକୁ ଭିତ୍ତି କରି ଡକ୍ଟର ଏଲିସ୍ ବୋନର ଓ ପଣ୍ଡିତ ସଦାଶିବ ରଥ ଶର୍ମା ଐତିହାସିକ ଡଃ ରାଜେନ୍ଦ୍ର ପ୍ରସାଦ ଦାସଙ୍କ ସହଯୋଗିତାରେ ଇଂରାଜୀରେ ରଚନା କରିଛନ୍ତି "New Light on the Sun Temple of Konarka." (ଏହାପରେ ଗ୍ରନ୍ଥଟି New Light ନାମରେ ନାମିତ ହେବ ) । ଏ ଗ୍ରନ୍ଥରେ କ'ଣ ଅଛି ତାହା ବର୍ଣ୍ଣନା କରିଛନ୍ତି ଷ୍ଟେଲା କର୍ମରୀଶ୍ ଏବଂ କେତେକ ତଥ୍ୟ ବ୍ୟବହାର କରିଛନ୍ତି ତାଙ୍କର "The Hindu Temple" ଗ୍ରନ୍ଥ ଦ୍ୱୟରେ । ସାଥେ ସାଥେ ଏକଥା ମଧ୍ୟ କହିଛନ୍ତି କର୍ମରୀଶ, ଗ୍ରନ୍ଥଟିର ବିଶ୍ୱସନୀୟତା ନେଇ ପ୍ରଶ୍ନ ଉଠାଇଛନ୍ତି କେତେକ ଜର୍ମାନ୍ ଓ ଭାରତୀୟ ପଣ୍ଡିତ ଯେଉଁମାନଙ୍କ ମଧ୍ୟରେ ଡକ୍ଟର କରୁଣାସାଗର ବେହେରା

ଅନ୍ୟତମ । କରୁଣାସାଗରଙ୍କ ମତାମତ ପ୍ରକାଶ ପାଇଥିଲା ୧୯୭୬ ସାଲରେ South Asia ନାମକ ପତ୍ରିକାରେ[୪୯] । ପତ୍ରିକାଟି ମିଳୁନାହିଁ କିନ୍ତୁ କରୁଣାସାଗର ଏ ବିଷୟରେ ମତାମତ ଉପସ୍ଥାପନ କରିଛନ୍ତି ତାଙ୍କର କୋଣାର୍କ ଗ୍ରନ୍ଥରେ । ସେଥିରେ ସେ କହିଛନ୍ତି, ଅଳ୍ପଦିନ ତଳେ Dr. Alice Boner, 'ବାୟାଚକଡ଼ା' ନାମକ ଗୋଟିଏ ତାଳପତ୍ର ପୋଥି ପାଇଥିବା କଥା କହୁଛନ୍ତି ଏବଂ ସେଥିରେ ମନ୍ଦିରର ଇତିହାସ ଉପରେ ଅନେକ ନୂତନ ତଥ୍ୟ ପାଇଥିବା ଦାବି କରିଛନ୍ତି । "........but this depends on scientific examination of the palm-leaf manuscript and publication of the complete text not merely the English translation which is still awaited."[50]

ଠିକ୍ ପର ପୃଷ୍ଠାରେ, ଅନ୍ୟ ଏକ ପ୍ରସଙ୍ଗରେ ଡକ୍ଟର ବେହେରା ଲେଖିଛନ୍ତି, ମାଦଳାପାଞ୍ଜିର କିଛି ତଥ୍ୟ M. M. Chakravarti ଉପସ୍ଥାପନ କରିଛନ୍ତି । ଏ ତଥ୍ୟଗୁଡ଼ିକ ମାଦଳାପାଞ୍ଜିର ପରବର୍ତ୍ତୀ ପାଠାନ୍ତରରେ ନାହିଁ; "...However, there is no reason to doubt the authenticity of the document. M.M. Chakravarti, who was a serious scholar in the field of Orissa history and who spent 17 years in Orissa in an official capacity, must have copied these contents from an old and genuine manuscript of Madala Panjee."[51]

Dr. Alice Boner ଓ ଡକ୍ଟର ରାଜେନ୍ଦ୍ର ପ୍ରସାଦ କ'ଣ less serious scholar ନା ଅଳ୍ପ ନିର୍ଭରଯୋଗ୍ୟ ? ଅଧିକ ବକ୍ତବ୍ୟ ନିଷ୍ପ୍ରୟୋଜନ । ତାଳପତ୍ର ପୋଥିଗୁଡ଼ିକ ଉପସ୍ଥାପିତ ହେଲେ ମଧ୍ୟ ତାହାର 'Scientific examination' ହେବ କିପରି ? ମୋ ଜାଣିବାରେ ପାଞ୍ଚ, ସାତ ଶହ ବର୍ଷର ଫରକ୍ Carbon dating ଦ୍ୱାରା ଧରା ପଡ଼ିବ ନାହିଁ । କର୍ମରୀଶ୍ ଅବଶ୍ୟ ବାୟାଚକଡ଼ା ପ୍ରଦତ୍ତ ତଥ୍ୟର ମେଳ ଖୋଜିଛନ୍ତି ମାଦଳା ପାଞ୍ଜିରୁ ଏବଂ ଯେଉଁଠାରେ ଯେପରି ପାଇଛନ୍ତି (ଯଥା-୧୮ ବର୍ଷ ବୟସରେ ନରସିଂହ ଦେବଙ୍କର ଯୁଦ୍ଧ ଯାତ୍ରା, ମନ୍ଦିର ପ୍ରତିଷ୍ଠାର ବର୍ଷ ଇତ୍ୟାଦି) ତାହା ଉଲ୍ଲେଖ କରିଛନ୍ତି । ସେ ଆହୁରି ମଧ୍ୟ କହିଛନ୍ତି, "The illustrations however are rather slipshod" ତଥାପି କର୍ମରୀଶ୍ କହିଛନ୍ତି, ଅନେକ ସ୍ଥାନରେ ମାଦଳାପାଞ୍ଜିର ସମର୍ଥନ ମିଳୁଥିବାରୁ ବାୟାଚକଡ଼ା ସମ୍ପୂର୍ଣ୍ଣ "Fabricated" କୁହାଯାଇ ପାରିବ ନାହିଁ[୫୨] । ପଣ୍ଡିତମାନେ ଅବଶ୍ୟ ମାଦଳା ପାଞ୍ଜିର ବିଶ୍ୱସନୀୟତା ଉପରେ ପ୍ରଶ୍ନ ଉଠାଉଛନ୍ତି !



ଫଟୋ-୨ (କ) : ନାଟ୍ୟାଚାର୍ଯ୍ୟ

ଗ୍ରନ୍ଥଟିର ମୁଖବନ୍ଧରେ ଏଲିସ୍ ବୋନର୍ କେତେଗୁଡ଼ିଏ କଥା ଲେଖିଛନ୍ତି ଯାହା ପ୍ରଣିଧାନ ଯୋଗ୍ୟ । ପଣ୍ଡିତ ସଦାଶିବ ରଥଶର୍ମା ପୁରୀ ନିକଟସ୍ଥ ୩୨ଟି ଗ୍ରାମରେ ପ୍ରାୟ ଆଠ ବର୍ଷ ବୁଲି ବୁଲି ୯୭୪ଟି ତାଳପତ୍ର ପୋଥି ପାଇଥିବା ଦାବି କରନ୍ତି । ସେଥିରୁ ମାତ୍ର ସାତଟି କୋଣାର୍କ ସମ୍ବନ୍ଧିତ । ସେ ସାତଟିରୁ ତିନିଟି ସାହିତ୍ୟ ବିଷୟକ, ବାକି ଚାରିଟି "New Light......"ରେ ସ୍ଥାନ ପାଇଛି କାରଣ ସେଗୁଡ଼ିକ, "Factual contemporary" ଏବଂ ସପକ୍ଷରେ କିଛି ପାରିପାର୍ଶ୍ୱିକ ପ୍ରମାଣ ମିଳୁଛି ।

ତାଳପତ୍ର ପୋଥି ଯେଉଁମାନେ ରଖନ୍ତି ସେମାନଙ୍କ ମଧ୍ୟରେ ଗୋଟିଏ ପ୍ରଥା ପ୍ରଚଳିତ ଥିବା କଥା ବୋନର୍ କହିଛନ୍ତି । ପ୍ରାୟ ଶହେ ବର୍ଷ ବ୍ୟବଧାନରେ ପୂର୍ବତନ ପୋଥିର ନକଲ କରାଯାଏ ଏବଂ ପୁରାତନ ପୋଥିକୁ ଜଳାଶୟୀ (ଜଳରେ ବିସର୍ଜନ) କରାଯାଏ । ଫଳରେ ଲେଖିବାର ଶୈଳୀ

ଏବଂ ଭାଷାରେ ପରିବର୍ତ୍ତନ ଆସିଥାଏ । ପୂର୍ବବର୍ତ୍ତୀ ଶୈଳୀ ସହିତ ଅପରିଚିତ ପରବର୍ତ୍ତୀ ଲିପିକାର ହୁଏତ ନିଜସ୍ୱ ଢ଼ାଞ୍ଚାରେ ଲେଖେ ଏବଂ ଏଇ ରୀତିରେ ଆଗକୁ ଆଗକୁ ନାନା ଗୋଳମାଳିଆ ପରିସ୍ଥିତି ଉପୁଜିଥାଏ । ଭବିଷ୍ୟତର ଐତିହାସିକ ପାଇଁ ସତ୍ୟ ଖୋଜି ପାଇବା କାଠିକର ପାଠ ହୁଏ ।

ଉପରୋକ୍ତ ମନ୍ତବ୍ୟ ବିଶ୍ୱାସଯୋଗ୍ୟ । ପ୍ରତି ଶହେ ବର୍ଷରେ ନୂତନ ପୋଥି ଲେଖା ହେଉଥିଲେ, ଆଲୋଚ୍ୟ ପୋଥି ସବୁ ଅନ୍ତତଃ ୫/୬ ଥର ଲେଖା ସରିଥିବ । ୫/୬ ଥର ପୁନର୍ଲିଖିତ ପୋଥିକଥା ଦୂରେ ଥାଉ, ଖୋଦ୍ ପଥର ଉପରେ ଲେଖାର ପାଠୋଦ୍ଧାରରେ ମଧ୍ୟ ନାନା ବିଭ୍ରାଟ ଦେଖା ଯାଉଛି । ନାଟମଣ୍ଡପ ଦ୍ୱିତୀୟ ପୃଷ୍ଠ ପୂର୍ବଦିଗର ଛୋଟ ପାହାଚର ଉତ୍ତର ଦିଗରେ ଜଣେ କୁବ୍‌ଜିଧାରୀ ମଣିଷର ମୂର୍ତ୍ତି ଅଛି ଯାହାର ନାମ, ପାଦତଳେ ଲେଖା ହୋଇଛି (ଫଟୋ ନଂ.୨ (କ ଓ ଖ) ଦେଖନ୍ତୁ) ।



ଫଟୋ-୨ (ଖ) : ନାଟ୍ୟାଚାର୍ଯ୍ୟଙ୍କ ନାମ

ଐତିହାସିକ T. N. Ramachandran ଏହାକୁ ନାଟ୍ୟାଚାର୍ଯ୍ୟ 'ସୋମ୍ୟଶ୍ରୀ ଦତ୍ତ' କହୁଛନ୍ତି । କରୁଣାସାଗର ରାମଚନ୍ଦ୍ରନଙ୍କ ସହିତ ସହମତ ହୋଇ ମଧ୍ୟ ଶିଳାଲିପି ପାଠକରି କହିଛନ୍ତି 'ସୋମାଇବୈଷ୍ଣ(ଭ)'(୫୩) । ବାୟାଚକଡ଼ା ପତ୍ର ସଂଖ୍ୟା XI ୯ନଂ.ରେ ଲେଖାହେଲା ୨୩ ଜଣ ପଥୁରିଆଙ୍କୁ ରଙ୍ଗପୀଠର କେତେକ ଅଂଶ 'ସଦାନନ୍ଦ ଗୁପ୍ତ'ଙ୍କ ସୂଚନା ଅନୁଯାୟୀ ଗଢ଼ିବା ପାଇଁ ଠିକାରେ ୪୦ମାଢ଼ (ମାଢ଼ ୪ ତୋଳା ସ୍ୱର୍ଣ୍ଣ ସମାନ) ଅଗ୍ରୀମ ଦିଆଗଲା(୫୪)। ଫୁଟ୍‌ନୋଟ୍‌ରେ ବୋନର୍ କହିଛନ୍ତି, ପୀଠ ଉପରେ ଥିବା ନାଟ୍ୟାଚାର୍ଯ୍ୟଙ୍କ ନାମ 'ସୋମ ଗୁପ୍ତାଇ' କିନ୍ତୁ ବିଡ଼ା ନଂ.୧୨ରେ ଅଛି 'ସୋମଗୁପ୍ତ'(୫୫) । ଏପିଗ୍ରାଫିକ୍ ପ୍ରମାଣରେ ଯେତେବେଳେ ଏତେ ମତଭେଦ ସେତେବେଳେ ତାହାକୁ କାହିଁକି ଅଭ୍ରାନ୍ତ ବୋଲି ଧରାଯିବ !

ପୋଥି ଚାରିଟିର ଇଂରାଜୀ ଅନୁବାଦ ୨୦୮ ପୃଷ୍ଠାର । କିନ୍ତୁ ମୁଖବନ୍ଧ, ସ୍ୱୀକୃତି, ଦୀର୍ଘ ୫୨ ପୃଷ୍ଠାର ଭୂମିକା ଏବଂ ୭୪ ପୃଷ୍ଠାର ନାନା ତଥ୍ୟ ସମ୍ବଳିତ ଗ୍ରନ୍ଥଟି ୩୩୮ ପୃଷ୍ଠା ଗ୍ରାସ କରିଛି । ତାହା ସହିତ ଅଛି ୧୧୦ ଫଟୋଚିତ୍ର ।

ଏ ବିଶାଳ ଗ୍ରନ୍ଥରୁ ଗ୍ରନ୍ଥକାରମାନଙ୍କର ସ୍ପଷ୍ଟ ମତାମତ ଦୁଇଚାରି ଧାଡ଼ିରେ ଉପସ୍ଥାପିତ କରିବା ଅସମ୍ଭବ । ତେବେ ସେମାନଙ୍କର ସାମଗ୍ରିକ ମୂଲ୍ୟାୟନ ନିମ୍ନୋକ୍ତ ବାକ୍ୟଗୁଡ଼ିକରେ ଫୁଟି ଉଠିଛି ।

"The main interest of the text does not lie, as might be expected from a book of accounts, in figures and data .......... first of all, the text has obvious gaps and therefore does not present the entire expenditure. Secondly, the cyphers for the single items some times make doubtful reading. ......Lastly, the accounts kept during six years of preparatory work are not included." ( Introduction-xlii-para-2 )

"The main interest of the text lies in its human and social aspects, presenting as they do, a detailed chronicle of one of the greatest undertakings in the history of Indian Temple building. (Introduction-xlii-para-4)

"But the purely human side of this chronicle is perhaps still more fascinating. It is evident that the workmen were no simple mercenaries and still less slaves but were personally and emotionally involved in the creation of the temple. (Introduction-xlii-para-5).

"Yet, towering above all, as the inspirer and driving force behind this entire colosal enterprise was Maharaja Narasingh Dev-I" (Introduction-xlv-para-3)

ବର୍ତ୍ତମାନ ଜଣେ ସାଧାରଣ ପାଠକର ଦୃଷ୍ଟିକୋଣରୁ ଦେଖାଯାଉ, ଚୟନ କରାଯାଇଥିବା ଚାରିଟି ପୋଥିରେ କ'ଣ ଅଛି ଏବଂ ସେଥିରୁ କିଛି ଏ ପୁସ୍ତକକୁ ସାହାଯ୍ୟ କରିବ କି ?

**୧ । ପଦ୍ମକେଶର ଦେଉଳ :**

୨୫ ପୃଷ୍ଠାର ତାଳପତ୍ର ପୋଥିର ୩୦ ପୃଷ୍ଠା ଇଂରାଜୀ ଅନୁବାଦ । ଏଥିରେ ଅଛି ବୈଷୟିକ ବିଷୟବସ୍ତୁ, ଯାହା ଗବେଷକମାନେ ବିଭିନ୍ନ ସୂତ୍ରରୁ ଆହରଣ କରିଛନ୍ତି ଏବଂ ଏ ପୁସ୍ତକର ବିଭିନ୍ନ ସ୍ଥାନରେ ଆଲୋଚିତ ହୋଇଛି ।

ପୋଥିଟି ବାଙ୍କୁର ଗାଁର ଜଗନ୍ନାଥ ସାହୁ ଓ କରୁଣାକର ସାହୁ ନାମକ ଦୁଇଜଣ ଭିନ୍ନ ବ୍ୟକ୍ତିଙ୍କ ଘରମାନଙ୍କରୁ ମିଳିଛି ।

**୨ । ତ୍ରିକାଳ ମହାମାୟା ବିଧି :**

ଇଂରାଜୀରେ ଛ' ପୃଷ୍ଠା ମାତ୍ର । ମହାମାୟା (ମହାଗାୟତ୍ରୀ) ଦେବୀଙ୍କ ଦୈନିକ ତିନି ଥର ଆରାଧନା ବିଧି । ସଂସ୍କୃତ ଭାଷାରେ, କିନ୍ତୁ କରଣି ଅକ୍ଷରରେ ଲିଖିତ । ପୋଥିଟି ମିଳିଛି କୁରୁଜଙ୍ଗର ଜଗନ୍ନାଥ ତ୍ରିପାଠୀଙ୍କ ଗୃହରୁ ।

କୋଣାର୍କ ମନ୍ଦିର ପ୍ରତିଷ୍ଠିତ ହେବା ପରେ ପୁରାତନ ସୂର୍ଯ୍ୟ ମନ୍ଦିରରେ ମାୟାଦେବୀଙ୍କ ପ୍ରତିଷ୍ଠା ହୋଇ ଥାଇପାରେ ।

**୩ । ବାୟା ଚକଡ଼ା :**

ଇଂରାଜୀରେ ୧୩୩ ପୃଷ୍ଠା ସହିତ ୧୫ ପୃଷ୍ଠାର ସଂକ୍ଷିପ୍ତ ସାର । ଏଥିରେ ଅଛି ଟିକିନିଖି ବ୍ୟୟ ବିବରଣୀ ଏବଂ ନିର୍ମାଣ କାର୍ଯ୍ୟର ଇତିବୃତ୍ତ । ପୁରାତନ ଓଡ଼ିଆ ଭାଷାରେ ଲିଖିତ ଦୁଇଟି ପୋଥି ବିଡ଼ାରେ ବିଭକ୍ତ ।

୧ନମ୍ବର ବିଡ଼ା - I, III, XX, XXII, XLVII, XLIX ଏବଂ LXXI ରୁପ୍‌ସା ଗ୍ରାମର ଗଡ଼ଚଣ୍ଡୀ ଦେବୀଙ୍କ ମନ୍ଦିରରୁ ମିଳିଥିଲା ।

୨ ନମ୍ବର ବିଡ଼ା - II, XXI, XLVII ଏବଂ LXXII କିଲ୍ଲା ବୟାଳିଶବାଟିର ବ୍ରଜକିଶୋର ଭ୍ରମରବରଙ୍କ ସମ୍ପତ୍ତି, ଐରବଙ୍ଗ ମଠରୁ ମିଳିଲା ।

ଏ ପୋଥିଟି ବିଶେଷ ରୂପେ ଆଲୋଚିତ ହେବ ।

**୪ । ପଦ୍ମକେଶର ଦେଉଳ କର୍ମଙ୍ଗି :** ବିଡ଼ାସଂଖ୍ୟା - IV

ମନ୍ଦିରର ଆରାଧନା ବିଧି । ଇଂରାଜିରେ ୭ ପୃଷ୍ଠା ।

ଏ ପୋଥିର ପ୍ରାସଙ୍ଗିକତା ବର୍ତ୍ତମାନ ନାହିଁ ।

ବର୍ତ୍ତମାନ ବାୟା ଚକଡ଼ା ଆଲୋଚନା କରାଯାଉ । ନାମଟି ବ୍ୟୟ ଚକଡ଼ା ହେବା ଉଚିତ୍, ହୁଏତ ଇଂରାଜୀରେ 'Baya' ହୋଇଯାଇଛି । ଗ୍ରନ୍ଥର ୧୩୦ ପୃଷ୍ଠାରେ (୫) ଲେଖା ହେଲା Chief Accountant (Baya Karana) । ପରିଶିଷ୍ଟରେ ଦିଆଯାଇଥିବା ୪୦ଟି ତାଳପତ୍ରର ଫଟୋ ଚିତ୍ରରୁ ଏପରି କିଛି ଇଙ୍ଗିତ ମିଳୁ ନାହିଁ । ପୁରାତନ ତାଳପତ୍ରର ପାଠୋଦ୍ଧାର କରିବାର ବିଶେଷଜ୍ଞ ଅଛନ୍ତି । ଲେଖକର ସେ ବିଶେଷ ଜ୍ଞାନ ନାହିଁ । ବିଶେଷଜ୍ଞମାନେ ପଢ଼ି ଦେଖି ପାରନ୍ତି ।

ପତ୍ର ନମ୍ବର LXVIII ର ୧୨ ନମ୍ବର ଅନୁଚ୍ଛେଦରେ ହିସାବ ରକ୍ଷକ ଲେଖିଛନ୍ତି : "ଆଜି ମାଘ ଶୁକ୍ଳ ଏକାଦଶୀ ଅଷ୍ଟାଦଶ ଅଙ୍କରେ, ମୁଁ, ବିଦ୍ୟାଧର ପଟ୍ଟନାୟକ, ବ୍ୟୟ କର୍ମର ତିନି କିତା ଶେଷ କରୁଛି ।.....

ଏକକିତା ମହାଶ୍ରମଙ୍କ (ରାଜା ନରସିଂହ ଦେବ) ପାଇଁ (ପୁରୁଷୋତ୍ତମ ଗ୍ରନ୍ଥାଗାରରେ ରକ୍ଷିତ ହେବ); ଏକକିତା ପଦ୍ମକେଶର ମନ୍ଦିର ଗନ୍ତାଘର ପାଇଁ, ଏକକିତା ମୁଖ୍ୟ ତତ୍ତ୍ୱାବଧାରକ ରୁପ୍‌ସା ଦଳବେହେରାଙ୍କ ପାଇଁ ।[୧୭]

ଏ ଉଲ୍ଲେଖଟି କଥା କୁହାଯାଉଛି ଏଇଥି ପାଇଁ, ପୃଷ୍ଠା ୧୨୩ ର Foot Note ରେ ଗ୍ରନ୍ଥକାର ଲେଖିଛନ୍ତି, ବାୟାଚକଡ଼ାର ଦୁଇ ପୃଷ୍ଠା ଅଳ୍ପଦିନ ତଳେ ଜଗନ୍ନାଥ ମନ୍ଦିରର ଗନ୍ତାଘରରୁ ମିଳିଛି । ତାହା ଏ ପୋଥିର ଅନ୍ୟ ଏକ ନକଲ । ଦେଖାଯାଉଛି ୧୨୭ ପୃଷ୍ଠାରେ ଲିଖିତ ତିନିକିତା ନକଲ ମିଥ୍ୟା ନୁହେଁ । ବିଷୟଟି ଏଇଥି ପାଇଁ ଗୁରୁତ୍ୱପୂର୍ଣ୍ଣ ବାୟା ଚକଡ଼ାର ୧ନମ୍ବର ଏବଂ ୨ନମ୍ବର ବିଡ଼ା ଭିନ୍ନ ଭିନ୍ନ ସ୍ଥାନରୁ ଉଦ୍ଧାର କରାଯାଇଥିଲା । ସେ ଦୁଇଟି ବିଡ଼ାର ପତ୍ରରାଶି ମଧ୍ୟ ସ୍ୱୟଂସମ୍ପୂର୍ଣ୍ଣ ନୁହେଁ - କିଛି ୧ନମ୍ବର ବିଡ଼ାରେ, କିଛି ୨ ନମ୍ବର ବିଡ଼ାରେ ଅଛି, କିଛି ମିଳୁନାହିଁ । ବିଭିନ୍ନ ସ୍ଥାନରୁ ଏବଂ ବିଭିନ୍ନ ଲୋକଙ୍କ ପାଖରୁ ମିଳିଥିବାରୁ ଏ ଲେଖକ ମଧ୍ୟ ଷ୍ଟେଲା କର୍ମରୀଶ୍ ଏବଂ ବୋନର୍‌ଙ୍କ ସହିତ ସହମତ । ଭୁଲ୍‌ଭାଲ୍ ଥିଲେ ମଧ୍ୟ ପୋଥିଗୁଡ଼ିକ ସମ୍ପୂର୍ଣ୍ଣ fabricated ନୁହେଁ ।

ବର୍ତ୍ତମାନ ଅମେଳଗୁଡ଼ିକ ଦେଖାଯାଉ ।

ମୂଳ ଅସଙ୍ଗତି ଅଧିକାଂଶ ବ୍ୟୟ ସହିତ ତାରିଖ ବର୍ଷ ମାସ ନାହିଁ, ଯାହା ହିସାବ ରଖିବାର ପ୍ରଧାନ ଆୟୁଧ । ଅବଶ୍ୟ ସେ ସମୟରେ ହିସାବ ରକ୍ଷା କରିବାର ଅନ୍ୟ କୌଣସି ସରଳ ନିୟମ ଥିଲା କି ନାହିଁ ଜଣାପଡୁ ନାହିଁ । ବାୟା ଚକଡ଼ାକୁ ଗୋଟିଏ ହିସାବ ଖାତା ନ କହି Random diary କୁହାଯିବା ଉଚିତ୍ । ଏଥିରୁ ନିମ୍ନୋକ୍ତ ତଥ୍ୟଗୁଡ଼ିକ ମିଳୁଛି ।

୧ । କାର୍ଯ୍ୟର ଧାରାବାହିକ ବିବରଣୀ ।

୨ । କର୍ମୀ ନିୟୋଗ ।

୩ । ପୃଷ୍ଠପୋଷକ, ଅଧିକାରୀ ଓ କର୍ମଚାରୀମାନଙ୍କର ନାମ ଓ ଯୋଗସୂତ୍ର ।

୪ । ବହୁ ବୈଷୟିକ ବିଷୟ; ଯଥା- ପଥରର ବ୍ୟବହାର, ପରିବହନ, ଉତ୍ତୋଳନ, ଲୁହା ଢ଼ଳେଇ ଇତ୍ୟାଦି ।

୫ । ଠିକା କାମ ତଥା ନିତି କାମ, ଦୁଇ ପ୍ରଥାର ସମ୍ମିଶ୍ରଣ ।

୬ । କିଏ ଗଲା, ଆଇଲା, କିଏ କ'ଣ ଦେଲା ନେଲା ଇତ୍ୟାଦି ।

୭ । ଦେୟ ଏବଂ ବ୍ୟୟ ସବୁବେଳେ ଅର୍ଥ (ମାଢ଼) ଆକାରରେ ହେଉ ନଥିଲା । ଅନେକ ସମୟରେ ଖାଦ୍ୟ ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ବସ୍ତୁ ଆକାରରେ ମଧ୍ୟ ହେଉଥିଲା ।

ଯେଉଁ ସମୟର ଐତିହାସିକ ଶୂନ୍ୟତା ମଝିରେ ପଣ୍ଡିତମାନେ ଘାଣ୍ଟି ହେଉଛନ୍ତି, ସେଇ ସମୟର ଏତେ ନିଖୁଣ ତଥ୍ୟବହୁଳ ଉପସ୍ଥାପନା, ସନ୍ଦେହଜନକ ମନେ ହେବା ସ୍ୱାଭାବିକ । ସ୍ୱଜାତୀୟ କୀର୍ତ୍ତିର ଗୁଣଗାନ କରିବା ଉଚ୍ଛ୍ୱାସରେ କେତେକ ଲେଖକ ବାୟା ଚକଡ଼ାକୁ ଏପରି ଟେକାଟେକି କରିଛନ୍ତି ଯେ, ବାୟା ଚକଡ଼ା ସନ୍ଦେହ ଘେରକୁ ଆସିଯାଇଛି ।

ଧର୍ମପଦର ଆଖ୍ୟାନ ଧରାଯାଉ । ଆଜିକା ଆଖ୍ୟାନରୁ ମନେହେବ, ଧର୍ମପଦ ଗୋଟିଏ ବାଳକ ମାତ୍ର । (ବାର ବରଷର ବାଳୁତ ପୁଅ ସେ)[୫୭] ସେ ଗଳ୍ପରୁ ଆହୁରି ମଧ୍ୟ ମନେ ହେବ, ବାରଶହ ଶିଳ୍ପୀଙ୍କ ମନରେ ଭୟ ଥିଲା- ରାଜା ଧର୍ମପଦ କୀର୍ତ୍ତି କଥା ଜାଣି ପାରିଲେ ସେମାନଙ୍କ ମୁଣ୍ଡକାଟ ହୁକୁମ୍ ହେବ, ତେଣୁ ବିଶୁ ମହାରଣା (ବିଶ୍ୱନାଥ ମହାରଣା)ଙ୍କୁ କୁହାଗଲା ଧର୍ମପଦକୁ ତ୍ୟାଗ କରିବାକୁ । ଗୋଟିଏ ପାଠରେ ବିଶ୍ୱନାଥ ପୁତ୍ରକୁ ମନ୍ଦିର ଉପରୁ ଠେଲି ଦେଲେ, ଅନ୍ୟ ଗୋଟିଏ ପାଠରେ ଧର୍ମପଦ ମନ୍ଦିର ଉପରୁ ଜଳରେ ଝାସ ଦେଲା । କାବ୍ୟ ପାଇଁ ଭଲ କିନ୍ତୁ ଇତିହାସ ପାଇଁ ଅତିରଞ୍ଜିତ । ଧର୍ମପଦର ଯବନିକା ନାଟକୀୟ କରି ତୋଳିବା ପାଇଁ ମହାରାଜ ନରସିଂହ ଦେବଙ୍କୁ କରାଯାଇଛି ଅମାନବିକ ।

ପ୍ରଥମ କଥା ଧର୍ମପଦକୁ ମାତ୍ର ବାର ବର୍ଷ ହୋଇଥିଲା କିଏ କହୁଛି ? ବାର ବର୍ଷ ବୟସରେ କ'ଣ ପିଲାଏ ଯୁଦ୍ଧ ଯାତ୍ରା କରନ୍ତି ? ବାୟାଚକଡ଼ାରେ ଘଟଣାଗୁଡ଼ିକର ବିବରଣୀ ନିମ୍ନୋକ୍ତ ପ୍ରକାରରେ ଉପସ୍ଥାପିତ ହୋଇଛି ।

ଆଷାଢ଼ର ଦ୍ୱିତୀୟ ଦିନ ଯାଏ କଳସ ଠିକ୍ ରୂପେ ନ ବସି ପାରିବାରୁ ସୂତ୍ରଧର (ସଦାଶିବ ମହାପାତ୍ର ସାମନ୍ତରାୟ) ଚିଠି ଖଣ୍ଡିଏ ଜଉମୁଦ କରି ଧରାସିଂହଙ୍କ ନିକଟକୁ (ନରସିଂହ ଦେବ) ପଠାଇ ଦେଇ ପାଲିଙ୍କିରେ ବସି ଗ୍ରାମକୁ ଚାଲି ଗଲେ । ( Leaf- L-7 )[୫୮]

ବାଳଶ୍ରୀ (ମନ୍ତ୍ରୀ) ଗୋଟିଏ ପାଲିଙ୍କିରେ ସୂତ୍ରଧରଙ୍କ ଗ୍ରାମ ଦିହପାଟଣା ପଥୁରିଆପଡ଼ା ଗଲେ । ନାରାୟଣ ମହାପାତ୍ର, ଗଙ୍ଗୀ ମହାପାତ୍ର ଓ ଗଦାଧର ମହାପାତ୍ର (କାର୍ଯ୍ୟ ନିର୍ବାହୀ ସ୍ଥପତି) ହାତୀ ପିଠିରେ ତାଙ୍କ ସାଥିରେ ଗଲେ । ( Leaf-L-12 )[୫୯]

ସୂତ୍ରଧରଙ୍କ ପୁତ୍ର ଧର୍ମ ମହାପାତ୍ର ଯିଏ କକେଇ ନିଧି ମହାପାତ୍ରଙ୍କ ସହିତ ଦକ୍ଷିଣ ଖଣ୍ଡକୁ ଯାଇଥିଲେ, ସେଇ ସମୟରେ ଫେରି ଆସିଥିଲେ । ସେ ବାପାଙ୍କୁ ପଚାରିଲେ, 'କସା ଖପୁରି ନା ବସା ଖପୁରି ? ମୁଁ ଠିକ୍ କରି ଦେବି ।' ଏତକ କହି ହାତୀରେ ଚଢ଼ି ଗଙ୍ଗୀ ମହାପାତ୍ରଙ୍କ ସହିତ କାର୍ଯ୍ୟ କ୍ଷେତ୍ରକୁ ଚାଲିଗଲେ । ସେଠାରେ ସେ କାର୍ଯ୍ୟ କ୍ଷେତ୍ରରେ ଥିବା ସୂତ୍ରଧରଙ୍କ ଗୃହରେ ରହିଲେ । ତାଙ୍କ ପାଇଁ ଦୁଇଜଣ ସେବକ ନିୟୋଜିତ ହେଲେ । (L-13)- [୬୦] ।

ଏହାର ପର ପୃଷ୍ଠାରେ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଅଛି, କିପରି ଧର୍ମପଦ ଗୁଣାଗାର ( plan ) ଦେଖିଲେ । ଦେଉଳର ବିଭିନ୍ନ ମାପ ନେଲେ । ଗଙ୍ଗୀ ମହାପାତ୍ର ଓ ଅନ୍ୟାନ୍ୟ ପଥୁରିଆଙ୍କ ସହାୟତାରେ ଦୁଇ ଦିନ ଓ ରାତି ଲାଗି ଦେଉଳ ମୁଣ୍ଡରେ କିଛି ପରିବର୍ତ୍ତନ କଲେ ।

ଇତ୍ୟବସରରେ ମହାଶ୍ରମ(ନରସିଂହ ଦେବ)ଙ୍କ ଆଗମନ ପାଇଁ ତାଙ୍କ ଅସ୍ଥାୟୀ ଆବାସ ସଜଡ଼ା ଗଲା । (L1-3) । ଏହାର ଅର୍ଥ ଧର୍ମପଦର ଆଗମନ ଓ କାର୍ଯ୍ୟ ବିବରଣୀ ମହାରାଜା ମନ୍ତ୍ରୀଙ୍କ ନିକଟରୁ ପାଇ ସାରିଥିଲା ।

**( LI-10 )** - ତୃତୀୟ ରାତ୍ରିର ଶେଷ ଆଡକୁ ସୂତ୍ରଧର (ସେତେବେଳକୁ ଫେରି ଆସିଥିଲେ), ଗଙ୍ଗୀ ମହାପାତ୍ର ଓ ଧର୍ମ ମହାପାତ୍ର ମିଶି କଳସଟି ବସେଇ ଦେଲେ । ସହସ୍ର ମଲ୍ଲ (ରାଜାଙ୍କ ଭଗ୍ନୀପତି ଓ ପ୍ରଧାନ ସେନାପତି, ଯିଏ ରାଜାଙ୍କ ଅନୁପସ୍ଥିତିରେ କୋଣାର୍କ କାର୍ଯ୍ୟ ତଦାରଖି କରୁଥିଲେ) ଧର୍ମ ମହାପାତ୍ରଙ୍କୁ ୫ମାଢ଼ ଓ ହଳେ ପାଟ ଧୋତି ଦାନ ଦେଲେ[୬୧] ।

**( LI-11 )** - ଏଗରୁ ପଟିକ-କୁମ୍ଭକ (ଗୋଟେ ପ୍ରକାରର ବଳା) କଳସ ଦେହରେ ବସେଇବା ପାଇଁ ସୂତ୍ରଧର, ଗଙ୍ଗୀ ମହାପାତ୍ର ଓ ଧର୍ମ ମହାପାତ୍ର ପ୍ରତ୍ୟେକେ ୨ ମାଢ଼ ପାଇଲେ ।[୬୨]

**( LI-12)** - ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ରାଜଗୁରୁଙ୍କ ସହିତ ମହାଶ୍ରମ (ନରସିଂହଦେବ) ଆସି ପହଞ୍ଚିଲେ ।[୬୩] (ଲକ୍ଷ୍ୟ କରନ୍ତୁ ଧର୍ମ ମହାପାତ୍ର ସେ ଯାଏ କାର୍ଯ୍ୟ କ୍ଷେତ୍ରରେ ଥିଲେ)

**( LI-13 )** - ଶିଳ୍ପୀକୁଳର ସମ୍ମାନ ରକ୍ଷା କରିବାକୁ - ଯାହା ସୂତ୍ରଧରଙ୍କ ଇଜ୍ଜତ **(ista)** ପ୍ରଶ୍ନ ଥିଲା- ଧର୍ମପଦ ରାତ୍ରିର ତୃତୀୟ ପ୍ରହରରେ ହସ୍ତୀ ପୃଷ୍ଠରେ ଗ୍ରାମକୁ ଫେରି ଗଲେ । ମନ୍ତ୍ରୀ ବାଳଶ୍ରୀଙ୍କ ହୁକୁମରେ ଧର୍ମ ମହାପାତ୍ରଙ୍କୁ ୭୦ ମାଢ଼ ଦିଆଗଲା, କିନ୍ତୁ ଖାତାରେ ଲେଖାହେଲା ମୂଲିଆଙ୍କ ପାଉଣା ।[୬୩]

ଧର୍ମପଦର ଏପରି ପଳାୟନ ହୁଏତ କିଶୋର ସୁଲଭ ମାନସିକତା ଧରାଯାଇ ପାରେ ଅଥବା ହୁଏତ ଈର୍ଷାନ୍ୱିତ ଶିଳ୍ପୀମାନେ ତାକୁ ବିତାଡ଼ିତ କରିଥାଇ ପାରନ୍ତି । କିନ୍ତୁ ବାଳଶ୍ରୀ ଥାଉଥାଉ ୭୦ ମାଢ଼ ମୂଲିଆ ପାଉଣା ଦେଖାଗଲା କାହିଁକି ?

ମନ୍ଦିରର ଗୁରୁତ୍ୱପୂର୍ଣ୍ଣ ଅଂଶ ସ୍ଥାପନ ସମୟରେ ପୂଜାପାଠ ସହିତ ଭୋଜି ହେବାର ନୀତି ମଧ୍ୟ ପାଳିତ ହୋଇଥାଏ । ତାହା ମଧ୍ୟ ସାରାଦିନ ଧରି ହେଲା ଏଠାରେ ।[୬୪]

**(LII-9)** - ଅନୁଷ୍ଠାନ ପରେ ବଡ଼ ପାତ୍ରରେ ମିଷ୍ଟାନ୍ନ ପଠାଗଲା ଧର୍ମପଦ ଓ ସୂତ୍ରଧରଙ୍କ ପରିବାର ନିକଟକୁ ।[୬୫]

**(LII-10)** - ମହାଶ୍ରମ ଓ ରାଜଗୁରୁ ଚାରିଟି ହାତୀରେ ପୁରୀ ଫେରିଗଲେ ।[୬୫]

'ଲୋକେ ଜାଣିବେ ନି' ଥିଓରୀଟି ପରୀକ୍ଷା କରାଯାଉ । ସୂତ୍ରଧର ମନ୍ଦିର ମୁଣ୍ଡରୁ ଧର୍ମପଦକୁ ଠେଲିଦେଲେ ଅଥବା ଧର୍ମପଦ କୁଦି ପକାଇଲେ, କେଉଁଠିକୁ ? ଅବଶ୍ୟ ସମୁଦ୍ର ଭିତରକୁ । ସମୁଦ୍ର କେଉଁଠି ଥିଲା ? ନିଶ୍ଚୟ ବେଢ଼ା ଭିତରେ ନୁହେଁ । ଏପରିକି ବେଢ଼ା ଦେହକୁ ସମୁଦ୍ର ଲାଗିଥିଲେ ମଧ୍ୟ, ଗଗନ-ପଥରେ ଧର୍ମପଦକୁ ଅନ୍ତତଃ ୨୭୦ ଫୁଟ୍ ଲମ୍ଫ ଦେବାକୁ ପଡ଼ିଥିବ, ନଚେତ୍ ସୂତ୍ରଧର ସେତିକି ବଳଶାଳୀ ହେବା ପ୍ରୟୋଜନ ପୁଅକୁ ୨୭୦ ଫୁଟ ଫୋପାଡ଼ି ଏ ଅତ୍ୟାଶ୍ଚର୍ଯ୍ୟ କାର୍ଯ୍ୟ କରିବାକୁ । (୭ ନମ୍ବର ରେଖାଚିତ୍ର ଦେଖନ୍ତୁ) । ଏହା ସ୍ପଷ୍ଟତଃ ଅସମ୍ଭବ ।

ଯେବେ ହତ୍ୟା ଅଥବା ଆତ୍ମହତ୍ୟାର ଯୋଜନା ଥାଏ, ତେବେ ମଧ୍ୟ କାର୍ଯ୍ୟଟି ସହଜ ହେବନାହିଁ । ମନ୍ଦିରଟି ଯେତେ ସ୍ଥୂଳ ଏବଂ ତା' ଚାରି ପଟେ ନିସ ଦେଉଳ ତିନିଟି ଓ ଜଗମୋହନ ଯେପରି ଘେରି ରହିଛି ପୃଷ୍ଠ ଉପରେ ପଡ଼ିବାକୁ ଅନ୍ୟୂନ ୩୫ ଫୁଟ୍ ଲମ୍ଫ ଦେବା ପ୍ରୟୋଜନ । ପ୍ରଥମତଃ ଏହା ପୃଥିବୀର ଦୀର୍ଘତମ ଲମ୍ଫ ପ୍ରଦାନକାରୀ କ୍ଷମତାର ମଧ୍ୟ ବାହାରେ ଏବଂ ସମ୍ଭବ ହେଲେ ବି, ନୀରବରେ ପ୍ରସ୍ଥାନଟି ଘଟିବ ନାହିଁ । ହଟ୍ଟଗୋଳ କମ୍ ହେବ ନାହିଁ ।

''ରାଜା ଜାଣିଲେ ମୁଣ୍ଡ କାଟି ଦେବେ'' କଥାଟି ଆହୁରି ହାସ୍ୟକର । ନରସିଂହଦେବ ଖାଲି ବୀର ଯୋଦ୍ଧା ନ ଥିଲେ, ସେ ଥିଲେ ଜଣେ ସଫଳ ଶାସକ ମଧ୍ୟ, ରାଜ୍ୟ ଶାସନର ପ୍ରୟୋଜନରେ ଗୁପ୍ତଚରର ପ୍ରୟୋଜନ ସବୁଦିନ ଥିଲା । ନରସିଂହଦେବଙ୍କ ଗୁପ୍ତଚର କଥା ଏଇ ବାୟା ଚକଡ଼ାରୁ ମଧ୍ୟ ଜଣାପଡୁଛି । ସେ ନଜାଣି କିଛି ହେଉ ନଥିଲା ।

**XXXVI-6** - ପହଲି ପଟ୍ଟନାୟକ ନାମକ ଜଣେ ଗୁପ୍ତଚର ନିୟୋଜିତ ହୋଇଥିଲେ ରାତିରେ କ୍ୟାମ୍ପ ମଧ୍ୟରେ ହେଉଥିବା କଥା ଜଣାଇବାକୁ [୬୬] ।

**LXV-18** - ସୁଭଗୁପ୍ତ କଞ୍ଚୁକୀ (ମୁଖ୍ୟ ଗୁପ୍ତଚର) ଏବଂ ଛାଡ଼ ସିଂହ ଗୁପ୍ତଚର ୬ ମାଢ଼ ଓ ୧୧ ଭରଣ ପାଇଲେ ।[୬୭]

ଇତିହାସର ମଳିନ ପୃଷ୍ଠାରୁ ବର୍ତ୍ତମାନ ଧର୍ମପଦର ବୟସ ସ୍ଥିର କରିବାର ଚେଷ୍ଟା କରାଯାଉ । 'ବାରବର୍ଷ'ର ମୂଳରେ ସେଇ ଆଇନ୍-ଇ-ଆକବରୀ ସ୍ରଷ୍ଟା ଆବୁଲ୍ ଫଜଲ୍ ଯିଏ ଲୋକ ମୁହଁରୁ ଶୁଣି କୋଣାର୍କ ଇତିହାସ ଲେଖି ପକାଇଲେ ଏବଂ ଆହୁରି ଅନେକ ଅସମ୍ଭବ କଥା ଲେଖି ଗଲେ । ମନେହୁଏ ୧୨ ସଂଖ୍ୟାଟି ପ୍ରତି ତାଙ୍କର ଦୁର୍ବଳତା ଥିଲା- ୧୨ ବର୍ଷରେ ମନ୍ଦିର ନିର୍ମାଣ, ୧୨ ଶହ ଶିଳ୍ପୀ, ୧୨ ବର୍ଷର ରାଜସ୍ୱ । ସେଇ ରୀତିରେ ଆସିଛି ୧୨ ବର୍ଷର ବାଳୁତ ପୁଅ ଧରମା । ଲୋକଶ୍ରୁତି ଅନୁଯାୟୀ ମନ୍ଦିର ଗଢ଼ିବାକୁ ଯିବା ସମୟରେ ସୂତ୍ରଧରଙ୍କ ସ୍ତ୍ରୀ ସନ୍ତାନସମ୍ଭବା ଥିଲେ, ଯେହେତୁ କୋଣାର୍କ ଗଢ଼ିବାକୁ ୧୨ ବର୍ଷ ଲାଗି ଥିଲା ଏବଂ ତେଣୁ ଧର୍ମପଦର ବୟସ ସେତେବେଳେ ୧୨ । ପ୍ରାୟ ସବୁ ଐତିହାସିକଙ୍କ ମତ, ନରସିଂହଦେବ ସିଂହାସନ ଆରୋହଣର ୫ମ ଅଙ୍କରେ, ଅର୍ଥାତ୍ ୪ର୍ଥ ବର୍ଷରେ ମନ୍ଦିର ନିର୍ମାଣ ଭାର ସୂତ୍ରଧରଙ୍କ ହାତରେ

ଦେଇ ଯୁଦ୍ଧ କରିବାକୁ ବାହାରି ଗଲେ । ହୁଏତ ଭାର ଦେଇଗଲେ ସତ୍ୟ ହୋଇପାରେ ତେବେ ସେଇଦିନ ଯେ ନିଅଁ ଖୋଳା ଅର୍ଥାତ୍ ମନ୍ଦିର ତିଆରି ଆରମ୍ଭ ହେଲା, କିଏ କହିବ ? ଏହା ସାଧାରଣ ବୁଦ୍ଧିରେ ଗ୍ରହଣଯୋଗ୍ୟ ନୁହେଁ । ପୂର୍ବେ ବର୍ଣ୍ଣିତ ହୋଇଛି ନରସିଂହଦେବ ଯୁବରାଜ ଥିବା ସମୟରେ ଦକ୍ଷିଣକୁ ଯୁଦ୍ଧ କରିବାକୁ ଗଲେ ଏବଂ ଫେରି ଆସି ମାତୃ ଆଦେଶରେ କୋଣାର୍କ ଦେଉଳ ନିର୍ମାଣରେ ଲାଗିଗଲେ । ପରବର୍ଷ ଅର୍ଥାତ୍ ୧୨୩୮ ଖ୍ରୀଷ୍ଟାବ୍ଦରେ ସିଂହାସନ ଆରୋହଣ କରିଲେ । ମାଦଳାପାଞ୍ଜିମତେ ନିର୍ମାଣ କାର୍ଯ୍ୟ ଶେଷହୋଇ ବିଗ୍ରହ ପ୍ରତିଷ୍ଠା ହେଲା ୧୨୫୮ ମାଘ ଶୁକ୍ଳପକ୍ଷ ସପ୍ତମୀରେ । କାର୍ଯ୍ୟ ଆରମ୍ଭ ହେଲା ଷ୍ଟେଲା କର୍ମରୀଶ୍‌ଙ୍କ ମତରେ ୧୨୩୮ ଖ୍ରୀଷ୍ଟାବ୍ଦ ଏବଂ କରୁଣାସାଗରଙ୍କ ମତରେ ୧୨୪୦ ଖ୍ରୀଷ୍ଟାବ୍ଦ ଯାହା ପୂର୍ବରୁ ଆଲୋଚିତ ହୋଇଛି । ତେଣୁ, ମନ୍ଦିର ନିର୍ମାଣ କାର୍ଯ୍ୟ ୧୬ ଅଥବା ୧୮ ବର୍ଷ - ଦୁହେଁଯାକ ମାଦଳାପାଞ୍ଜିର ବିଭିନ୍ନ ଭାଷ୍ୟର ଦ୍ୱାହି ଦେଉଛନ୍ତି । ଧର୍ମପଦକୁ ୧୨ ବର୍ଷ ହେବ କିପରି ? ଅବଶ୍ୟ ଜଣେ ୧୬ ବର୍ଷର ତରୁଣ ଅଥବା ୧୮ ବର୍ଷର ନବ୍ୟ ଯୁବକ ପାଇଁ କାର୍ଯ୍ୟଟି ଅତି ପ୍ରଶଂସନୀୟ, ଭୁଲିଗଲେ ଚଳିବ ନାହିଁ ।

ବର୍ତ୍ତମାନ ଦେଖାଯାଉ, ବାୟା ଚକଡାରୁ କେବଳ ଜଣେ ରାଜା ନୁହେଁ, ମଣିଷ ହିସାବରେ ନରସିଂହ ଦେବଙ୍କ କେଉଁ ଚିତ୍ରଟି ଫୁଟି ଉଠୁଛି ।

ସିଂହାସନ ଆରୋହଣ ପୂର୍ବରୁ ଏବଂ ପରେ ନରସିଂହ ଦେବ ଦକ୍ଷିଣ ଓ ଉତ୍ତରରେ ବହୁବର୍ଷ ଯୁଦ୍ଧ କ୍ଷେତ୍ରରେ କଟେଇ ଥିଲେ, ତାହାର ବିସ୍ତୃତ ବିବରଣୀ ବାୟା ଚକଡାରେ ନାହିଁ କିନ୍ତୁ ବିଭିନ୍ନ ଟିପ୍ପଣୀରୁ ଜଣାପଡୁଛି । ଯୁଦ୍ଧ ବାହାରେ ପ୍ରାୟ ଅଧିକାଂଶ ସମୟ ସେ ଆସୁଥିଲେ କୋଣାର୍କ ନିର୍ମାଣ ସ୍ଥଳକୁ, ଯେଉଁଠାରେ ତାଙ୍କ ପାଇଁ ସ୍ୱତନ୍ତ୍ର ନିବାସ ତିଆରି ହୋଇଥିଲା । କର୍ମଚାରୀମାନଙ୍କୁ ଦାନ ଖଇରାତରେ କାର୍ପଣ୍ୟ ନଥିଲା । ରାଜା ଏବଂ ଶିଳ୍ପୀମାନଙ୍କ ମଧ୍ୟରେ ଗୋଟିଏ ସହଜ ବିଶ୍ୱାସର ସମ୍ପର୍କ ଗଢ଼ି ଉଠିଥିଲା । କେତୋଟି ଘଟଣା ଉପସ୍ଥାପନ କରାଯାଇପାରେ ।

ଅତି ସୂକ୍ଷ୍ମ କାର୍ଯ୍ୟ କରୁଥିବା ଶିଳ୍ପୀମାନଙ୍କର କିଛି କିଛି ଛୋଟ ନିଶା ଥାଏ- ପାନ ଇତ୍ୟାଦି । ରାଜାଙ୍କ ଆଦେଶରେ ସେମାନଙ୍କ ପାଇଁ ନିୟମିତ ପାନ ଯୋଗେଇ ଦେବାକୁ ନିର୍ଦ୍ଦିଷ୍ଟ ଲୋକ ନିୟୋଜିତ ହୋଇଥିଲେ । ( Leaf IX - 18 - New Light - P-64 ) ।

ମହାରାଜାଙ୍କ ଶ୍ୱଶୁରଘରୁ ଯେଉଁ ଶିଳ୍ପୀ ଆସିଥିଲେ, ସେମାନଙ୍କ କାମ ନାକଚ କରିଦେବାର ସାହସ ସୂତ୍ରଧର ପାଇଲେ କେଉଁଠାରୁ ? ମହାରାଜ ଏହାର ସମାଧାନ କିପରି କରିଲେ ତାହା ମଧ୍ୟ ପୂର୍ବରୁ ବର୍ଣ୍ଣିତ ହୋଇଛି । ଶିଳ୍ପୀ ଓ ମହାରାଜଙ୍କ ମଧ୍ୟରେ ସମ୍ପୂର୍ଣ୍ଣ ବୁଝାମଣା ନଥିଲେ ଏହା ସମ୍ଭବ ହୁଅନ୍ତା ନାହିଁ ।

ଘୋଡ଼ା ଗଢ଼ିବାରେ ବିଶେଷ ଦକ୍ଷ ଥିଲେ ନାରାୟଣ ମହାପାତ୍ର । ଥରେ ସମ୍ମୁଖର ସପ୍ତ ଅଶ୍ୱର ଅଧିଷ୍ଠାନ ନେଇ ମତ ବିରୋଧ ହେଲା ସୂତ୍ରଧରଙ୍କ ସହିତ । ନାରାୟଣଙ୍କ ଧାରଣା- ୩ ଓ ୪ ସମାନୁପାତିକ ନୁହେଁ, ତେଣୁ ଗୋଟିଏ ଅଶ୍ୱ ମଝିରେ ଥାଉ । ଉତ୍ତରଟି ଅବଶ୍ୟ ଜଣାଥିଲା ସୂତ୍ରଧରଙ୍କୁ ଏବଂ ମୁଖ୍ୟ ସ୍ଥପତି ଭାବେ ସେ ଆଦେଶ ଦେଇ ପାରିଥା'ନ୍ତେ ଏ ସହଜ ବିଷୟରେ । ସେ କିନ୍ତୁ ଖଣ୍ଡିଏ ପତ୍ର ଲେଖିଦେଲେ ମହାରାଜଙ୍କୁ ଏବଂ ଉତ୍ତର ମଧ୍ୟ ଆସିଗଲା ତତ୍‌କ୍ଷଣାତ୍ । ଘୋଡ଼ା, ଯିବା ଆସିବା ବାଟ ମଝିରେ ପଡ଼ିବ, ଏଇଟା କିପରି ହେବ ? ସୂତ୍ରଧର ତତ୍‌କ୍ଷଣାତ୍ ନାରାୟଣ ମହାପାତ୍ରଙ୍କୁ ୨ ପାନ କଉଡ଼ି ଜୋରିମାନା କରି ସେ ସାମାନ୍ୟ ଅର୍ଥ ଗନ୍ତାଘରେ ଜମା କରି ଦେଲେ ( Leaf XXXVII-16, Leaf XXXVIII-4) ଅଥଚ ଯେଉଁ ପାଇକ ଚିଠି ନେଇ ଯାଇଥିଲା ତାହାର ଖର୍ଚ୍ଚ ଥିଲା ୭ ଗଉଣି । ( New Light - P-121-22 )

କ୍ୟାମ୍ପ୍‌ରେ କିନ୍ତୁ ନିୟମାନୁବର୍ତ୍ତିତାର ଅଭାବ ନଥିଲା, ଯାହା ମହାରାଜା ମଧ୍ୟ ମାନୁଥିଲେ । ବଙ୍ଗଦେଶର ମୁସଲମାନମାନଙ୍କୁ ଆକ୍ରମଣ କରି ମହାରାଜ ଚାରିଟି ହାତୀ ପିଠିରେ ବୋଝେଇ କରି ପ୍ରଚୁର ଧନରତ୍ନ ଆଣି କୋଣାର୍କ ଗନ୍ତାଘର ନିକଟରେ ପହଞ୍ଚିଲେ ମଧ୍ୟରାତ୍ରିରେ । ଗନ୍ତାଘର ବନ୍ଦ ଥିଲା । ରାଜା ଖୋଲିବାକୁ ଆଦେଶ ଦେଲେ ନାହିଁ । ସକାଳେ ଗନ୍ତାଘର ଖୋଲା ହେବା ପରେ ବସ୍ତୁଗୁଡ଼ିକ ଗ୍ରହଣ କରି ହିସାବ ରଖାଗଲା । ( Leaf XXXV-9-New Light, P-116 )

ଜ୍ଞାନୀଗୁଣୀମାନେ କୋଣାର୍କ ନିର୍ମାଣ ସମୟରେ ମଧ୍ୟ ଜଗନ୍ନାଥ ଦର୍ଶନକୁ ଆସି କୋଣାର୍କ ଆସୁଥିଲେ । ମହାରାଜଙ୍କ ଆଦେଶରେ ସେମାନଙ୍କ ଯଥାଯୋଗ୍ୟ ଚର୍ଚ୍ଚା ହେଉଥିଲା ଏବଂ ସେମାନେ ଫେରିଯିବା ପୂର୍ବରୁ ମହାରାଜ ନିଜେ ସେମାନଙ୍କ ମତାମତ ଓ ଉପଦେଶ ଶୁଣୁଥିଲେ । ଏଇ ରୀତିରେ ନରସିଂହ ଦେବ ନାନା ଦେଶ ଓ ନାନା ବିଷୟରେ ପ୍ରଚୁର ଜ୍ଞାନ ଆହରଣ କରିଥିଲେ ।

କେତେକ ଐତିହାସିକ ଅଭିଯୋଗ କରି ଥାଆନ୍ତି- ନରସିଂହ ଦେବ ନିର୍ମାଣ କାର୍ଯ୍ୟ ଶୀଘ୍ର ଶେଷ କରିବାକୁ ଉଚ୍ଛନ୍ନ ହୋଇ କାର୍ଯ୍ୟରେ ଗଲ୍‌ତି ରଖିଦେଲେ । ଉଦାହରଣ ସ୍ୱରୂପ ଗୋଟିଏ ମୁଦ, ସମୟ ହେବା ପୂର୍ବରୁ ବନ୍ଦ କରିବାର ଆଦେଶ ଦେବା କଥା ସେମାନେ କହି ଥାଆନ୍ତି । ସିଲିଂ ବନ୍ଦ ହେବାର ଥିଲା ବୈଶାଖରେ । କିନ୍ତୁ ମହାରାଜା ଏହାକୁ ଆଗେଇ ଦେଲେ ଚୈତ୍ରକୁ ( Leaf XXI-11 ) । ଯେଉଁମାନେ ଭାବି ଥାଆନ୍ତି ଏହାଦ୍ୱାରା ଛାତ ଦୁର୍ବଳ ହୋଇଗଲା, ସେମାନେ ଏ ଯୁଗର R.C.C. ଛାତର Curing ସମୟ କଥା ଭାବି କହି ଥାଆନ୍ତି । ଏଠାରେ ଆଦୌ ସିମେଣ୍ଟର ବ୍ୟବହାର ନାହିଁ, ଲୁହା କଡ଼ି ପଡି ତାହା ଉପରେ ପୂର୍ବରୁ ଖୋଦିତ ଚନ୍ଦ୍ରାତପ ଶୀଳା ସଜେଇ ଦିଆଯାଏ । କାର୍ଯ୍ୟ ହୁଏ ଏପରି

ଭାବରେ, କଡି ଦିଶେ ନାହିଁ, ପ୍ରସ୍ତର ଖଣ୍ଡ ଦେହକୁ ଦେହ ଠେଲା ଠେଲି ହୋଇ ଭାରସାମ୍ୟ ରଖେ ଓ ତମ୍ବା ଚାପୁଣିଦ୍ୱାରା ମଧ୍ୟ ରହିଥାଏ । ସେଇ XXI ର ପୂର୍ବବର୍ତ୍ତୀ ୫ ଠାରୁ ୧୦ ନମ୍ବର ଉଲ୍ଲେଖରୁ ଜଣାପଡୁଛି, ଚନ୍ଦ୍ରାତପ ଗଢ଼ିବା ଛଡ଼ା ଅନ୍ୟାନ୍ୟ ବସ୍ତୁ ମିଳିଯାଇ ଥିଲା । ପ୍ରୟୋଜନ ଥିଲା ଅଧିକ ଶିଳ୍ପୀଙ୍କ । ମହାରାଜ ଭୁବନେଶ୍ୱରରୁ ଦଶଜଣ ଶିଳ୍ପୀ ଯୋଗାଡ଼ କରିଦେଲେ । ଏକାମ୍ର କଟକରୁ ଆସିଥିବା ଶିଳ୍ପୀମାନେ ଯୋଜନା ଅନୁଯାୟୀ କାର୍ଯ୍ୟ ଶେଷ କରିଦେଲେ ।

ବରଂ ବେକୀ ତିଆରି ବେଳେ ବାରେ ବାରେ ବିଫଳତା ଆସିଛି । ମହାରାଜ ଥରେ ହେଲେ ହସ୍ତକ୍ଷେପ କରି ନାହାନ୍ତି । ସାତଜଣ ପଥୁରିଆ ୧୨ଦିନ କାର୍ଯ୍ୟ କରି ବିଫଳ ହେଲେ । ସଫଳତା ପଛରେ ଆତ୍ମପ୍ରତ୍ୟୟ, ଦଳଗତ ନିଷ୍ଠା ଏବଂ ସ୍ୱ-ଆରୋପିତ ଦଣ୍ଡ କିପରି କାର୍ଯ୍ୟ କରିଥିଲା ତାହାର ବିବରଣୀ ମିଳୁଛି । ଶେଷରେ ଗଦାଧର ବେକୀ ନିର୍ମାଣ କରିଦେଲେ ଏବଂ ନିଧି ମହାରଣା ଯିଏ କାର୍ଯ୍ୟଟି ପାଇଁ ପୂର୍ବରୁ ୨ ମାଢ଼ ପାଇଥିଲେ ତାହା ଗଦାଧରକୁ ଫେରାଇ ଦେଲେ । ( XXXVI-9-N.L.-P.118 )। ଏପରି ନିଷ୍ଠା ଏ ଯୁଗରେ ବିରଳ ।

ବର୍ଷ ବର୍ଷ ବିତି ଯାଉଛି, ମହାରାଜ ଉଛନ୍ନ ହେବା ସ୍ୱାଭାବିକ । ସେ ବୈଶାଖ ୨୬ ଦିନ ଶିଳ୍ପୀମାନଙ୍କୁ ଗୋଟିଏ ଆଦେଶ ଶୁଣେଇଲେ । 'ବର୍ତ୍ତମାନ ନ' ବର୍ଷ ବିତି ଗଲାଣି ଏବଂ ତୁମେମାନେ ବହୁ ପରିଶ୍ରମ କରିଲଣି, କିନ୍ତୁ ଏ ଯାଏ ବେକୀ କାମ ସରିଲା ନାହିଁ । ଦଶମ ବର୍ଷର ଦଶ ମାସ, ଦଶ ଦିନରେ ଗର୍ଭମୁଦ ଶେଷ ହେବା ଉଚିତ୍ । ଏ ସମୟ ସୀମା ଯେପରି ଅତିକ୍ରାନ୍ତ ନ ହୁଏ । ଅନ୍ୟାନ୍ୟ କାର୍ଯ୍ୟ ବିଷୟରେ ମୁଁ କିଛି କହିବାକୁ ଚାହେଁନା ।' ( Leaf XXXIX-8-N.L.-P-124 )

ଏହା ତ ରାଜାଦେଶ ନୁହେଁ ରାଜ ଅନୁରୋଧ । ଏଠାରେ ମଧ୍ୟ ସ୍ପର୍ଶକାତର ଶିଳ୍ପୀ ପରିଚାଳନା କରିବାରେ ରାଜାଙ୍କ ସଂଯମ ଓ ବ୍ୟକ୍ତିତ୍ୱ ଲକ୍ଷଣୀୟ । ଏ ଆଦେଶରେ ଗୋଟିଏ ସୂକ୍ଷ୍ମ ରସିକତା ମଧ୍ୟ ପ୍ରଚ୍ଛନ୍ନ ଅଛି । ଫୁଟ୍‌ନୋଟରେ ବୋନର୍ କହୁଛନ୍ତି ଦଶମାସ ଦଶଦିନ ଗର୍ଭଧାରଣର ସମୟକୁ ସୂଚିତ କରୁଛି ।

ମନ୍ଦିର ନିର୍ମାଣର ଶେଷ ଅଙ୍କର ଗୋଟିଏ ଘଟଣା । ମୁଣ୍ଡି ମାରିବାରେ ବିଫଳ ସୂତ୍ରଧର, ସିଲ୍‌କରା ଚିଠି ଖଣ୍ଡିଏ ମହାରାଜାଙ୍କୁ ପଠେଇ ଦେଇ ନିଜେ ଚାଲିଗଲେ ଗ୍ରାମକୁ । ବିବରଣୀ ଅନୁଯାୟୀ ଏକମାତ୍ର କଳସ ବସେଇବା କାମ ବନ୍ଦ ରଖି ଅନ୍ୟାନ୍ୟ କାର୍ଯ୍ୟ ବିଧିବଦ୍ଧ ଭାବେ ଚାଲିଲା । ସୂତ୍ରଧରଙ୍କ ଲୋକେ ଭରସା ଛାଡ଼ି ନଥିଲେ ।

ବାଳଶ୍ରୀ ପାଲିଙ୍କି କରି ସୂତ୍ରଧରଙ୍କ ଘରକୁ ଚାଲିଲେ । ଘୋଡ଼ା ଉପାଖ୍ୟାନର ନାରାୟଣ ମହାପାତ୍ର, ଗଙ୍ଗୀ ମହାପାତ୍ର ଓ ଗଦାଧର ମହାପାତ୍ର ମଧ୍ୟ ସାଙ୍ଗରେ ଗଲେ । ଏ କାର୍ଯ୍ୟ କାହା ଆଦେଶରେ ହେଲା ? ମନେ ରଖିବାକୁ ହେବ ବାଳଶ୍ରୀ ନରସିଂହଦେବଙ୍କର ପ୍ରଧାନମନ୍ତ୍ରୀ ।

ଧର୍ମ ମହାପାତ୍ରର ଅନୁପ୍ରବେଶ ହେଲା, ସୂତ୍ରଧର ଫେରି ଆସିଲେ, କଳସ ବସିଗଲା । ମହାରାଜ ନିଶ୍ଚୟ ସମସ୍ତ ଖବର ରଖିଲେ । ପରଦିନ ରାଜପୁରୋହିତଙ୍କ ସହିତ ମହାରାଜ କାର୍ଯ୍ୟ କ୍ଷେତ୍ରକୁ ଆସିଲେ । ଧର୍ମୀୟ ବିଧି ବିଧାନ ମଧ୍ୟ ଶେଷ ହେଲା କିନ୍ତୁ କୌଣସି ଆଚରଣରେ ଶିଳ୍ପୀକୁଳ ପ୍ରତି ତାଚ୍ଛଲ୍ୟ ଅଥବା ଅସୂୟା ପ୍ରକାଶ ପାଇଲା ନାହିଁ ।

ଏପରି ବିରାଟ ମଣିଷ କ'ଣ ହଠାତ୍ ରୋଷବଶରୁ ତାଙ୍କର ପ୍ରିୟ ଶିଳ୍ପୀମାନଙ୍କର ମୁଣ୍ଡ କାଟି ପକାନ୍ତେ !!

ମନେ ହୁଏ ଧର୍ମ ମହାପାତ୍ର ପ୍ରସଙ୍ଗ କଳସ ସ୍ଥାପନ ସହିତ ଶେଷ ହୋଇ ନଥିଲା । ଅନ୍ତତଃ ଆହୁରି ଦୁଇଟି ଉଲ୍ଲେଖ ମିଳୁଛି ବାୟା ଚକଡ଼ାରୁ । ପତ୍ର ସଂଖ୍ୟା LIII(2) ରୁ ଜଣାପଡୁଛି ମହାଭାସ୍କର ମୂର୍ତ୍ତି ସେ ଯାଏ ତିଆରି ହୋଇ ନଥିଲା । ସୂତ୍ରଧର ପ୍ରଥମେ ଭାବିଥିଲେ ନୀଳ ମୁଗୁନିରେ କରିବେ କିନ୍ତୁ ପରେ ମତ ପରିବର୍ତ୍ତନ କରିଥିଲେ । ସେ ମୂର୍ତ୍ତିର କିଛି ଅଂଶର ମୋଟାମୋଟି କାମରେ ଗଗନ ମହାପାତ୍ର ଓ ଧର୍ମ ମହାପାତ୍ର ନିୟୋଜିତ ହୋଇଥିଲେ । ( Leaf LIII-4 ) । ସେଇ ପତ୍ରର ୭ ନମ୍ବରରେ ଦିଶୁଛି ଧର୍ମ ମହାପାତ୍ର କିଛି ତମ୍ବା ପଟି ଆଣି କୁମ୍ବକ ପଥରରେ ଲଗେଇ ଥିଲେ । ମନେ ହୁଏ କଳସ ବସି ସାରିବା ପରେ ମଧ୍ୟ କାର୍ଯ୍ୟଟି ଆହୁରି ମଜବୁତ୍ କରିବାକୁ ଚିନ୍ତା କରିଥିଲେ ଧର୍ମ ମହାପାତ୍ର ।[୬୮]

ମନ୍ଦିର ଗାତ୍ରରେ କାମୋଦ୍ଦୀପକ ଚିତ୍ରର ଆଧିକ୍ୟ ଦେଖି ଯେ କେହି ଭାବିପାରନ୍ତି, ସେତେବେଳେ ସମାଜ ଅନେକ ଖୋଲା, ଅନେକ ସହନଶୀଳ ଥିଲା । କିନ୍ତୁ ଗୋଟିଏ ଘଟଣାରୁ ମନେହୁଏ, ବିବାହ ବନ୍ଧନ ବାହାରେ କାମକଳାର ଚର୍ଚ୍ଚା ସମାଜ ସହୁ ନଥିଲା ।

ସୁନି ନାମ୍ନୀ ଜଣେ ରେଜା ମୂଲିଆଣୀକୁ ସୋମନାଥ ନାମକ ଜଣେ ପଥର କଟାଳି ଗର୍ଭବତୀ କରିଦେଲା ଏବଂ ଦୁହେଁ କ୍ୟାମ୍ପ ଛାଡ଼ି ପଳେଇ ଗଲେ । ବାନୁ ନାମକ ଜଣେ କଟୁଆଳକୁ ପଠାଗଲା ସେମାନଙ୍କୁ ଧରି ଆଣିବାକୁ । ସୋମନାଥ, ସୁନିର ଭରଣ ପୋଷଣ ସାରାଜୀବନ ବହନ କରିବାକୁ ଅଙ୍ଗୀକାରବଦ୍ଧ ହେବା ପରେ (ବିବାହ ?) ସେମାନଙ୍କର ପୁନର୍ବାସ ହେଲା ଏବଂ ଦୁହିଁଙ୍କୁ ପୂର୍ବଭଳି କାମ ମିଳିଲା । ( Leaf XXIV-6-N.L.-P.94)

ଯୋଡ଼ିଏ ବିଷୟରେ କିନ୍ତୁ ବାୟା ଚକଡ଼ା ସ୍ପଷ୍ଟତଃ ବିବାଦୀୟ । ତଥାକଥିତ ମାୟାଦେବୀ ମନ୍ଦିର ବଡ଼ କୋଣାର୍କ ଦେଉଳ ଗଢ଼ା ହେବାର ବହୁ ପୂର୍ବରୁ ଏବଂ ନାଟମଣ୍ଡପ, ପରେ ଗଢ଼ା ହେବାର ବହୁ ପ୍ରମାଣ ମିଳୁଛି । ବାୟାଚକଡ଼ାରେ ଥିବା ବିଭିନ୍ନ ଉଲ୍ଲେଖରୁ କିନ୍ତୁ ମନେ ହେଉଛି ଏ ଦୁଇଟି ମଧ୍ୟ ବଡ଼ ମନ୍ଦିର ସହିତ ଗଢ଼ା ହୋଇଥିଲା ।

## ସୂର୍ଯ୍ୟ ଆରାଧନା ଓ କୋଣାର୍କ :

ଜଙ୍ଗଲର ଜୀବ ସବୁଠାରୁ ଅଧିକ ଭୟ କରେ ଅଗ୍ନିକୁ । ବିବର୍ତ୍ତନ ଫଳରେ ମଣିଷ ଯେତେବେଳେ ଚତୁଷ୍ପଦରୁ ଦ୍ୱିପଦକୁ ଉତ୍ତୀର୍ଣ୍ଣ ହେଉଛି ସେତେବେଳେ ଅଗ୍ନିର ଭୟଟି ମଧ୍ୟ ସଙ୍ଗରେ ଆଣୁଛି । କ୍ରମେ ଅଗ୍ନି ପ୍ରତି ସମ୍ମାନ, ସୂର୍ଯ୍ୟ ଆରାଧନାରେ ରୂପାନ୍ତରିତ ହେଲା, ମଣିଷ ବୁଝି ପାରିଲା ସୌର ଶକ୍ତି ବିନା ଜୀବନ ହିଁ ସମ୍ଭବ ନୁହେଁ । ଋଗ୍‌ବେଦ ବେଳରୁ ଉଚ୍ଚାରିତ ହେଉଛି;

"ଆଦି ଦେବ ନମସ୍ତୁତ୍ୟମ୍ ।

ଦିବାକର ନମସ୍ତୁତ୍ୟମ୍ ।

ପ୍ରଭାକର ନମସ୍ତୁତ୍ୟମ୍ ।"

କ୍ରମେ ମନ୍ଦିର ଗଢ଼ି ସୂର୍ଯ୍ୟ ପୂଜାର ରୀତି ବହୁ ଦେଶରେ ପ୍ରଚଳିତ ହେଲା । କିଛି ପୁରାତନ ଓ ମଧ୍ୟଯୁଗୀୟ ସୂର୍ଯ୍ୟପୀଠର ନାମ ନିମ୍ନରେ ପ୍ରଦତ୍ତ ହେଲା ।

*୦୧ । ଦକ୍ଷିଣ ଆମେରିକାରେ କଲୋନୀ ସ୍ଥାପନ ପୂର୍ବେ ମାୟା ସଭ୍ୟତା

*୦୨ । ମେସୋଆମେରିକାନ୍ ସୂର୍ଯ୍ୟ ମନ୍ଦିର

*୦୩ । ନୁଇସେରିର ସୂର୍ଯ୍ୟ ମନ୍ଦିର

*୦୪ । ଆବୁଘୁରେବ୍‌ର ସୂର୍ଯ୍ୟ ମନ୍ଦିର

*୦୫ । ମେକ୍ଷୋ ଭେର୍ଦା ସୂର୍ଯ୍ୟ ମନ୍ଦିର

*୦୬ । ମିଶରର ପ୍ରସିଦ୍ଧ ଆବୁ ସିମ୍ବଲ

*୦୭ । ମିଶରର କର୍ଣ୍ଣକ୍ ସୂର୍ଯ୍ୟ ମନ୍ଦିର

*୦୮ । ମୁଲତାନର (ବର୍ତ୍ତମାନ ପାକିସ୍ଥାନ) ସୂର୍ଯ୍ୟ ମନ୍ଦିର

*୦୯ । ଦକ୍ଷିଣାର୍କ, ଗୟା- ମଗଧବଂଶୀୟ

*୧୦ । ସୂର୍ଯ୍ୟନ୍ୟାର କୋଇଲ୍ - ୮୦୦ ବର୍ଷ ପୁରାତନ - କୁମ୍ଭକୋଣମ୍, ତାମିଲନାଡୁ

*୧୧ । ସୂର୍ଯ୍ୟନାରାୟଣ ମନ୍ଦିର - ସପ୍ତମ ଶତାବ୍ଦୀ, ଶ୍ରୀକାକୁଲମ୍ ନିକଟସ୍ଥ ଆୟସାଭଲ୍ଲି

*୧୨ । ସୂର୍ଯ୍ୟ ପହର, ଗୋଆଲପାଡ଼ା, ଆସାମ

*୧୩ । ବ୍ରାହ୍ମଣ୍ୟଦେବ (ବରମାଜୁ) - ଉନାଓ, ଝାନ୍‌ସି, ମଧ୍ୟପ୍ରଦେଶ

*୧୪ । ସୂର୍ଯ୍ୟ ମନ୍ଦିର, ମୋଧେରା, ଗୁଜୁରାଟ ୧୦୨୬ ଖ୍ରୀଷ୍ଟାବ୍ଦ

୧୫ । ଖଜୁରାହୋ ମନ୍ଦିର ଗୋଷ୍ଠୀ ମଧ୍ୟସ୍ଥ ସୂର୍ଯ୍ୟ ମନ୍ଦିର । ମଧ୍ୟପ୍ରଦେଶ ।

୧୬ । ମାର୍ତ୍ତଣ୍ଡ, କାଶ୍ମୀର, ୭୨୪-୭୨୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଲଳିତାଦିତ୍ୟଙ୍କ ଦ୍ୱାରା ସ୍ଥାପିତ ।

(ତାରା (*) ଚିହ୍ନିତ ମନ୍ଦିରଗୁଡ଼ିକର ବିବରଣୀ ଇଣ୍ଟରନେଟ୍‌ରୁ ସଂଗୃହୀତ ।)

ପ୍ରସିଦ୍ଧ କୋଣାର୍କ ମନ୍ଦିର ନିର୍ମାଣ ପୂର୍ବରୁ ମଧ୍ୟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସୂର୍ଯ୍ୟ ପୂଜାର ପ୍ରଚଳନ ଥିଲା । ଯଥାଃ (୧) ଖଣ୍ଡିବେଧ - ସୋରୋ, ବାଲେଶ୍ୱର, (୨) ସାଲେଭାଟା, ବଲାଙ୍ଗିର, (୩) ସତ୍ୟ ମାର୍ତ୍ତଣ୍ଡ ଦେବ, ସୋନପୁର । ସୋମେଶ୍ୱର ଦେବ ବର୍ମନ - III ଦକ୍ଷିଣ କୋଶଳ - ମହଦ ତମ୍ବାପଟ୍ଟା ।[୨୯] ଗଙ୍ଗ ବଂଶ ଓଡ଼ିଶାରେ ରାଜଧାନୀ ସ୍ଥାପନ କରିବା ପୂର୍ବରୁ ମଧ୍ୟ ସୂର୍ଯ୍ୟ ପୂଜକ ଥିଲେ । ଶ୍ରୀକାକୁଲମ୍ ନିକଟସ୍ଥ ସୂର୍ଯ୍ୟନାରାୟଣ

ମନ୍ଦିର ଜଣେ କଳିଙ୍ଗ ନରପତିଙ୍କ ସୃଷ୍ଟି । ଗଙ୍ଗ ବଂଶର ବହୁ ନରପତିଙ୍କ ନାମ ସୂର୍ଯ୍ୟଙ୍କର କୌଣସି କୌଣସି ନାମରେ ନାମିତ, ଯଥା : ଭାନୁଚନ୍ଦ୍ର, ପ୍ରଭାକର, ଆଦିତ୍ୟ ଦେବ, ଉଦୟାଦିତ୍ୟ, ଦିବାକର ଶର୍ମା, ରବି ଶର୍ମନ୍, ଭାନୁ ଶର୍ମନ୍ ପ୍ରଭୃତି । ଏକାଦଶ ଶତାବ୍ଦୀର ବଜ୍ର-ହସ୍ତ ଦେବ ଜଣେ ପ୍ରବଳ ମାର୍ତ୍ତଣ୍ଡ ଭକ୍ତ ଥିଲେ । ନଗରୀ ତମ୍ବାପଟ୍ଟା ଅନୁଯାୟୀ ତୃତୀୟ ଅନଙ୍ଗଭୀମଦେବ ପାଞ୍ଚ ବାଟୀ ଜମି ଦାନ କରିଥିଲେ ।[୭୦] ମାଦଳାପାଞ୍ଜିମତେ ଅନଙ୍ଗଭୀମ ଦେବଙ୍କ ପୂର୍ବବର୍ତ୍ତୀ ରାଜାମାନେ ସୂର୍ଯ୍ୟଦେବଙ୍କ ଭୋଗ ପାଇଁ ୪୨,୫୦୦ କାହାଣ କଉଡ଼ି ବାର୍ଷିକ ବ୍ୟୟ କରୁଥିଲେ । ଅନଙ୍ଗଭୀମ ସେଥିରେ ଆହୁରି ୩୦,୦୦୦ କାହାଣ କଉଡ଼ି ଯୋଗ କରି ବରାଦ ବଢ଼ାଇ ଦେଲେ ।[୭୧] ଏହା ଅବଶ୍ୟ ଚାରିକ୍ଷେତ୍ର ମଧ୍ୟରେ ପଦ୍ମକ୍ଷେତ୍ରରେ ଥିବା ପୁରାତନ ସୂର୍ଯ୍ୟ ମନ୍ଦିର ପାଇଁ ଉଦ୍ଦିଷ୍ଟ ଥିଲା । ଲାଙ୍ଗୁଳା ନରସିଂହଦେବ ନିଜ ପୁତ୍ରର ନାମ ଭାନୁଦେବ ରଖିଥିଲେ । କୋଣାର୍କଠାରେ ସୂର୍ଯ୍ୟ ପୂଜାର ପ୍ରଚଳନ କେବେ ଠାରୁ, ତାହା ନେଇ ମତ ବିରୋଧ ଅଛି କିନ୍ତୁ ଉପରୋକ୍ତ ତଥ୍ୟରୁ ପରିଷ୍କାର ଜଣାପଡ଼ୁଛି, ନରସିଂହଦେବଙ୍କ ବେଶ୍ କିଛି ପ୍ରଜନ୍ମ ପୂର୍ବରୁ ମଧ୍ୟ କୋଣାର୍କଠାରେ ସୂର୍ଯ୍ୟ ପୂଜାର ପ୍ରଚଳନ ଥିଲା ।

ସ୍ଥାନ ମାହାତ୍ମ୍ୟର ମୂଳ ଦାବିଦାର କୃଷ୍ଣଙ୍କ ପୁତ୍ର ଶାମ୍ବ । ପିତାଙ୍କ ଅଭିଶାପରେ ଶାମ୍ବ କୁଷ୍ଠ ରୋଗଗ୍ରସ୍ତ ହୋଇଗଲେ । ପୁଣି ତାଙ୍କରି ଆଦେଶରେ ମୈତ୍ରେୟ ବନରେ ୧୨ ବର୍ଷ ତପସ୍ୟା କରି ରୋଗମୁକ୍ତ ହେଲେ । ରୋଗ ମୁକ୍ତି ପରେ ଚନ୍ଦ୍ରଭାଗାର ସ୍ୱଚ୍ଛ ଜଳ ତଳୁ ପ୍ରାପ୍ତ ସୂର୍ଯ୍ୟ ବିଗ୍ରହଟିଏ ମନ୍ଦିର ଗଢ଼ି ସ୍ଥାପନ କଲେ ଏବଂ ସୌରଦେବଙ୍କ ପୂଜା ପାଇଁ କେତେ ଜଣ ମଗଦେଶୀୟ (ଭୈଷଜ-ବୈଦ୍ୟ) ବ୍ରାହ୍ମଣ ନିୟୋଜିତ କଲେ । ଏ ଉପାଖ୍ୟାନର ଉଲ୍ଲେଖ ଶାମ୍ବ ପୁରାଣ ଛଡ଼ା କପିଳ ସଂହିତାରେ ମଧ୍ୟ ମିଳୁଛି ।[୭୨] ଏ ଉପାଖ୍ୟାନ ଡଃ ରାଜେନ୍ଦ୍ରଲାଲ ମିତ୍ରଙ୍କ ଠାରୁ ଏ ଯୁଗର ଡଃ କରୁଣାସାଗର ବେହେରାଙ୍କ ପୁସ୍ତକରେ ମଧ୍ୟ ମିଳୁଛି ।[୭୩]

ଆଧୁନିକ ଐତିହାସିକମାନେ କିନ୍ତୁ ଶାମ୍ବ ପୁରାଣର ଐତିହାସିକ ମୂଲ୍ୟ ନେଇ ଘୋର ସନ୍ଦିହାନ । Dr. Von Stietencron ପାଦେ ଆଗେଇ ଯାଇ କହିଛନ୍ତି, ଶାମ୍ବ ପୁରାଣରେ ଯେଉଁ ଅଂଶ କୋଣାର୍କ ମନ୍ଦିର ସମ୍ବନ୍ଧୀୟ- ତାହା ନରସିଂହ ବଂଶର ପତନ ପରେ (୧୪୩୪/୩୫ ଖ୍ରୀ.ଅ.) ଯୋଡ଼ା ଯାଇଛି- "interopoleted chapter" ।[୭୪] ପୌରାଣିକ ତଥ୍ୟଗୁଡ଼ିକ ସପକ୍ଷରେ, ଅନ୍ୟାନ୍ୟ ପାରିପାର୍ଶ୍ୱିକ ପ୍ରମାଣ ନ ପାଇବା ଯାଏ ସେମାନେ ଏହା ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ପାରିପାର୍ଶ୍ୱିକ ପ୍ରମାଣ କ'ଣ ? ତମ୍ବାପଟ୍ଟା, ପ୍ରସ୍ତର ଲିପି, କାଗଜରେ ଅଥବା ତାଳପତ୍ରରେ ଲିଖିତ ବୟାନ ଆଦି ପ୍ରଥମ ପରିଚ୍ଛେଦରେ ଆଲୋଚିତ ହୋଇଛି । ଏ ପ୍ରମାଣଗୁଡ଼ିକ ମଧ୍ୟ ଅନେକ ସମୟରେ ପରସ୍ପର ବିରୋଧୀ ଏବଂ ବିବାଦମୁକ୍ତ ନୁହେଁ ।

## ଶାମ୍ବ ଏକ ଐତିହାସିକ ଚରିତ୍ର କି ?

ଏ ବିଷୟରେ କୃପାସିନ୍ଧୁ ଅର୍ଜୁନ ପୌତ୍ର ପରୀକ୍ଷିତଙ୍କୁ ଆଲୋଚନା ମଧ୍ୟକୁ ଆଣିଛନ୍ତି । କାରଣ ମହାଭାରତ ଅନୁଯାୟୀ କୃଷ୍ଣପୁତ୍ର ଶାମ୍ବ ପରୀକ୍ଷିତଙ୍କ ପ୍ରାୟ ସମସାମୟିକ । ବିଷ୍ଣୁପୁରାଣ ଅନୁଯାୟୀ କଳିଯୁଗର ଚଳନ ହିସାବ କରି ପରୀକ୍ଷିତଙ୍କ ସମୟ ଖ୍ରୀଷ୍ଟପୂର୍ବ ଉନବିଂଶ ଶତାବ୍ଦୀ ଆକଳନ କରିଛନ୍ତି କୃପାସିନ୍ଧୁ । ଭାଗବତ ଓ ବିଷ୍ଣୁପୁରାଣର ସମୟ ଗଣନାରେ କିଛି ଫରକ୍ ଥିଲେ ମଧ୍ୟ ପାରିପାର୍ଶ୍ୱିକତା ବିଚାର କରି ଶାମ୍ବଙ୍କୁ ଖ୍ରୀଷ୍ଟପୂର୍ବ ଉନବିଂଶ ଶତାବ୍ଦୀର ଲୋକ ବୋଲି ନିର୍ଣ୍ଣୟ କରିଛନ୍ତି କୃପାସିନ୍ଧୁ ।[୭୫]

ତଥାପି ପୁରାଣଗୁଡ଼ିକର ଐତିହାସିକ ସତ୍ୟତା ନେଇ ସନ୍ଦେହ ରହି ଯାଉଛି । ଇଦାନୀଂ ବିଜ୍ଞାନର ନୂତନ ନୂତନ ପ୍ରୟୋଗାତ୍ମକ ଆବିଷ୍କାର ଫଳରେ ଗବେଷକମାନେ ପୌରାଣିକ ଘଟଣାର ସତ୍ୟାସତ୍ୟ ନିର୍ଣ୍ଣୟ କରି ପାରୁଛନ୍ତି କେତେକ କ୍ଷେତ୍ରରେ । ଯେହେତୁ ଶାମ୍ବ ଶ୍ରୀକୃଷ୍ଣଙ୍କ ପୁତ୍ର ଏବଂ ଶ୍ରୀକୃଷ୍ଣ ମହାଭାରତ ସହିତ ଅଛେଦ୍ୟଭାବେ ଜଡ଼ିତ, କିଛିବର୍ଷ ପୂର୍ବେ କରାଯାଇଥିବା କିଛି ବୈଜ୍ଞାନିକ ଅନୁସନ୍ଧାନର ଫଳାଫଳ ପ୍ରାସଙ୍ଗିକ ହେବ ।

ମହାଭାରତରେ ବର୍ଣ୍ଣିତ ବିଶେଷ ବିଶେଷ ଘଟଣାଗୁଡ଼ିକ ଘଟିବା ସମୟରେ ଗ୍ରହ ନକ୍ଷତ୍ରମାନଙ୍କର ଅବସ୍ଥିତି କିପରି ଥିଲା, ଆଦି-ମହାଭାରତ ରଚୟିତା ବ୍ୟାସଦେବ ଲିପିବଦ୍ଧ କରିଥିଲେ । ଏ ବିଷୟରେ ପୁନାର (ପୁଣେ) Bhandarkar Oriental Research Institute ବ୍ୟାସ ମହାଭାରତର ଇଂରାଜୀ ସଂସ୍କରଣ କରିଛନ୍ତି, ଯାହାକୁ ଆଦି-ମହାଭାରତର ବିଶ୍ୱସ୍ତ ଅନୁବାଦ ଧରାଯାଇ ଥାଏ । ଗ୍ରହ ନକ୍ଷତ୍ରମାନଙ୍କର ବର୍ଣ୍ଣିତ ସମାବେଶ ଘଟିଥିଲା ଅଥବା ନୁହେଁ ଏବଂ କେବେ ଘଟିଥିଲା କମ୍ପ୍ୟୁଟର ସାହାଯ୍ୟରେ ସ୍ଥିର କରାଯାଇ ପାରୁଛି ଏବଂ ତାହାର ବିଶ୍ଳେଷଣ ମଧ୍ୟ । ଉଦାହରଣ ସ୍ୱରୂପ, କେତେଗୁଡ଼ିଏ 'ଯୋଡ଼-ଗ୍ରହଣ' କଥା ଆଲୋଚିତ ହୋଇଛି, ଅର୍ଥାତ୍ ତେର ଦିନ ମଧ୍ୟରେ ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ ଘଟିଥିବାର ପ୍ରମାଣ । ହଜାର ହଜାର ବର୍ଷ ମଧ୍ୟରେ ଶହ ଶହ ଏପରି ଯୋଡ଼ି ମିଳୁଛି । କେଉଁ ଯୋଡ଼ି ମହାଭାରତର ବିଶେଷ ଘଟଣା ପ୍ରତି

ପ୍ରଯୁଜ୍ୟ ? ଏହାଛଡ଼ା ଅନ୍ୟ ଗୋଟିଏ ଘଟଣାକୁ ମଧ୍ୟ ବୈଜ୍ଞାନିକମାନେ ଗୁରୁତ୍ୱ ଦେଇଛନ୍ତି । ପୁରାଣରେ ବର୍ଣ୍ଣିତ ଅଛି- ମହାଭାରତ ଯୁଦ୍ଧର ୨୭ବର୍ଷ ପରେ କୃଷ୍ଣ ମୃତ୍ୟୁବରଣ କରିଲେ ଏବଂ ଦ୍ୱାରକା ସମୁଦ୍ର ଗର୍ଭରେ ଲୀନ ହୋଇଗଲା ।

ଅନୁସନ୍ଧାନରେ ବ୍ୟବହୃତ ହୋଇଥିଲା Computer operated planetorium software, marine archaeological technique, earth-sensing satellite photography, thermo-luminescence carbon dating ଇତ୍ୟାଦି ବହୁତଗୁଡ଼ିଏ ପ୍ରଯୁକ୍ତି । ଏଥିରେ ସଂପୃକ୍ତ ଥିଲେ Indian Institutes of Science ର ବିଶ୍ୱବନ୍ଦିତ ଜ୍ୟୋତିର୍ବିଜ୍ଞାନୀ Dr. R.N. Iyangar ତଥା ଆହୁରି କେତେକ ଜ୍ୟୋତିର୍ବିଜ୍ଞାନୀ ଏବଂ ପ୍ରସିଦ୍ଧ Marine Archaeologist Dr. S.R. Rao. । ନିବନ୍ଧଗୁଡ଼ିକ ଇଣ୍ଟରନେଟ୍‌ରୁ ପ୍ରାପ୍ତ ।(୭୬) ବୈଜ୍ଞାନିକ ଆଲୋଚନାର ପରିଭାଷା ସାଧାରଣ ମଣିଷର ବୋଧଗମ୍ୟ ହୋଇ ନପାରେ ଏବଂ ସମୟେ ସମୟେ ଭ୍ରମ ସୃଷ୍ଟି କରିପାରେ, ତେବେ ସାର ମର୍ମ ଉପସ୍ଥାପିତ ହୋଇଛି ସନ୍ଦର୍ଭର ତୃତୀୟ ଅନୁଚ୍ଛେଦରେ :

"These have led to the conclusion that Mohabharata War was actually fought in 1478 BC and Sri Krishna's Dwaraka City got submerged under the sea in 1443 BC."

ଇଣ୍ଟରନେଟ୍‌ରୁ ପ୍ରାପ୍ତ ପ୍ରାସଙ୍ଗିକ ଅଂଶ ପରିଶିଷ୍ଟ ୨ ରେ ସଂଯୋଜିତ ହୋଇଛି । ନିଃସନ୍ଦେହ ଭାବରେ ଆମେ ଏହାକୁ ପ୍ରମାଣ ବୋଲି ଗ୍ରହଣ କରି ପାରିବା । ତେଣୁ କୃଷ୍ଣ ଓ ତତ୍‌ପୁତ୍ର ଶାମ୍ବଙ୍କୁ ଐତିହାସିକ ଚରିତ୍ର ମଧ୍ୟ ଧରାଯିବ । ବିବାଦ କିନ୍ତୁ ଏହିଠାରେ ଶେଷ ହେଉନାହିଁ । ଏହାପର ବିବାଦ ଆସୁଛି ଶାମ୍ବ କେଉଁଠାରେ ସୌରପୂଜା କରିଥିଲେ ?

# ମୈତ୍ରେୟ ବନର ଅବସ୍ଥିତି :

ପୁରାଣ ମତେ ମୈତ୍ରେୟ ବନ ମଧ୍ୟରେ ଚନ୍ଦ୍ରଭାଗା ତୀରରେ ଶାମ୍ବ ସୂର୍ଯ୍ୟଙ୍କ ଆରାଧନା କରିଥିଲେ ।

ବିଶନ୍ ସ୍ୱରୂପଙ୍କ ମତରେ ମୈତ୍ରେୟ ବନ ଓ ଚନ୍ଦ୍ରଭାଗା ସମୁଦ୍ର ତୀରରେ ଥିବା ସମ୍ଭବ ନୁହେଁ, କାରଣ ସମୁଦ୍ର ବାଲିରେ ବୃକ୍ଷ ତଥା ବନଜାତ ହେବା ସମ୍ଭବ ନୁହେଁ । ଶାମ୍ବ ଯେଉଁ ଚନ୍ଦ୍ରଭାଗା ତୀରରେ ସୂର୍ଯ୍ୟ ଆରାଧନା କରିଥିଲେ, ତାହା ଏଠାରେ ନୁହେଁ ପଞ୍ଜାବରେ । ଶ୍ରୀକୃଷ୍ଣଙ୍କ ଦ୍ୱାରକା ଓଡ଼ିଶା ଠାରୁ ବହୁ ଦୂରରେ; ତୁଳନାମୂଳକ ଭାବେ ପଞ୍ଜାବ ନିକଟରେ, ତେଣୁ ଶାମ୍ବ ଏତେଦୂର ଆସିବାର ଯଥାର୍ଥତା ନଥିଲା ।(୭୭)

ସ୍ୱରଚିତ ନାନା ଯୁକ୍ତିଜାଲରେ ବିଭ୍ରାନ୍ତ କରୁଣାସାଗର, ମୈତ୍ରେୟ ବନର ଐତିହ୍ୟ ଅସ୍ୱୀକାର ନ କରି ମଧ୍ୟ ମିତ୍ରବନର ମୂଳ ଅବସ୍ଥିତି ପଞ୍ଜାବରେ କହୁଛନ୍ତି ।(୭୮)

କୃପାସିନ୍ଧୁ ବିଶଦ୍ ଆଲୋଚନାଦ୍ୱାରା ବିଶନ୍ ସ୍ୱରୂପଙ୍କ ମତ ଖଣ୍ଡନ କରିଛନ୍ତି ।(୭୯) ସେ ସମସ୍ତ ପ୍ରମାଣ ନ ଦୋହରାଇ, ଏ ଲେଖକ ଅନାଲୋଚିତ ତଥ୍ୟ କିଛି ଯୋଗ କରିବାକୁ ଚାହୁଁଛି ।

ସମୁଦ୍ର ବାଲିରେ ବୃକ୍ଷ ଜନ୍ମହୁଏ ନାହିଁ ସମସ୍ତେ ଜାଣନ୍ତି, କିନ୍ତୁ କୋଣାର୍କ ଖାଲି ସମୁଦ୍ର ନିକଟବର୍ତ୍ତୀ ସ୍ଥାନ ନୁହେଁ, ସମୁଦ୍ରାଭିମୁଖୀ ଅସଂଖ୍ୟ ନଦୀନାଳର ମୁହାଣରେ ଅବସ୍ଥିତ । ଏ ଯୁଗରେ ବହୁ ନଦୀନାଳ ଶୁଖି ଯାଇଛି କିନ୍ତୁ ସେ ଯୁଗରେ ମହାନଦୀର ନାନା ଶାଖା ପ୍ରଶାଖା ସମୁଦ୍ରରେ ମିଶିଥିଲା ଏ ଅଞ୍ଚଳରେ, ଏହା ଐତିହାସିକ ତଥା ଭୌଗୋଳିକ ସତ୍ୟ । ଏପରି ଅଞ୍ଚଳରେ ପଟୁ ଜମାହୋଇ ଛୋଟ ବଡ଼ ବହୁ ବୃକ୍ଷ ଜାତ ହୁଏ । ଶ୍ରେଷ୍ଠ ଉଦାହରଣ, ସୁନ୍ଦରବନ । ଓଡ଼ିଶାର ବଞ୍ଚିରହିଥିବା ନଦୀ ମୁହାଣମାନଙ୍କର ବ-ଦ୍ୱୀପମାନଙ୍କରେ ଏବେ ମଧ୍ୟ ବନ ଅଛି । ପଞ୍ଜାବରେ ଚନ୍ଦ୍ରଭାଗାର ଅବସ୍ଥିତି କଷ୍ଟକଳ୍ପିତ ।

ଲାହୁଲ୍ ସ୍ପିତି ଅଞ୍ଚଳର ଚନ୍ଦ୍ରଭାଗା ନାମକ ଗୋଟିଏ କ୍ଷୁଦ୍ର ନଦୀକୁ ଚେନାବର ପୂର୍ବରୂପ କୁହାଯାଇ ପାରେ । ଏ ଲେଖକ କାଶ୍ମୀର ଓ ହିମାଚଳ ପ୍ରଦେଶର ନଦୀଗୁଡ଼ିକର ଉପତ୍ୟକାରେ କିଛି ଥର ଘୂରିବୁଲିଛି ଏବଂ କିଛି ତଥ୍ୟ ଚୟନ କରିଛି । ହିମାଚଳ ଓ ଲେହ ସୀମାଠାରୁ ୩୨ କିଲୋମିଟର ପଛକୁ ବାରଲାଚ୍ଚା ନାମକ ୧୬,୮୪୨ ଫୁଟ୍ ଉଚ୍ଚ ଗୋଟିଏ ଗିରିସଂକଟ ଅଛି । ସେଠାରେ ଥିବା ସୁରଜତାଲ୍ ନାମକ ଗୋଟିଏ ବିଶାଳ ହ୍ରଦରୁ 'ଭାଗା' ନାମକ ଗୋଟିଏ କ୍ଷୁଦ୍ର ନଦୀର ଉତ୍ପତ୍ତି । ସେ ପାହାଡ଼ର ପାଦଦେଶରୁ 'ଚନ୍ଦ୍ର' ନାମକ ଆଉ ଗୋଟିଏ କ୍ଷୁଦ୍ର ନଦୀର ଉତ୍ପତ୍ତି । 'ଭାଗା' ଗୋଟିଏ ପଥ ଧରି ୯୨ କିଲୋମିଟର ଏବଂ ଚନ୍ଦ୍ର ଅନ୍ୟ ପଥ ଧରି ୧୨୨ କିଲୋମିଟର ଆସିବା ପରେ 'ତଣ୍ଡି' ନାମକ ସ୍ଥାନରେ ମିଳିତ ହୋଇ 'ଚନ୍ଦ୍ରଭାଗା' ସୃଷ୍ଟି କରିଛି । ଚନ୍ଦ୍ରଭାଗା ୧୬୪ କି.ମି. ଯିବା ପରେ ଧରଓ୍ୱାସ୍‌ଠାରେ କାଶ୍ମୀରରେ ପ୍ରବେଶ କରିଛି; ସେତେବେଳକୁ ଚନ୍ଦ୍ରଭାଗା ଚେନାବ୍ ନାମ ଧାରଣ କରି ସାରିଲାଣି । ହିମାଚଳ ପ୍ରଦେଶର ଅନ୍ୟାନ୍ୟ ଅଞ୍ଚଳରେ ଖୁବ୍ କମ୍ ଲୋକ ଜାଣନ୍ତି, ଚେନାବ୍‌ର ଅନ୍ୟ କୌଣସି ନାମ ଥିଲା । ପ୍ରାୟ

ଅର୍ଦ୍ଧ-ଶତାବ୍ଦୀ ପୂର୍ବର ଗୋଟିଏ ଭ୍ରମଣ କାହାଣୀରେ ପ୍ରସିଦ୍ଧ ହିମାଳୟ ପରିବ୍ରାଜକ ଉମାପ୍ରସାଦ ମୁଖାର୍ଜୀ ହିମାଚଳ ପ୍ରଦେଶର ନଦୀଗୁଡ଼ିକର ପୋଷାକୀ ନାମ ସହିତ ପାଠକର ପରିଚୟ କରାଇ ଦେଇଛନ୍ତି । ଯଥା, ଝୀଲମ୍ = ବିତସ୍ତା, ଚିନାବ୍ = ଚନ୍ଦ୍ରଭାଗା, ରାବି = ଇରାବତୀ ଓ ସତ୍‌ଲେଜ ଅଥବା ଶତଦ୍ରୁ = ବିପାଶା ।[୮୦] କାଶ୍ମୀରରେ ଚେନାବ୍ ପ୍ରାୟ ୨୧୦ କିଲୋମିଟର୍ ଗତି କରି ନାନା ଉପନଦୀପୁଷ୍ଟ ହୋଇ ପଞ୍ଜାବରେ ପ୍ରବେଶ କରେ । ସେ ଅଞ୍ଚଳ ବର୍ତ୍ତମାନ ପାକିସ୍ତାନ ଅନ୍ତର୍ଗତ । ପାକ୍-ପଞ୍ଜାବରେ ଚେନାବ ପ୍ରାୟ ୬୦୦ କି.ମି. ଗତି କରିବା ପରେ 'ଇଣ୍ଡସ୍' ନଦୀ ସହିତ ମିଳିତ ହୋଇଛି । ଏହା ମଧ୍ୟରେ ଚେନାବ୍ ସହିତ ମିଳିତ ହୋଇଛି । କାଶ୍ମୀରରୁ ଆଗତ ଝୀଲମ୍ ଓ ଭାରତ ପଞ୍ଜାବରୁ ଆଗତ ସତ୍‌ଲେଜ୍; ନାମ ଅପରିବର୍ତ୍ତିତ ରହିଛି । ଇଣ୍ଡସ୍ ସହିତ ମିଳିତ ହେବା ପରେ ଚେନାବ ଲୋପ ପାଇଛି ଏବଂ ସୁକ୍କୁର ପ୍ରଦେଶ ମଧ୍ୟ ଦେଇ ଇଣ୍ଡସ୍ ଆହୁରି ୭୨୦ କି.ମି. ଗତି କରି କେଟ୍ ବନ୍ଦର ନିକଟରେ ଆରବ ସାଗରରେ ପଡିଛି । ଚେନାବ୍‌ର ଗତିପଥ ଯେ କେହି ମାନଚିତ୍ର ଉପରେ ଦେଖି ପାରନ୍ତି । ଏଥିରେ ସମୁଦ୍ର ମୁହାଣରେ ଚନ୍ଦ୍ରଭାଗା ତୀରରେ ମୈତ୍ରେୟ ବନ ଆସିଲା କେଉଁଠାରୁ ?

ଚେନାବ୍ ନଦୀ ପାକ୍-ପଞ୍ଜାବରେ ପ୍ରବେଶ କରିବାର ପ୍ରାୟ ୪୩୦ କି.ମି. ପରେ ବାମ ପଟେ ମୁଲତାନ ରହିଯିବ, ଠିକ୍ କୂଳରେ ନୁହେଁ, ଦଶ ପନ୍ଦର କି.ମି. ଦୂରରେ । ପୁରାତନ ଯୁଗରେ ମୁଲତାନରେ ସୌରପୂଜାର ପ୍ରସିଦ୍ଧି ଥିଲା । ତେବେ ତାକୁ ଟାଣିଟୁଣି ସ୍ୱଳ୍ପସ୍ଥାୟୀ ଚନ୍ଦ୍ରଭାଗା ସହିତ ଯୋଡ଼ି ଏବଂ ସମୁଦ୍ରକୁ ଖୁବ୍ କମ୍‌ରେ ୮୦୦ କି.ମି. ପାଖକୁ ଟାଣି ଶାମ୍ବଙ୍କୁ ସ୍ନାନ କରାଇବା କଷ୍ଟକଳ୍ପିତ । ଏହାଛଡ଼ା ମ୍ୟାପ୍ ଉପରେ ନଜର ଦେଲେ ଦେଖାଯିବ, ଦ୍ୱାରକାଠାରୁ ମୁଲତାନ୍ ଖୁବ୍ ପାଖରେ ନୁହେଁ- ମଝିରେ ଅଛି ସମୁଦ୍ର, ଗୋଟିଏ ମୃତ ସମୁଦ୍ର ଏବଂ ବହୁତ ବୁଲାଣି ବାଟ ।

କରୁଣାସାଗର ତିନିଜଣ ପ୍ରସିଦ୍ଧ ଗବେଷକଙ୍କ ସହିତ ( V.V. Mirashi, R.C. Hazra & H. Von Stietecron ) ସହମତ ହୋଇ କହିଛନ୍ତି, କୋଣାର୍କ ପୂର୍ବରୁ ମୁଣ୍ଡିର ଅଥବା ମୁଣ୍ଡିରସ୍ୱାମୀ ନାମରେ ନାମିତ ଥିଲା । ପରେ ମୁଣ୍ଡିର ପରିବର୍ତ୍ତନ ହୁଏ କୋଣାଦିତ୍ୟକୁ ଯାହାର ବର୍ତ୍ତମାନ ନାମ କୋଣାର୍କ । ଭବିଷ୍ୟ ପୁରାଣର କେତେଗୁଡ଼ିଏ ଶ୍ଳୋକର ଉଦ୍ଧୃତି ଦେଇ କରୁଣାସାଗର ପୁଣି କହିଛନ୍ତି, ଦିବସର ତିନି ସମୟରେ ସୂର୍ଯ୍ୟ ଆରାଧନାର ପ୍ରୟୋଜନୀୟତା ଲିଖିତ ଅଛି । ସେଗୁଡ଼ିକ ଗୋଟିଏ ସାରଣୀ ଆକାରରେ ନିମ୍ନରେ ପ୍ରଦତ୍ତ ହେଲା ।[୮୧]

### ସାରଣୀ - ୪

## ତ୍ରିସନ୍ଧ୍ୟାରେ ସୂର୍ଯ୍ୟ ଆରାଧନା

| ପୁରାଣର ନାମ | ଶ୍ଳୋକ ସଂଖ୍ୟା | ଉଦିତ ସୂର୍ଯ୍ୟଙ୍କ ନାମ | ମଧ୍ୟାହ୍ନ ସୂର୍ଯ୍ୟଙ୍କ ନାମ | ସନ୍ଧ୍ୟା ସୂର୍ଯ୍ୟଙ୍କ ନାମ |
|---|---|---|---|---|
| ଭବିଷ୍ୟ ପୁରାଣ | ୧,୫୫,୨୭ | ମୁଣ୍ଡିର ସ୍ୱାମୀ | କଳପ୍ରିୟ | ମିତ୍ରବନ |
| ଭବିଷ୍ୟ ପୁରାଣ | ୧,୭୨,୪-୬ | ମୁଣ୍ଡିର | କଳପ୍ରିୟ | ମିତ୍ରବନ(ଇନ୍ଦ୍ରବନ) |
| ଭବିଷ୍ୟ ପୁରାଣ | ୧,୧୨୯,୧୬-୧୭ | ସୁତୀର | କଳପ୍ରିୟ | ମିତ୍ରବନ |
| ଭବିଷ୍ୟ ପୁରାଣ | ୧୧୮୯,୨୪ | ମୁଣ୍ଡିର ସ୍ୱାମୀ | କଳପ୍ରିୟ | ମିତ୍ରବନ |
| ସ୍କନ୍ଦପୁରାଣ | VI, 76,1-3.5, 22,44-45,59-60, 71 | ମୁଣ୍ଡିର | କଳପ୍ରିୟ | ମୂଳସ୍ଥାନ |
| ସ୍କନ୍ଦପୁରାଣ | VII-1.139,11-12(a) | ଗଙ୍ଗାସାଗର ସଙ୍ଗମରେ | କଳପ୍ରିୟ | ମୂଳସ୍ଥାନ |

'ସୁତୀର' ଅର୍ଥ କରା ହୋଇଛି, 'ସୁନ୍ଦର ସମୁଦ୍ର ତୀର' ତେବେ 'ମୁଣ୍ଡିର'କୁ ଉଦୟାଚଳ ସହିତ ଯୋଡ଼ି ପଣ୍ଡିତମାନଙ୍କର ନାନା ବିବାଦୀୟ ଯୁକ୍ତି ଉପସ୍ଥାପନ କରାଯାଇଛି । ଏପରିକି ଜଣେ ପଣ୍ଡିତ ଉଦୟାଚଳକୁ ଉଦୟଗିରି ସହିତ ଯୋଡ଼ିଛନ୍ତି । କଥାଟି ସରଳ, ସମୁଦ୍ର ତୀରବର୍ତ୍ତୀ ମୁଣ୍ଡିର ଅଥବା କୋଣାର୍କ ଠାରେ ପ୍ରଭାତ-ସୂର୍ଯ୍ୟଙ୍କର କିଛି ବିଶେଷ ଗୁଣ ଅଛି । ସ୍କନ୍ଦପୁରାଣ ବାଳସୂର୍ଯ୍ୟଙ୍କ ପାଇଁ ସ୍ଥାନଟିକୁ ପଶ୍ଚିମବଙ୍ଗର ଗଙ୍ଗାସାଗର ଯାଏ ନେଇ ଯାଇଛି । ଗଙ୍ଗାନଦୀର ସମୁଦ୍ର ସହିତ ମିଳନ ସ୍ଥାନ, ଗଙ୍ଗାସାଗର ନାମରେ ଖ୍ୟାତ । ସେଠାରେ ପ୍ରତିବର୍ଷ ଗଙ୍ଗାସାଗର ମେଳା ବସେ ଯାହାର ଉପଲକ୍ଷ୍ୟ ଭଗୀରଥଙ୍କ ଗଙ୍ଗା ଆନୟନ । ତାହା ସହିତ କୋଣାର୍କ ସମୁଦ୍ର ତୀରରେ ଉଦିତ ସୂର୍ଯ୍ୟ ଆରାଧନାର କୌଣସି ମେଳ ନାହିଁ ।

କଳପ୍ରିୟକୁ ଯମୁନା ନଦୀର ଦକ୍ଷିଣ ତୀର ରୂପେ ଅର୍ଥ କରାଯାଇଛି, କୌଣସି ବିଶେଷ ସ୍ଥାନର ନାମ ନାହିଁ । ମୂଳସ୍ଥାନକୁ ହୁ-ଏନ୍-ସାଂ ବର୍ଣ୍ଣିତ ମୁ-ଲୋ-ସାନୁ-ପୁ-ଲୋ ଅଥବା ଆଧୁନିକ ମୁଲତାନ କୁହାଯାଉଛି । ହୁ-ଏନ୍-ସାଂଙ୍କ ବର୍ଣ୍ଣନା ଅନୁସାରେ ମୁଲତାନରେ ଗୋଟିଏ ସୁନ୍ଦର ସୂର୍ଯ୍ୟ ମନ୍ଦିର ଥିଲା ଏବଂ ସେଠାରେ ପୂଜାର୍ଚ୍ଚନାର ପ୍ରଚଳନ ଥିଲା । ମୁଲ୍‌ତାନ୍‌କୁ ସାନ୍ଧ୍ୟ-ସୂର୍ଯ୍ୟ ଆରତି ସହ ଯୋଡ଼ା ଯାଇଛି । ଖାଲି ମୁଲତାନ କାହିଁକି ପୃଥିବୀ ଏବଂ ଏଇ ଭାରତବର୍ଷର ବହୁ ସ୍ଥାନରେ ସୂର୍ଯ୍ୟପୂଜାର ପ୍ରଚଳନ ଥିଲା, ଯାହା ପୂର୍ବେ ଆଲୋଚିତ ହୋଇଛି । ପ୍ରସଙ୍ଗ ଏଠାରେ କୋଣାର୍କ ସହିତ ଶାମ୍ବଙ୍କର ସଂପୃକ୍ତି । ଉଦିତ-ସୂର୍ଯ୍ୟ ସହିତ କୋଣାର୍କର ସମ୍ପର୍କ ( ମୁଣ୍ଡିର ) ସାରଣୀ-୪ ସୂଚିତ କରୁଛି । ଶାମ୍ବ ସୂର୍ଯ୍ୟଙ୍କୁ ପ୍ରଣାମ କରି ବୁଡ଼ ଦେଇ ମୂର୍ତ୍ତି ପାଇଥିବା କଥା ପୂର୍ବେ ଆଲୋଚିତ ହୋଇଛି ।

## ମୈତ୍ରେୟ ବନରେ ସୂର୍ଯ୍ୟପୂଜାର ଅଗ୍ରଗତି :

ଛାଡ଼ି ଆସିଥିବା ପୃଷ୍ଠାଗୁଡ଼ିକରେ ପ୍ରମାଣିତ ହୋଇଛି, ଶାମ୍ବ ଐତିହାସିକ ଚରିତ୍ର ଓ ତାଙ୍କ ସାଧନାସ୍ଥଳ ଚନ୍ଦ୍ରଭାଗା ସାଗର ସଙ୍ଗମରେ ସେ ସମୟର ଜନଶୂନ୍ୟ ବନରେ । ସେ ପରୀକ୍ଷିତଙ୍କ ସମସାମୟିକ ହୋଇଥିବାରୁ ତାଙ୍କର ଯୁବାବସ୍ଥା ଖ୍ରୀଷ୍ଟପୂର୍ବ ୧,୪୦୦ ପାଖାପାଖି ହେବା ସମ୍ଭବ । ସେ ସମୟ ଓ ନରସିଂହ ଦେବଙ୍କ ସମୟ ମଧ୍ୟରେ ( ୧୨୩୮ ଠାରୁ ୧୨୬୪ ଖ୍ରୀଷ୍ଟାବ୍ଦ ) ଅଢ଼େଇ ହଜାର ବର୍ଷରୁ ଅଧିକ ବ୍ୟବଧାନ । ସେ ସମୟର ବାସ୍ତୁବିଦ୍ୟା କିପରି ଥିଲା ଜଣାନାହିଁ, ତେବେ ଶାମ୍ବ ପ୍ରତିଷ୍ଠିତ ମନ୍ଦିର ଏତେ ବର୍ଷ ତିଷ୍ଠି ଥିବା ମନେହୁଏନା । ଏ ଅଢ଼େଇ ହଜାର ବର୍ଷ ମଧ୍ୟରେ ମୈତ୍ରେୟବନ କିପରି କୋଣାର୍କକୁ ପରିବର୍ତ୍ତିତ ହେଲା ଆଗକୁ ଦେଖିବା । ତେବେ ଏ ବନରେ ଶାମ୍ବ ଏକମାତ୍ର ତପସ୍ୱୀ ନଥିଲେ ।

ମୈତ୍ରେୟ ମହର୍ଷିଙ୍କ ତପସ୍ୟା ସ୍ଥଳ ହୋଇଥିବାରୁ ସ୍ଥାନର ନାମ ମୈତ୍ରେୟବନ ହେଲା ।[୮୨] ଏହାଠାରୁ ଅଧିକ ଗ୍ରହଣଯୋଗ୍ୟ କାରଣ କୃପାସିନ୍ଧୁ ନିଜେ ହିଁ ଉପସ୍ଥାପନ କରିଛନ୍ତି । ପଦ୍ମପୁରାଣର ସୃଷ୍ଟି ଖଣ୍ଡରେ ଲିଖିତ ଅଛି :

ଏକୋଽସୌ ବହୁଧାଭୂତ୍ୱା କାଳଭେଦାଦନିନ୍ଦିତଃ ।
ମାସେ ମାସେ ତୁ ପତତି ଏକୋଦ୍ୱାଦଶତାଂ ବ୍ରଜେତ୍ ॥
ମିତ୍ରୋ ମାର୍ଗଶିରେ ମାସି, ପୌଷେ ବିଷ୍ଣୁଃ ସନାତନଃ ।
ବରୁଣୋ ମାଘମାସେ ତୁ ସୂର୍ଯ୍ୟୋ ବୈ ଫାଲ୍‌ଗୁନେଽପି ଚ ॥
ଚୈତ୍ରମାସେ ତପେଦ୍‌ଭାନୁ, ବୈଶାଖେ ତାପନଃସ୍ମୃତଃ ।
ଜ୍ୟେଷ୍ଠ ମାସେ ତପେଦିନ୍ଦ୍ର ଆଷାଢ଼େ ତପତେ ରବି ॥
ଗଭସ୍ତିଃ ଶ୍ରାବଣେ ମାସେ ଯମୋ ଭାଦ୍ରପଦେ ତଥା ।
ହିରଣ୍ୟରେତାଶ୍ୱଯୁଜିଃ କାର୍ତ୍ତିକେ ତୁ ଦିବାକରଃ ॥
ଇତ୍ୟୈତେ ଦ୍ୱାଦଶାଦିତ୍ୟା ମାସି ମାସି ପ୍ରକୀର୍ତ୍ତିତାଃ ।
ଉରରୂପା ମହାତେଜା ଯୁଗାନ୍ତାଳନବର୍ଚ୍ଚସଃ ॥

ସୂର୍ଯ୍ୟ ନିଜ ଗତି ପଥରେ ବାର ମାସ ପାର ହୋଇଥାଆନ୍ତି । ପ୍ରତ୍ୟେକ ମାସରେ ଅବସ୍ଥାନ କାଳରେ ଭିନ୍ନ ଭିନ୍ନ ନାମ ହୋଇଥାଏ । ଯାହା ଉପରୋକ୍ତ ଶ୍ଳୋକରେ ବର୍ଣ୍ଣିତ ହୋଇଛି; ଅର୍ଥ –

| | | |
|---|---|---|
| ମାର୍ଗଶିର ମାସରେ | – | ମିତ୍ର |
| ପୌଷ ମାସରେ | – | ବିଷ୍ଣୁ |
| ମାଘ ମାସରେ | – | ବରୁଣ |
| ଫାଲ୍‌ଗୁନ ମାସରେ | – | ସୂର୍ଯ୍ୟ |
| ଚୈତ୍ର ମାସରେ | – | ଭାନୁ |
| ବୈଶାଖ ମାସରେ | – | ତପନ |
| ଜ୍ୟେଷ୍ଠ ମାସରେ | – | ଇନ୍ଦ୍ର |

| | | |
|---|---|---|
| ଆଷାଢ଼ ମାସରେ | – | ରବି |
| ଶ୍ରାବଣ ମାସରେ | – | ଗଭସ୍ତି |
| ଭାଦ୍ର ମାସରେ | – | ଯମ |
| ଆଶ୍ୱିନ ମାସରେ | – | ହିରଣ୍ୟଗର୍ଭ |
| କାର୍ତ୍ତିକ ମାସରେ | – | ଦିବାକର |

ଆକାଶ ପରିକ୍ରମାର ପ୍ରଥମ ମାସରେ ଆଦିଦେବଙ୍କ ନାମ ମିତ୍ର । ସୂର୍ଯ୍ୟ ପୂଜାର ପ୍ରଥମ ପଂକ୍ତିରେ ଉଚ୍ଚାରିତ ହେଉଛି- 'ଓଁ ମିତ୍ରାୟ ନମଃ ।' ସେଇ ମିତ୍ରଙ୍କ ବରଲାଭ କରିବା ପାଇଁ ଆରାଧନା କରିଥିବାରୁ ସ୍ଥାନର ନାମ 'ମିତ୍ରବନ' ଅଥବା 'ମୈତ୍ରବନ' ହେବା ସ୍ୱାଭାବିକ ।

ଶାମ୍ବ ପୁରାଣରେ କୁହାଯାଇଛି ଲବଣୋଦଧି ତୀରରେ ତପୋବନ ମଧ୍ୟରେ 'ମୁଣ୍ଡିର' ଅର୍ଥାତ୍ ସୂର୍ଯ୍ୟଦେବଙ୍କ ସ୍ଥାପନା କରିଥିଲେ ।

''ଦୃଷ୍ଟ୍ୱା ତପୋବନମ୍ ରମ୍ୟମ୍ ଲବଣୋଦଧି ଆଶ୍ରିତମ୍ ।।'' (ଶାମ୍ବ ପୁରାଣ - ୪୨.୭)

''ତସ୍ମିନ୍ ତପୋବନେ ଦେଶେ ତୀରେ ତୁ ଲବଣୋଦଧ୍ୱାଃ ।।'' (ଶାମ୍ବପୁରାଣ - ୪୩.୧) [୮୩]

କୌଣସି ସ୍ଥାନରେ ଜନବସତି ଗଢ଼ି ଉଠିବାର ମୂଳକାରଣ ଗମନାଗମନର ସୁବିଧା । ଏହା ଆଉ ପ୍ରମାଣର ଅପେକ୍ଷା ରଖେନା, ପୂର୍ବ କାଳରେ ଓଡ଼ିଶାର ନୌବାଣିଜ୍ୟ ଦେଶ ଦେଶାନ୍ତରକୁ ବ୍ୟାପିଥିଲା ।

## ବନ୍ଦର ସହର କୋଣାର୍କ :

ସ୍ଥଳଭୂମିର ଭିତର ଅଞ୍ଚଳରୁ ସାମଗ୍ରୀ ପରିବହନ କରିବାର ମୁଖ୍ୟ ପଥ ଥିଲା ଜଳପଥ; କାରଣ ଦେଶଟି ସମୁଦ୍ର ନିକଟବର୍ତ୍ତୀ ହୋଇଥିବାରୁ ଏବଂ ମହାନଦୀ ଓ ତାହାର ଶାଖାନଦୀମାନଙ୍କରେ ଭରି ରହିଥିବାରୁ ସ୍ଥଳପଥ ଗଢ଼ିବା ଠାରୁ ଜଳପଥର ଉପଯୋଗ ସହଜତର ଥିଲା । ମହାନଦୀରୁ କାଠଯୋଡ଼ି ଓ ସେଥିରୁ ବାହାରି କୁଆଖାଇ ନଦୀ ପୁରୀ ଜିଲ୍ଲା ମଧ୍ୟରେ ପୁନଃ ପୁନଃ ବିଭକ୍ତ ହୋଇଥିଲା । ନଦୀ, ସମୁଦ୍ରର ଯେତେ ପାଖା ପାଖି ଆସିବ ବିଭାଜନ ସେତେ ବେଶୀ ହେବ । କୁଆଖାଇରୁ ପୁଣି ତିନୋଟି ମୁଖ୍ୟ ଶାଖାନଦୀ ବାହାରିଛି । ଯଥାଃ ଦୟା, ଭାର୍ଗବୀ ଓ କୁଶଭଦ୍ରା । ପ୍ରାଚୀ ମଧ୍ୟ ସେହିପରି ଗୋଟିଏ ଶାଖା ନଦୀ ଥିଲା ଯେଉଁଥିରୁ ଶିରା ପ୍ରଶିରା ବାହାରି ସମୁଦ୍ରରେ ମିଶିଥିଲେ । ସେଗୁଡ଼ିକରୁ ଏବେ ମଧ୍ୟ ଗୋଟିଏ, ଚନ୍ଦ୍ରଭାଗା ନାମରେ ଗତିହୀନ ସ୍ଥିତି ବଜାୟ ରଖିଛି । ଚନ୍ଦ୍ରଭାଗାର ପୂର୍ବର ନାମ ଚିତ୍ରୋତ୍ପଳା ଅଥବା ପ୍ରସିଦ୍ଧ ପରିବ୍ରାଜକ ହୁ-ଏନ୍-ସାଂଙ୍କ ମତରେ (୬୩୪-୬୪୯ ଖ୍ରୀ.ଅ.) ଚେଳିତାଲୋ । ହୁ-ଏନ୍-ସାଂଙ୍କ ବିବରଣୀ ଅନୁଯାୟୀ ଚେଳିତାଲୋ ଗୋଟିଏ ସମୃଦ୍ଧିଶାଳୀ ନଗର ଥିଲା ଏବଂ ସେଠାରେ ଗୋଟିଏ ବୌଦ୍ଧ ମଠ ମଧ୍ୟ ଥିଲା ।[୮୪] ପୁରୀ ଗେଜେଟିଅର୍‌ରୁ ଜଣାପଡୁଛି, ୧୧୯୬-୯୭ ଯାଏ ଅଞ୍ଚଳଟି ଲୁଣ-ବାଣିଜ୍ୟ ପାଇଁ ପ୍ରସିଦ୍ଧ ଥିଲା । ମନମୋହନ ଗାଙ୍ଗୁଲିଙ୍କ ମତ ଚେଳିତାଲୋ ଏ ସ୍ଥାନ ନୁହେଁ, ଯଦିଓ ପ୍ରାଚୀ ଓ ତାହାର ଶାଖା, ଚନ୍ଦ୍ରଭାଗା ଦୁଇ ପଟେ ସମୃଦ୍ଧିଶାଳୀ ସହର ଓ ବିଶାଳ ମନ୍ଦିର ସବୁ ଗଢ଼ି ଉଠିଥିଲା ।[୮୫]

ଏ ଅଞ୍ଚଳରେ ବୌଦ୍ଧ ପ୍ରଭାବ ଉପରେ ଗାଙ୍ଗୁଲି ଓ ବିଶନ୍ ସ୍ୱରୂପ ଦୀର୍ଘ ଆଲୋଚନା କରିଛନ୍ତି । ବୁଦ୍ଧଙ୍କ ଦାନ୍ତ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ପୁରୀରୁ ପାଟଳୀପୁତ୍ର ସ୍ଥାନାନ୍ତରିତ ହୁଏ ଏବଂ ୩୧୧ ଖ୍ରୀଷ୍ଟାବ୍ଦରେ ପୁଣି ଏଠାକୁ ଆଣି ଶେଷରେ ଶ୍ରୀଲଙ୍କାକୁ ସ୍ଥାନାନ୍ତରିତ ହୁଏ ।[୮୬]

କୃପାସିନ୍ଧୁ ମଧ୍ୟ ଦନ୍ତ ଉପାଖ୍ୟାନ ନେଇ ଦୀର୍ଘ ଆଲୋଚନା କରିଛନ୍ତି । କିନ୍ତୁ ତାଙ୍କ ପ୍ରତିପାଦ୍ୟ, ଦନ୍ତପୁର ଚିତ୍ରୋତ୍ପଳାର ପୂର୍ବତନ ନାମ ଏବଂ ତାହା ତୀରରେ ସମୃଦ୍ଧିଶାଳୀ ନଗରୀ ଓ ବନ୍ଦର ଥିଲା ।[୮୭]

ବିଷୟଟି ବିବଦମାନ ହେଲେ ମଧ୍ୟ କେତୋଟି ବିଷୟ ପରିଷ୍କାର ହେଉଛି । କୋଣାର୍କ ଅଞ୍ଚଳରେ ବନ୍ଦର ଥିଲା, ଏକ ସମୟରେ ବୌଦ୍ଧ ପ୍ରଭାବ ଥିଲା ଏବଂ ଅଞ୍ଚଳଟି ସମୃଦ୍ଧ ଥିଲା । ଏପରି ନୁହେଁ, ନରସିଂହଦେବ ହଠାତ୍ ଗୋଟିଏ ଜନମାନବଶୂନ୍ୟ ସମୁଦ୍ରବେଳାରେ ବିଶାଳ ସୂର୍ଯ୍ୟ ମନ୍ଦିରଟିଏ ଗଢ଼ିଦେଲେ ।

କୋଣାର୍କ କ୍ଷେତ୍ରର ପ୍ରାଚୀନତ୍ୱ ପ୍ରମାଣ କରିବାକୁ ଯାଇ କରୁଣାସାଗର ଓ R.C.Hazra ବହୁକଥା କହିଛନ୍ତି । ୧୨୬୦ ଠାରୁ ୧୨୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରଚିତ ହେମାଦ୍ରିଙ୍କ 'ଚତୁର୍ବର୍ଗ ଚିନ୍ତାମଣି'ରେ କୋଣାର୍କରେ ପାଳିତ ହେଉଥିବା ଅର୍କସପ୍ତମୀ ବ୍ରତ କଥା ଉଲ୍ଲେଖ କରି କହୁଛନ୍ତି, ନରସିଂହ ଦେବଙ୍କ ମନ୍ଦିର ନିର୍ମାଣ ହେବାର ବହୁ ପୂର୍ବେ କୋଣାର୍କର ସୌରପୂଜାର ପ୍ରସିଦ୍ଧି ଦୂର ଦୂରକୁ ବ୍ୟାପିଥିଲା । ନଚେତ୍ ନୂତନ ମନ୍ଦିର ଗଠିତ ହେବାର ମାତ୍ର ୨୫ ବର୍ଷ ମଧ୍ୟରେ ଏହାର ପ୍ରସିଦ୍ଧି ଦେଶର ସୁଦୂର କୋଣରେ ପହଞ୍ଚି ପାରନ୍ତା ନାହିଁ [୮୮] । ହେମାଦ୍ରି କେଉଁ ସ୍ଥାନର ଅଧିବାସୀ ଥିଲେ

ଗବେଷକ ଉଲ୍ଲେଖି କରି ନାହାନ୍ତି । ଏହା କିନ୍ତୁ ଖୁବ୍ ନିର୍ଭରଯୋଗ୍ୟ ପ୍ରମାଣ ମନେ ହେଉନାହିଁ । ତୁଣ୍ଡବାଇଦ ସହସ୍ର କୋଶ । ଯେଉଁ ସମୟର କଥା ହେଉଛି, ସେ ସମୟରେ ଦୁଇ ଦଶନ୍ଧି ମଧ୍ୟରେ କୋଣାର୍କର ପ୍ରସିଦ୍ଧି ବହୁଦୂର ବ୍ୟାପିବା ଅସମ୍ଭବ ନୁହେଁ । ଏହାପରେ କରୁଣାସାଗର ବହୁ ତଥ୍ୟ ଏବଂ ବିଭିନ୍ନ ଗବେଷକଙ୍କ ମତ ଉପସ୍ଥାପନ କରିଛନ୍ତି, ଯାହା ନିଶ୍ଚିତ ରୂପେ ପ୍ରମାଣ କରୁଛି, ନରସିଂହଦେବଙ୍କ ସୂର୍ଯ୍ୟ ମନ୍ଦିର ନିର୍ମିତ ହେବାର ବହୁ ପୂର୍ବରୁ ସ୍ଥାନଟିର ଖ୍ୟାତି ସୌରପୂଜା ପାଇଁ ଥିଲା । ସଂକ୍ଷେପରେ ସେଗୁଡ଼ିକ ଉଲ୍ଲେଖ କରାଯାଇପାରେ ।

ବିଜ୍ଞାନେଶ୍ୱରର (Vijnanesvara) ମିତାକ୍ଷର (୧୦୮୦-୧୧୧୯ଖ୍ରୀ.ଅ.) - ଭାସ୍କର୍ଯ୍ୟ କ୍ଷେତ୍ରରେ ତର୍ପଣ ମୁଣ୍ଡନ ଇତ୍ୟାଦି କରାଯିବା କଥା ଲିଖିତ ଅଛି । P. V. Kane 'ତୀର୍ଥସାର' ନାମକ ଗ୍ରନ୍ଥକୁ ନିର୍ଭର କରି ଭାସ୍କରକ୍ଷେତ୍ର ଓ କୋଣାର୍କ ଏକାସ୍ଥାନ କହିଛନ୍ତି ।

ବ୍ରହ୍ମପୁରାଣରେ ଏହି ସ୍ଥାନକୁ ସୂର୍ଯ୍ୟକ୍ଷେତ୍ର, ରବିକ୍ଷେତ୍ର, ସବିତା କ୍ଷେତ୍ର ଓ ଭାସ୍କରକ୍ଷେତ୍ର କୁହାଯାଇଛି । ୯୮୮ ଖ୍ରୀଷ୍ଟାବ୍ଦରେ ଆରବ ଭୌଗୋଳିକ ଅବୁଲ୍ ଫରଜ ଦକ୍ଷିଣ ଭାରତର ସୂର୍ଯ୍ୟପୂଜାର ଯେଉଁ ବିବରଣୀ ଦେଇଛନ୍ତି ତାହା Dr. Nainaz ଙ୍କ ମତରେ କୋଣାର୍କ ସୂର୍ଯ୍ୟମନ୍ଦିର କଥା ହୋଇପାରେ ।

ଆରବ ପରିବ୍ରାଜକ ଗର୍ଦିଜୀଙ୍କ ବିବରଣୀ- ୧୦୪୯-୫୩ ଖ୍ରୀ.ଅ. ଓ ଆଲବେରୁଣି-୧୦୩୦ ଖ୍ରୀ.ଅ.- ପ୍ରୟାଗ ଠାରୁ ଦୂରତ୍ୱ ଭୁଲ୍ କହିଲେ ମଧ୍ୟ 'ଅର୍କକ୍ଷେତ୍ର' ଏବଂ 'ଉରଡ଼ବିଶାହୁ' କଥା ଉଲ୍ଲେଖି କରିଛନ୍ତି ଯାହାର ଅର୍ଥ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କହିଛନ୍ତି 'କୋଣାର୍କ' ଏବଂ 'ଓଡ୍ର ବିଷୟକ' ।

ରସିଉଦ୍ଦିନ୍‌ଙ୍କ ଜମିଉତ୍-ତାୱାରିଖ୍ (୭୧୦-୧୨୧୦ ଖ୍ରୀ.ପୂ.) 'ଭରିହର' ଓ 'ଉର୍ଦବିଶାକ୍' ରାଜ୍ୟର ସମୁଦ୍ରତୀରେ ଅର୍କତୀର୍ଥ କଥା ଉଲ୍ଲେଖି କରିଛନ୍ତି ।

## ପୁରାତନ ସୂର୍ଯ୍ୟ ମନ୍ଦିର :

ମାଦଳା ପାଞ୍ଜି ମତେ କେଶରୀ ବଂଶର ପୁରନ୍ଦର କେଶରୀ ଏଠାରେ ଗୋଟିଏ ମନ୍ଦିର ନିର୍ମାଣ କରିଥିଲେ ଏବଂ ସେ ମନ୍ଦିର ଆଗକୁ ନରସିଂହଦେବ ବଡ଼ ଦେଉଳ ଗଢ଼ି ପୁରାତନ ମନ୍ଦିରର ବିଗ୍ରହ ନୂଆ ମନ୍ଦିରକୁ ସ୍ଥାନାନ୍ତରିତ କରିଥିଲେ । ସେ ଦେଉଳ କୁଆଡ଼େ ଗଲା ?

ଗାଙ୍ଗୁଲୀ ଓ କୃପାସିନ୍ଧୁଙ୍କ ମତରେ ଏହା ରାମଚଣ୍ଡୀ ମନ୍ଦିର [୮୯] । ଉତ୍କଳ ଗୌରବ ମଧୁସୂଦନ ଦାସ କୃପାସିନ୍ଧୁଙ୍କ ପୁସ୍ତକର ମୁଖବନ୍ଧ ଲେଖିବାକୁ ଯାଇ କହିଛନ୍ତି, ଏହା ରାମଚଣ୍ଡୀ ମନ୍ଦିର ନୁହେଁ, ଏହା ସୂର୍ଯ୍ୟପତ୍ନୀ ଛାୟାଦେବୀଙ୍କ ମନ୍ଦିର ।[୯୦] ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଥମେ ରାମଚଣ୍ଡୀ କହି ପରେ ଛାୟାଦେବୀ ସପକ୍ଷରେ ମତ ପରିବର୍ତ୍ତନ କରିଛନ୍ତି ।[୯୧] ବିଶନ୍ ସ୍ୱରୂପ ଏହାକୁ ବୁଦ୍ଧଦେବଙ୍କ ମାତା ମାୟାଦେବୀ ମନ୍ଦିର କହିଛନ୍ତି ।[୯୨] ବାୟାଚକଡ଼ାମତେ ଏହା ମହାଗାୟତ୍ରୀ ମନ୍ଦିର ।[୯୩] କରୁଣାସାଗର ଏହାକୁ ସର୍ତ୍ତମୂଳକ ଭାବେ ସୂର୍ଯ୍ୟମନ୍ଦିର କହିଛନ୍ତି ।[୯୪] ଦେବଳା ମିତ୍ର ପ୍ରଥମେ ଏହାକୁ ମାୟାଦେବୀ ମନ୍ଦିର କହି ମଧ୍ୟ ନାନା ପ୍ରମାଣ ଆଲୋଚନା ପରେ ସୂର୍ଯ୍ୟମନ୍ଦିର କହିଛନ୍ତି ।[୯୫]

ବିଶନ୍ ସ୍ୱରୂପ କାମଳ ରୋଗୀଙ୍କ ଭଳି କୋଣାର୍କର ଗୋଡି ମାଟିରେ ବୁଦ୍ଧ ସ୍ଥାପତ୍ୟ ଦେଖିଛନ୍ତି । ଇଂଜିନିୟର ବିଶନ୍ ସ୍ୱରୂପ ୧୯୦୨ ଠାରୁ ୧୯୧୦ ମଧ୍ୟରେ କୋଣାର୍କ ଦେଉଳର ସଂରକ୍ଷଣ କାର୍ଯ୍ୟ ସହିତ ସଂଯୁକ୍ତ ଥିବାରୁ ତାହାଙ୍କ ନିକଟରୁ ଏ ମନ୍ଦିରର ବୈଷୟିକ ଦିଗ ଉପରେ ବିଶେଷ ଆଲୋକପାତ ଆଶା କରାଯାଇଥିଲା । ୧୦୪ ପୃଷ୍ଠାର ବହିରେ ଯେପରି କିଛି ମିଳିଲା ନାହିଁ, ତେବେ ପୁସ୍ତକର ଅର୍ଦ୍ଧାଧିକ ବ୍ୟୟ କରିଛନ୍ତି ତାଙ୍କର ମନଗଢ଼ା ଯୁକ୍ତି ସବୁ 'ପ୍ରମାଣ' କରିବାକୁ । ପଣ୍ଡିତ କୃପାସିନ୍ଧୁ ମିଶ୍ର ମଧ୍ୟ ତାଙ୍କ ପୁସ୍ତକର ବହୁ ପୃଷ୍ଠା ବ୍ୟୟ କରିଛନ୍ତି ବିଶନ୍ ସ୍ୱରୂପଙ୍କ ତଥ୍ୟର ଅସାରତା ପ୍ରମାଣ କରିବାକୁ । କରୁଣାସାଗର ମଧ୍ୟ ବିଭିନ୍ନ ସମୟରେ ବିଶନ୍ ସ୍ୱରୂପଙ୍କ ମତାମତର ଯୁକ୍ତିପୂର୍ଣ୍ଣ ଆଲୋଚନା କରି ନାକଚ କରି ଦେଇଛନ୍ତି ।

**ରାମଚଣ୍ଡୀ-** ଏ ମତର ଦୃଢ଼ ଦାବିଦାର କୃପାସିନ୍ଧୁ । ଗାଙ୍ଗୁଲୀ ସପକ୍ଷରେ କି ବିପକ୍ଷରେ କିଛି କହିନାହାଁନ୍ତି । କୃପାସିନ୍ଧୁଙ୍କ ରଚନାକାଳ ୧୯୧୯ ଏବଂ ଗାଙ୍ଗୁଲୀ ତାହାର ୭ବର୍ଷ ପୂର୍ବରୁ ୧୯୧୨ । ମନେହୁଏ ସେ ସମୟରେ ରାମଚଣ୍ଡୀ ନାମ ପ୍ରଚଳିତ ଥିଲା । କୃପାସିନ୍ଧୁ ତାଙ୍କ ଯୁକ୍ତି ସପକ୍ଷରେ ପ୍ରଚଳିତ ରାମଚଣ୍ଡୀ ଢଗ ଏବଂ ସ୍ଥାନୀୟ କେତେକ ପ୍ରବୀଣ ଲୋକମାନଙ୍କ ମତାମତକୁ ଗ୍ରହଣ କରିଛନ୍ତି । ତାଙ୍କ ଭାଷାରେ ପ୍ରବୀଣ ଲୋକମାନେ 'ଛାୟାଦେବୀ' ନାମ ସୁଦ୍ଧା ଶୁଣି ନାହାନ୍ତି । କିମ୍ବଦନ୍ତୀ ପ୍ରମାଣ ନୁହେଁ ଏବଂ ପ୍ରବୀଣ ଲୋକମାନଙ୍କର ସ୍ମୃତି କେତେ ପଛକୁ ଯାଇ ପାରିବ ? ଏପରିକି ସମସାମୟିକ କାଳରେ ଅନ୍ୟନାମ କେହି ଶୁଣି ନାହାନ୍ତି କହିବା ମଧ୍ୟ ଠିକ୍ ନୁହେଁ । ASI ର D.G. ଦେବଳା ମିତ୍ର ଲେଖିଛନ୍ତି, "Since the reclamation of the temple from sand in the 1st decade of the present century, it has assumed the present name as the temple of Mayadevi who is popularly believed to be one of the wives of Surya."[୯୬]

ଚଣ୍ଡୀ ଦେବୀଙ୍କ ନାନା ସ୍ଥାନୀୟ ନାମ ଥାଏ ଯଥା, ଗଡ଼ଚଣ୍ଡୀ, କଟକଚଣ୍ଡୀ ଇତ୍ୟାଦି । ରାମଚଣ୍ଡୀ ରାମଚନ୍ଦ୍ରଙ୍କ ସ୍ମୃତି ବହନ କରୁଛି । ରାବଣବଧ କରିବାକୁ ଯିବା ପୂର୍ବେ ରାମଚନ୍ଦ୍ର ଦେବୀଙ୍କର ଅକାଳବୋଧନ କରିଥିଲେ ଏହା ସର୍ବଜ୍ଞାତ । ତେବେ ସେ କାର୍ଯ୍ୟ ହୋଇଥିବା ସ୍ୱାଭାବିକ ରାମେଶ୍ୱରମ୍ ସେତୁବନ୍ଧ ନିକଟରେ, ସେ ଦେବୀ ଏଠାକୁ କିପରି ଆସିଲେ ? ମନେହୁଏ କୌଣସି ଏକ ଚଣ୍ଡୀ ଭକ୍ତ କୋଣାର୍କରେ ସେ ନାମର ପ୍ରଚଳନ କରିଥିଲେ । ଏହା ଇତିହାସ ରୂପେ ଗଣାଯାଇ ପାରିବ ନାହିଁ ।

କେତେକଙ୍କ ମତରେ ଏ ମନ୍ଦିର ସୂର୍ଯ୍ୟ ପତ୍ନୀଙ୍କ ମନ୍ଦିର । ସୂର୍ଯ୍ୟଦେବଙ୍କ ଅନେକଗୁଡ଼ିଏ ପତ୍ନୀଙ୍କ ନାମ ମିଳୁଛି । ମଧୁସୂଦନ ଦାସ କହୁଛନ୍ତି ସଂଜ୍ଞା ଓ ଛାୟା, ଦେବଳା ମିତ୍ର କହୁଛନ୍ତି ମାୟାଦେବୀ ନାମ ପ୍ରଚଳିତ ଥିଲା ମନ୍ଦିର ଖନନ ସମୟରେ । ଷ୍ଟେଲା କର୍ମରୀଶ୍ କହୁଛନ୍ତି ସୂର୍ଯ୍ୟଦେବଙ୍କ ଚାରିଜଣ ପତ୍ନୀଙ୍କ ନାମ, ରଜନୀ, ନିକୁମ୍ଭ, ଛାୟା ଓ ଶୁଭ୍ରାକାଶ ।[୯୬] ବାୟାଚକଡ଼ାମତେ ଏ ମନ୍ଦିର ମହାଗାୟତ୍ରୀ ଦେବୀଙ୍କ ମନ୍ଦିର ।[୯୭] ପ୍ରଥମ କଥା, ସୂର୍ଯ୍ୟଦେବଙ୍କର କୌଣସି ଜଣେ ପତ୍ନୀଙ୍କ ପ୍ରତି ପକ୍ଷପାତିତା ଥିଲା- ଏହା କେଉଁଠାରେ ମିଳୁନାହିଁ । ଦ୍ୱିତୀୟତଃ ଯେଉଁମାନେ ମୂଳଦେବତାଙ୍କ ଶକ୍ତିଙ୍କ ପାଇଁ ସ୍ୱତନ୍ତ୍ର ମନ୍ଦିର ସପକ୍ଷରେ ମତ ଦେଉଛନ୍ତି, ସେମାନେ ପୁରୀ ଜଗନ୍ନାଥ ଓ ଲିଙ୍ଗରାଜ ମନ୍ଦିର କଥା କହୁଛନ୍ତି ।[୯୮] ଏ ଦୁଇଟି ଛଡ଼ା ଅନ୍ୟ କୌଣସି ଠାରେ ସ୍ୱତନ୍ତ୍ର ମନ୍ଦିର ନାହିଁ । ଏ ମନ୍ଦିର ଦ୍ୱୟରେ ମଧ୍ୟ ଅଧିଷ୍ଠାତ୍ରୀ ଦେବୀମାନଙ୍କର ପାର୍ଶ୍ୱଦେବତା ତାଙ୍କର ପତି ନୁହନ୍ତି । କେଉଁ ଦେବତାଙ୍କ କିଏ ପାର୍ଶ୍ୱଦେବତା ହେବେ ତାହା ଶାସ୍ତ୍ରରେ ଲେଖାଅଛି ।[୯୯] ମୂଳ ଦେବତାଙ୍କର ଅବତାର ଅଥବା ସହଯୋଗୀ ଦେବତା ପାର୍ଶ୍ୱଦେବ ହୁଅନ୍ତି । ଦେବୀ ମନ୍ଦିରମାନଙ୍କରେ ମଧ୍ୟ ସେଇ ରୀତି ପ୍ରଚଳିତ । ସୂର୍ଯ୍ୟ ପତ୍ନୀଙ୍କ ଦେଉଳ ତିନି ପଟେ ତାଙ୍କ ପତି ପାର୍ଶ୍ୱଦେବତା ହୋଇଥିବା ଯୁକ୍ତିସମ୍ମତ ନୁହେଁ । ଏ ମନ୍ଦିରର ଦକ୍ଷିଣ ଓ ଉତ୍ତର ପାର୍ଶ୍ୱରେ ବଡ଼ ଦେଉଳ ଅନୁରୂପ ଦୁଇଟି ସୂର୍ଯ୍ୟ ମୂର୍ତ୍ତି ଅଛି, ପଶ୍ଚିମ ପାର୍ଶ୍ୱଦେବତା ଅପସାରିତ ଏବଂ ବର୍ତ୍ତମାନ ଦିଲ୍ଲୀ ଜାତୀୟ ସଂଗ୍ରହାଳୟ (National Museum)ରେ ଅଛି ।

ଏ ମନ୍ଦିରର ସ୍ଥାପତ୍ୟ ବିଚାର କରାଯାଇଛି ତୃତୀୟ ପରିଚ୍ଛେଦରେ । ସେଥିରୁ ନିଶ୍ଚିତ ରୂପେ ଜଣାପଡୁଛି, ଏ ମନ୍ଦିର ବଡ଼ ମନ୍ଦିର ନିର୍ମାଣ ହେବାର ବହୁ ପୂର୍ବରୁ ନିର୍ମିତ । ମୂଳଦେବତାଙ୍କ ମନ୍ଦିର ନିର୍ମାଣ ହେବାର ବହୁ ପୂର୍ବରୁ ତାଙ୍କ ପତ୍ନୀଙ୍କ ମନ୍ଦିର ନିର୍ମିତ ହେଲା- ଏହା ବିଶ୍ୱାସଯୋଗ୍ୟ ନୁହେଁ ।

## ବିବାଦ ଘେରରେ ନାଟମଣ୍ଡପ :

ଜଗମୋହନର କିଛି ଆଗକୁ ଗୋଟିଏ ଛାତଶୂନ୍ୟ ମଣ୍ଡପ ଅଛି, ଯାହା ଅକାରଣରେ ବିବାଦାତ୍ମକ ହୋଇଉଠିଛି । ପ୍ରଥମେ ବିଶନ୍ ସ୍ୱରୂପ କହିଲେ, ଏହା ନରସିଂହଦେବଙ୍କର ଦେବତାମାନଙ୍କ ସହିତ ବସା ଉଠା କରିବାର ବୈଠକଖାନା (କୋଣାର୍କ- ପୃ.୭୧) । ପର ପୃଷ୍ଠାରେ କହିଲେ, ପୁରନ୍ଦ୍ର କେଶରୀ ବଡ଼ ମନ୍ଦିରଟି ଗଢ଼ିଥିଲେ, ନରସିଂହଦେବ ଏ ନାଟମଣ୍ଡପଟି ମାତ୍ର ଗଢ଼ିଥିଲେ । (ନାଟମଣ୍ଡପ କ'ଣ ଦେବତାଙ୍କ ବୈଠକଖାନା !) ଗାଙ୍ଗୁଲୀ ଏହାକୁ ଭୋଗମଣ୍ଡପ କହିଛନ୍ତି ।[୧୦୦] ଏହାପରେ କୃପାସିନ୍ଧୁ ଏହାକୁ ନାଟମଣ୍ଡପ କହିଛନ୍ତି ।[୧୦୧] ଏହାପରେ ଦେବଳା ମିତ୍ର ଏହାକୁ ଭୋଗମଣ୍ଡପ କହିଛନ୍ତି ।[୧୦୨] କରୁଣାସାଗର ଏହାକୁ ନାଟମଣ୍ଡପ କହିଛନ୍ତି [୧୦୩] । ଷ୍ଟେଲା କର୍ମରୀଶ୍ ଏହାକୁ ନାଟମଣ୍ଡପ ହିଁ କହିଛନ୍ତି ।[୧୦୪] ଏମାନଙ୍କ ଯୁକ୍ତି ପର୍ଯ୍ୟାୟକ୍ରମେ ଆଲୋଚିତ ହେବ ।

ଗଙ୍ଗବଂଶର ଦ୍ୱିତୀୟ ନରସିଂହଦେବ ତାଙ୍କର ପିତୃବ୍ୟ ପ୍ରଥମ ନରସିଂହଦେବଙ୍କ ଗୁଣଗାନ କରି ଗୋଟିଏ ତାମ୍ର ଅନୁଶାସନ ଚଳେଇ ଥିଲେ । ଅନୁଶାସନଟି ପଣ୍ଡିତମାନଙ୍କ ମଧ୍ୟରେ ବହୁଚର୍ଚ୍ଚିତ[୧୦୫] । ସେଥିରୁ ଗୋଟିଏ ଶ୍ଳୋକ :

"କୁର୍ବନ୍ ପ୍ରକାଶମ୍ ଅନିଶମ୍ ଦ୍ୱିଜସାଜ କୃତ୍ୱା,
ମେରୁ ତୁଳାପୁରୁଷ ମୁଖ୍ୟ ମହାର୍ଥ-ଦାନୈଃ ।
ସ୍ଥାତୁଂ ସୁରୈଃ ସହ ମହତ୍ କଳୟଂଶ୍ଚକୋଣା-
କୋଣେ କୁଟୀରକମଚୀକରଦୁଷ୍ଣରଶ୍ମେଃ ।।"

ଶ୍ଳୋକଟିର ପ୍ରଥମ ଭାଗର ଅର୍ଥ, ପୁରୁଷ ମୁଖ୍ୟ ନରସିଂହଦେବ ମେରୁ ସମାନ ଦାନ କରିଥିଲେ ଏବଂ ଦ୍ୱିତୀୟ ଭାଗର ଅର୍ଥ ଉଷ୍ଣରଶ୍ମି ସୂର୍ଯ୍ୟଦେବଙ୍କ ପାଇଁ କୁଟୀର ଗୋଟିଏ ନିର୍ମାଣ କରିଦେଲେ ।



**ଫଟୋ-୩ଃ ସୂର୍ଯ୍ୟଙ୍କ ପାଦତଳେ ନରସିଂହଦେବ**

'କୁଟୀରକ' ଶବ୍ଦଟିର ନିହିତାର୍ଥ ନେଇ ବିବାଦ ଉଠାଇଛନ୍ତି ବିଶନ ସ୍ୱରୂପ । ସେ ମାନିବାକୁ ନାରାଜ ଶ୍ଳୋକଟି ରଚିତ ହୋଇଥିଲା କୋଣାର୍କର ବଡ଼ ଦେଉଳ ବୁଝେଇବାକୁ । ତାଙ୍କ ମତ ବଡ଼ ଦେଉଳଟି ବହୁ ପୂର୍ବେ ପୁରନ୍ଦର କେଶରୀ ଗଢ଼ିଥିଲେ, ନରସିଂହ ଦେବ କେବଳ ତୁଳନାମୂଳକ ଭାବେ କୁଟୀର ସଦୃଶ ନାଟମଣ୍ଡପଟି ତାହା ସମ୍ମୁଖରେ ଗଢ଼ିଦେଲେ । ବିଶନ୍ ସ୍ୱରୂପ ଆଦୌ ବେଢ଼ାର ଦକ୍ଷିଣ ପଶ୍ଚିମରେ ଥିବା ଛୋଟ ମନ୍ଦିର କଥା ବିଚାରକୁ ନେବା ପାଇଁ ମଧ୍ୟ ଭାବି ନାହାନ୍ତି; କାରଣ ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ସେ ମନ୍ଦିରଟି ବୁଦ୍ଧଦେବଙ୍କ ମାତା ମାୟାଦେବୀଙ୍କ ମନ୍ଦିର । (ବିଷୟଟି ପୂର୍ବରୁ ଆଲୋଚିତ ହୋଇଛି) ।

ପଣ୍ଡିତ କୃପାସିନ୍ଧୁ ଏ ଅଜବ ବ୍ୟାଖ୍ୟା କାଟିବାକୁ ଛଅ ପୃଷ୍ଠା ବ୍ୟୟ କରିଛନ୍ତି ।(୧୦୫) କରୁଣାସାଗର କହିଛନ୍ତି, ମାଦଳା ପାଞ୍ଜିରେ ବର୍ଣ୍ଣିତ କେଶରୀ ବଂଶ ତାଲିକାରେ କୌଣସି ପୁରନ୍ଦର କେଶରୀ ନାହାନ୍ତି ।(୧୦୬)

ଆଖିରୁ ପାଣ୍ଡିତ୍ୟର ଚଷମା କାଢ଼ି ବିବାଦୀୟ ଶ୍ଳୋକଟିର ସିଧା ସଳଖ ଅର୍ଥ କରିଲେ ବୁଝିବାର ଅସୁବିଧା ନାହିଁ, ସୂର୍ଯ୍ୟଦେବଙ୍କ ପ୍ରତି ଅପାର ଭକ୍ତିରୁ ବିନୟର ସହିତ ବିଶାଳ ମନ୍ଦିରଟିକୁ କୁଟୀର କୁହାଯାଇଛି । ନଚେତ୍ ଲାଙ୍ଗୁଡ଼ା ନରସିଂହଦେବଙ୍କ ଭଳି ଜଣେ ଅସାମାନ୍ୟ ନରପତି ତାଙ୍କର ଅତିଭକ୍ତିଭାଜନ ସୂର୍ଯ୍ୟଦେବଙ୍କ ପାଇଁ ନଗଣ୍ୟ ମନ୍ଦିରଟିଏ ଗଢ଼ିଦେବେ, ଏହା ଅବିଶ୍ୱାସ୍ୟ । ଏହାଛଡ଼ା ନାଟମଣ୍ଡପ ନୃତ୍ୟଗୀତର ଆସର ପାଇଁ ଗଢ଼ା ହୋଇଥାଏ, ଦେବତା ଅଥବା ସନ୍ତମାନଙ୍କ ସହିତ ବିଶ୍ରମାଳାପ ପାଇଁ ନୁହେଁ, ଯାହା ବିଶନ୍ ସ୍ୱରୂପ ନିଜ ବ୍ୟାଖାରେ କହିଛନ୍ତି । ଶେଷ କଥା, ଦ୍ୱିତୀୟ ନରସିଂହଦେବ ତାଙ୍କର ବିଖ୍ୟାତ ପୂର୍ବଜଙ୍କୁ ହୀନ କରିବା ପାଇଁ ତାମ୍ର ଅନୁଶାସନ କେବେହେଲେ ତିଆରି କରି ନଥିବେ ।

ବିଶନ୍ ସ୍ୱରୂପଙ୍କୁ ନାକଚ୍ କରିଦେବା ପରେ କରୁଣାସାଗର ପୁଣି କହିଛନ୍ତି, ପୁରନ୍ଦ୍ର କେଶରୀଙ୍କ ଐତିହାସିକତା ପ୍ରମାଣ ହୋଇ ପାରିବ ଯେବେ ତାହାଙ୍କୁ ସୋମବଂଶୀ ରାଜା ପୁରଞ୍ଜୟ ଅଥବା ଇନ୍ଦ୍ରରଥ ବୋଲି ଧରାଯିବ । ତେବେ ଯାଇ ବିବାଦଟିର ସମାଧାନ ହୋଇପାରିବ । କାରଣ ପ୍ରତ୍ନତାତ୍ତ୍ୱିକ ପ୍ରମାଣ ମିଳୁଛି, ପୂର୍ବରୁ ଗୋଟିଏ ସୂର୍ଯ୍ୟ ମନ୍ଦିର ଥିଲା, ଯାହା ସମ୍ମୁଖରେ ନରସିଂହଦେବ ଆଉ ଗୋଟିଏ ବିଶାଳ ମନ୍ଦିର ଗଢ଼ିଲେ ଏବଂ ଗଠନ ଶୈଳୀରୁ ଜଣାପଡୁଛି ତଥାକଥିତ ଛାୟାଦେବୀ ମନ୍ଦିର ବଡ଼ଦେଉଳଠାରୁ ପୁରାତନ ।(୧୦୭) କରୁଣାସାଗର କିନ୍ତୁ କହି ନାହାନ୍ତି, ପୁରଞ୍ଜୟ କେଉଁ ସମୟରେ ରାଜତ୍ୱ କରୁଥିଲେ କିମ୍ବା ଏ ଦିଗରେ ଆଉ ଆଗେଇ ନାହାନ୍ତି ।

ନାମ ବିବାଦ ଗୋଟିଏ ବଡ଼ ବିବାଦ ନୁହେଁ । ସେ ସମୟରେ ରାଜା ମହାରାଜାମାନେ ନାନା ନାମଭୂଷଣରେ ଅଭିଷିକ୍ତ ହେଉଥିଲେ, ଯଥା- ଅନିୟଙ୍କଦେବ-ଅନଙ୍ଗଭୀମଦେବ, ଚୋଡ଼ଗଙ୍ଗ-ଚୋଳଗଙ୍ଗ । ନାମ ବିବାଦକୁ ବାଦ ଦେଇ ଦେଖିବାକୁ ହେବ, ୮୫୦ ଖ୍ରୀଷ୍ଟାବ୍ଦରେ କେହି ସୂର୍ଯ୍ୟମନ୍ଦିର ଗଢ଼ିଥିଲେ କି ଏବଂ ସେ କିଏ ? ୮୫୦ ଖ୍ରୀଷ୍ଟାବ୍ଦ କଥା ଉଠୁଛି, କାରଣ ମୂଳ ବିବାଦର ସୂତ୍ରପାତ ଆବୁଲ୍‌ଫଜଲ ପ୍ରଣୀତ ଆଇନ୍-ଇ-ଆକବରୀରୁ , ଯାହାକୁ ବିଶନ୍ ସ୍ୱରୂପ ଗଣ୍ଠି କରି ଧରି ବସିଛନ୍ତି । ଆବୁଲଫଜଲ୍‌ଙ୍କ ଓଡ଼ିଶା ଆଗମନ ୧୫୮୦ ଏବଂ ସେ ୭୫୦ ବର୍ଷ ପୂର୍ବେ କୋଣାର୍କ ଗଢ଼ା ହୋଇଥିଲା ବୋଲି କହୁଛନ୍ତି । (ଲୋକ ମୁଖେ ଶ୍ରୁତ)

ଇଣ୍ଟେରନେଟ୍‌ରୁ ପ୍ରାପ୍ତ ଗୋଟିଏ ତଥ୍ୟ ଅନୁଯାୟୀ, ପୁରଞ୍ଜୟ କେଶରୀ ଉଦ୍ୟୋତ କେଶରୀଙ୍କ ପୌତ୍ର ଏବଂ କର୍ଣ୍ଣଦେବଙ୍କ ଭ୍ରାତା । ତାଙ୍କର ରାଜତ୍ୱକାଳ ସପ୍ତମ ଶତାବ୍ଦୀ, ନବମ ଶତାବ୍ଦୀ ନୁହେଁ, ଆବୁଲ୍‌ଫଜଲ କଥିତ ସମୟର ଅନ୍ତତଃ ଆହୁରି ଦେଢ଼ଶହ ବର୍ଷ ପୂର୍ବରୁ ।

ଅନ୍ୟ ଦିଗରୁ ଦେଖିଲେ ଚୋଡ଼ଗଙ୍ଗଦେବ ୧୧୧୨ ଖ୍ରୀଷ୍ଟାବ୍ଦରେ କର୍ଣ୍ଣଦେବଙ୍କ ଠାରୁ ରାଜ୍ୟ ଛଡ଼ାଇ ନେଇଥିଲେ । (ପୂର୍ବେ ଆଲୋଚିତ ହୋଇଛି ) ଯଦି ପୁରଞ୍ଜୟ ଅଥବା ପୁରନ୍ଦର କେଶରୀ ଏଇ କର୍ଣ୍ଣଦେବଙ୍କ ଭ୍ରାତା ହୋଇ ଥାଆନ୍ତି, ତେବେ ହୁଏତ ପୁରଞ୍ଜୟ/ପୁରନ୍ଦର ଓ କର୍ଣ୍ଣଦେବଙ୍କୁ ଆଗେଇ ଆସିବାକୁ ପଡ଼ିବ ଚୋଡ଼ଗଙ୍ଗଙ୍କ ସମୟକୁ ଅଥବା ସପ୍ତମ ଶତାବ୍ଦୀରେ କେଶରୀ ବଂଶର ଆଉ ଜଣେ ପୁରଞ୍ଜୟ ଖୋଜିବାକୁ ପଡ଼ିବ । ସମସ୍ତ ପ୍ରଶ୍ନର ସଦୁତ୍ତର ଏ ଯାଏ ମିଳିନାହିଁ । କିନ୍ତୁ ଏତିକି ନିଶ୍ଚିତ ରୂପେ କୁହାଯାଇ ପାରିବ, ସେ ପୁରାତନ ମନ୍ଦିର ଦକ୍ଷିଣ-ପଶ୍ଚିମ କୋଣରେ ଥିବା ଛୋଟ ମନ୍ଦିରଟି, ଯାହାକୁ ଛାୟାଦେବୀ, ମାୟାଦେବୀ ଇତ୍ୟାଦି ନାମରେ ଭୂଷିତ କରାଯାଇଛି ଏବଂ ଏହା ସହିତ ନାଟମଣ୍ଡପର ସମ୍ପର୍କ କଷ୍ଟକଳ୍ପିତ ।

ଏହାପରେ ଆସିବା ଅନ୍ୟାନ୍ୟ ବିବାଦକୁ । ମନମୋହନ ଗାଙ୍ଗୁଲୀ ଏହାକୁ ଭୋଗମଣ୍ଡପ ଅଭିହିତ କରିଛନ୍ତି । କାରଣ ସେ ଧରି ନେଇଛନ୍ତି ପୁରୀ ଓ ଲିଙ୍ଗରାଜ ମନ୍ଦିର ଭଳି ଏଠାରେ ମଧ୍ୟ ଜଗମୋହନ ପରେ ଆଗେ ନାଟମଣ୍ଡପ ଓ ପରେ ଭୋଗମଣ୍ଡପ ଥିବା କଥା । ଏହା ଯେବେ ନାଟମଣ୍ଡପ ହେବ, ତାହା ଆଗକୁ ଭୋଗମଣ୍ଡପ ପାଇଁ ଆଉ ସ୍ଥାନ ନାହିଁ (ବେଢ଼ା ଠାରୁ ମାତ୍ର ୮୫ ଫୁଟ ଦୂର, ଚିତ୍ର ନଂ.୮, ପୃଷ୍ଠା-୧୦୬ ଦେଖନ୍ତୁ) । ତାଙ୍କ ମତାନୁସାରେ ଯଦି ଏହା ଭୋଗମଣ୍ଡପ, ନାଟମଣ୍ଡପ ଗଢ଼ିବାକୁ ମାତ୍ର ୪୦ ଫୁଟ ସ୍ଥାନ ପଛରେ ରହିଛି, ଯାହା ଏ ବିଶାଳ ମନ୍ଦିରକୁ ସାଜିଲା ଭଳି ନୁହେଁ । ଅବଶ୍ୟ ଯେବେ ପ୍ରସିଦ୍ଧ ସପ୍ତାଶ୍ୱ ଓ ତତ୍‌ସଂଲଗ୍ନ ସୋପାନ ଭଙ୍ଗାଯାଏ, ଅନ୍ୟ କଥା । ଏପରି ବାତୁଳ ପରିକଳ୍ପନା ଅନ୍ତତଃ କୋଣାର୍କ ସ୍ଥପତି କରି ପାରି ନଥିବେ ।

କୃପାସିନ୍ଧୁ ଏହାକୁ ସ୍ୱାଭାବିକ ଭାବେ ନାଟମଣ୍ଡପ କହିଛନ୍ତି କାରଣ ଏହାର କାନ୍ଥବାଡ଼ ସର୍ବତ୍ର ନର୍ତ୍ତକ ନର୍ତ୍ତକୀ ମୂର୍ତ୍ତି ଯାହାର ପ୍ରୟୋଜନୀୟତା ନାହିଁ ଭୋଗମଣ୍ଡପରେ ।

ଦେବଳା ମିତ୍ର ଏହାକୁ ଭୋଗମଣ୍ଡପ ଅଭିହିତ କରିଛନ୍ତି ଦୁଇଟି କାରଣରୁ । ଗୋଟିଏ କାରଣ ଏହାର ଦକ୍ଷିଣରେ ଅଛି ରନ୍ଧନଶାଳା ।[୧୦୮] ଦ୍ୱିତୀୟ କାରଣ ଏହା ଭିତରେ ଥିବା ମୋଟ ମୋଟ ଖମ୍ବ ଲିଙ୍ଗରାଜ ଭୋଗମଣ୍ଡପ ଭଳି ଏବଂ ସ୍ୱଳ୍ପ ସ୍ଥାନ, ଭୋଗ ରଖିବାପାଇଁ ଉପଯୁକ୍ତ । ଦେବଳା ମିତ୍ର କିନ୍ତୁ ଏତେ ନାଟ୍ୟଗୀତର ଆୟୋଜନ କଥା ସମ୍ପୂର୍ଣ୍ଣ ଅଣଦେଖା କରିଯାଇଛନ୍ତି ଏବଂ ଭୋଗ ଥିବା ସ୍ଥାନ ଚାରିପଟ ଏତେ ଖୋଲା କାହିଁକି ସେ କଥା ଆଲୋଚନା କରି ନାହାନ୍ତି ।

ଦେବଳା ମିତ୍ର ଯେଉଁ ଯୁକ୍ତିଟି ବାଢ଼ିଛନ୍ତି ଭୋଗମଣ୍ଡପ ସପକ୍ଷରେ, ତାହା ମଧ୍ୟ ବିପକ୍ଷରେ ଯାଉଛି । ୮ ନମ୍ବର ରେଖାଚିତ୍ର ଦେଖନ୍ତୁ । ରନ୍ଧନଶାଳା ନାଟମଣ୍ଡପ ଠାରୁ ୧୨୦ ଫୁଟ ଦୂରରେ ଅବସ୍ଥିତ । ମଣ୍ଡପଟି ଯେବେ ଭୋଗମଣ୍ଡପ ରୂପେ କଳ୍ପିତ ହୋଇଥାଆନ୍ତା, ରନ୍ଧନଶାଳା ଏତେ ଦୂରରେ ଗଢ଼ିବାର ପ୍ରୟୋଜନ ହୁଅନ୍ତା ନାହିଁ ।

କରୁଣାସାଗର ତାଙ୍କର ଚିରାଚରିତ ଗଭୀର ଅନୁସନ୍ଧାନର ଫଳ ସ୍ୱରୂପ କେତୋଟି ମୂଲ୍ୟବାନ ତଥ୍ୟ ଉପସ୍ଥାପନ କରିଛନ୍ତି ।[୧୦୯] ଭୋଗମଣ୍ଡପର କଳ୍ପନା ବହୁ ପଛେ ଆସିଛି । ଜଗନ୍ନାଥ ମନ୍ଦିରର ଭୋଗମଣ୍ଡପ ବହୁ ବର୍ଷ ପରେ ସୂର୍ଯ୍ୟବଂଶୀ ରାଜା ପୁରୁଷୋତ୍ତମ ଦେବଙ୍କ ଦ୍ୱାରା ଗଠିତ ହେଲା । ନରସିଂହଦେବଙ୍କ ସମୟରେ ମନ୍ଦିରରେ ନର୍ତ୍ତକୀ ଥିବାର ପ୍ରଥା ଥିଲା । ସୀମାଚଳମ୍‌ରେ ତାଙ୍କ ଆଦେଶରେ ଯେଉଁ ବରାହ ମନ୍ଦିରର ପୁନର୍ନିର୍ମାଣ ହୋଇଥିଲା ସେଠାକାର ଶିଳାଲିପି ଅନୁଯାୟୀ ସେଥିରେ ନାଟମଣ୍ଡପ କଥା ଲିଖିତ ଅଛି । ଭବିଷ୍ୟ ପୁରାଣରେ ଲିଖିତ ଅଛି, ଯେଉଁ ରାଜା ସୂର୍ଯ୍ୟ ମନ୍ଦିରରେ ନାଟମଣ୍ଡପ (ପ୍ରେକ୍ଷାନକ) ଗଢ଼ିଦିଏ, ସେ ରାଜସୂୟ ଯଜ୍ଞର ପୂଣ୍ୟ ଅର୍ଜନ କରେ ।

ଓଡ଼ିଶାରେ ଗଙ୍ଗବଂଶର ସ୍ଥାପୟିତା ଚୋଡ଼ଗଙ୍ଗଦେବ ପୁରୀ ମନ୍ଦିରରେ ମାହାରୀ ପ୍ରଥା ପ୍ରଚଳନ କରିଥିଲେ । କାରଣ ସେ ପ୍ରଥା ସେ ଦକ୍ଷିଣରୁ ଆଣିଥିଲେ । ''କୃତ୍ୱା ପ୍ରେକ୍ଷାନକମ୍ ଭାନୋପିବ୍ୟମ୍ ଅୟୋତନ ସୁଭମ୍'' ଇତ୍ୟାଦି ।

ନରସିଂହଦେବ ସୀମାଚଳ ମନ୍ଦିରରେ ୧୦୦ ନର୍ତ୍ତକୀ ନିୟୋଜିତ କରିଥିଲେ । ନାଟ୍ୟଶାସ୍ତ୍ର ଅନୁଯାୟୀ ଖମ୍ବ ଚାରିଟି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରଙ୍କ ପ୍ରତୀକ । ଦେବଳା ମିତ୍ର ଯେଉଁ ସ୍ୱଳ୍ପାୟତନ ସ୍ଥାନକୁ ଭୋଗ ସାମଗ୍ରୀ ରଖିବାର ଉପଯୁକ୍ତ ଭାବିଛନ୍ତି କରୁଣାସାଗର ତାହାର ଓଲଟାଟା କହୁଛନ୍ତି । ଭରତଙ୍କ ନାଟ୍ୟଶାସ୍ତ୍ର ଅନୁଯାୟୀ ସ୍ୱଳ୍ପାୟତନ ରଙ୍ଗାଳୟ କଥା ଲିଖିତ ଅଛି, କାରଣ ଶ୍ରୋତା/ଦର୍ଶକ ନୃତ୍ୟ ଗୀତର ସୂକ୍ଷ୍ମ କାର୍ଯ୍ୟ ଅନୁଭବ କରିପାରିବେ । ଏ ମଣ୍ଡପର ଚାରିପଟ ଦେବାଲ ଖୋଲା ଥିଲେ ମଧ୍ୟ ଉତ୍ତର ଦିଗରେ ସୋପାନ ଉପର ମୁଣ୍ଡି ଛଡ଼ା ବାକି ସ୍ଥାନ ବନ୍ଦ

ଅଛି । ଏହା ନେପଥ୍ୟ ପାଇଁ ପ୍ରୟୋଜନ । କରୁଣାସାଗର ମୋଧେରା ନାଟ୍ୟମଣ୍ଡପ କଥା ମଧ୍ୟ ଉଲ୍ଲେଖ କରିଛନ୍ତି । ସେ ନାଟମଣ୍ଡପ ଏ ଲେଖକ ମଧ୍ୟ ଦେଖି ଆସିଛି । ସେଠାକାର ଆୟୋଜନ କୋଣାର୍କ ନାଟମଣ୍ଡପ ଭଳି, ଭାସ୍କର୍ଯ୍ୟ ଅନ୍ୟ ଶୈଳୀରେ ।

ଷ୍ଟେଲା କର୍ମରୀଶ୍ ଏହାକୁ ନାଟ୍ୟମଣ୍ଡପ ଅଭିହିତ କରି ସିଧାସଳଖ ଲେଖିଛନ୍ତି, "Aesthetically..... more satisfying" । ସେ ଆହୁରି ମଧ୍ୟ କହିଛନ୍ତି, ନାଟମଣ୍ଡପ ଓ ମୁଖଶାଳା ମଧ୍ୟରେ ଗୋଟିଏ ବେଦୀ ଅଛି ଯାହା ବାଜଣାଦାରମାନଙ୍କ ପାଇଁ ଉଦ୍ଦିଷ୍ଟ । "Aesthetically" ଶବ୍ଦଟିର ଗୋଟିଏ ଗଭୀର ବ୍ୟଞ୍ଜନା ଅଛି ଯାହା ହୁଏତ କର୍ମରୀଶ୍ ମଧ୍ୟ ଧରି ପାରିନାହାନ୍ତି ।[୧୧୦]

ମନମୋହନ ଗାଙ୍ଗୁଲୀ କ'ଣ ଦେଖି କିଏ ଜାଣେ, ଗୋଟିଏ ବାକ୍ୟ ଲେଖିଛନ୍ତି । "It is no doubt, a subsequent addition." (page-466) କଥାଟି ସତ୍ୟ ଏବଂ ବିସ୍ତାରିତ ଭାବେ ଆଲୋଚିତ ହେବ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ପରିଚ୍ଛେଦ ଦ୍ୱୟରେ ।

କୋଣାର୍କ ସ୍ଥପତି ଜଣେ ଅସାମାନ୍ୟ ବ୍ୟକ୍ତି ଥିଲେ, ଯାହାଙ୍କ ସିଦ୍ଧାନ୍ତ ରାଜା ନରସିଂହ ଦେବ ମଧ୍ୟ ଭାଙ୍ଗି ପାରୁ ନଥିଲେ । (ଦାକ୍ଷିଣାତ୍ୟରୁ ଆଗତ ଶିଳ୍ପୀ ନିୟୋଜନ କଥା ମନେ ପକାନ୍ତୁ) ।

ଏ ଅସାମାନ୍ୟ ସୃଷ୍ଟି ପଛରେ ଗୋଟିଏ ଅସାମାନ୍ୟ ଦର୍ଶନ କାର୍ଯ୍ୟ କରୁଥିଲା, ଯାହାର ଯୋଡ଼ି ବିଶ୍ୱରେ ନାହିଁ । ଏ ଲେଖକ କାଶ୍ମୀରର ମାର୍ତ୍ତଣ୍ଡ ଠାରୁ ଖଜୁରାହୋର ସୂର୍ଯ୍ୟ ମନ୍ଦିର ତଥା ଗୁଜୁରାଟର ମୋଧେରା ମଧ୍ୟ ଦେଖିଛି । କାହାରି ପରିକଳ୍ପନାରେ ସୌରରଥର ଅନନ୍ତ ପରିକ୍ରମାର ଆଦର୍ଶ, ଏତେ ସ୍ପଷ୍ଟ ରୂପେ ଉଚ୍ଚାରିତ ହୋଇନାହିଁ । ସେ ମହାନ୍ ଦାର୍ଶନିକ ସ୍ଥପତି ନିଶ୍ଚୟ ଚାହିଁ ନଥିବେ ତାଙ୍କ ପରିକଳ୍ପିତ ସୌର ରଥର ଗତି ପଥ ଆଉ ପାଞ୍ଚଟା ଇମାରତ୍ ଦ୍ୱାରା ନିରୋଧିତ ହେଉ । Aesthetic ଶବ୍ଦର ଗଭୀର ବ୍ୟଞ୍ଜନା ଏହିଠାରେ ।

ନରସିଂହଦେବଙ୍କ ସୌର ମନ୍ଦିର ସମ୍ମୁଖରେ ତାଙ୍କ ସମୟରେ ନାଟମଣ୍ଡପ ଗଢ଼ା ହୋଇ ନଥିଲା ।

## ବିଗ୍ରହ :

ଧ୍ୱଂସସ୍ତୂପ ଅପସାରଣ କରିବା ପରେ ଗର୍ଭଗୃହରେ ରତ୍ନସିଂହାସନଟି ମିଳିଲା, ପ୍ରାୟ ଅକ୍ଷତ ଅବସ୍ଥାରେ କିନ୍ତୁ ସେଥିରେ ବିଗ୍ରହ ନଥିଲେ । ବିଭିନ୍ନ ପ୍ରମାଣରୁ ବିଶ୍ୱାସ ହେଉଛି ଏଠାରେ ପୂଜାପାଠ ବହୁବର୍ଷ ହୋଇଥିଲା । ବିଗ୍ରହଟି କୁଆଡ଼େ ଗଲା ତାହା ନେଇ ଅନେକଗୁଡ଼ିଏ ମତ ପ୍ରଚଳିତ ଅଛି ।

୧ । ମାଦଳାପାଞ୍ଜି ଅନୁଯାୟୀ ଆଗମନର ବାର୍ତ୍ତା ପାଇ ସେବକମାନେ ମୂର୍ତ୍ତିଟିକୁ ପୁରୀ ଜଗନ୍ନାଥ ଦେଉଳକୁ ସ୍ଥାନାନ୍ତରିତ କରିନେଲେ ଏବଂ ସେହିଠାରେ ସେ ପୂଜା ପାଉଛନ୍ତି ।

୨ । ଆକ୍ରମଣକାରୀ ମୁସଲମାନମାନେ ବିଗ୍ରହଟିକୁ ଚୂର୍ଣ୍ଣ କରି ଦେଇଥିଲେ ।

୩ । ମୂର୍ତ୍ତିଟି ଜଗନ୍ନାଥ ମୂର୍ତ୍ତି ଭଳି କାଠରେ ନିର୍ମିତ ହୋଇଥିଲା ଯାହା କାଳକ୍ରମେ ନଷ୍ଟ ହୋଇଗଲା ।

୪ । ବିଗ୍ରହ ବଦଳରେ ଗୋଟିଏ ଥାଳି ପୂଜା କରାଯାଉଥିଲା ଯାହା ଶୂନ୍ୟରେ ଝୁଲୁଥିଲା ।

କରୁଣାସାଗର ବିଷୟଟି ଭଲ ରୂପେ ଆଲୋଚନା କରିଛନ୍ତି, କିନ୍ତୁ ଏଥିରୁ କୌଣସି ଗୋଟିଏ ମଧ୍ୟ ନିର୍ଭରଯୋଗ୍ୟ ବୋଲି ବିଶ୍ୱାସ କରି ପାରୁନାହାନ୍ତି ।[୧୧୧]

ଶୁଚିବାୟୁଗ୍ରସ୍ତଗବେଷକମାନଙ୍କ ପରି କରୁଣାସାଗର ମଧ୍ୟ ମାଦଳାପାଞ୍ଜିର ନିର୍ଭରଯୋଗ୍ୟତା ନେଇ ସନ୍ଦିହାନ । ସେଥିପାଇଁ ଯଦିଓ ମାଦଳାପାଞ୍ଜି ଲେଖକମାନେ ବହୁଳାଂଶେ ଦାୟୀ କିନ୍ତୁ ଏହା ଏକମାତ୍ର ନଥି ଯାହା କ୍ରମାନ୍ୱୟରେ ଲେଖା ହୋଇ ଚାଲିଥିଲା ଏବଂ ସଂଶୟୀ ଐତିହାସିକମାନେ ଏହାରି ଖିଅ ଧରି ଆଗେଇଛନ୍ତି । କରୁଣାସାଗର ମଧ୍ୟ ତାହାହିଁ କରିଛନ୍ତି; କିନ୍ତୁ ସେ ଆଲୋଚନା ଆସୁଛି ପରେ ।

୨ନମ୍ବର ମତଟି ଯଦିଓ ବିଶେଷ ରୂପେ ଆଲୋଚିତ ହୋଇନାହିଁ, ଏ ଲେଖକ ବିଶ୍ୱାସ କରେ, ତାହା ହୋଇଥିଲେ ଆକ୍ରମଣକାରୀମାନେ ମୂର୍ତ୍ତିର ଭଗ୍ନାଂଶଗୁଡ଼ିକ ନେଇ ସମୁଦ୍ରରେ ଫୋପାଡ଼ି ଦିଅନ୍ତେ ନାହିଁ, ସେଇ ପଥର ଗଦା ମଧ୍ୟରେ ପଡ଼ିଥାଆନ୍ତା । ପରବର୍ତ୍ତୀ ସମୟରେ ଭଗ୍ନ ମନ୍ଦିର ମଧ୍ୟରୁ ବହୁ ସ୍ୱଳ୍ପଖ୍ୟାତ ମୂର୍ତ୍ତି ଏବଂ ମୂର୍ତ୍ତିର ଭଗ୍ନାଂଶ ବିଭିନ୍ନ ମ୍ୟୁଜିୟମ୍‌ରେ ଅଥବା ସ୍ଥାନୀୟ ମନ୍ଦିରରେ ସ୍ଥାନ ପାଇଛି । ମୁଖ୍ୟ ମୂର୍ତ୍ତିର ଭଗ୍ନାଂଶ ଥିଲେ କିଛି ମିଳିଥାଆନ୍ତା ନିଶ୍ଚୟ । ତେଣୁ ଏ ମତଟି ଗ୍ରହଣଯୋଗ୍ୟ ନୁହେଁ ।

କାଠରେ ତିଆରି ସୂର୍ଯ୍ୟ ମୂର୍ତ୍ତି ସମ୍ବନ୍ଧରେ କରୁଣାସାଗର କହିଛନ୍ତି, ଶାମ୍ବପୁରାଣ ଅନୁସାରେ ମୂର୍ତ୍ତି କାଠରେ ନିର୍ମିତ ହୋଇପାରିବ ଏବଂ ଐତିହାସିକ ଆଲବେରୁଣୀଙ୍କ ମତାନୁଯାୟୀ ମୁଲତାନର ସୂର୍ଯ୍ୟ ବିଗ୍ରହ କାଷ୍ଠ ନିର୍ମିତ; କିନ୍ତୁ ସେ କୌଣସି ସିଦ୍ଧାନ୍ତକୁ ଆସିନାହାନ୍ତି । ଏ ବିଷୟରେ

ଏତିକି କୁହାଯାଇପାରେ (କ) ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତିର କଳ୍ପନା ଅନ୍ୟ କୌଣସି ମନ୍ଦିରରେ ନାହିଁ (ଖ) ଜଗନ୍ନାଥ ମୂର୍ତ୍ତିର ପରିକଳ୍ପନା ଶବରମାନଙ୍କ ସହିତ ସଂଯୁକ୍ତ ଯେଉଁମାନଙ୍କର ସମସ୍ତ ନିର୍ମାଣ କାଠରେ (ଗ) ଓଡ଼ିଶା ଓ ଓଡ଼ିଶା ବାହାରେ କୌଣସି ସୂର୍ଯ୍ୟ ମୂର୍ତ୍ତି କାଠରେ ତିଆରି ନୁହେଁ, ଏପରିକି (ଘ) କୋଣାର୍କର ପାର୍ଶ୍ୱଦେବତାମାନେ ମଧ୍ୟ ପଥରରେ ତିଆରି ଏବଂ (ଙ) ପୁରାତନ ସୂର୍ଯ୍ୟମନ୍ଦିରର ପାର୍ଶ୍ୱଦେବତାମାନେ (ରାମଚଣ୍ଡୀ, ଛାୟାଦେବୀ ଇତ୍ୟାଦି) ସୂର୍ଯ୍ୟ ବିଗ୍ରହ । ବଡ଼ ମନ୍ଦିରରେ ହଠାତ୍ କାଠକୁ ଚାଲିଯିବାର କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ । ଏ ମତଟି ମଧ୍ୟ ଗ୍ରହଣଯୋଗ୍ୟ ନୁହେଁ ।

ଶୂନ୍ୟରେ ଭାସମାନ ସୂର୍ଯ୍ୟ ଥାଳି ସମ୍ବନ୍ଧରେ କରୁଣାସାଗର କହିଛନ୍ତି; ଏପରି ଗୋଟିଏ କୌଶଳ ହିନ୍ଦୁମାନଙ୍କୁ ଜଣାଥିବା କଥା ଐତିହାସିକ ଏଲ୍‌କାଜୱ୍ୱାନୀ କହିଛନ୍ତି, ମହମୁଦ୍ ଦ୍ୱାରା ୧୦୨୬ ଖ୍ରୀଷ୍ଟାବ୍ଦରେ ପ୍ରସିଦ୍ଧ ସୋମନାଥ ମନ୍ଦିର ଆକ୍ରମଣ ପ୍ରସଙ୍ଗରେ । ସେ କିନ୍ତୁ ବିଶ୍ୱାସ କରୁନାହାନ୍ତି, କୋଣାର୍କରେ ସେପରି କିଛି ଥିଲା ବୋଲି । ଯେଉଁ ବିଜ୍ଞାନ (ଅଥବା ମ୍ୟାଜିକ୍) ପଶ୍ଚିମ ପ୍ରାନ୍ତରେ ଆରବ ମହାସାଗର ତୀରରେ ଥିଲା, ଦୁଇ ଶହ ବର୍ଷ ପରେ ତାହା ପୂର୍ବ ପ୍ରାନ୍ତର ବଙ୍ଗୋପସାଗର ତୀରରେ ରହିବାରେ ବାଧା କେଉଁଠି ? ବିଶେଷକରି ଯେତେବେଳେ ଓଡ଼ିଶାରେ ମଧ୍ୟ ସାମୁଦ୍ରିକ ବାଣିଜ୍ୟ ଥିଲା । ଏ ଲେଖକ ଅଳ୍ପଦିନ ତଳେ ନବଗଠିତ ସୋମନାଥ ମନ୍ଦିର ଦେଖି ଆସିଛି । ସେଠାରେ ପେଣ୍ଡାଲ୍ ଉପରେ ଗୋଟିଏ ଲିଙ୍ଗ ଅଛି ଏବଂ ପେଣ୍ଡାଲ୍ ଆଗକୁ ଥିବା ନିମ୍ନ ସ୍ଥାନରେ ଦକ୍ଷିଣା ଦେଇ ଗୋଟିଏ ପାତ୍ରରେ ପାଣି ଢ଼ାଳିଲେ ଲିଙ୍ଗ ମୁଣ୍ଡରେ ପାଣି ପଡୁଛି । ସେଠାରେ କି ମ୍ୟାଜିକ୍ କାମ କରୁଛି ଦିନେ ହୁଏତ ଉଦ୍‌ଘାଟିତ ହେବ । କିନ୍ତୁ ପାଣି କେବେହେଲେ ଉପରକୁ ଉଠେନାହିଁ ଏବଂ ଦେବତା ତାଙ୍କର ଐହିକ ଶକ୍ତି ପ୍ରଦର୍ଶନ କରି ଦକ୍ଷିଣା ଆଦାୟ କରିବାକୁ ବସି ରହି ନାହାନ୍ତି । ଏ ଥିଓରୀର ମୂଳ ବାଧକ କିନ୍ତୁ ଅନ୍ୟତ୍ର । ବୈଦିକ ଯୁଗରେ ହୁଏତ ମୂର୍ତ୍ତି ପୂଜାର ପ୍ରଚଳନ ନଥିଲା ଏବଂ ପୂର୍ବଜମାନେ ଅଗ୍ନି ଗୋଲକ ଭଳି ଝଟକୁଥିବା ବସ୍ତୁ ପୂଜା କରୁଥିଲେ । କିନ୍ତୁ ତାହାର ବହୁ ପରବର୍ତ୍ତୀ କାଳରେ ମୂର୍ତ୍ତି ପୂଜାର ପ୍ରଚଳନ ପରେ ହଠାତ୍ ବୈଦିକ ପ୍ରଥାକୁ (ପ୍ରମାଣ ସାପେକ୍ଷ) ଫେରିଯିବା ବିଶ୍ୱସନୀୟ ନୁହେଁ ।

ଶତ୍ରୁ ଆକ୍ରମଣ ଭୟରେ ମୂର୍ତ୍ତି ଅପସାରଣ ଗୋଟିଏ ବିଶ୍ୱାସଯୋଗ୍ୟ ସତ୍ୟ । ଏହାକୁ ଅବିଶ୍ୱାସ କରିବାର କାରଣ ନାହିଁ । ଐତିହାସିକମାନେ ଯେବେ ଚାକ୍ଷୁସ ପ୍ରମାଣ ଖୋଜୁଥିବେ ତାହା ମିଳିବା କେବେ ମଧ୍ୟ ସମ୍ଭବ ହେବ ନାହିଁ ଏବଂ ପ୍ରତ୍ୟକ୍ଷ ପ୍ରମାଣରେ ମଧ୍ୟ ଗଣ୍ଡଗୋଳ ଥାଏ । ପାରିପାର୍ଶ୍ୱିକ ପ୍ରମାଣ (Circumstancial evidence) ଯେତେବେଳେ ନ୍ୟାୟାଳୟ ମଧ୍ୟ ଗ୍ରହଣ କରୁଛି, ସବୁ ବିଷୟରେ ଚାକ୍ଷୁସ ପ୍ରମାଣ ଖୋଜିବା ବାତୁଳତା ।

କରୁଣାସାଗର Vol.II ୨୧୨ ପୃଷ୍ଠା ଦ୍ୱିତୀୟ ଅନୁଚ୍ଛେଦ ଶେଷରେ କହିଛନ୍ତି, "Tradition relates that the presiding deity was removed to Puri. There is no direct evidence to confirm or reject the view." ଏହା ଗୋଟିଏ "view" ମାତ୍ର ନୁହେଁ, ମାଦଳା ପାଞ୍ଜିରେ ଲିଖିତ ତଥ୍ୟ । ତଥ୍ୟ ଅପ୍ରମାଣ କରା ଯାଇପାରେ କିନ୍ତୁ "view" ମାତ୍ର କହି ଏଡ଼େଇ ଦିଆଯାଇ ପାରେନାହିଁ ।

ଉପରୋକ୍ତ ମନ୍ତବ୍ୟ ରଖିବା ପରେ, ୨୧୩ ଠାରୁ ୨୧୫ ପୃଷ୍ଠା ମଧ୍ୟରେ ପୁଣି ପ୍ରସଙ୍ଗଟି ଉତ୍‌ଥାପନ କରି କରୁଣାସାଗର ଗୋଟିଏ ଜ୍ଞାନଦୀପ୍ତ ଆଲୋଚନା ଉପସ୍ଥାପନ କରିଛନ୍ତି । ପୁରୀ ମନ୍ଦିରରେ ରକ୍ଷିତ ଗୋଟିଏ ଛୋଟ ବିଗ୍ରହରେ ସେ ସୂର୍ଯ୍ୟ ବିଗ୍ରହର ଶାସ୍ତ୍ରୋକ୍ତ ଲକ୍ଷଣ ସବୁ ଦେଖିବାକୁ ପାଇଛନ୍ତି । ଏ ବିଗ୍ରହଟିକୁ ବିଶନ୍ ସ୍ୱରୂପ ଓ ମନମୋହନ ଗାଙ୍ଗୁଲୀ ବୁଦ୍ଧ ମୂର୍ତ୍ତି ରୂପେ ଚିହ୍ନିତ କରିଛନ୍ତି । ପଣ୍ଡିତ କୃପାସିନ୍ଧୁ ମିଶ୍ର ଏହାକୁ ଇନ୍ଦ୍ରଙ୍କ ବିଗ୍ରହ ରୂପେ ଚିହ୍ନିତ କରିଛନ୍ତି । କରୁଣାସାଗର ଏ ସମସ୍ତ ମତ ଶାଣିତ ଯୁକ୍ତି ଦ୍ୱାରା ଅପ୍ରମାଣ କରିଛନ୍ତି ଏବଂ ସୂର୍ଯ୍ୟ ମୂର୍ତ୍ତିର ସମସ୍ତ ଚିହ୍ନ ଦେଖିବା ସତ୍ତ୍ୱେ ଶେଷରେ କହୁଛନ୍ତି, "However for the correct indentification of this image, we have to wait for the removal of the crude wall from its front."

ବିଶନ୍ ସ୍ୱରୂପ ଯିଏ ବ୍ରିଟିଶ୍ ଯୁଗର ପ୍ରଥମ କୋଣାର୍କ ସଂରକ୍ଷଣ ସହିତ ସଂପୃକ୍ତ ଥିଲେ, ସେ ଏହାର ଗୋଡ଼ି ମାଟିରେ ମଧ୍ୟ ବୌଦ୍ଧ ପ୍ରଭାବ ଦେଖୁଥିଲେ । ଯଦିଓ ତାଙ୍କର ମତ କୃପାସିନ୍ଧୁଙ୍କଠାରୁ କରୁଣାସାଗର ଯାଏ ବହୁ ପଣ୍ଡିତ ଅପ୍ରମାଣିତ କରିଛନ୍ତି, ବିଶନ୍ ସ୍ୱରୂପ ପ୍ରାସଙ୍ଗିକ ଏଇଥିପାଇଁ, ସେ ବହୁକିଛି ଦେଖିଛନ୍ତି ଏବଂ ଗାଙ୍ଗୁଲୀଙ୍କ ଭଳି ମାପି ପକାଇଛନ୍ତି । ବିଶନ୍ ସ୍ୱରୂପ କହିଛନ୍ତି, "The pedestal of the statue will, it appears from what little measurement could be taken, fit on the upper simhasana in the Black Pagoda."(112)

କୋଣାର୍କ ଗର୍ଭଗୃହ ମଧ୍ୟରେ ବିଶାଳ ରତ୍ନସିଂହାସନ ଉପରେ ଥିବା କ୍ଷୁଦ୍ର ଆସନ ଆଜି ମଧ୍ୟ ଯିଏ ଦେଖିବ ସିଏ ବିଶ୍ୱାସ କରିବ ଯେ ବିଶାଳ ମନ୍ଦିର ତୁଳନାରେ ଦେବ ମୂର୍ତ୍ତିଟି ଥିଲା ଅତି କ୍ଷୁଦ୍ର । ହୁଏତ ପୁରାତନ ସୂର୍ଯ୍ୟ ମନ୍ଦିର ମଧ୍ୟରୁ ଅଣାଯାଇଥିବା ମୂର୍ତ୍ତିଟି ସେ ମନ୍ଦିର ଆକାର ସହିତ ସମତା ରଖିଥିଲା ।

ବର୍ତ୍ତମାନ ପ୍ରୟୋଜନ, ଜଗନ୍ନାଥ ମନ୍ଦିରର ପରିଚାଳକବୃନ୍ଦ ସଂସ୍କାର ଭୁଲି, ବିଶେଷଜ୍ଞମାନଙ୍କ ଦ୍ୱାରା କଥିତ ମୂର୍ତ୍ତିଟିର ପୂର୍ଣ୍ଣ ମାପଚୁପ ଏବଂ ପ୍ରତ୍ନତାତ୍ତ୍ୱିକ ବିଶ୍ଳେଷଣ କରାନ୍ତୁ । ଯେବେ ଏହା ପ୍ରମାଣ ହୁଏ, କୋଣାର୍କ ଗର୍ଭଗୃହରେ ଥିବା ପୀଠ ସହିତ ଏ ମୂର୍ତ୍ତିର ପୀଠ ମିଳି ଯାଉଛି, ଏହା ଜାତି ଓ ଦେଶ ପାଇଁ ଗର୍ବର ବିଷୟ ହେବ । କୋଣାର୍କର ରେଖ-ଦେଉଳ ହୁଏତ ପୁନର୍ନିର୍ମିତ ହୋଇ ପାରିବ ନାହିଁ, କିନ୍ତୁ ନୂତନ କୋଣାର୍କ ମନ୍ଦିର ଗଢ଼ିବା ସମ୍ପୂର୍ଣ୍ଣ ସମ୍ଭବ ଏବଂ ସେ ଚେଷ୍ଟା ଚାଲିଛି ମଧ୍ୟ । ନବ ଆବିଷ୍କୃତ ସୂର୍ଯ୍ୟ ମୂର୍ତ୍ତି ହୁଏତ ସେ ମନ୍ଦିର ଅଳଂକୃତ କରିବ । ଜଗନ୍ନାଥ ମନ୍ଦିରର କଳହରତ ସେବକବୃନ୍ଦ ଓ ପରିଚାଳକମାନେ ଏ ଆବେଦନ ଶୁଣିବେ କି ?

## ସ୍ଥାନର ନାମ କୋଣାର୍କ ହେଲା କାହିଁକି ?

'କୋଣାର୍କ' ଶବ୍ଦଟିକୁ ଦୁଇ ଭାଗ କଲେ ହେବ, 'କୋଣ' ଏବଂ 'ଅର୍କ' ଅର୍ଥାତ୍ ଅର୍କଦେବଙ୍କର ଏଠାରେ କୌଣସି ଏକ କୋଣ ସହିତ ବିଶେଷ ସଂପର୍କ ଅଛି । ସୂର୍ଯ୍ୟଦେବଙ୍କର ବହୁ ନାମ ମଧ୍ୟରେ 'କୋଣାଦିତ୍ୟ' ଅନ୍ୟତମ । ଏଠାରେ ମଧ୍ୟ ଆଦିତ୍ୟ ଅର୍ଥାତ୍ ସୂର୍ଯ୍ୟଦେବଙ୍କର 'କୋଣ' ସହିତ ବିଶେଷ ସମ୍ପର୍କ ସୂଚିତ ହେଉଛି । ସେ କୋଣ କ'ଣ ଏବଂ ସେ ବିଶେଷ ସମ୍ପର୍କ କ'ଣ, ତାହା ଭିତରକୁ ପ୍ରବେଶ ନ କରି ଗବେଷକମାନେ ବିଷୟଟିକୁ ଅଯଥା ତର୍କଭାରାକ୍ରାନ୍ତ କରି ତୋଳିଛନ୍ତି । ମନମୋହନ ଗାଙ୍ଗୁଲୀ କହିଛନ୍ତି; ଚକ୍ରତୀର୍ଥ ପୁରୀ, ଯାହା ସେ ଯୁଗରେ ମଧ୍ୟ ଖ୍ୟାତନାମା ଥିଲା, ତାହାର ଉତ୍ତର-ପୂର୍ବ କୋଣରେ ପଦ୍ମକ୍ଷେତ୍ର (କୋଣାର୍କ) ଅବସ୍ଥିତ, ମାତ୍ର ଏହା ହିଁ ବୁଝାଉଛି ।[୧୧୩] କରୁଣାସାଗର କହିଛନ୍ତି, ସ୍ଥାନଟି 'ଚକ୍ରକ୍ଷେତ୍ର' ଭୁବନେଶ୍ୱରର ଦକ୍ଷିଣ-ପୂର୍ବ କୋଣରେ ଅବସ୍ଥିତିକୁ ମଧ୍ୟ ସୂଚିତ କରିପାରେ ।[୧୧୪] କରୁଣାସାଗର ସମ୍ଭାବ୍ୟ ବିକଳ୍ପ ଭାବେ ଭୁବନେଶ୍ୱରର ଦକ୍ଷିଣ-ପୂର୍ବ ହୋଇପାରେ ବୋଲି କହିଛନ୍ତି କିନ୍ତୁ ଅନ୍ୟ ଜଣେ ଲେଖକ ଶ୍ରୀ ଅମିୟଭୂଷଣ ତ୍ରିପାଠୀ ସେ ସମ୍ଭାବନାର ଗୋଟିଏ ଯୁକ୍ତିଯୁକ୍ତ ଭିତ୍ତିଭୂମି ଉପସ୍ଥାପନ କରିଛନ୍ତି । ସୂର୍ଯ୍ୟଙ୍କୁ ଶିବ ଓ ବିଷ୍ଣୁଙ୍କ ଅବତାର ଧରାଯାଏ । ଶିବଙ୍କୁ ବିଭିନ୍ନ ଦିଗରେ ଅର୍ଘ୍ୟଦେଲାବେଳେ ଦକ୍ଷିଣ-ପୂର୍ବ ଦିଗକୁ ସୂର୍ଯ୍ୟଙ୍କ ସ୍ଥାନ ବୋଲି କୁହାଯାଇଥାଏ ।[୧୧୫] ସେହିପରି ସକାଳ, ଦ୍ୱିପ୍ରହର ଓ ସନ୍ଧ୍ୟା ସମୟର ଅବସ୍ଥିତି ତଥା 'ଉଦୟାଚଳ' ଶବ୍ଦଟିର ଅର୍ଥ ନେଇ ଅନେକ ତର୍କ ବିତର୍କ ହୋଇଛି । ଏପରିକି ଦୁଇଜଣ ଗବେଷକ ଉଦୟାଚଳକୁ ନେଇ ଭୁବନେଶ୍ୱର ଉପକଣ୍ଠରେ ଥିବା ଉଦୟଗିରି ମୁଣ୍ଡରେ ଥୋଇ ଦେଲେ ।[୧୧୬] ଅନେକ ମାନସମନ୍ଥନ ହେଲା, କିନ୍ତୁ ମୂଳ ପ୍ରଶ୍ନଟି ରହିଗଲା ଅସମାହିତ । ଭବିଷ୍ୟ ପୁରାଣ ଓ ସ୍କନ୍ଧ ପୁରାଣ ଦିବସର ତିନୋଟି ବିଶେଷ ସମୟରେ ଭାରତର ତିନୋଟି ବିଶେଷ ସ୍ଥାନରେ ଦିବାକରଙ୍କ ପୂଜା କରିବାର ବିଧାନ କାହିଁକି ଦେଲେ ?

ବିଜ୍ଞାନର ଯେକୌଣସି ସାଧାରଣ ଛାତ୍ର ଜାଣେ, ସୂର୍ଯ୍ୟରଶ୍ମିରୁ ପ୍ରତିସରିତ ସପ୍ତରଙ୍ଗ (spectrum) ବାହାରେ ଆହୁରି ମଧ୍ୟ ରଶ୍ମି ଅଛି ଯାହା ଆଖିରେ ଦେଖାଯାଏ ନାହିଁ କିନ୍ତୁ ପରାକ୍ରମ ବିପୁଳ; ତାହା ହେଲା ଅବଲୋହିତ (Infrared) ଏବଂ ଅତି ନୀଳ ଲୋହିତ (Ultra-Violet) । ଆଜିକାର ଲେଜର ଚିକିତ୍ସାରେ ମୁଖ୍ୟତଃ ଏହି ରଶ୍ମି ବ୍ୟବହାର କରାଯାଏ । ବାୟୁମଣ୍ଡଳୀୟ ସ୍ତର ମଧ୍ୟ ଦେଇ ଗତି କରୁଥିବା ସୂର୍ଯ୍ୟ କିରଣ ଦିନର ବିଭିନ୍ନ ସମୟରେ ବିଭିନ୍ନ ସ୍ଥାନରେ ବିଶେଷ କୋଣରୁ ପ୍ରତିସରିତ ରଶ୍ମି ଦ୍ୱାରା ରୋଗ ନିରାମୟକ କୌଣସି ପ୍ରଭାବ ପକାଏ କି ? ଏ ଦିଗରେ ବୈଜ୍ଞାନିକ ଗବେଷଣାର ପ୍ରୟୋଜନ ଅଛି ।

## କିପରି ରାଜା ଥିଲେ ନରସିଂହ ଦେବ ?

ନରସିଂହଦେବଙ୍କୁ ଗଙ୍ଗବଂଶର ଶ୍ରେଷ୍ଠ ନରପତି କୁହାଯାଇଥାଏ ଦୁଇଟି କାରଣରୁ । ବହୁ ପ୍ରଜନ୍ମ ଧରି ଦକ୍ଷିଣରୁ ବିଭିନ୍ନ ରାଜାଙ୍କ ଆକ୍ରମଣ ଏବଂ ଉତ୍ତରରେ ମୁସଲମାନ ଆକ୍ରମଣରେ ଦେଶ ଥିଲା ଅଶାନ୍ତ । ସେ ଏହାର ସମାପ୍ତି ଟାଣିଲେ ଯାହା ତ୍ରୟୋଦଶ ଶତାବ୍ଦୀର ବାକି ସମୟ ସ୍ଥାୟୀ ରହିଲା ।[୧୧୭] ତାଙ୍କର ସାହସିକ ତଥା କୌଶଳପୂର୍ଣ୍ଣ ଯୁଦ୍ଧ ପରିଚାଳନାର ବିବରଣୀ ପୂର୍ବରୁ ଦିଆଯାଇଛି । ଦ୍ୱିତୀୟ କାରଣଟି, ଏ ଦେବ କୋଣାର୍କ ଭଳି ଅନବଦ୍ୟ ଦେବାଳୟ ସୃଷ୍ଟି କରିଥିଲେ ଯାହାର ପଟାନ୍ତର (ଭଗ୍ନ ଦଶାରେ ମଧ୍ୟ) ଏବେ ମଧ୍ୟ ନାହିଁ । ଏହାଛଡ଼ା ଅନ୍ୟ କିଛି ପରିଚୟ ଅଛି କି ମଣିଷ ଭାବପରେ ନରସିଂହ ଦେବଙ୍କର ? ବାୟାଚକଡ଼ାରେ କିଛି ଆଲୋଚିତ ହୋଇଛି । ମନେହୁଏ ଏ ରାଜାମାନଙ୍କ ମନ୍ଦିର ତୋଳିବା ନିଶା ଥିଲା କାରଣ କୋଣାର୍କ ଛଡା ଅନ୍ୟ କେତେକ ମନ୍ଦିର ଗଢ଼ିବାର ପ୍ରମାଣ ମିଳୁଛି । ଏହାଛଡ଼ା ଦାନଧ୍ୟାନ ଥିଲା ପ୍ରଚୁର ଅନ୍ତତଃ ଆଉ ଦୁଇଟି ମନ୍ଦିର ନିର୍ମାଣ ଓ ଲିଙ୍ଗରାଜ ମନ୍ଦିରକୁ ଦାନର ପ୍ରମାଣ ମିଳୁଛି ।[୧୧୮]

ଢେଙ୍କାନାଳ ଜିଲ୍ଲାର ପ୍ରସିଦ୍ଧ କପିଳାସ ପାହାଡ଼ ଉପରେ ଶିଖରେଶ୍ୱର ମହାଦେବ ମନ୍ଦିର ନରସିଂହ ଦେବଙ୍କ କୀର୍ତ୍ତି । ସୀମାଚଳମ୍ (ବର୍ତ୍ତମାନ ଆନ୍ଧ୍ରରେ) ମନ୍ଦିରର ବିମାନ, କଳସ, ମୁଖମଣ୍ଡପ ଓ ନାଟ୍ୟ ମଣ୍ଡପ ନରସିଂହ ଦେବଙ୍କ ଆଦେଶରେ ନିର୍ମିତ ହୋଇଥିଲା । କୋଣାର୍କ ଭଳି ଏଠାରେ ମଧ୍ୟ ଆରାଧନାରତ ନରସିଂହଦେବଙ୍କ ମୂର୍ତ୍ତି ଅଛି । ପ୍ରଥମ ପରିଚ୍ଛେଦରେ କୁହାଯାଇଛି ଦକ୍ଷିଣର ଗୋଟିଏ ବିଜୟର ସ୍ମାରକୀ ସ୍ୱରୂପ ଲିଙ୍ଗରାଜ ମନ୍ଦିର ଗାତ୍ରରେ ଶିଳାଲେଖ ଉତ୍କୀର୍ଣ୍ଣ ହୋଇଥିଲା । ସେଇ ଶିଳାଲିପିରେ ଲିଙ୍ଗରାଜ ଓ ସିଦ୍ଧ ଲମ୍ବୋଦରଙ୍କ ଉଦ୍ଦେଶ୍ୟରେ ଦାନ କଥା ଲିଖିତ ଅଛି । ଏହା ପୂର୍ବେ, ଦ୍ୱିତୀୟ ନରସିଂହଦେବଙ୍କ ତାମ୍ର ଶାସନ କଥା କୁହାଯାଇଛି । ସେଇ ଶ୍ଳୋକର ପ୍ରଥମ ଦୁଇ ଧାଡ଼ି :

''କୁର୍ବନ୍ ପ୍ରକାଶ ମନିଶଂ ଦ୍ୱିଜସାଚ୍ଚ କୃତ୍ୱା ।
ମେରୁ ତୁଳାପୁରୁଷ ମୁଖ୍ୟ ମହାର୍ଥ-ଦାନୈଃ ।।''

ଅର୍ଥ, ନରସିଂହଦେବ ମଣିଷ ଓଜନ ସମାନ ସ୍ୱର୍ଣ୍ଣଦାନ କରି ଦେବତାଙ୍କ ସଙ୍ଗେ ବସିବାର ଯୋଗ୍ୟତା ଲଭିଥିଲେ । କୃପାସିନ୍ଧୁ ଅର୍ଥ କରିଛନ୍ତି ରାଜା ତୁଳାପୁରୁଷ ରୂପ ମହାଦାନ କରିଥିଲେ; ଏପରିକି ମେରୁ ପର୍ବତ ସମାନ ବିପୁଳ ସ୍ୱର୍ଣ୍ଣ ଦାନ କରିଥିଲେ ।[୧୧୯]

ଆଇନ୍-ଇ-ଆକବରୀ ନରସିଂହ ଦେବଙ୍କୁ ବିରାଟ ଦାନବୀର ପ୍ରମାଣ କରିବାକୁ ଯାଇ ଗୋଟିଏ 'ମିଥ୍' ସୃଷ୍ଟି କରିଛନ୍ତି । ତାଙ୍କ ମତରେ ମନ୍ଦିରଟି ଗଢ଼ିବାକୁ ୧୨ ବର୍ଷ ଲାଗି ଥିଲା ଏବଂ ୧୨ ବର୍ଷର ରାଜସ୍ୱ ବ୍ୟୟ ହୋଇଥିଲା । ବାର ବର୍ଷ ଶାସନ କାର୍ଯ୍ୟ ଚାଲୁଥିଲା କିପରି ? ଦୃଶ୍ୟତଃ ଅତିକଥନ । କୋଣାର୍କ ପ୍ରକଳ୍ପର ଆକଳିତ ଖର୍ଚ୍ଚ ଥିଲା କୃପାସିନ୍ଧୁଙ୍କ ମତେ ୨୨ କୋଟି ୭୫ ଲକ୍ଷ ଟଙ୍କା ଏବଂ ଗାଙ୍ଗୁଲୀଙ୍କ ମତେ ୩ କୋଟି ଟଙ୍କା (ପୃ-୪୮୩) । ପ୍ରଥମ ଥୋକ ଟଙ୍କା ଆସେ ଯୁବରାଜ ନରସିଂହ ଦେବଙ୍କର ଦାକ୍ଷିଣାତ୍ୟ ଅଭିଯାନରୁ ଏବଂ ପରବର୍ତ୍ତୀ ପ୍ରତିଟି ଅଭିଯାନରୁ ମଧ୍ୟ ଅର୍ଥ ଆସେ କୋଣାର୍କ ମନ୍ଦିର ପ୍ରକଳ୍ପ ପାଇଁ ।[୧୨୦] ଦାନ ଧ୍ୟାନ ଛଡ଼ା ଜଣେ ସୁଶାସକ ଓ ଚାରୁକଳାର ପୃଷ୍ଠପୋଷକ ରୂପେ ତାଙ୍କର ଖ୍ୟାତି ଥିଲା ଭାରତବ୍ୟାପୀ ।[୧୨୧]

ସେ ଯୁଗରେ ରାଜାମାନେ ଏକାଧିକ ବିବାହ କରୁଥିଲେ । ଅନେକେ ଭାବି ଥାଆନ୍ତି ଏହା ସେମାନଙ୍କର ବିଳାସୀ ତଥା ଉଚ୍ଛୃଙ୍ଖଳ ଜୀବନ ଯାପନର ଅଙ୍ଗ । ରାଜା ମହାରାଜାମାନେ ଅବଶ୍ୟ ବିଳାସୀ ଏବଂ ଅନେକ ସମୟରେ ଉଚ୍ଛୃଙ୍ଖଳ ହେଉଥିଲେ କିନ୍ତୁ ବହୁ ବିବାହ ମୂଳତଃ ରାଜନୈତିକ ପ୍ରୟୋଜନରୁ ହେଉଥିଲା ଏବଂ କନ୍ୟା ଚୟନ ହେଉଥିଲା ଅନ୍ୟ ଦେଶରୁ । ନରସିଂହ ଦେବଙ୍କର ଦାକ୍ଷିଣାତ୍ୟରେ ୧୨ ବର୍ଷ ଯୁଦ୍ଧ ସୁବିଦିତ । ମାଦଳା ପାଞ୍ଜି ଓ ବାୟାଚକଡ଼ାରୁ ମିଳୁଛି ନରସିଂହଦେବ ପାଣ୍ଡ୍ୟା ରାଜକନ୍ୟାକୁ ବିବାହ କରିଥିଲେ ।[୧୨୦] କିନ୍ତୁ ସେ ରାଣୀଙ୍କର ନାମ ମିଳୁନାହିଁ ।



ଫଟୋ-୪ : ନରସିଂହଦେବଙ୍କ ତୀରଚାଳନା (ପ୍ରସ୍ତରଭେଦ)

ଅନନ୍ତ ବାସୁଦେବ ମନ୍ଦିରର ଶିଳାଲେଖରୁ ମିଳୁଛି, ନରସିଂହଦେବ ମାଲୱା ରାଜାଙ୍କ କନ୍ୟା ସୀତା ଦେବୀଙ୍କୁ ବିବାହ କରିଥିଲେ ଏବଂ ତାଙ୍କ ଶ୍ୱଶୁର ବଂଶର (ହାହିହ୍ୟାବଂଶ) କୌଣସି ଏକ ପରମରାଦିଦେବ ନରସିଂହଦେବଙ୍କ ପାଇଁ ଯୁଦ୍ଧରେ ପ୍ରାଣ ଦେଇଥିଲେ । ପୁତ୍ର ପ୍ରଥମ ଭାନୁଦେବଙ୍କ ପାଇଁ ମଧ୍ୟ କନ୍ୟା ଚୟନ କରିଥିଲେ ଚାଲୁକ୍ୟ ବଂଶରୁ ।[୧୨୧] ଦେଖାଯାଉଛି ପଶ୍ଚିମ ସୀମାରେ ମଧ୍ୟ ବନ୍ଧୁ ଚୟନ କରିବାର ପ୍ରୟୋଜନ ବୋଧ କରିଥିଲେ ନରସିଂହ ଦେବ । ମାଲୱା ଅଞ୍ଚଳଟି ଓଡ଼ିଶା ଓ ମହାରାଷ୍ଟ୍ର ମଧ୍ୟସ୍ଥ ମଧ୍ୟପ୍ରଦେଶ ମଧ୍ୟରେ ଏବଂ ଇତିହାସ ପ୍ରସିଦ୍ଧ ଅହଲ୍ୟାବାଈ ସେଇ ବଂଶର ରାଣୀ ଥିଲେ । ଇତିହାସ କିନ୍ତୁ କହୁନାହିଁ, ପଶ୍ଚିମ ପ୍ରାନ୍ତରେ ନରସିଂହଦେବ କୌଣସି ଯୁଦ୍ଧ ସାମ୍ମୁଖ୍ୟ ଖୋଲିଥିଲେ । ତେବେ ପରମରାଦିଦେବ କେଉଁ ଯୁଦ୍ଧରେ ପ୍ରାଣ ଦେଲେ ? ହୁଏତ ଏ ବିବାହ ବନ୍ଧନ, ମହାଭାରତୀୟ ରାଜ୍ୟ ବିସ୍ତାର ଯୋଜନାର ଅଙ୍ଗ ଥିଲା । ବିଷୟଟି ଆଗକୁ ଆଲୋଚିତ ହେବ ।

ନରସିଂହ ଦେବଙ୍କର ଗୋଟିଏ କାଶ୍ମୀରୀ ସ୍ତ୍ରୀ ଥିଲେ, ଏହା କହିଛନ୍ତି ନୀଳକଣ୍ଠ

ଦାସ [୧୨୨] ଏବଂ ଗୋଦାବରୀଶ ମହାପାତ୍ର ।[୧୨୩] ସେ ବିବାହର ପ୍ରସ୍ତାବନା ପାଇଁ ସାହିତ୍ୟ ଦର୍ପଣର ବିଶ୍ୱନାଥ କବିରାଜ କାଶ୍ମୀର ଯାଇଥିବା କଥା କହିଛନ୍ତି । କରୁଣାସାଗର କହିଛନ୍ତି, ଏହାର କୌଣସି ଐତିହାସିକ ସତ୍ୟତା ନାହିଁ; କାରଣ ବିଶ୍ୱନାଥ କବିରାଜ, ନରସିଂହଙ୍କ ପିତା ଅନଙ୍ଗଭୀମଦେବଙ୍କ ସମସାମୟିକ ନୁହନ୍ତି । ନୀଳକଣ୍ଠ ଦାସ ଓ ଗୋଦାବରୀଶ ମହାପାତ୍ର ହୁଏତ କୌଣସି କିମ୍ବଦନ୍ତୀରୁ କାବ୍ୟ ରଚନା କରିଛନ୍ତି କିନ୍ତୁ ଗଳ୍ପଟି ମଧ୍ୟରେ କ'ଣ ଲୁକ୍କାୟିତ ଅଛି ନରସିଂହ ଦେବଙ୍କର ସର୍ବଭାରତୀୟ ହିନ୍ଦୁରାଜ୍ୟର ପରିକଳ୍ପନା ?

ବୈବାହିକ ସମ୍ପର୍କ ଦ୍ୱାରା ରାଜ୍ୟ ବିସ୍ତାରର ପରିକଳ୍ପନା ଯେବେ ଥିଲା, ତେବେ ଉତ୍ତର ପ୍ରାନ୍ତରେ ଅର୍ଥାତ୍ ବଙ୍ଗଦେଶରେ ସେପରି ସଂପର୍କ ଗଢ଼ିଲେ ନାହିଁ କାହିଁକି ? ଅବଶ୍ୟ ତାଙ୍କ ସମୟର ମାତ୍ର ୩୭ ବର୍ଷ ପୂର୍ବେ (୧୨୦୧ ଖ୍ରୀଷ୍ଟାବ୍ଦରେ) ରାଜା ଲକ୍ଷ୍ମଣ ସେନ୍ ମହମ୍ମଦ ବକ୍ତିଆର ଖିଲିଜି ଦ୍ୱାରା ନବଦ୍ୱୀପରୁ ବିତାଡ଼ିତ ହୋଇଥିଲେ ଏବଂ ସେନ ବଂଶର କତିପୟ ନରପତି, ସେଇ ବୈବାହିକ ସମ୍ପର୍କର ଖିଅ ଧରି ଉତ୍ତର ଭାରତ ଓ ହିମାଳୟର ପଶ୍ଚିମାଞ୍ଚଳରେ ରାଜ୍ୟ ବିସ୍ତାର କରିଥିଲେ (ସୁନ୍ଦରନଗର, ମଣ୍ଡି, କେଉଁଞ୍ଝଲ, କିଶତୱାର, କୁଲୁ ଇତ୍ୟାଦି) ।[୧୨୪] ଦେଶକୁ ପ୍ରତ୍ୟାବର୍ତ୍ତନର ପରିକଳ୍ପନା ସେମାନଙ୍କର ରହିପାରିଥାଏ । ଏ ଦିଗରେ ଆହୁରି ଗବେଷଣା ହେବାର ପ୍ରୟୋଜନ ଅଛି ।

ସେ ଯୁଗରେ ଜୀବନୀ ଲେଖିବାର ପ୍ରଚଳନ ନଥିଲା । କିନ୍ତୁ ଭାଟ ମୁଖରେ ଗୀତି କବିତା ବୋଲିବାର ପରମ୍ପରା ଥିଲା । ଏ ଦିଗରେ ଅତି ପଲ୍ଲବାୟିତ ଢ଼ଗ ଛଡ଼ା କିଛି ମିଳୁ ନାହିଁ । ତେବେ କବି ବିଦ୍ୟାଧର ଏକାବଳୀ କବିତାମାଳାରେ ନରସିଂହଦେବଙ୍କୁ ନାନା ଗୁଣରେ ଭୂଷିତ କରିଛନ୍ତି । ନରସିଂହଦେବଙ୍କ ଜୀବନୀ କିନ୍ତୁ ଲେଖା ରହିଛି ବିସ୍ତୃତ ଭାବେ କୋଣାର୍କ ଦେଉଳର ପଥର ଦେହରେ । ଏଇଥି ଯୋଗୁଁ ଅନେକେ କହିଥା'ନ୍ତି, ଏ ମନ୍ଦିର ନରସିଂହ ଦେବଙ୍କର ଆତ୍ମବିଜ୍ଞାପନ । ବଡ଼ ମଣିଷ ଚାରିପଟେ ପ୍ରକୃତ ଗୁଣଗ୍ରାହୀ ଓ ତୋଷାମଦକାରୀ ଦୁଇଶ୍ରେଣୀର ଲୋକ ଜମି ଥାଆନ୍ତି ।

କଥିତ ଅଛି ନରସିଂହଦେବଙ୍କ ମେରୁଦଣ୍ଡର ଶେଷ ଭାଗ ବର୍ଦ୍ଧିତ ଥିଲା ।[୧୨୫] କରୁଣାସାଗର ସମେତ ବହୁ ଐତିହାସିକ ଏହା ମାନିବାକୁ ନାରାଜ । ମନେହୁଏ ସେ ସମୟର ପ୍ରଥାନୁଯାୟୀ ରାଜାଙ୍କର ଅତିଗୁଣ କୀର୍ତ୍ତନ କରିବାକୁ ଯାଇ ଏହା ଘଟିଛି । ଷ୍ଟାର୍ଲିଂ ପାଇଥିବା ଗୋଟିଏ ବଂଶାବଳୀରୁ ମିଳୁଛି, ଏ ଯୁବରାଜ (ନରସିଂହଦେବ) ଏତେ ଶକ୍ତିଶାଳୀ ଥିଲେ ଯେ ମୁଷ୍ଟ୍ୟାଘାତରେ ପଥର ଭାଙ୍ଗି ପାରୁଥିଲେ ଏବଂ ରାଗିଗଲେ ଆଖିରୁ ରକ୍ତ ଝରି ପଡୁଥିଲା ଏବଂ ଦିଶୁଥିଲେ ଉତ୍ତୋଳିତ ପୁଚ୍ଛ ସିଂହ ପରି ।[୧୨୬] ମନେହୁଏ, କବି କଳ୍ପନା କୌଣସି ସମୟରେ ଜନପ୍ରିୟ କିମ୍ବଦନ୍ତୀରେ ପରିଣତ ହୋଇଯାଇଛି । ଏକଥା କିନ୍ତୁ ଅନସ୍ୱୀକାର୍ଯ୍ୟ ଯେ ପ୍ରଥମ ନରସିଂହଦେବ ଜଣେ ବିକ୍ରମୀ ପୁରୁଷ ଥିଲେ । ତାହା ହୋଇନଥିଲେ, ମାତ୍ର ୧୮ ବର୍ଷ ବୟସରେ ପିତା ଅନଙ୍ଗଭୀମ ତାଙ୍କୁ ଯୁଦ୍ଧ କରିବାକୁ ପଠାଇ ନଥାଆନ୍ତେ । ଲିଙ୍ଗରାଜ ମନ୍ଦିର ଗାତ୍ରରେ ଲିଖିତ ଶିଳାଲିପି କଥା ପୂର୍ବରୁ କୁହାଯାଇଛି । ଏଥିରେ ଲିପିବଦ୍ଧ ହୋଇଛି, ଯୁଦ୍ଧରେ ନରସିଂହଦେବ ସ୍ୱୟଂ ଏପରି ଅସୀ ଚାଳନା କଲେ, ଯାହା ଦେଖି ଗଣପତିଙ୍କ ସେନାମୁଖ୍ୟମାନେ ଭୀତତ୍ରସ୍ତ ହୋଇ ପଳାୟନ କଲେ । କବି ବିଦ୍ୟାଧର ତାଙ୍କ ରଚିତ 'ଏକାବଳୀ' ଗ୍ରନ୍ଥରେ ନରସିଂହଦେବଙ୍କ ଦାନ ଓ ସୌର୍ଯ୍ୟ ଗାନରେ ପଞ୍ଚ-ମୁଖ । ପଲ୍ଲବାୟିତ ବର୍ଣ୍ଣନା ସତ୍ତ୍ୱେ ନରସିଂହଦେବ ଯେ ଜଣେ ଅସାମାନ୍ୟ ନରପତି ଥିଲେ ତାହା ଅନସ୍ୱୀକାର୍ଯ୍ୟ ।

## କୋଣାର୍କ ମନ୍ଦିର ଗଢ଼ିବାର ଉଦ୍ଦେଶ୍ୟ :

ରାଜା ମହାରାଜାମାନେ ଦୁର୍ଗ ଗଢୁଥିଲେ ସୁରକ୍ଷା ପାଇଁ; ମନ୍ଦିର, ଜଳାଶୟ ଇତ୍ୟାଦି ଗଢୁଥିଲେ ନିଜର କୀର୍ତ୍ତି ଅମର କରି ରଖିବାକୁ । ମନ୍ଦିର ଗାତ୍ରରେ, ଭକ୍ତ ରାଜା, ଯୋଦ୍ଧା ରାଜା, ଶିକାରୀ ରାଜା ଇତ୍ୟାଦି ନାନା ମୂର୍ତ୍ତି ଗଢ଼ା ଯାଇଛି, କିନ୍ତୁ ସେ ସବୁ ସ୍ୱାଭାବିକ ଭାବେ ଆସିଛି ମନ୍ଦିର ନିର୍ମାଣ ସମୟରେ । ସ୍ମରଣ ଥିବ ଏ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା ଯୁଦ୍ଧ ପ୍ରତ୍ୟାଗତ ରାଜପୁତ୍ର ନରସିଂହଙ୍କ ଦ୍ୱାରା ମାତାଙ୍କ ଆଦେଶରେ । କୀର୍ତ୍ତି ରଖିବାକୁ ଆହୁରି ବାକି ଅଛି ।

କରୁଣାସାଗର ଅନେକଗୁଡ଼ିଏ ତଥ୍ୟ ଉପସ୍ଥାପନ କରିଛନ୍ତି ।[୧୨୭] ଗଙ୍ଗବଂଶ ମୂଳତଃ ବୈଷ୍ଣବ- ଜଗନ୍ନାଥ ଭକ୍ତ ଥିଲେ । ଏହା ଅବଶ୍ୟ ଗୋଟିଏ କାରଣ ହୋଇପାରେ ନା, କାରଣ ରାଜା ପ୍ରଜାର ଇଚ୍ଛା ଅନୁଯାୟୀ ଅନ୍ୟ ଧର୍ମର ମନ୍ଦିର ଗଢ଼ିଛନ୍ତି । ଏହାର ଉଦାହରଣ ତାଙ୍କ ଦ୍ୱାରା ନିର୍ମିତ କପିଳାସ ମନ୍ଦିର । ଏହାଛଡ଼ା ସୂର୍ଯ୍ୟ ଓ ବିଷ୍ଣୁ ତ ଏକ, ଯେଉଁଥିପାଇଁ 'ସୂର୍ଯ୍ୟ ନାରାୟଣ' କୁହାଯାଇଥାଏ । କୁହାଯାଉଛି ଗୋଟିଏ କାରଣ, କେତେ ବର୍ଷ ଧରି ସୂର୍ଯ୍ୟୋପରାଗର ପ୍ରାବଲ୍ୟ ଦେଖା ଦେଇଥିଲା ଏବଂ ସମ୍ପୂର୍ଣ୍ଣ ସୂର୍ଯ୍ୟୋପରାଗ ଘଟିଥିଲା ୨୬ ସେପ୍ଟେମ୍ବର ୧୨୪୨ ଖ୍ରୀଷ୍ଟାବ୍ଦରେ । ଏହା ସୂର୍ଯ୍ୟଦେବଙ୍କ ଇଙ୍ଗିତ ଭାବି ତାଙ୍କ ଆରାଧନା ପାଇଁ ମନ୍ଦିରଟି ଗଢ଼ା ହେଲା । କାରଣଟି ଗ୍ରହଣଯୋଗ୍ୟ ମନେ ହେଉନାହିଁ କାରଣ ପ୍ରାରମ୍ଭିକ କାର୍ଯ୍ୟ ୧୨୪୨ର ବହୁ ପୂର୍ବରୁ ଆରମ୍ଭ ହୋଇ ଯାଇଥିଲା । ଏପରି କି ୧୨୪୨ରେ ମନ୍ଦିର ନିର୍ମାଣ ଆରମ୍ଭ ହେବା ଯଦି ଧରାଯାଏ, ଯୋଜନା କାର୍ଯ୍ୟ ବହୁ ଆଗରୁ ଆରମ୍ଭ ହେବା ସ୍ୱାଭାବିକ । ଆଉ ଗୋଟିଏ କାରଣ କେତେକେ କୁହନ୍ତି, ନରସିଂହଦେବ ନିଜେ କୁଷ୍ଠ ରୋଗଗ୍ରସ୍ତ ଥିଲେ ଏବଂ ସୂର୍ଯ୍ୟଙ୍କ କୃପାରୁ ଶାମ୍ବଙ୍କ ଭଳି ସେଥିରୁ ମୁକ୍ତିପାଇ କୃତଜ୍ଞତା ସ୍ୱରୂପ ମନ୍ଦିରଟି ଗଢ଼ି ଦେଲେ । ବାରବର୍ଷ ଦୀର୍ଘ ଯୁଦ୍ଧ ଏବଂ ବିଶାଳ କର୍ମତତ୍ପରତା କଥା ଚିନ୍ତା କଲେ ଏ ମତ ଗ୍ରହଣଯୋଗ୍ୟ ମନେ ହେବ ନାହିଁ । ଆଉ ଗୋଟିଏ କାରଣ ଆଗତ କରାଯାଇଛି । ନରସିଂହଦେବ ସୂର୍ଯ୍ୟଙ୍କ କଲ୍ୟାଣରୁ ପୁତ୍ର ଲାଭ

କଲେ, ଯାହାଙ୍କୁ ସେ ସୂର୍ଯ୍ୟଙ୍କ ନାମରେ ନାମିତ କଲେ- ଭାନୁଦେବ । ତେଣୁ ସୂର୍ଯ୍ୟ ମନ୍ଦିରଟି ଗଢ଼ି ଦେଲେ । ଏ ମତ ଗ୍ରହଣ ଅଥବା ତ୍ୟାଗ ନକରି ଭବିଷ୍ୟ ପୁରାଣ ବର୍ଣ୍ଣିତ ପୁତ୍ରାର୍ଥେ ସପ୍ତମୀ ବ୍ରତ କଥା କହିଛନ୍ତି କରୁଣାସାଗର । ଆହୁରି ମଧ୍ୟ କହିଛନ୍ତି ହର୍ଷଚରିତ ପ୍ରଭାକର ବର୍ଦ୍ଧନ ପୁତ୍ରାର୍ଥେ ତିନି ଓଳି ସୂର୍ଯ୍ୟ ପୂଜା କରୁଥିଲେ । ଆହୁରି ମଧ୍ୟ ପ୍ରତିହରରାଜ ରାମଚନ୍ଦ୍ର (୮୩୩-୮୩୬ ଖ୍ରୀଷ୍ଟାବ୍ଦ) ସୂର୍ଯ୍ୟପୂଜା କରି ପୁତ୍ରଲାଭ କରିଥିଲେ । ଏଗୁଡ଼ିକ ପ୍ରମାଣ ନୁହେଁ । ହିନ୍ଦୁମାନେ ପୁତ୍ରାର୍ଥେ ସବୁ ଦେବ ଦେବୀମାନଙ୍କୁ ବିଶେଷ କରି ଶିବଙ୍କୁ ପୂଜା କରି ଥାଆନ୍ତି । ମନ୍ଦିର ନିର୍ମାଣ ଯୋଜନା ଯେତେବେଳେ ହେଲା (୧୨୩୭-୩୮ ଖ୍ରୀଷ୍ଟାବ୍ଦ) ଭାନୁଦେବ ଜନ୍ମ ମଧ୍ୟ ହୋଇ ନଥିବେ । ଆହୁରି ଗୋଟିଏ କାରଣ ଦର୍ଶାଯାଇଥାଏ, ମଗବ୍ରାହ୍ମଣମାନଙ୍କ ପ୍ରଭାବ ଫଳରେ ନରସିଂହଦେବ ସୂର୍ଯ୍ୟ ମନ୍ଦିରଟି ଗଢ଼ି ଦେଲେ । କରୁଣାସାଗର ନିଜେ ଏ କାରଣଟି କାଟି ଦେଇଛନ୍ତି । କେତେକ ମଗ ବ୍ରାହ୍ମଣ ସେ ସମୟରେ କୋଣାର୍କ ଅଞ୍ଚଳରେ ଥିଲେ ଏବଂ ମନୋରଥ ନାମକ ଜଣେ ପ୍ରସିଦ୍ଧ ମଗବ୍ରାହ୍ମଣ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିଲେ, କିନ୍ତୁ ମଗମାନଙ୍କ ସଂଖ୍ୟା ଏତେ ନଥିଲା, ରାଜାଙ୍କୁ ପ୍ରଭାବିତ କରିବା ଭଳି । ଶେଷରେ କରୁଣାସାଗର କହିଛନ୍ତି; "Narasingha built the temple in an over ambitious scale. The size of the temple is itself an index of his over-ambitious vision." 'Vision' ଶବ୍ଦଟିର ଅର୍ଥ, କୋଣାର୍କ କ୍ଷେତ୍ରରେ ସୁଦୂରପ୍ରସାରୀ ।

ସମଗ୍ର ପୃଥିବୀରେ ଏବଂ ଏଇ ଭାରତବର୍ଷରେ ମଧ୍ୟ ବହୁ ସୂର୍ଯ୍ୟ ମନ୍ଦିର ଅଛି କିନ୍ତୁ କୌଣସି ଗୋଟିଏ ହେଲେ ରଥ ଆକାରରେ ପରିକଳ୍ପିତ ହୋଇନାହିଁ । ଶାସ୍ତ୍ରରେ 'ଏକ ଚକ୍ର ରଥ' କଥା ଅଛି ।[୧୨୮] ୨୪ ଚକ ରଥ କଥା କେଉଁଠାରେ ମଧ୍ୟ ନାହିଁ ।

ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥ ମେବତୁ ।

ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗହମେବ ଚ ॥

ଇନ୍ଦ୍ରିୟାଣି ହୟନ୍ୟାହୁଃ ବିଷୟାଂସ୍ତେଷୁ ଗୋଚରାନ୍....... (କଠୋପନିଷଦ) ।

ଶାସ୍ତ୍ରରେ ମାନବ ଶରୀରକୁ ରଥ ଓ ଆତ୍ମାକୁ ଦେବତା ରୂପେ କଳ୍ପନା କରାଯାଇଛି । କୁହାଯାଇଥାଏ ଶରୀର ମନ୍ଦିର । ମନ୍ଦିରର ଅର୍ଥ୍ ଦେବାଳୟ - ଦେବତାଙ୍କ ଆଳୟ । ଏ ବିଷୟରେ ପ୍ରସିଦ୍ଧ ପ୍ରତ୍ନତାତ୍ତ୍ୱିକ ଗବେଷକ ଦେବଳା ମିତ୍ରଙ୍କ ଅଭିମତ ପ୍ରଣିଧାନଯୋଗ୍ୟ ।

" Some of these elements are named after human limbs. It has been suggested on the basis of these forms that the temple was linked to the human body. The Rekha Deul has sometimes been conceived by the Orissan Architects as male-temple and the Pidha, Jagamohan as a female." ( Konark, page- 30-31 )

ମାନବ ମାନବୀର ମିଳିତ ଯାତ୍ରା ଗଡ଼ି ଚାଲିଛି ଅନନ୍ତ କାଳ ଧରି, ସୌରଶକ୍ତି ବାହିତ ଜୀବନରଥ ଚାଲିଛି ଯୁଗ ଯୁଗାନ୍ତ ଧରି, ପ୍ରହର ଦିବସ, ମାସ ବର୍ଷର ବିବର୍ତ୍ତନରେ । ସମ୍ମୁଖସ୍ଥ ସପ୍ତ ଅଶ୍ୱ ସୌରକିରଣର ପ୍ରତିସରିତ ସପ୍ତରଙ୍ଗ, ବାର ଯୋଡ଼ା ରଥଚକ୍ର ବାର ମାସ ଓ ୨୪ ପକ୍ଷର ପ୍ରତୀକ, ରଥଚକ୍ରର ଆଠଟି ଖାଡ଼ି ଦିବସ ରଜନୀର ଅଷ୍ଟ ପ୍ରହରର ପ୍ରତୀକ । କଠୋପନିଷଦ୍‌ର ସାମାନ୍ୟ କେତେ ଧାଡ଼ି ଛାଡିଦେଲେ ଏ ବିଶ୍ଳେଷଣ ପୁରାଣରେ ଖୋଜିବା ବୃଥା । କୋଣାର୍କ, ଶିଳ୍ପ ଭାସ୍କର୍ଯ୍ୟର ମହାକାବ୍ୟ ଏବଂ ସବୁ ଏପିକ୍ ଭଳି ଏ ମହାକାବ୍ୟର ଭାଷ୍ୟ ଯୁଗେ ଯୁଗେ ହେଉଥିବ । ଏହା ହିଁ କୋଣାର୍କ ସ୍ଥପତିର 'visionary' ଚିନ୍ତା । ଇତିହାସ ସେ ମହାନ୍ ଚିନ୍ତାନାୟକ ସ୍ଥପତିର ନାମ ସୁଦ୍ଧା ଲେଖି ରଖିନାହିଁ ।

ବାସ୍ତବତାବାଦୀ ମଣିଷ ପ୍ରଶ୍ନ କରିବେ, ଏତେ ଉଚ୍ଚସ୍ତରୀୟ ଚିନ୍ତା, ଭାବନା କରିବାର ସମୟ ନରସିଂହଦେବଙ୍କର ଥିଲା କି ? ପ୍ରଶ୍ନଟି ସ୍ୱାଭାବିକ । ଯେଉଁ ମଣିଷ ତାଙ୍କ ଶାସନ କାଳର ଅର୍ଦ୍ଧାଧିକ ଯୁଦ୍ଧକ୍ଷେତ୍ରରେ କଟେଇଲେ, ତାଙ୍କର ଏତେ ସବୁ ଚିନ୍ତା ଭାବନା କରିବାର ସମୟ ନଥିବ । କିନ୍ତୁ ଏକଥା ମଧ୍ୟ ଇତିହାସରୁ ଆସୁଛି । ଏ ରାଜା ଚାରୁକଳାର ବଡ଼ ପୃଷ୍ଠପୋଷକ ଥିଲେ ଏବଂ ସ୍ୱାଭାବିକ ରୀତିରେ କାବ୍ୟ କବିତା ଓ ଶାସ୍ତ୍ର ଆଲୋଚନା ରାଜସଭାରେ ହେଉଥିବ । ସୁଶାସକର ବଡ଼ ଗୁଣ, ତାହାର ସର୍ବବିଷୟରେ କିଛି କିଛି ପ୍ରବେଶ ଥାଏ । ଏହାଛଡ଼ା ନରସିଂହଦେବଙ୍କ ପକ୍ଷରେ ଆଉ ଗୋଟିଏ ବାସ୍ତବବାଦୀ ଚିନ୍ତା କାର୍ଯ୍ୟ କରୁଥିବା ବିଶ୍ୱାସ କରାଯାଇପାରେ । ଭାରତବର୍ଷ ଗୋଟିଏ ଧର୍ମପ୍ରଧାନ ଦେଶ । ଅଖଣ୍ଡ ଭାରତର ଯେଉଁ ସ୍ୱପ୍ନ ନରସିଂହଦେବ ଦେଖୁଥିଲେ, ତାହା ସଫଳ କରିବାକୁ ସୌରପୂଜାର ବ୍ୟାପକ ପ୍ରଚଳନ ସୁସଙ୍ଗତ ହେବ– ଏହା ହୁଏତ ତାଙ୍କର ବିଶ୍ୱାସ ଥିଲା ।

■ ■ ■

# ନିର୍ମାଣର ଇତିହାସ

ମନ୍ଦିର ନିର୍ମାଣର ସ୍ଥାପତ୍ୟଗତ ବିଚାର ତୃତୀୟ ପରିଚ୍ଛେଦରେ ଆଲୋଚିତ ହେବ । ଏଠାରେ ଆଲୋଚିତ ହେବ ଏହାର ପରିଚାଳନା ଓ ପ୍ରଯୁକ୍ତିଗତ ବିଷୟସବୁ । ଏତେ ବିଶାଳ କର୍ମ ଯୋଜନାରେ କିପରି ଥିଲା କୁଶଳୀ ଓ ଅଣକୁଶଳୀ କର୍ମୀ ସଂଖ୍ୟା, ସେମାନଙ୍କର ପରିଚାଳନାଗତ ବ୍ୟବସ୍ଥା କ'ଣ ଥିଲା, ନିର୍ମାଣ ଯୋଗ୍ୟ ବସ୍ତୁ କ'ଣ ଥିଲା, କ'ଣ ଥିଲା ସେଗୁଡିକର ସଂଗ୍ରହ କରିବାର ବ୍ୟବସ୍ଥା ? ନିର୍ମାଣ କାର୍ଯ୍ୟରେ ବ୍ୟବହୃତ କିଛି ସରଞ୍ଜାମ ଥିଲା କି ଏବଂ କାରିଗରୀ ଜ୍ଞାନ- Technical know-how କ'ଣ ଥିଲା ? କାର୍ଯ୍ୟ ପରିସରରେ ପରିବେଶଗତ ସମସ୍ୟା କ'ଣ ଥିଲା ଏବଂ ସେ ସବୁର ସମାଧାନ କିପରି କରିଥିଲେ ସେମାନେ ?

ଇତିହାସ ଅଧିକାଂଶ ପ୍ରଶ୍ନରେ ନୀରବ ଅଥବା କୁହେଳିକା ଆଚ୍ଛନ୍ନ । ବାୟାଚକଡ଼ା ଅତି ନିଖୁଣ ବର୍ଣ୍ଣନା ଦେବାକୁ ଯାଇ ସନ୍ଦେହ ଘେରରେ । ବାକି ରହିଲା ଚାର୍ଲସ୍ ଫାବ୍ରି କହିଥିବା, "Hypothesis and Conjuncture."

## ପ୍ରାଥମିକ କାର୍ଯ୍ୟ :

ପଦ୍ମକ୍ଷେତ୍ରରେ ବିଶାଳ ସୂର୍ଯ୍ୟ ମନ୍ଦିର ନିର୍ମାଣ ହେବ ସ୍ଥିର ହେଲା । କୋଣାର୍କ ସେତେବେଳକୁ କର୍ମବହୁଳ ବନ୍ଦର ସହର । ଯେଉଁ ବିଶାଳ ପଟ୍ଟଭୂମିରେ ସୌରରଥର ପରିକଳ୍ପନା କରାଯାଇଥିଲା, ତାହା ପାଇଁ ଉପଯୁକ୍ତ କ୍ଷେତ୍ର ପରିକଳ୍ପନା ( Land Scape ) ଦରକାର, ଯେପରି ମନେ ହେବ ସୂର୍ଯ୍ୟ ରଥ ସମୁଦ୍ର ବକ୍ଷ ଉପରେ ଉଡି ଚାଲିଛି ଦିଗ୍‌ବଳୟ ଦିଗକୁ । ଜୀର୍ଣ୍ଣ ପୁରାତନ ସୂର୍ଯ୍ୟ ମନ୍ଦିର, ଆଶା କରାଯାଏ ନିର୍ଜନ ସମୁଦ୍ର ତୀରରେ ସ୍ଥିତି ବଜାୟ ରଖିଥିଲା । ସ୍ଥପତିପାଇଁ ହୁଏତ ସେହି ସ୍ଥାନ ଆଦର୍ଶ ମନେହେଲା । ଅନ୍ୟ କାରଣ ଗୋଟିଏ ଥାଇପାରେ, ତାହା ସେଇ କୋଣ ସମ୍ବନ୍ଧିତ ।

କଳ୍ପନା ହୁଏତ ବିଶାଳ ପଥରନିର୍ମିତ ମନ୍ଦିରକୁ ସମୁଦ୍ରରେ ଭସେଇ ରଖିପାରେ, କିନ୍ତୁ ପ୍ରକୃତ ମନ୍ଦିର ପାଇଁ ଜମିର ପ୍ରୟୋଜନ । ସେଇ ପ୍ରୟୋଜନରୁ ହୁଏତ ସମୁଦ୍ର ମଧ୍ୟରୁ ଜମି କାଢ଼ି ଆଣିବାର ଯୋଜନା ହେଲା ଏବଂ ପରବର୍ତ୍ତୀ ସମୟରେ ଜାତ ହେଲା ଗୋଟିଏ କିମ୍ବଦନ୍ତୀ ।

ଗୋଟିଏ ନିଦାଘତପ୍ତ ଦିବସରେ ଶ୍ରାନ୍ତ କ୍ଳାନ୍ତ ଶିବେଇ ସାଁନ୍ତରା (ଶିବ ସାମନ୍ତରାୟ) ଗୋଟିଏ ବ୍ରାହ୍ମଣୀ ଘର ବାରଣ୍ଡାରେ ପାଣି ମୁନ୍ଦେ ପାଇଁ ବସି ପଡ଼ିଲେ । କୋଣାର୍କର ନିଅଁ ପଡ଼ିପାରୁ ନାହିଁ, ପଦ୍ମତୋଳା ଗଣ୍ଡର ପ୍ରଖର ସ୍ରୋତରେ ଯେତେ ପଥର ପକେଇଲେ, ଭସେଇ ନେଇ ଯାଉଛି; ତେଣୁ ସେ ଘୋର ଚିନ୍ତିତ । କୁଟୀରରୁ ବୁଢ଼ୀଟିଏ ବାହାରି ସାମନ୍ତରାୟଙ୍କୁ ଗରମ ଜାଉ ଖୁଆଇବା ଛଳରେ ବୁଦ୍ଧିଟି ବତେଇ ଦେଲେ । ଏହା ହିଁ କିମ୍ବଦନ୍ତୀର ଗଳ୍ପ, ଯାହା ଓଡ଼ିଶାର ପୁରପଲ୍ଲୀରେ ସମସ୍ତେ ଜାଣନ୍ତି । ଗଳ୍ପଟି ଗଳ୍ପ ମାତ୍ର ଯଦିଓ କୃପାସିନ୍ଧୁ, ରାମଚଣ୍ଡୀଙ୍କ ଐତିହାସିକତା ପ୍ରମାଣ କରିବାକୁ ବହୁ ପ୍ରୟାସ କରିଛନ୍ତି ।[୧୨୮] ଗଳ୍ପରେ ଛିଦ୍ର ବହୁତ ।

କୋଣାର୍କ ସମ୍ବନ୍ଧୀୟ କିମ୍ବଦନ୍ତୀ ବହୁତ । ରସସ୍ନିଗ୍ଧ ଗଳ୍ପଗୁଡ଼ିକୁ ଏକତ୍ର କରି ସେଗୁଡ଼ିକର ଉଚିତ୍ ମୂଲ୍ୟାୟନ କରିବାର ଚେଷ୍ଟା କରାଯାଇଛି ପଞ୍ଚମ ପରିଚ୍ଛେଦରେ । ବର୍ତ୍ତମାନ ଫେରିବା ଶୁଷ୍କ କଠୋର ଇତିହାସକୁ ।

କିମ୍ବଦନ୍ତୀ କିନ୍ତୁ ଗୋଟିଏ ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରୁଛି, ଯାହା ସେ ସମୟର ପରିସ୍ଥିତିରେ ସମ୍ଭବ ଥିଲା । ସେ ସମୟର ନଦୀ ପଥର ବିବର୍ତ୍ତନ ସହ ତାଳ ରଖି ଭୂମିର ଗଢ଼ା ଭଙ୍ଗା ଲାଗି ରହିଥିଲା । ଅନେକଗୁଡ଼ିଏ ନଦୀ ସଙ୍ଗମରେ ଅବସ୍ଥିତ କୋଣାର୍କର ଭିତ୍ତିଭୂମିର ସ୍ଥାୟିତ୍ୱକୁ ଲକ୍ଷ୍ୟ ରଖି ନଦୀ ମଧ୍ୟରେ Spur ନିର୍ମାଣର ପ୍ରୟୋଜନ ବୋଧ କରି ପାରିଥାଆନ୍ତି କୋଣାର୍କ ସ୍ଥପତି, ଅର୍ଥାତ୍ ନଦୀ ମୁହାଣ ଗଣ୍ଡରେ ଗୋଟିଏ କୃତ୍ରିମ ବ-ଦ୍ୱୀପ ଗଢ଼ି ତାହା ଉପରେ ରଥ ଆକାରର ମନ୍ଦିର ଗଢ଼ିଦେଲେ କଳ୍ପନାର ପୂର୍ଣ୍ଣତା ଆସିବ । କାଳକ୍ରମେ ନଦୀ ଶୁଖିଗଲା ଓ ସମୁଦ୍ର ଘୁଞ୍ଚିଗଲା ବହୁଦୂର ।

## ନିଅଁ ଖୋଳା :

ଓଡ଼ିଶାର ଦେଉଳଗୁଡ଼ିକର ନିଅଁ ସାଧାରଣ ଘର ଭଳି ହୁଏ ନାହିଁ କାରଣ ଏହାର ବାଡ଼ ମେଜିଆ ସବୁ ମିଶି ପୋତା ( Plinth )। କୋଣାର୍କରେ ପୁଣି ଏହା ସହିତ ତଳପୃଷ୍ଠ, ଖୁରପୃଷ୍ଠ ଏବଂ ତଳପୃଷ୍ଠ ତଳେ 'ଉପନ' ମିଶିଛି, ଯାହାର ମିଳିତ ଉଚ୍ଚତା ୧୬'-୬'' । ଏ ସମସ୍ତ ତଳେ ଆହୁରି ନିଦା ପଥର ଅଛି ଯାହା ଭୂମି ତଳକୁ ଯାଇଛି । କେତେ ତଳକୁ ଯାଇଛି ସେ ପ୍ରିଛ ?

ଶିଳ୍ପ ଶାସ୍ତ୍ରମତେ ଦେଉଳର ଏକ ତୃତୀୟାଂଶ ମାଟି ତଳକୁ ପୋତାରେ ଯାଏ ।[୧୨୯] ଯେବେ ବିମାନର ଉଚ୍ଚତା ୨୨୮ ଫୁଟ ଥାଏ [୧୩୦] ୭୬ ଫୁଟ୍ ମାଟି ତଳକୁ ଯାଇଛି । କୋଣାର୍କ ଭଳି ବାଲିଆ ଜାଗାରେ ଏହା ସମ୍ଭବ କି ? ଚାରି ଛଅ ଫୁଟ୍ ଖୋଳିଲା ବେଳକୁ ଚାରି ପଟରୁ ବାଲି ଧସି ଆସିବ । ଏହାଛଡ଼ା ପାଣି ମଧ୍ୟ ଭରିଯିବ ସମୁଦ୍ର ସହିତ ସମତା ରଖିବାକୁ । ମନମୋହନ ଗାଙ୍ଗୁଲୀ; କଶ୍ୟପ ପୁରାଣ ଓ ମତ୍ସ୍ୟପୁରାଣକୁ ନିର୍ଭର କରି ମୃତ୍ତିକା ପରୀକ୍ଷା (soil testing) କରିବାର ଗୋଟିଏ ପ୍ରକ୍ରିୟା କହିଛନ୍ତି ।[୧୩୧] ଗୋଲାକାର ଗର୍ତ୍ତଟିଏ ହାତେ ଗଭୀର ଖୋଳି ସେ ମାଟି ପୁଣି ଗାତରେ ଭରି ଦିଆଯିବ, ସେ ମାଟି ଗାତରୁ ଉଛୁଳି ପଡ଼ିବ ଅଥବା ସମତୁଲ ହେବ ଅଥବା ଭରିବ ନାହିଁ ।

**ନିର୍ଣ୍ଣୟ :**

| | | |
|---|---|---|
| ଉଛୁଳି ପଡ଼ିଲେ | – | ଭଲ |
| ସମତୁଲ ହେଲେ | – | ଚଳିବ |
| ପୂରା ନ ଭରିଲେ | – | ଖରାପ |

ଏ ପ୍ରକ୍ରିୟା ଚାଲିବ ଯେତେବେଳ ଯାଏ ସହନଶୀଳ ଭୂମିତଳ ନ ମିଳିଛି । ଏହା ମଧ୍ୟ କୋଣାର୍କରେ କିଭଳି ହୋଇ ପାରିବ ସାଧାରଣ ବୁଦ୍ଧି ବହିର୍ଭୂତ । ତେବେ କୋଣାର୍କ ସ୍ଥପତି ସାଧାରଣ ଲୋକ ନଥିଲେ ।

ଜଣେ ଆଧୁନିକ ପ୍ରଯୁକ୍ତିବିତ୍ ଲେଖକଙ୍କ ସହିତ ଏ ବିଷୟ ଆଲୋଚନା ପ୍ରସଙ୍ଗରେ ଆଧୁନିକ ପାଇଲିଂ କଥା କହିଥିଲେ । ସେ ତାଙ୍କର ୟୁରୋପ ଭ୍ରମଣ ଅବସରରେ ଭେନିସ୍ ସହର ଦେଖିଥିଲେ, ଯେଉଁଠାରେ ଘରଦ୍ୱାର ସବୁ ଜଳ ମଧ୍ୟରେ, ସେଠାରେ ବହୁ କାଳରୁ ପାଇଲିଂ ଦ୍ୱାରା ବଡ଼ ବଡ଼ ଇମାରତ୍ ତୋଳା ହୋଇଥିବାର ପ୍ରମାଣ ପାଇଛନ୍ତି । ପ୍ରକ୍ରିୟାଟିରେ ୩/୪ ଫୁଟ୍ ଛାଡ଼ି ଛାଡ଼ି ୪୦/୫୦ ଫୁଟ୍ ଲମ୍ବ କାଠ ବଲ୍ଲା ପିଟି ପିଟି ମାଟି ତଳକୁ ପୋତି ଦିଆଯାଏ ଏବଂ ତାହା ଉପରେ କଂକ୍ରିଟ୍ ସ୍ଲାବ୍ ଢଳେଇ କରି ବହୁତଳ ପ୍ରାସାଦ ତିଆରି କରାଯାଏ । ସେ ଯୁଗରେ ସିମେଣ୍ଟ୍ କଂକ୍ରିଟ୍ ନଥିଲା, ଚୂନ ଗୋଡ଼ି ମିଶା କଂକ୍ରିଟ୍ ଢ଼ଳା ହେଉଥିଲା । କୋଣାର୍କ ସ୍ଥପତିଙ୍କୁ ପାଇଲିଂ ଭଳି ଗୋଟିଏ ସହଜ ପ୍ରକ୍ରିୟା ଜଣା ନଥିବାର କାରଣ ନାହିଁ । ପ୍ରାୟ ଶହେ ବର୍ଷ ପୂର୍ବେ ସେଇ ସମୁଦ୍ର କୂଳରେ ପୁରୀ ମନ୍ଦିର ଗଢ଼ିବାର ଅଭିଜ୍ଞତା ତାଙ୍କର ଥିଲା । ୟୁରୋପୀୟମାନେ ଯେହେତୁ ଶହ ଶହ ବର୍ଷର ଇତିହାସ ସାଇତି ରଖିଛନ୍ତି, ସେମାନଙ୍କ କାମ ପ୍ରମାଣଯୋଗ୍ୟ ଏବଂ ଲିଖିତ ଇତିହାସ ନାହିଁ ବୋଲି ଏ ଦେଶରେ ଉନ୍ନତ ପ୍ରଯୁକ୍ତି ନଥିଲା କହିବା କୁଯୁକ୍ତି ହେବ । ଐତିହାସିକ ଓ ପୁରାତତ୍ତ୍ୱବିଦ୍ ପ୍ରମାଣ ଖୋଜନ୍ତୁ, କାରଣ ଯୁଗ ଯୁଗର ଅତ୍ୟାଚାର ଓ ଅବହେଳା ସତ୍ତ୍ୱେ କୋଣାର୍କ ଏବେ ମଧ୍ୟ ଠିଆ ହୋଇ ରହିଅଛି ।

## ପ୍ରସ୍ତର ଚୟନ :

ପଥର କାହିଁକି ? ପୋଡ଼ା ଇଟାର ବ୍ୟବହାର ସେତେବେଳକୁ ଓଡ଼ିଶାବାସୀ ଜାଣିଲେଣି, ଯାହାର ପ୍ରମାଣ ଖୋଜିବାକୁ ଦୂରକୁ ଯିବାର ପ୍ରୟୋଜନ ନାହିଁ । କୋଣାର୍କ ବେଢ଼ା ଭିତରେ ଏବଂ ପୁରାତନ ସୂର୍ଯ୍ୟ ମନ୍ଦିର ପଛପଟେ ଥିବା ଇଟା ତିଆରି ବିଷ୍ଣୁ ମନ୍ଦିର ପୁରାତନ ସୂର୍ଯ୍ୟମନ୍ଦିର ଠାରୁ ମଧ୍ୟ ଆହୁରି ପୁରାତନ । ଓଡ଼ିଶା ଗୋଟିଏ ଜଙ୍ଗଲ ପ୍ରଧାନ ଦେଶ ଥିଲା, ଏପରିକି ଷାଠିଏ/ସତୁରୀ ବର୍ଷ ପୂର୍ବେ ମଧ୍ୟ ଓଡ଼ିଶାର ଶତକଡ଼ା ୬୦ ଭାଗ ଭୂମି ଜଙ୍ଗଲ ମଧ୍ୟରେ ଥିଲା । କାଠ ବ୍ୟବହୃତ ହୋଇ ପାରି ଥାଆନ୍ତା । ଲେଖକ ହିମାଚଳ ପ୍ରଦେଶରେ ବହୁ କାଠ ମନ୍ଦିର ଦେଖିଛି ।

ସ୍ଥପତି ନିର୍ମାଣଯୋଗ୍ୟ ବସ୍ତୁ ଖୋଜିଥାଏ ଯାହା ସହଜଲଭ୍ୟ, ସହଜରେ ଶିଳ୍ପଭାଷ୍ୟ ଫୁଟେଇ ପାରିବ ଏବଂ ସ୍ଥାୟୀ ହେବ । ମନ୍ଦିର କ୍ଷେତ୍ରରେ ତାହାର ଏକମାତ୍ର ଉତ୍ତର କନ୍ଦାପଥର ଯାହାକୁ ଜିଓଲଜିଷ୍ଟ Khondalite କହି ଥାଆନ୍ତି । ମାଙ୍କଡ଼ା ପଥର ଆହୁରି ସୁଲଭ ଏବଂ ଖରା ବର୍ଷା ଖାଇ ଏହା ଅଧିକରୁ ଅଧିକ ମଜଭୁତ ହୁଏ । କିନ୍ତୁ ପଥର ଉପରେ ଯେଉଁ ବିସ୍ମୟକର କାରୁକାର୍ଯ୍ୟ ଫୁଟେଇଛି ଓଡ଼ିଶା ଶିଳ୍ପୀ, ତାହା ମାଙ୍କଡ଼ା ପଥର ( Laterite ) ଉପରେ ଫୁଟେଇବା ସମ୍ଭବ ହୁଅନ୍ତା ନାହିଁ ।

ଦେଉଳ ଅର୍ଥାତ୍ ଦେବାଳୟ ଅର୍ଥାତ୍ ଦେବତାଙ୍କ ଆଳୟ । ତାହାର ସ୍ଥାୟିତ୍ୱ, ଧର୍ମପ୍ରାଣ ସ୍ଥପତି ଚାହିଁଥିବ ଅନନ୍ତ କାଳବ୍ୟାପୀ ହେଉ । Black Agoda (ସେ ସମୟରେ ଅବଶ୍ୟ ଅଭିବ୍ୟକ୍ତିଟିର ଜନ୍ମ ହୋଇନାହିଁ) ମୁଗୁନି ( Chlorite )ରେ ଗଢ଼ିଥିଲେ ଆଜିକାର ଅବକ୍ଷୟ ଆହୁରି

ଦୂରେଇ ଯାଇଥାଆନ୍ତା । ତେବେ ପ୍ରସ୍ତରଟି ସୁଲଭ ନୁହେଁ ଏବଂ ଭାସ୍କରବନ୍ଧୁ ନୁହେଁ, ହୁଏତ ନରସିଂହ ଦେବଙ୍କର ଜୀବନ କାଳରେ କୋଣାର୍କ ନିର୍ମାଣ ଶେଷ ହୁଅନ୍ତା ନାହିଁ । **ଓଡ଼ିଶାର କେଉଁ ଅଞ୍ଚଳରେ କେଉଁ ପଥରର ସ୍ତର** ଅଛି ତାହାର ଗୋଟିଏ ଚିତ୍ର ଦିଆଗଲା । (ରେଖାଚିତ୍ର ନଂ. ୨ )



ରେଖାଚିତ୍ର-୨ : ପଥରସ୍ତର ଏବଂ ଜଳପଥ

ପୂର୍ବଘାଟ ପର୍ବତମାଳାର ଶେଷ ଅଂଶ ଉପକୂଳବର୍ତ୍ତୀ ଓଡ଼ିଶାର ବେଶ୍ କିଛି ଅଂଶ ଦଖଲରେ ରଖିଛି । ସାଧାରଣ ଭାବେ ଦେଖିବାକୁ ଗଲେ ନଦୀବାହିତ ପଟୁସ୍ତର (**Alluvium**) ଉପକୂଳରୁ ୩୦/୪୦ ମାଇଲ୍ ଯାଏ ବେଶ୍ କିଛି ସମତଳ ଅଞ୍ଚଳ ଗଢ଼ି ତୋଳିଛି । କିନ୍ତୁ ଏହା ତଳେ ମଧ୍ୟ ପଥର ସ୍ତର ଅଛି । ପାହାଡ଼ଗୁଡ଼ିକରୁ ଭୂମି କ୍ଷୟ ହୋଇ ରହିଯାଇଛି ନାନା ପ୍ରସ୍ତରର ସ୍ତର, ଯାହାର ଭୂତାତ୍ତ୍ୱିକ ମିଶ୍ରଣ ( **geological composition** ) ବିଶେଷଜ୍ଞମାନଙ୍କର ଅନୁସନ୍ଧାନର ବିଷୟବସ୍ତୁ । ଏଠାରେ ଆଲୋଚ୍ୟ, ଯେଉଁ ତିନୋଟି ଧରଣର ପଥର ମନ୍ଦିରରେ ବ୍ୟବହାର କରାଯାଇଛି, ତାହାର ନିର୍ମାଣଗତ ଉପଯୋଗିତା ( **Laterite** ) ଅର୍ଥାତ୍ ମାଙ୍କଡ଼ା ପଥରରେ ଲୁହାର ଆଧିକ୍ୟ ଅଛି କିନ୍ତୁ ଏହା ସଚ୍ଛିଦ୍ର (**porous**) । ଭୁବନେଶ୍ୱର, ଖୋର୍ଦ୍ଧା ଓ ଚଉଦୁଆର ଅଞ୍ଚଳରେ ମାଟିର ଆବରଣ ସାମାନ୍ୟ କାଢ଼ିଦେଲେ ଏହାର ସ୍ତର ମିଳେ । ଏହାର ପ୍ରଥମ ସ୍ତର ଅତ୍ୟନ୍ତ କଠିଣ, ସହଜରେ ଟାଙ୍ଗିଆ ଚାଲେ ନାହିଁ । ଦ୍ୱିତୀୟ, ତୃତୀୟ ଏପରିକି ଚତୁର୍ଥ କାଟେଣି (ସ୍ତର) ଯାଏ ବ୍ୟବହାର କରାଯାଇଥାଏ । ତାହା ତଳକୁ ମାଟି ଭଳି ନରମ । ମାଙ୍କଡ଼ା ପଥରର ବିଶେଷତ୍ୱ, ପାଣି ପବନ ଏହାର କ୍ଷତି କରେନାହିଁ ବରଂ କ୍ରମେ ଟାଣ କରେ । ଏହାର ବହୁଳ ବ୍ୟବହାର ନିଅଁ, ବେଢ଼ା, ମେଜିଆ ତଳ ଓ ସୋପାନରେ ।

**Chlorite** ଅର୍ଥାତ୍ ମୁଗୁନିରେ ଅଛି **hydorus silicate of alumina, ferrous oxide** ଏବଂ **magnesia** ।[୧୩୨] କେତେକ ବିଶେଷ ମୁଗୁନି ଯାହା ବ୍ୟବହୃତ ହୋଇଥିଲା ସୂର୍ଯ୍ୟଦେବଙ୍କ ମୂର୍ତ୍ତି ଗଢ଼ିବାରେ ଉପରୋକ୍ତ ଯୌଗିକ ବସ୍ତୁ **granet** ମଧ୍ୟ ବହନ କରିଥାଏ ।[୧୩୩] ଏହା ଫଳରେ ପଥରଟି ଅତି ଟାଣ, ମସୃଣ ଓ ବହୁ ବର୍ଷ ଧରି ପାଣି ପବନର ଆକ୍ରମଣ ରୋଧ କରିଥାଏ । ଏହା ଉପରେ ଅତି ସୂକ୍ଷ୍ମ କାର୍ଯ୍ୟ ମଧ୍ୟ ହୋଇପାରେ (ଯଥା- ସୂର୍ଯ୍ୟଦେବଙ୍କ ପରିଧାନ) କିନ୍ତୁ କାର୍ଯ୍ୟଟି ଦୀର୍ଘ ପରିଶ୍ରମ ସାଧ୍ୟ । ଯୁକ୍ତିଯୁକ୍ତ ଭାବେ ମୁଗୁନି ବ୍ୟବହାର ହୋଇଛି ବିଗ୍ରହ ଗଢ଼ିବାରେ, ଦେବ ସିଂହାସନରେ, ଦ୍ୱାରବନ୍ଧରେ ଏବଂ ନବଗ୍ରହ ପାଟ ଭଳି ବିଶେଷ ବିଶେଷ ସ୍ଥାନରେ ।

ଯେଉଁ **Khondalite** ଅର୍ଥାତ **Sand-Stone** ଅର୍ଥାତ୍ କନ୍ଦା ପଥର ଏ ମନ୍ଦିରରେ ବହୁତ ପରିମାଣରେ ବ୍ୟବହୃତ ସେ ବିଷୟରେ ବିସ୍ତାରିତ ଆଲୋଚନାର ପ୍ରୟୋଜନ ଅଛି । ଏ ପଥର ମଧ୍ୟରେ ଅଛି **Sillimunite, granet, graphite, felspar, quartz** ଏବଂ **metallic minerals** । ଏହା ଛଡ଼ା ଏହାର ଗଠନରେ ଅଛି **lamination (scistose structure)** ଯାହା ଏହାକୁ ରଜୁତା ପ୍ରଦାନ କରୁଛି [୧୩୪] । **Graphite** ଥିବାରୁ ଏ ପଥର ଶିଳ୍ପୀ-ବନ୍ଧୁ ପାଲଟି ଯାଇଛି, ଅତି ଜଟିଳ ଭାସ୍କର୍ଯ୍ୟ ଅପେକ୍ଷାକୃତ ଅଳ୍ପ ସମୟରେ ଫୁଟା ଯାଇପାରୁଛି ।

କୋଣାର୍କ ଭଳି ଲବଣାକ୍ତ ପରିବେଶରେ କନ୍ଦା ପଥରର ବ୍ୟବହାର ବିବାଦାତ୍ମକ ହୋଇପାରେ । ମନେ ରଖିବାକୁ ହେବ କୋଣାର୍କ ଶିଳ୍ପୀ ପଛରେ ସାତ ଆଠଶହ ବର୍ଷର ଅଭିଜ୍ଞତା ଥିଲା ଯାହା ମଧ୍ୟରେ ସମୁଦ୍ରତୀରରେ ମନ୍ଦିର ଗଢ଼ିବାର ଅଭିଜ୍ଞତା ମଧ୍ୟ ଅଳ୍ପ ନୁହେଁ । ଏହା ଛଡ଼ା ରାଜନୈତିକ କାରଣରୁ ଦାକ୍ଷିଣାତ୍ୟ ସହ ବୈଷୟିକ ଜ୍ଞାନର ଆଦାନ-ପ୍ରଦାନ ଥିଲା । ସେ ଦେଶରେ ମଧ୍ୟ ଗୋଟିଏ ନୁହେଁ, ତିନିଟି ସାଗର ତୀରରେ ବହୁ ପଥର ମନ୍ଦିର ଗଢ଼ାଯାଇଛି । ପୁରୀ ଶ୍ରୀମନ୍ଦିରରେ ହୁଏତ ଚୂନ ପଟୁ ରକ୍ଷା କରିଥାଇପାରେ ତେବେ ସବୁ ମନ୍ଦିର ଚୂନପଟ ତଳେ ଢଙ୍କା ପଡ଼ିନଥିଲା । ପୁରୀ ଓ ଭୁବନେଶ୍ୱର ମଧ୍ୟରେ ବହୁ ମନ୍ଦିର ଲବଣାକ୍ତ ପରିବେଶରୁ ବହୁ ଦୂରରେ ନଥିଲା । କୋଣାର୍କରେ ଯେଉଁ ବିପୁଳ କ୍ଷତି ଘଟିଲା ତାହା ପାଇଁ ୩୦୦ ବର୍ଷର ଅବହେଳା ଏବଂ ସାମୁଦ୍ରିକ ପ୍ରଭାବ ବାହାରେ ଅନ୍ୟ କିଛି କାରଣ ମଧ୍ୟ ଥାଇପାରେ ।

ପୂର୍ବେ ଆଲୋଚିତ ହୋଇଛି (ପୃଷ୍ଠା-୪୭) କୋଣାର୍କର ବିଶେଷ ଅବସ୍ଥାନରେ ଦିନର ବିଶେଷ ସମୟରେ ସୂର୍ଯ୍ୟକିରଣରୁ ଲେଜର ଭଳି ରଶ୍ମି ଜାତ ହେଉଥିବା ସମ୍ଭବ । ଏହା ସହିତ ଲବଣାକ୍ତ ବାୟୁର ଯୌଗିକ କ୍ରିୟା, ବାୟୁ ପ୍ରବାହର ଦିଗ ଓ ବେଗ ହୁଏତ ଖଣ୍ଡୋଲାଇଟ୍ ପଥର ପାଇଁ ବିଶେଷ କ୍ଷତିକାରକ ଥିଲା । ଏହା ଅନୁମାନ ମାତ୍ର ସିଦ୍ଧାନ୍ତ ନୁହେଁ । ଏ ଦିଗରେ ବୈଜ୍ଞାନିକ ଗବେଷଣାର ପ୍ରୟୋଜନ ଅଛି କାରଣ ଏଠାରେ ଆଗକୁ ନୂତନ କୋଣାର୍କ ନିର୍ମାଣର ସମ୍ଭାବନା ଅଛି ।

ଦେଖା ଯାଉଛି, ପରିବେଶଗତ କ୍ଷୟ, ମନ୍ଦିରର ସବୁ ଅଂଶକୁ ସମ ପରିମାଣ କ୍ଷତି କରି ନାହିଁ । ଏହାର ମୂଳ କାରଣ **Khondalite** ମଧ୍ୟ ବିଭିନ୍ନ ରକମର ହୋଇଥାଏ । ମନମୋହନ ଗାଙ୍ଗୁଲୀ ବାର କିସମ୍ର କନ୍ଦା ପଥର, ସେମାନଙ୍କ ସ୍ଥାନୀୟ ନାମ ଓ ତାହାର ମୌଳିକ ଗଠନ ଇତ୍ୟାଦିର ଗୋଟିଏ ସାରଣୀ ତିଆରି କରିଛନ୍ତି [୧୩୫] । ସାରଣୀଟି ପର ପୃଷ୍ଠାରେ ଉଦ୍ଧାର କରାଗଲା-

## ସାରଣୀ - ୫

# ଖଣ୍ଡୋଲାଇଟ୍ ପଥରର ଗଠନ

| କ୍ରମ | ସ୍ଥାନୀୟ ନାମ | ପେଟ୍ରୋଗ୍ରାଫିକ୍ ଚରିତ୍ର | ହାଇଡ୍ରୋକ୍ଲୋରିକ୍ ଏସିଡ୍‌ର ପ୍ରଭାବ | ଆପେକ୍ଷିକ ଗୁରୁତ୍ୱ (specific gravity) | କେଉଁ ମନ୍ଦିରରେ ବ୍ୟବହୃତ |
|---|---|---|---|---|---|
| (୧) | (୨) | (୩) | (୪) | (୫) | (୬) |
| ୧ | ଲାଲ୍ ରାଜାରାଣୀଆ | Sand-stone with minute flakes of white mica. | Nil | ୨.୩ | ମୁକ୍ତେଶ୍ୱର, ଗୌରୀ, ରାଜରାଣୀରେ ଅଳ୍ପ |
| ୨ | ହଳଦିଆ ରାଜାରାଣୀଆ | Ferruginous sand stone, occasionally with mica | Nil | ୨.୫ | ରାଜରାଣୀ, ଗୌରୀ, ମୁକ୍ତେଶ୍ୱର |
| ୩ | ଧଳା ମିଶା ରାଜାରାଣୀଆ | Sand stone with particles of mica | very high | ୨.୩୧ | ମୁକ୍ତେଶ୍ୱର, ଗୌରୀ, ରାଜାରାଣୀର ଲିଣ୍ଟୋଲ୍ |
| ୪ | କୟା ରାଜାରାଣୀଆ | Only Silica course-grained sand-stone | Nil | ୨.୨୮ | ରାଜରାଣୀ, ବ୍ରହ୍ମେଶ୍ୱର |
| ୫ | ସଫା ରଙ୍ଗଡାଳିମା | Ferruginous sand-stone | Nil | ୨.୪୩ | ପର୍ଶୁରାମେଶ୍ୱର, ବୋଇତାଳ |
| ୬ | ମାଟିଆ ରଙ୍ଗଡାଳିମା | Oridnary sand-stone | Nil | ୨.୩ | ପର୍ଶୁରାମେଶ୍ୱର, ବୋଇତାଳ |
| ୭ | ରଙ୍ଗଡାଳିମା ମିଶ୍ରିତ ଖଡ଼ିଆକନ୍ଦା | Sand-stone with mica | Nil | ୨.୩୫ | ପର୍ଶୁରାମେଶ୍ୱର, ବୋଇତାଳ, ସିଦ୍ଧେଶ୍ୱର |
| ୮ | ସଫା ଖଡ଼ିଆକନ୍ଦା ଡାଳିମା | Fine-grained sand-stone with big grains quartz | Nil | ୨.୨୩ | ପର୍ଶୁରାମେଶ୍ୱର, ବୋଇତାଳ |
| ୯ | ଫୁଲ୍‌ଖଡିଆକନ୍ଦା | Sand-stone with mica | Nil | ୨.୨୮ | ଶାରୀଦେଉଳ, ପାର୍ବତୀ ଅନନ୍ତ ବାସୁଦେବ |
| ୧୦ | ବାଲିଆ-ଖଡ଼ିଆକନ୍ଦା | Fine grained sand stone | Nil | ୨.୩ | ଶାରୀଦେଉଳ, ଅନନ୍ତ ବାସୁଦେବ |
| ୧୧ | ନରାଜ ବଗଡ଼ାକନ୍ଦା | Contains only course-grained silica sand-stone | Nil | ୨.୩ | ଲିଙ୍ଗରାଜ, ବ୍ରହ୍ମେଶ୍ୱର, ଯମେଶ୍ୱର |
| ୧୨ | ମୋଟ ବଗଡ଼ାକନ୍ଦା | Highly decomposed granite | Nil | ୨.୪୧ | ସିଦ୍ଧେଶ୍ୱର, ନାୟକେଶ୍ୱର |

ଓଡ଼ିଶାର ପ୍ରାକ୍ତନ ମୁଖ୍ୟ ଯନ୍ତ୍ରୀ S. K. Palit ନରାଜ ପାଖରେ ମହାନଦୀ ଭିତରକୁ ଗୋଟିଏ ପଥର ଗଡ଼ା ଆବିଷ୍କାର କରି କୋଣାର୍କ ପାଇଁ ପଥର ସେଇ ବାଟେ ଯାଇଥିବା କଥା ଚିନ୍ତା କରିଥିଲେ ।[୧୩୬] ଗାଙ୍ଗୁଲୀ ପ୍ରଦତ୍ତ ତଥ୍ୟରୁ ଜଣାପଡ଼ୁଛି, ସେଇ 'ନରାଜ ବୋଗଡ଼ା', ଲିଙ୍ଗରାଜ, ବ୍ରହ୍ମେଶ୍ୱର ଓ ଯମେଶ୍ୱର ମନ୍ଦିରରେ ବ୍ୟବହୃତ ହୋଇଛି । ଉପରୋକ୍ତ ସାରଣୀରୁ ଜଣାପଡୁଛି, ମନ୍ଦିରଗୁଡ଼ିକ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ପଥର ବ୍ୟବହାର କରୁଥିଲେ ମଧ୍ୟ ଅନ୍ୟ କିସମ ମଧ୍ୟ ବ୍ୟବହାର କରୁଥିଲେ । କୋଣାର୍କରେ Khondalite ମୁଖ୍ୟତଃ 'ନରାଜ ବୋଗଡ଼ା' ହେଲେ ମଧ୍ୟ କିଛି ଅନ୍ୟ କିସମ ବ୍ୟବହାର ହୋଇଥିବାର ପ୍ରମାଣ ମିଳୁଛି, ଗାଙ୍ଗୁଲୀ ଏଠାରୁ ଖଣ୍ଡିଏ ଖଡ଼ିଆକନ୍ଦା ପଥର ନେଇ ପରୀକ୍ଷା କରାଇଥିଲେ । ତାହାର Specific gravity ବାହାରିଲା ମାତ୍ର 1.861. (P-251)

କୋଣାର୍କ ଶିଳ୍ପୀ ବିଭିନ୍ନ କିସମର ପଥର ବିଭିନ୍ନ ପ୍ରୟୋଜନରେ ବ୍ୟବହାର କରିଥିଲେ । କିନ୍ତୁ ମନେ ହୁଏ, ସେମାନେ ପ୍ରତିଟି ପଥରର ଚରିତ୍ର ଅବଗତ ଥିଲେ । ଏ ପ୍ରସଙ୍ଗରେ ପ୍ରଫେସର୍ R.M. Lemaire ଙ୍କ ବକ୍ତବ୍ୟ ପ୍ରାସଙ୍ଗିକ ।

କିଛି ବର୍ଷ ପୂର୍ବେ UNESCOର Prof. R.M. Lemaire ଏବଂ ରୋମ୍‌ର Material Laboratory of the Institute of Central del Restraroର ଡାଇରେକ୍ଟର Mrs. M. Tabasso, ଭାରତ ସରକାରଙ୍କ ଆମନ୍ତ୍ରଣରେ କୋଣାର୍କ ଉପରେ ଗୋଟିଏ ରିପୋର୍ଟ ଦାଖଲ କରିଥିଲେ ୨୭ ମେ ୧୯୮୧ରେ[୧୩୭] । ବିଭିନ୍ନ ସ୍ତରର ପଥରଗୁଡିକର କ୍ଷୟ ସେମାନଙ୍କ ନଜରକୁ ଆସିଥିଲେ ମଧ୍ୟ ସଂକ୍ଷେପରେ ସେମାନଙ୍କର ପଥର ସମ୍ବନ୍ଧୀୟ ବକ୍ତବ୍ୟ :

1. Condition of stone is good despite areas of erosion.
2. Stone has reached a State of equilibrium.
3. Stone is made of very tough matrix.
4. No rapid weathering is to be feared in the forceable future.

ପ୍ରମାଣିତ ହେଉଛି, ଆଜିକାର Geologist ମାନେ ପ୍ରସ୍ତର ବିଷୟରେ ଯେତିକି ଜ୍ଞାନ ରଖନ୍ତି ସାତଶହ ବର୍ଷ ପୂର୍ବର ସ୍ଥପତି ଶିଳ୍ପୀ ତାହାଠାରୁ କିଛି ମାତ୍ର କମ୍ ଜ୍ଞାନୀ ନଥିଲେ । ପ୍ରସ୍ତର ଚୟନ କିନ୍ତୁ ସଂପୂର୍ଣ୍ଣ ନିର୍ଭୁଲ୍ ଥିଲା କହିହେବ ନାହିଁ । ଆଜି କନ୍ଦାପଥର ଖଣ୍ଡୋଲାଇଟ୍ ଲୁଣି ଖାଇ ବିକଳାଙ୍ଗ ହୋଇ ଯାଇଥିବାରୁ ଏକଥା କୁହାଯାଉ ନାହିଁ । ପୁରୀ ମନ୍ଦିର ଯାହା କୋଣାର୍କଠାରୁ ପୁରାତନ, ସେଠାକାର ପ୍ରସ୍ତର ଏତେ କ୍ଷୟପ୍ରାପ୍ତ ହୋଇନାହିଁ । ସେଠାରେ ମଧ୍ୟ ଖଣ୍ଡୋଲାଇଟ୍ ବ୍ୟବହୃତ । ଅବଶ୍ୟ ତିନିଟି କାରଣ ପୁରୀ ମନ୍ଦିର ଶିଳ୍ପକୁ ରକ୍ଷା କରିଛି । (୧) ବିଶାଳ ଉଚ୍ଚ ବେଢ଼ା ଯାହା ଲବଣାକ୍ତ ପବନକୁ ରୋଧକରି ବୁଲେଇ ଦେଉଛି । (୨) ପଥର ଉପରେ ଚୂନ ପୁଟ ଯାହା ବର୍ତ୍ତମାନ ଛଡ଼ା ହୋଇ କେମିକାଲ୍ ଦିଆଯାଉଛି ଏବଂ (୩) ନିୟମିତ ରକ୍ଷଣାବେକ୍ଷଣ ଏ ତିନିଟି ବିଷୟରେ କୋଣାର୍କ ହତଭାଗ୍ୟ । ସବୁ ଦିଗରୁ ବିଚାର କଲେ, ହୁଏତ କନ୍ଦା ପଥରର ବ୍ୟବହାର ଅପରିହାର୍ଯ୍ୟ ଥିଲା । କିନ୍ତୁ କନ୍ଦାପଥରର ମଧ୍ୟ ୧୨ଟି କିସମ ଅଛି ଏବଂ ସେମାନଙ୍କର ଚରିତ୍ର ଗତ ପ୍ରଭେଦ ବହୁତ (ସାରଣୀ ୫ ଦ୍ରଷ୍ଟବ୍ୟ) । ହୁଏତ ରଙ୍ଗଡ଼ାଳିମା, ବାଲିଆ ଖଡ଼ିଆକନ୍ଦା ଯଥେଷ୍ଟ ପରିମାଣରେ ନ ମିଳିବାରୁ ଅନ୍ୟ କିସମ ବ୍ୟବହାର କରାଯାଇଛି । କିନ୍ତୁ ଗୋଟିଏ ଶିଳ୍ପରେ ଭିନ୍ନ ଭିନ୍ନ କିସମର ବ୍ୟବହାର ନିକଟବର୍ତ୍ତୀ ଚରିତ୍ରର ହେଲେ ମଧ୍ୟ ରୋଧ କରାଯାଇ ପାରି ଥାଆନ୍ତା । ଫଟୋଚିତ୍ର -୪୫ ପୃଷ୍ଠା-୧୨୪ ଦେଖିଲେ ବକ୍ତବ୍ୟ ପରିଷ୍କାର ହେବ । ଦୁଇ କିସମର କନ୍ଦା ପଥରରେ ମୂର୍ତ୍ତିଟି ଗଢ଼ା ହୋଇଛି । ଉପର ଅଂଶ ପ୍ରାୟ ଅକ୍ଷତ ଅଛି ଯେଉଁଠାରେ ତଳ ଅଂଶ ପାୟ ନିଶ୍ଚିହ୍ନ ହୋଇ ଯାଇଛି ।

## ପରିବହନ :

କୋଣାର୍କ ଦେଉଳରେ ଯେତେ ପ୍ରକାର ପଥର ଯେଉଁ ବିପୁଳ ପରିମାଣରେ ବ୍ୟବହାର ହୋଇଥିଲା ତାହାର ପରିବହନ ସହଜ ହୋଇ ନଥିବ । କନ୍ଦା ପଥର ହୁଏତ ନରାଜଠାରୁ ମହାନଦୀ ଓ ତାହାର ଶାଖା ପ୍ରଶାଖାଦ୍ୱାରା ଅଣା ଯାଇଥିଲା କିନ୍ତୁ ସବୁ ପ୍ରକାରର କନ୍ଦା ପଥର ନରାଜ ପାଖାପାଖି ମିଳେନାହିଁ । 'ନରାଜ ବୋଗୋଡ଼ା'ର ଦାନା ମୋଟ, (୫ ନମ୍ବର ସାରଣୀ ଦ୍ରଷ୍ଟବ୍ୟ) ଯାହା ସୂକ୍ଷ୍ମ କାମ ପାଇଁ ଉପଯୁକ୍ତ ନୁହେଁ । ସେଥିପାଇଁ **'ରଙ୍ଗଡାଳିମା' ଅଥବା 'ବାଲିଆ ଖଡ଼ିଆ କନ୍ଦା' ବ୍ୟବହୃତ ହୋଇଥିବା ମନେ ହୁଏ** । ମାଙ୍କଡ଼ା ପଥର ହୁଏତ ପାଖାପାଖି ମିଳୁଥିଲା, କିନ୍ତୁ ଉନ୍ନତ ଚରିତ୍ରର (କଳା ଜାଇ ସାନ ଆଖି) ମାଙ୍କଡ଼ା ପଥରର ପ୍ରାପ୍ତିସ୍ଥାନ ମୁଖ୍ୟତଃ ଖୋର୍ଦ୍ଧା ଓ ଚୌଦ୍ୱାର ଅଞ୍ଚଳ । ଏହାଛଡ଼ା ମୁଗୁନି (Chlorite)ର ପ୍ରାପ୍ତିସ୍ଥାନ ନୀଳଗିରି, ମୟୂରଭଞ୍ଜ, ବଣେଇ ଓ କେନ୍ଦୁଝରର ଚମ୍ପୁଆ[୧୩୮] । କରୁଣାସାଗର ବିଭିନ୍ନ ପଥର ସ୍ତରର ଯୋଡ଼ିଏ ରେଖାଚିତ୍ର ଉପସ୍ଥାପନ କରିଛନ୍ତି । ( Fig. 19 & 20- PP. 97 & 99 ) । ବୋନର୍, ଶର୍ମା ଓ ଦାସ ସମ୍ପାଦିତ "New light on the Sun Temple" ର ବାୟାଚକଡ଼ା ବିବରଣୀରୁ ବିଭିନ୍ନ ସମୟରେ କେଉଁଠାରୁ ପଥର ଅଣାଯାଇଥିଲା ତାହାର ନିମ୍ନୋକ୍ତ ତଥ୍ୟ ମିଳୁଛି :

ଘଣ୍ଟଶୀଳା (ପୃ.୪୯), ନରାଜ (ପୃ.୫୧), ଅରଗଡ଼ (ପୃ.୪୩), ଖିଚିଂ (ପୃ.୫୪), ଜଗଦଳପୁର-ବିଶ୍ୱନାଥ (ପୃ.୯୬ ଏବଂ ୧୨୮), ନରସିଂହପୁର (ପୃ୭୦ ଓ ୭୩), ତାପଙ୍ଗ (ପୃ.୭୧), ନୀଳଗିରି-ପିତାଶୁଣୀ (ପୃ.୯୮), ସିଦ୍ଧ ଦୁର୍ଗା (ପୃ.୪୯)।

ଯେଉଁ ସମୟର ଆଲୋଚନା ହେଉଛି, ସେ ସମୟରେ ଯାନ୍ତ୍ରିକ ପରିବହନ ନଥିଲା କି ସ୍ଥଳପଥରେ ସହଜ ଯୋଗାଯୋଗ ନଥିଲା । ଏତେ ବିସ୍ତୀର୍ଣ୍ଣ ଅଞ୍ଚଳରୁ ବିପୁଳ ପରିବହନ ନଦୀ-ନିର୍ଭର ହୋଇଥିବା ସ୍ୱାଭାବିକ ।

ସ୍ଥଳପଥ ଦେଇ ପଥର ବୋହିବାର ଗୋଟିଏ ଚିତ୍ତାକର୍ଷକ ବିବରଣୀ ଦେଇଛନ୍ତି କରୁଣାସାଗର । ବହୁ ଚକଲଗା ଶଗଡ଼ରେ ପଥର ବୋଝେଇ କରି କିଛି ଲୋକ ଟାଣୁଥିଲେ ଏବଂ କିଛି ଲୋକ ପଛରୁ ଠେଲୁଥିଲେ । ଗ୍ରାମ ପରେ ଗ୍ରାମ ମଣିଷ ବଦଳ ହେଉଥିଲେ, ପ୍ରତି ଗ୍ରାମର କର୍ତ୍ତବ୍ୟ ଥିଲା ପଥର ଶଗଡ଼କୁ ପରବର୍ତ୍ତୀ ଗ୍ରାମରେ ପହଞ୍ଚେଇ ଦେବା- ପଥରବୁହା relay race ! [୧୩୯] ଯନ୍ତ୍ରଟିର ଯୋଡ଼ିଏ ରେଖାଚିତ୍ର ମିଳୁଛି New Light ର ୨୨୩ ପୃଷ୍ଠାରେ । ଯନ୍ତ୍ରଟିର ନାମ 'କଳଶଗଡ଼ି' । ବ୍ୟବସ୍ଥାଟି ଚିତ୍ତାକର୍ଷକ ନିଶ୍ଚୟ, କିନ୍ତୁ ଏହାଦ୍ୱାରା ଦୂର ଦୂରରୁ ପଥର ପରିବହନ ସମ୍ଭବ ନୁହେଁ । ଜଳପଥର ସହାୟତା ଆବଶ୍ୟକ ଥିଲା । ହୁଏତ ଖାଦାନରୁ ନଦୀ ନିକଟକୁ ପରିବହନରେ ଏ ପ୍ରଥା ପ୍ରଚଳିତ ଥିଲା । କରୁଣାସାଗର କିନ୍ତୁ କହିଛନ୍ତି, ଓଡ଼ିଶାର ବଡ଼ ନଦୀଗୁଡ଼ିକ ବର୍ଷାଜଳପୁଷ୍ଟ ହୋଇଥିବାରୁ ବର୍ଷାଦିନ ଛଡ଼ା ଅନ୍ୟ ସମୟରେ ନଦୀପଥ ପରିବହନ ସନ୍ଦେହଜନକ ।[୧୪୦] ମତଟି ଗ୍ରହଣଯୋଗ୍ୟ ହେଉ ନାହିଁ ।

ଗୋଟିଏ ସାଧାରଣ ବିଶ୍ୱାସ, ଏକମାତ୍ର ହିମାଳୟରୁ ଉଦ୍ଭୂତ ନଦୀଗୁଡ଼ିକ ଚିରନାବ୍ୟା ହୋଇଥାଏ । କାରଣଟି କିନ୍ତୁ ହିମାଳୟ ସଂପୃକ୍ତ ନୁହେଁ । ଗଙ୍ଗାର ହିମାନୀପୁଷ୍ଟ ଜଳ ଏହ୍ଲାବାଦ ପହଞ୍ଚିବା ଆଗରୁ ଶେଷ ହୋଇଯାଏ । ଏହା ପରେ ଗଙ୍ଗା, ନେପାଳରୁ ଆଗତ କୋଶୀ ଛଡ଼ା ବହୁ କ୍ଷୁଦ୍ର କ୍ଷୁଦ୍ର ଉପନଦୀଦ୍ୱାରା ଜଳପୁଷ୍ଟ ହୁଏ । ଯେଉଁ ସମୟର ଆଲୋଚନା ହେଉଛି, ସେ ସମୟରେ ଓଡ଼ିଶା ବୃକ୍ଷଶୂନ୍ୟ ହୋଇଯାଇ ନଥିଲା, ନଦୀଗୁଡ଼ିକ ସବୁ ଋତୁରେ ନାବ୍ୟା ଥିଲା । ଏପରିକି ଅଖ୍ୟାତ ସ୍ଥାନମାନଙ୍କରେ ମଧ୍ୟ ବନ୍ଦର ଥିଲା, ଯାହାର ଗୋଟିଏ ବିବରଣୀ ହସ୍ତଗତ ହୋଇଛି ( 'ଆକ-ମା-ବୋଇ', ଆଶୁତୋଷ ପ୍ରସାଦ ପଟ୍ଟନାୟକ) ।[୧୪୧] କେତେକ ପୁରାତନ ନାମ ଏବଂ ତାହାର ଏବେକାର ନାମ ନିମ୍ନରେ ଦିଆଗଲା :

| | | |
|---|---|---|
| ପାଲୁର | – | ପାଲୁର |
| ନନିଗଇନା | – | କୁହୁଡ଼ି ନିକଟସ୍ଥ ନିମିନା |
| କଟିକର୍ଦମ | – | କାକଟପୁର । ମ୍ୟାକ୍‌କ୍ରିଣ୍ଡଲ୍‌ଙ୍କ ମତରେ କଟକ |
| କୋଣନଗର | – | କୋଣାର୍କ |
| କେଟ୍ଟବରା | – | ପୁରୀ ଜିଲ୍ଲାର 'କୋଠବାଡ଼' । |
| | | ସାଲେପୁର ନିକଟସ୍ଥ 'କୋଠବାଡ଼' । |
| | | ବାଲେଶ୍ୱର ଧାମରା ଅଞ୍ଚଳର 'କୋଥାର' । |
| | | ଏ ସମସ୍ତ ସ୍ଥାନରେ ବନ୍ଦର ଥିବାର ଚିହ୍ନ ଅଛି । |
| ଶିପ୍‌ପରା | – | ମାହାଙ୍ଗା ଅଞ୍ଚଳର 'ଶ୍ରୀପୁର' ଅଥବା 'ଶେର୍‌ପୁର' । |
| ମପୌର | – | ପୁରୀ ସାତଭାୟା ଅଞ୍ଚଳର 'ମଇପୁର' । |

ଏହାଛଡ଼ା କିଶନନଗର, ବଡ଼ଚଣା, ଧର୍ମଶାଳା ଅଞ୍ଚଳରେ ବହୁ ଛୋଟ ଛୋଟ ବନ୍ଦର ଥିଲା, ଯେଉଁଠାରୁ ନଦୀ ଅପସାରିତ ହୋଇ ଯାଇଛି କିନ୍ତୁ ଚିହ୍ନ ବିଦ୍ୟମାନ । ଏହାଛଡ଼ା ଥିଲା ପ୍ରସିଦ୍ଧ ଚୀନ୍ ପରିବ୍ରାଜକ ହୁ-ଏନ୍-ସାଂଙ୍କ ବର୍ଣ୍ଣିତ ଚେ-ଲି-ତା-ଲୋ-ଚିଂ । 'ଚେଳିତାଲୋ', ଚିତ୍ରୋତ୍ପଳାର ଅପଭ୍ରଂଶ ।

ପ୍ରାଚୀ ନଦୀର ଉପତ୍ୟକା ଗୋଟିଏ ଉନ୍ନତ ସଭ୍ୟତାର ପୀଠସ୍ଥାନ ଥିଲା; ଯାହାର ବର୍ଣ୍ଣନା ମିଳୁଛି 'ପ୍ରାଚୀ ମାହାତ୍ମ୍ୟ'ରୁ, ହୁ-ଏନ୍-ସାଂଙ୍କ ବିବରଣୀରୁ ଏବଂ ବହୁ ଲେଖକ-ଗବେଷକମାନଙ୍କ ଲେଖାରୁ । କିନ୍ତୁ ନଦୀଟି ଲୁପ୍ତ ଏବଂ ଏହାର ଗତିପଥ ନେଇ ଅନେକ ବିଭ୍ରାନ୍ତିକର ତଥ୍ୟ ମିଳୁଛି । ଖାଲି ପ୍ରାଚୀ ନଦୀ ନୁହେଁ, ଅନ୍ୟାନ୍ୟ ନଦୀମାନଙ୍କର ମଧ୍ୟ ନାମ ତଥା ସ୍ଥାନ ବିଭ୍ରାଟ ଅଛି ।

କୃପାସିନ୍ଧୁ ପ୍ରାଚୀ ମାହାତ୍ମ୍ୟର ପ୍ରଥମ ଅଧ୍ୟାୟରୁ ଉଦ୍ଧାର କରି କହିଛନ୍ତି, ସ୍ୱର୍ଗଲୋକରୁ ସରସ୍ୱତୀ ନଦୀ ନାନା ରୂପ ଧରି ଶେଷରେ ମହାନଦୀରୁ ଜାତ ହେଲେ ଏବଂ ପ୍ରାଚୀ ରୂପେ ବୋହି ଯାଇ ଚିତ୍ରୋତ୍ପଳା ନାମ ନେଲେ । ସେହିଠାରେ ପ୍ରାଚୀରୁ କାଦୁଆ ନାମରେ ଗୋଟିଏ ଶାଖା ଜାତ ହେଲା ଏବଂ ଶେଷରେ ଚିତ୍ରୋତ୍ପଳା ଚନ୍ଦ୍ରଭାଗା ନାମ ଧାରଣ କଲା । ଚୀନ୍ ପରିବ୍ରାଜକ ହୁ-ଏନ୍-ସାଂ ଚିତ୍ରୋତ୍ପଳାକୁ ଚେଳିତାଲୋ ଉଚ୍ଚାରଣ କରିଥାଇ ପାରନ୍ତି । ସମ୍ଭବତଃ ଚେଳିତାଲୋ ଗୋଟିଏ ଉନ୍ନତ ନଗର ଥିଲା । କୃପାସିନ୍ଧୁ ଏହାର କିଛି ପୂର୍ବେ ଜେନେରାଲ୍ କନିଂହାମ୍ ଓ ରାଜେନ୍ଦ୍ରଲାଲ ମିତ୍ରଙ୍କ

ମତ ଉଦ୍ଧାର କରି କହିଛନ୍ତି, କନିଂହାମ୍ ଏ ନଗରକୁ ଭୁବନେଶ୍ୱର ମନେ କରିଛନ୍ତି ଏବଂ ରାଜେନ୍ଦ୍ରଲାଲ ଆଉ ପାଦେ ଆଗେଇ ଏହାକୁ ଯାଜପୁରରେ ବସେଇଛନ୍ତି । ପ୍ରାଚୀ ମାହାତ୍ମ୍ୟରୁ କେତୋଟି ଧାଡ଼ି ଉପସ୍ଥାପିତ କରାଯାଇ ପାରେ, ଯାହା ମଧ୍ୟରେ ନିହିତ ଅଛି ସ୍ଥାନୀୟ ଏକ ଲୋକକଥା ।

ପୂର୍ବ କାଳରେ ପ୍ରାଚୀ ତୀରେ । ଚିତ୍ର ଚାଣ୍ଡାଳ ପୁର କରେ ॥
ସର୍ବ ଜନରେ ନିଷ୍ପାପର । ହୋଇ ସେଠାରେ କରେ ଘର ॥
ତା' ସଙ୍ଗେ କଶ୍ଚିତ୍ ଦ୍ୱିଜନାରୀ । ଉତ୍ପଳା ନାମେ ସେ କୁମାରୀ ॥
ବିହାର କରେ ତା ସଙ୍ଗରେ । ପତ୍ନୀ ଭାବରେ ନିରନ୍ତରେ ॥
ପୂର୍ବ ଜନ୍ମର ପାପ ବଳେ । ସନ୍ତାନ ହୀନ ହେଲା କାଳେ ॥
ଏ ରୂପେ କେତେ କାଳ ଗଲା । ମରଣ କାଳ ଆସି ହେଲା ॥
ଚିତ୍ର-ଉତ୍ପଳା ଦୁହିଁଙ୍କର । ଜୀବ ଛାଡ଼ିଲା କଳେବର ॥
ସେ ଦୁହିଁଙ୍କର ଦ୍ରବୁ ଜାତ । ସେ ନଦୀ ସେ ଦିନୁ ବିଖ୍ୟାତ ॥

- ୨ୟ ଅଧ୍ୟାୟ (୭-୧୭)

କୃପାସିନ୍ଧୁ ଏହାକୁ ପ୍ରାମାଣ୍ୟ ଧରି ନେଇ କହୁଛନ୍ତି, କାଦୁଆ ନଦୀର ଲୁପ୍ତ ଶାଖା ଚିତ୍ରୋତ୍ପଳା ତଥା ଚନ୍ଦ୍ରଭାଗା । ଚନ୍ଦ୍ରଭାଗାର ଉତ୍ପତ୍ତି ସ୍ଥଳର ଦୁଇ ପଟେ ଦୁଇଟି ଗ୍ରାମ ଅଛି, ନାମ 'ଚିତ୍ର' ଓ 'ଉତ୍ପଳା' ।[୧୪୨]

ଏଠାରେ ଲକ୍ଷ୍ୟ କରିବାର କଥା, ମହାନଦୀରୁ ସମୁଦ୍ରାଭିମୁଖୀ ଶାଖା ପ୍ରଶାଖା, କାଠଯୋଡ଼ି, କୁଆଖାଇ, କୁଶଭଦ୍ରା, ବିରୂପା, ଦୟା, ଭାର୍ଗବୀ; କାହାରି ନାମ ନିଆ ଯାଇ ନାହିଁ, ପ୍ରାଚୀ ସିଧା ସଳଖ ମହାନଦୀରୁ ଜାତ ହୋଇଛି । ଏ ବିଷୟକୁ କିଛି ପରେ ପୁଣି ଆସିବା ।

ଇଣ୍ଟରନେଟ୍‌ରୁ ପ୍ରାପ୍ତ ଗୋଟିଏ ତଥ୍ୟ, ପ୍ରାଚୀ କୁଆଖାଇ ନଦୀରୁ ବାହାରି ବିଞ୍ଝାରପୁର ଠାରେ କୁଶଭଦ୍ରା ସହିତ ଯୁକ୍ତ ହେଲା । ଏହାଛଡ଼ା ମଧ୍ୟ ପ୍ରାଚୀ ନାମ ରହିଲା ଏବଂ ପ୍ରଥମେ 'ଶୋଲ' ଓ ପରେ 'ଦେବୀ' ନଦୀ ହେଲା । ଏହା କିନ୍ତୁ ସମ୍ଭବ ନୁହେଁ, କାରଣ ଦେବୀ ନଦୀ, କାଠଯୋଡ଼ିର ନିମ୍ନ ଅବବାହିକାକୁ ବୁଝାଇ ଥାଏ । ଏଠାରେ ମଧ୍ୟ ଲକ୍ଷଣୀୟ, ଲୁପ୍ତନଦୀ ପ୍ରାଚୀ, ମହାନଦୀର କୋଣାର୍କ ସଂଲଗ୍ନ ଉପତ୍ୟକାରେ ହିଁ ବହୁଥିଲା, ଯାଜପୁରରେ ନୁହେଁ ଯେଉଁଠାରେ ବହୁଛି ଯୋଡ଼ିଏ ବଡ଼ନଦୀ - ବ୍ରାହ୍ମଣୀ ଓ ବୈତରଣୀ ।

ବୋନର୍-ଶର୍ମା-ଦାସ New Lightର ୯୬ ଓ ୯୭ ପୃଷ୍ଠା ମଧ୍ୟରେ ଗୋଟିଏ ମାନଚିତ୍ର ଉପସ୍ଥାପନ କରିଛନ୍ତି । ମହାନଦୀର ଯେଉଁ ଶାଖାଟିକୁ ବର୍ତ୍ତମାନ ବିରୂପା କୁହାଯାଉଛି ସେଇ ଶାଖାଟିକୁ ଚିତ୍ରୋତ୍ପଳା ରୂପେ ଦେଖାଇ ପୂର୍ବମୁଖୀ ନେଇ କେନ୍ଦ୍ରାପଡ଼ାର ବହୁ ପରେ ବୈତରଣୀ ସହିତ ମିଶେଇ ଦିଆଯାଇଛି । ତାହା ପୂର୍ବେ ସେଥିରେ ବ୍ରାହ୍ମଣୀ ମିଶିଛି । ଏହା ନିହାତି ଅସମ୍ଭବ, କାରଣ ଏହା ମାନିବାକୁ ହେଲେ ପ୍ରାଚୀ ମାହାତ୍ମ୍ୟରେ ବର୍ଣ୍ଣିତ ସ୍ଥାନ ସକଳ ଅସ୍ୱୀକାର କରିବାକୁ ପଡ଼ିବ । ଲକ୍ଷଣୀୟ, ସେଇ ମାନଚିତ୍ରରେ କାଠଯୋଡ଼ି ସ୍ଥାନରେ ପ୍ରାଚୀ ଲେଖା ହୋଇଛି, ଅର୍ଥାତ୍ ପ୍ରାଚୀ ମହାନଦୀରୁ ବାହାରିଛି । ଏହା ପ୍ରାଚୀ ମାହାତ୍ମ୍ୟର ବର୍ଣ୍ଣନା ସହିତ ମିଶୁଛି । ସେ ମାନଚିତ୍ରରେ କଟକ ବିଡ଼ାନାସୀଠାରୁ ଦେବୀ ନଦୀ ବାହାରିଛି ଏବଂ ସେଇଠାରୁ ପ୍ରାଚୀ ଶୋଲ ନାମ ଧାରଣ କରିଛି । ଶୋଲ ନଦୀରୁ ବାହାରିଛି ଦୟା, କିଛି ବାଟ ପରେ ଏହା ଚନ୍ଦ୍ରଭାଗା ଓ ଆହୁରି ତଳକୁ ଡିହପାଟଣା ନିକଟରେ କୁଶଭଦ୍ରା ଓ କାଦୁଆ ମଙ୍ଗଳା ନାମ ନେଇ ଦ୍ୱି-ଧାରାରେ ବିଭକ୍ତ ହୋଇଯାଇଛି । କୁଶଭଦ୍ରା କୋଣାର୍କର ପଶ୍ଚିମକୁ ସମୁଦ୍ରରେ ପଡ଼ିଛି ଏବଂ କାଦୁଆ କୋଣାର୍କଠାରେ ଖେଳେଇ ଯାଇଛି । ଆହୁରି ଲକ୍ଷଣୀୟ, ଦେବୀନଦୀ ମୁହାଣ ତଳେ 'ପ୍ରାଚୀ' ଲେଖା ହୋଇଛି ।

କରୁଣାସାଗର ଗୋଟିଏ ପ୍ରଶ୍ନବାଚୀ ବାକ୍ୟରେ ଲେଖିଛନ୍ତି, "If the building materials were brought from a long distance, as is now believed, they must have been transported on the sea or by rafts along the rivers (Fig.21)" ।[୧୪୩] 'If' ଶବ୍ଦଟି ବ୍ୟବହାର କରିବାର କାରଣ, ଡାଃ ବେହେରା ବିଶ୍ୱାସ କରିବାକୁ ଅକ୍ଷମ, ସେ ସମୟରେ ନଦୀଗୁଡ଼ିକ ନାବ୍ୟା ଥିଲା । କିନ୍ତୁ ପଥର ସବୁ ସମୁଦ୍ରକୁ ଗଲା କେଉଁ ବାଟେ ? ଏ ପ୍ରଶ୍ନର ଉତ୍ତର ଖୋଜି ନାହାନ୍ତି କରୁଣାସାଗର । ମାନଚିତ୍ରଟିରେ (Fig.21) ପ୍ରାଚୀ ନଦୀର ଉତ୍ପତ୍ତି ଦେଖା ହୋଇଛି ବାଲିଅନ୍ତାରେ, ଯେଉଁଠାରେ ମହାନଦୀ ଅଥବା ତାହାର ଶାଖା ନଦୀ କିଛି ନାହିଁ ଏବଂ ନାହିଁ କୌଣସି ଉଚ୍ଚ ପର୍ବତ । କୁଶଭଦ୍ରା ଭୁବନେଶ୍ୱର ଉପରେ ଭାର୍ଗବୀରୁ (?) ବାହାରି କୋଣାର୍କ ଠାରୁ ଦୂରରେ ବଙ୍ଗୋପସାଗରରେ ପଡ଼ିଛି । ଗୋଟିଏ ଅନାମା ନଦୀ ନିମାପଡ଼ାରୁ ବାହାରି ଚାଲି ଯାଇଛି କୋଣାର୍କ ଆଡ଼କୁ ଯାହାର ଅନ୍ୟ ଗୋଟିଏ ଧାରା 'କାଦୁଆ' ନାମ ନେଇ ପ୍ରାଚୀ ନଦୀର ମୁହାଣରେ ସମୁଦ୍ରରେ ମିଶିଛି । ମାନଚିତ୍ରରୁ ମୂଳ ପ୍ରଶ୍ନର ସଦୁତ୍ତର ମିଳୁନାହିଁ କିନ୍ତୁ ଲିଖିତ ବର୍ଣ୍ଣନାରେ କରୁଣାସାଗର କେତେଗୁଡ଼ିଏ ମୂଲ୍ୟବାନ ତଥ୍ୟ ଉପସ୍ଥାପନ କରିଛନ୍ତି । କଟକଠାରେ ମହାନଦୀରୁ କାଠଯୋଡ଼ି ବାହାରି କିଛି ଦୂର ଯାଇ ଦୁଇ ଧାରାରେ ବିଭକ୍ତ ହୋଇଛି । ମୂଳ ଧାରା କ୍ଷୀଣରୁ

କ୍ଷୀଣତର ହୋଇ 'ଦେବୀ' ନାମ ନେଇ ସ୍ୱାଧୀନ ଭାବେ ସମୁଦ୍ରରେ ପଡ଼ିଛି । ଅନ୍ୟ ଧାରା କୁଆଖାଇ କିଛି ପରେ କୁଶଭଦ୍ରା ଜାତ କରେ । କୁଶଭଦ୍ରା କିଛି ଦୂର ଯାଇ ଦୟା, ଭାର୍ଗବୀ ଜାତକରେ କିନ୍ତୁ ନିଜେ କୋଣାର୍କ ଦିଗକୁ ଗତି କରି ୮ କିଲୋମିଟର ଦକ୍ଷିଣ-ପଶ୍ଚିମରେ ସମୁଦ୍ରରେ ମିଶେ । ଦେବୀ ଓ କୁଶଭଦ୍ରା ମଧ୍ୟରେ ଥିଲା ବିଖ୍ୟାତ ପ୍ରାଚୀ ନଦୀ । ଯାହାର ଗୁଣଗାନ କରାଯାଇଛି ପ୍ରାଚୀ ମାହାତ୍ମ୍ୟରେ । ପ୍ରାଚୀ ବର୍ତ୍ତମାନ ଶୁଷ୍କ କିନ୍ତୁ ଚିହ୍ନ ରହି ଯାଇଛି ଏବଂ ଯାହା କୂଳେ କୂଳେ ବହୁ ମନ୍ଦିର ଏବେ ମଧ୍ୟ ଅଛି । ଡକ୍ଟର ବେହେରା ପୁଣି କହିଛନ୍ତି- ମନେହୁଏ, ପଥର ବୁହାହୋଇଥିଲା ମୁଖ୍ୟତଃ କୁଶଭଦ୍ରା ନଦୀ ବାଟେ ଯାହା ଦେହରୁ ଗୋଟିଏ କୃତ୍ରିମ ଧାରା କୋଣାର୍କ ନିକଟକୁ ଖୋଳାଯାଇଥିବାର ଚିହ୍ନ ଏବେ ମଧ୍ୟ ବିଦ୍ୟମାନ । ଏ ନଦୀର ସ୍ଥାନୀୟ ନାମ ''ପଥରବୁହା'' ।[୧୪୩]

ସୁଦୀର୍ଘ ଆଲୋଚନାରୁ କେତେଗୁଡ଼ିଏ ସିଦ୍ଧାନ୍ତ ନିଆଯାଇପାରେ ।

୧. ଗୋଟିଏ ନଦୀ ସ୍ଥାନ ବିଶେଷରେ ବିଭିନ୍ନ ନାମ ଗ୍ରହଣ କରେ । ବିଭିନ୍ନ ବର୍ଦ୍ଧିଷ୍ଣୁ ଲୋକାଳୟ ନଦୀର ସ୍ଥାନୀୟ ନାମ ରଖିନ୍ତି ଯାହା ନଦୀର କାର୍ଯ୍ୟକାରିତା ସହିତ ମଧ୍ୟ ଯୁକ୍ତ ଥାଇପାରେ ।

୨. କାଦୁଆ, ପଥରବୁହା ଦୁଇଟିଯାକ ଗୋଟିଏ ଶାଖା ନଦୀର ନାମ, ଯାହାର ଶୁଷ୍କ ଗର୍ଭରେ ଏବେ ମଧ୍ୟ ବଡ଼ ବଡ଼ ପଥର ଖଣ୍ଡ ପଡିଥିବାର ଦେଖାଯାଏ । ଏହା ମଧ୍ୟ ପ୍ରମାଣ କରୁଛି ନଦୀ ପଥରେ ପଥର ବୁହା ହେଉଥିଲା ।

୩. କଟକଠାରୁ କୋଣାର୍କ ଯାଏ ଉପତ୍ୟକା ମଧ୍ୟରେ ଯେଉଁ ସବୁ ଚିହ୍ନ ବିଦ୍ୟମାନ, ସେଥିରୁ ବିଶ୍ୱାସ କରାଯାଇ ପାରେ ଏହା ହିଁ ଥିଲା ପ୍ରାଚୀ ଉପତ୍ୟକା ଏବଂ ମୂଳ ପ୍ରାଚୀ ନଦୀ ମହାନଦୀରୁ ବାହାରିଥିଲା, କାଠଯୋଡ଼ି ନୁହେଁ । ପରେ ସେ ନଦୀ ନାନା ଶାଖା ପ୍ରଶାଖାରେ ବିଭକ୍ତ ହୋଇ ଭିନ୍ନ ଭିନ୍ନ ସ୍ଥାନୀୟ ନାମ ନେଲା । କାଳକ୍ରମେ ଏପରିକି ମୂଳ ନଦୀକୁ କାଠଯୋଡ଼ି କୁହାଗଲା ।

ବିଭିନ୍ନ ଖିଅ ଧରି ଲେଖକ ସେ ଯୁଗର ସାମ୍ଭାବ୍ୟ ନଦୀପଥର ଗୋଟିଏ ରେଖାଚିତ୍ର ତିଆରି କରିଛନ୍ତି, ଯାହା ରେଖାଚିତ୍ର ନଂ-୨ ନାମରେ ଉପସ୍ଥାପନ କରଯାଇଛି । ସେଥିରେ ଦେଖା ଯାଇଛି, ପଥର ସ୍ତରମାନଙ୍କର ଅବସ୍ଥିତି ଏବଂ କେଉଁ କେଉଁ ନଦୀଦ୍ୱାରା ପଥର ବୁହା ହୋଇଥିଲା । ଏଠାରେ ଗୋଟିଏ କଥା କହିବା ପ୍ରୟୋଜନ । ଖାଲି ଯେ ନଦୀଦ୍ୱାରା ପଥର ବୁହା ହୋଇଥିଲା ତାହା ନୁହେଁ, ସମୁଦ୍ର ପଥରେ ପରିବହନର ଯୁକ୍ତିଯୁକ୍ତ ସମ୍ଭାବନା ଦେଖା ଯାଉଛି ।

'New Light' ର ୧୩୦ ପୃଷ୍ଠାର ପାଦଟୀକାରେ ASI ର ଗୋଟିଏ ମନ୍ତବ୍ୟ ଉଦ୍ଧୃତ ହୋଇଛି । ASI ର ୧୦୦୨-୦୩ର ରିପୋର୍ଟରେ କୁହାଯାଇଛି, "All transportation through inland water ways only and none by sea." - ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ନୀଳଗିରି, ଖିଚିଂ ଓ କେନ୍ଦୁଝର ଅଞ୍ଚଳରୁ ମୁଗୁନି ପଥର ଧାମରା ମୁହାଣରୁ ସମୁଦ୍ର ପଥରେ କୋଣାର୍କ ଆଣିବା ସ୍ପଷ୍ଟତଃ ସହଜ ଥିଲା । ସେହିପରି ଚିଲିକା ଆଖପାଖ ଅଞ୍ଚଳର ପଥର ଚିଲିକା ବାଟେ ସମୁଦ୍ର ଦେଇ କୋଣାର୍କ ଆଣିବା ସହଜ ହୋଇଥିବା ମନେହୁଏ ।

## କାର୍ଯ୍ୟ ପରିଚାଳନା :

ପ୍ରାରମ୍ଭିକ କାର୍ଯ୍ୟ ଶେଷ, ପଥର ଆସିବାକୁ ଲାଗିଲାଣି, ଦେଉଳ ତୋଳା ଆରମ୍ଭ ହେବ । ପୁରାଣ ଇତିହାସ ଲେଖକମାନଙ୍କର ୧୨ ସଂଖ୍ୟାଟି ଭାରି ପ୍ରିୟ ମନେ ହୁଏ । ଶାମ୍ବ ବାର ବର୍ଷ ତପ କରି ରୋଗ ମୁକ୍ତ ହେଲେ । ଆବୁଲ୍ ଫଜଲ୍ କହିଛନ୍ତି ୧୨ଶହ ଶିଳ୍ପୀ, ବାରବର୍ଷ ଶ୍ରମ ଓ ବାରବର୍ଷର ରାଜସ୍ୱ ବ୍ୟୟ କରି ମନ୍ଦିର ଗଢ଼ିଲେ । ଏ ସବୁ ବିଚାର ବିଶ୍ଳେଷଣ ପୂର୍ବେ ହୋଇ ସାରିଛି । ସାର ମର୍ମ, ଶହ ଶହ ମଣିଷ ବର୍ଷ ବର୍ଷ ଧରି ଅବଛିନ୍ନ ଭାବରେ ମନୋଯୋଗୀ ହୋଇ କାର୍ଯ୍ୟ କରିଛନ୍ତି, ଯାହାର ପ୍ରମାଣ ବହନ କରୁଛି କୋଣାର୍କର ପ୍ରତିଟି ପଥର । ସ୍ୱାଭାବିକ ଭାବେ ପ୍ରଶ୍ନ ଉଠୁଛି, ବର୍ଷ ବର୍ଷ ଧରି ଏ କଠିଣ କାର୍ଯ୍ୟରେ କ'ଣ ସେମାନଙ୍କୁ ଧରି ରଖିଥିଲା ? ଅର୍ଥ ଅଥବା ଉତ୍ପୀଡ଼ନ ? ଉତ୍ପୀଡ଼ନର ଚିନ୍ତା ଆସୁଛି ବିଦେଶୀ ଐତିହାସିକମାନଙ୍କର ପିରାମିଡ୍ ନିର୍ମାଣ ବର୍ଣ୍ଣନାରୁ । ପିରାମିଡ୍‌ର ବିରାଟତ୍ୱ ଛଡ଼ା ଶିଳ୍ପକାର୍ଯ୍ୟ କ'ଣ ଅଛି ? ଯେତେ ଟିକକ ଅଛି - ଯାହାକୁ ଚାରୁକଳା କୁହାଯାଇ ପାରିବ, ତାହାର ଶିଳ୍ପୀମାନଙ୍କ ପ୍ରତି ହୁଏତ ଫାରାହୋମାନେ ଯଥେଷ୍ଟ ସଦୟ ଥିଲେ । କର୍ମୀ ଭିତରୁ ଅଧିକ ସଂଖ୍ୟକ ଥିଲେ ମୂଲିଆ ଶ୍ରେଣୀର ଯାହାଙ୍କ ଭାଗ୍ୟରେ ଜୁଟୁ ଥିଲା ଚାବୁକ୍ । କୋଣାର୍କ କର୍ମୀମାନଙ୍କ ମଧ୍ୟରୁ ସଂଖ୍ୟାଧିକ କିନ୍ତୁ ଶିଳ୍ପୀ ଏବଂ ଯେତେକ ତଳ ଶ୍ରେଣୀର ଥିଲେ ସେମାନେ ମଧ୍ୟ ମନେ ହୁଏ, ଏକ ସ୍ୱର୍ଗୀୟ ଉନ୍ମାଦନାରେ କାର୍ଯ୍ୟ କରିଥିଲେ । ମୂଳ କାରଣ ଓଡ଼ିଶାବାସୀ ସେ ଯୁଗରେ ଅତ୍ୟନ୍ତ ଧର୍ମପ୍ରାଣ ଥିଲେ । ରାଜାଠାରୁ ପ୍ରଜା ଯାଏ; ସେମାନଙ୍କର ଦେବତାଙ୍କୁ ଅଦେୟ କିଛି ନଥିଲା । ସେଇ ନିଷ୍ଠା ସେଇ ସମର୍ପଣ କାର୍ଯ୍ୟ କରିଥିଲା ମଣିଷର ପ୍ରତିଟି ପଦକ୍ଷେପରେ ଏବଂ ଶିଳ୍ପୀର ନିହାଣ ମୁନରେ ।

ଏଠାରେ ବିଭିନ୍ନ ସମୟର ଦୁଇଜଣ ଗବେଷକଙ୍କ ମତ ଉପସ୍ଥାପନ କରିବା ପ୍ରାସଙ୍ଗିକ ହେବ।

"....... There was nothing which they prized so highly as religion. It was the be-all and end-all of their lives. Everything they did was ascribable to this instnict. Religion was the main-spring of their activities. It was not an excrescence but a vital part of the system."

– MM Ganguly.

Orissa & Her Remains, Page-158

"Loyality and love towards their work alone can explain the phenomenal endurance of the artisans keeping up their arduous efforts during twelve long years. The work never betrays any sign of tiredness, but throughout pulsates with a freshness and vitality --------

The relationship between the organisers and leaders of the enterprise and the executive of artisans and labour forces was evidentally a friendly and dignified one, although the prevailing discipline seems to have been rather strict. ------- The supervisers evedentally knew how to temper their vigilance with benevolence.

An untiring devotion, a sacred fire that never flagged must have animated all these men, without which the greatest technical skill and most splendid organisation would not have been able to complete this gigantic monument in so short a time."

– Alice Boner.

New light on the Sun Temple of Konark.(P.P. XLIII, XLV)

## ପଥର ଯୋଡ଼େଇ :

ସେ ଯୁଗରେ ଓଡ଼ିଶାର କୌଣସି ମନ୍ଦିରରେ ପଥର ସହିତ ପଥର ଯୋଡ଼ିବାକୁ କୌଣସି ଧରଣର ମସଲା ବ୍ୟବହାର ହେଉ ନଥିଲା। ଚୂନର ବ୍ୟବହାର ଜଣାଥିଲା ଏବଂ ବ୍ୟବହାର କରାଯାଉଥିଲା ଭାସ୍କର୍ଯ୍ୟହୀନ ସାଦାସିଧା ଦେବାଲ୍ ପଲସ୍ତରାରେ । କୋଣାର୍କର ଜଗମୋହନ ଓ ଗର୍ଭଗୃହ ଭିତର କାନ୍ଥ ଉପରେ ତିନି ପରସ୍ତ ପଲସ୍ତରାର ବିଶ୍ଳେଷଣ ହୋଇଛି । ପ୍ରଥମ ଦୁଇ ପରସ୍ତ ମୋଟାବାଲିରେ ଏବଂ ଉପର ପରସ୍ତ ଯାହାର ବେଧ ମାତ୍ର ୧/୧୬'' ଅତି ସୂକ୍ଷ୍ମ ବାଲିରେ ପଲସ୍ତରା ହୋଇଥିଲା, ପଲସ୍ତରାର ସମ୍ପୂର୍ଣ୍ଣ ବେଧ ୩/୮'' (୯.୫ ମିଲିମିଟର) ।[୧୪୪] ମସଲା ବିନା ଏତେ ବିରାଟ ମନ୍ଦିର (ପ୍ରାୟ ୨୩ ତାଲା କୋଠା ସହ ସମାନ) ଠିଆ ହୋଇ ରହିଥିଲା କିପରି ? ଏହା ସ୍ଥାପତ୍ୟ ବିଭାଗରେ ଆଲୋଚିତ ହେବ, ତେବେ ଏଠାରେ ଏତିକି କହିଲେ ଯଥେଷ୍ଟ ହେବ, ଏ ସମସ୍ତ ବାଲାନ୍‌ସର ଖେଳ । ଯଦିଓ ମନ୍ଦିର ଭିତର ଚଉକଶ୍ ହୋଇଥାଏ ବାହାର ପଟ ବିଭିନ୍ନ ପାଗ ଗଠନ ଫଳରେ ବିଭିନ୍ନ ବେଧର ହୋଇଥାଏ । କୋଣରେ ୧୬ରୁ ୧୭ ଫୁଟ୍ ଏବଂ ମଝିରେ ୨୦ରୁ ୨୫ ଫୁଟ୍ ମୋଟ ଦେବାଲ୍ କ୍ରମେ ବକ୍ରରେଖାରେ ଅଥବା ପୀଢ଼ ଥାକରେ ମୁଣ୍ଡକୁ ଉଠିଥାଏ । ଏତେ ମୋଟ ଦେବାଲର ପ୍ରତି ସ୍ତରରେ ଅନେକ ପଥର ଲାଗେ ଏବଂ ସେ ସବୁର ମୋଟ ସମାନ, କିନ୍ତୁ ଅନ୍ୟାନ୍ୟ ପାର୍ଶ୍ୱ କଦାପି ସମବାହୁ ନୁହେଁ । ଏକମାତ୍ର ବାହାର ଏବଂ ଭିତର ଭାଗରେ ପଥରର ସାମ୍ୟ ଥାଏ । ଏ ସବୁ ଏତେ ମାତ୍ରାରେ ସମତଳ କରାଯାଇଥାଏ ଯେ, ପରସ୍ପର ଦେହକୁ ଦେହ ଲାଗିଥାଏ, କୌଣସି ଠାରେ ଫାଙ୍କ ରହି ନଥାଏ । ଏଇଠାରେ ପଥର କଟାଳିର ବାହାଦୁରି । ସ୍ଥପତିର ନକ୍ସା, ଏପରି କୌଣସି ଖଣ୍ଡେ ପଥର ଖସିବାକୁ ଚାହିଁଲେ ଭିତର ଦିଗକୁ ହିଁ ପଡ଼ିବାର ଚେଷ୍ଟା କରିବ ଏବଂ ସେ ପତନ ରୋଧ କରିବ ବଳୟର ଅନ୍ୟାନ୍ୟ ପଥର, ଯାହା ଦେହକୁ ଦେହ ଠେସା ଠେସି ହୋଇ ରହିଛି । ପ୍ରସ୍ତରଶିଳ୍ପୀର ବାହାଦୁରି, ସେ ଏ ପ୍ରତ୍ୟୟ (concept)ଟି କାର୍ଯ୍ୟରେ ପରିଣତ କରି ପାରିଥିଲା । ଦେବାଲର ସ୍ଥୂଳତା ଏତେ ବେଶୀ ଯେ ଖଣ୍ଡେ ଅଧେ ପଥର କାଢ଼ି ନେଲେ ତାସଘର ଭଳି ମନ୍ଦିରଟି ହଠାତ୍ ଭୁଶୁଡ଼ି ପଡ଼ିବ ନାହିଁ, ସମୟ ନେବ ଏବଂ ତାହା ହିଁ ହୋଇଥିଲା କୋଣାର୍କ କ୍ଷେତ୍ରରେ । ସେ ଆଲୋଚନା ଆଗକୁ ହେବ ।

ଏପରି ଗଠନ ପ୍ରଣାଳୀରେ ଲୁହା clamp (ଚାପୁଣି) ଦରକାର ନାହିଁ, କିନ୍ତୁ କୋଣାର୍କ ଶିଳ୍ପୀ ଅନେକ ସ୍ଥାନରେ ତାହାହିଁ କରିଥିଲେ ଯାହା ଅବଶ୍ୟ ଭୁଲ୍ ପଦକ୍ଷେପ ଥିଲା । ଲୁହା କ୍ରମେ ଜଙ୍ଗ୍ ଧରି ଫୁଲିଲା ଓ ପଥର ଫଟେଇଲା । ଏହା ଅବଶ୍ୟ ହୋଇଥିଲା ଶହ ଶହ ବର୍ଷ ପରେ । ମନ୍ଦିରର ନିୟମିତ ରକ୍ଷଣାବେକ୍ଷଣ ହୋଇଥିଲେ ଏହା ସମ୍ଭବତଃ ହୋଇନଥାନ୍ତା ।

## ଲୁହା ଢଳେଇ :

କୋଣାର୍କ ବେଢ଼ା ଭିତରେ ପଡ଼ିଥିବା ବଡ଼ ବଡ଼ ଲୁହାକଡ଼ି ସମସ୍ତେ ଦେଖିଛନ୍ତି, ଯାହା ଏ ସାତଶହ ବର୍ଷ ପରେ ମଧ୍ୟ କଳଙ୍କି ଲାଗି ନାହିଁ । ଏହା ସେ ଯୁଗର ଗୋଟିଏ ବିସ୍ମୟକର କୀର୍ତ୍ତି । ବିସ୍ମୟକର କିନ୍ତୁ ସ୍ୱାଭାବିକ; କାରଣ ଓଡ଼ିଶାରେ ଲୁହା ଖଣି ଓ କୋଇଲା ଖଣି ଅଛି ପ୍ରଚୁର, ଯାହା ଏ ଯୁଗର ଶିଳ୍ପୋଦ୍ୟୋଗୀମାନଙ୍କୁ ଦଳ ଦଳ ଟାଣି ଆଣୁଛି । ମଣିଷ ତାହାର ପ୍ରାକୃତିକ ସମ୍ପଦର ସଦୁପଯୋଗ କରିଥାଏ । ଓଡ଼ିଶାର ବିସ୍ମୃତ ଲୌହ ଶିଳ୍ପୀ ତାହାହିଁ କରିଥିଲେ ।

କୋଣାର୍କ କଡ଼ିର ଲୁହା ଶ୍ରେଷ୍ଠ ଅବା ଦିଲ୍ଲୀ ଅଶୋକ ସ୍ତମ୍ଭର ଲୁହା ଶ୍ରେଷ୍ଠ – ଏହା ନେଇ ଗୋଟିଏ ଅନାବଶ୍ୟକ ବିବାଦ ସୃଷ୍ଟି କରିଛନ୍ତି କରୁଣାସାଗର । ଗାଙ୍ଗୁଲୀଙ୍କ ଗୋଟିଏ ବାକ୍ୟର ଖିଅ ଟାଣି ଡକ୍ଟର ବେହେରା କହିଛନ୍ତି, "The above table shows that the Iron used in Delhi Pillar is in no way superior to Konark." । ସେ କୋଣାର୍କ ଲହାର ଏବଂ ଅଶୋକ ସ୍ତମ୍ଭ ଲୁହାର Chemical analysis ଉପସ୍ଥାପନ କରିଛନ୍ତି ।[୧୪୫] ଏହା ସହିତ ଆଧୁନିକ **Stainless Steel ର Chemical analysis** ସଂଯୁକ୍ତ କରି ଛଅ ନମ୍ବର ସାରଣୀରେ ଉପସ୍ଥାପନ କରାହେଲା ।

### ସାରଣୀ ନଂ - ୬

## କ୍ଷୟରୋଧକାରୀ ଲୌହ

| | | Konark Iron | | Ashok | Modern Stainless Steel(*) | |
|---|---|---|---|---|---|---|
| **Item** | **P. Neogi** | **Newton** | **Ghosh** | **Stambha** | **SS301** | **SS409** |
| Iron | --- | --- | --- | 99.72 | --- | --- |
| Carbon | traces | 0.110 | 0.27-0.45 | 0.080 | 0.15 | 0.08 |
| Manganese | nil | nil | 0.04 max | nil | 2.0 | 1.0 |
| Phospherous | 0.15 | 0.115 | 0.008-0.015 | 0.114 | 0.045 | 0.045 |
| Silicon | --- | 0.100 | 0.05-0.11 | 0.046 | 1.0 | 1.0 |
| Copper | --- | --- | 0.16 max. | --- | --- | --- |
| Nickel | --- | --- | 0.16 max. | --- | 6.0/8.0 | 0.50 |
| Chromium | --- | --- | 0.16 max. | --- | 16.0/18.0 | 10.5/11.75 |
| Sulpher | traces | 0.024 | --- | 0.006 | 0.030 | 0.030 |
| | | | | | Ti-0.6×% c min 0.75max | |

(*) Source: Salem Steel Plant Guide book.

ଉପରୋକ୍ତ ସାରଣୀର ପାଞ୍ଚଟି ସ୍ତମ୍ଭରେ ଲୁହାର ପରିମାଣ ଦିଆଯାଇ ନାହିଁ । ଶହେ ପ୍ରତିଶତ ଯୌଗିକ ବସ୍ତୁର ପରିମାଣ ବାଦ୍ ଦେଇ ଯାହା ରହିବ ତାହା ଅବଶ୍ୟ ଲୁହା । ଧାତୁ ବିଦ୍ୟାର ଅଧିକ ଭିତରକୁ ପ୍ରବେଶ ନ କରି ସାଧାରଣ ପାଠକ ବୁଝିପାରିଲା ଭଳି କିଛି ଆଲୋଚନା କରିଲେ ବିଷୟଟି ବୁଝିବା ସହଜ ହେବ । କାର୍ବନ ଲୁହାରେ କଳଙ୍କିନିରୋଧୀ ଚରିତ୍ର ଆରୋପ କରେ; କିନ୍ତୁ ଆଧିକ୍ୟ, ଲୁହାକୁ ଭଙ୍ଗୁର କରେ, ଯଥା ଢଳେଇ

କଡେଇ । ମାଙ୍ଗାନିଜ୍ ଘର୍ଷଣ ରୋଧ କରେ ଏବଂ ଉପର ସ୍ତରକୁ ଟାଣ କରେ । ନିକେଲ୍ ଲୁହାକୁ ମୋଡ଼ିବାକୁ ଦିଏ ଏବଂ ବହନ କ୍ଷମତା ବଢ଼ାଏ । କ୍ରୋମିୟମ୍ କଳଙ୍କିନିରୋଧକାରୀ ମୁଖ୍ୟ ବସ୍ତୁ । Copper ମଧ୍ୟ କଳଙ୍କି ନିରୋଧକ ଶକ୍ତି ଯୋଗାଏ । ଏହାଛଡ଼ା alloy steel ରେ ଆହୁରି ଅନ୍ୟାନ୍ୟ ବସ୍ତୁ ମିଶା ହୁଏ ଲୁହାର ଚରିତ୍ରଗତ ବିଭିନ୍ନ ସଂସ୍କାର ଆଣିବା ପାଇଁ । ଗୋଟିଏ ଧାଡ଼ିରେ କହିବା ଉଚିତ୍ ନୁହେଁ କେଉଁଟି ଶ୍ରେଷ୍ଠ କେଉଁଟି ନୁହେଁ । ଦେଖିବା କଥା, ପ୍ରଯୁକ୍ତିବିଦ୍ ସେ ଲୁହାରେ କି କି ଗୁଣ କେତେ ପରିମାଣରେ ଥିବାର ପ୍ରୟୋଜନ କରୁଛି ଏବଂ ତାହା ଧାତୁବିତ୍ ଦେଇ ପାରୁଛି ନା ନାହିଁ । ସାଧାରଣ ଭାବେ କହିବାକୁ ଗଲେ, 'କଳିଙ୍ଗ', 'ଅଶୋକ' କେହି କଳଙ୍କିନିରୋଧୀ ଲୁହା ନୁହଁନ୍ତି କାରଣ, ସେମାନଙ୍କ ମଧ୍ୟରେ କ୍ରୋମିୟମ୍‌ର ପରିମାଣ ନାହିଁ ଅଥବା ଖୁବ୍ କମ୍ । କଳଙ୍କିନିରୋଧୀ କ୍ଷମତା ଆସୁଛି Carbonର ପରିମାଣ ଅଧିକ କରି ଏବଂ ଭଙ୍ଗୁରତା ନିରୋଧ କରି Tensile strength ବଢ଼ା ହେଉଛି ଅନ୍ୟାନ୍ୟ alloying ବସ୍ତୁର ପରିମାଣର ହେର୍‌ଫେର୍ କରି । କୋଣାର୍କ କଡି ସମ୍ପର୍କିତ ବିତର୍କଟି ସୃଷ୍ଟି ହୋଇଛି, ଗାଙ୍ଗୁଲୀଙ୍କ ମନ୍ତବ୍ୟର ମାତ୍ର କିଛି ଅଂଶ ଉଦ୍ଧାର କରାଯିବା ଫଳରେ - "....more wonderful than the beams of Orissa." (୧୪୬)

ସମ୍ପୂର୍ଣ୍ଣ ତିନୋଟି ବାକ୍ୟ ହେଲା, "In India, we have instances of iron manufacture existing for a long time. The iron pillar at Delhi is more wonderful than the beams of Orissa. I quote below what an eminent engineer wrote in a first class engineering journal of England in 1871 on our Indian Iron manufacture."(147)

ଲକ୍ଷ୍ୟ କରିବାର କଥା ଗାଙ୍ଗୁଲୀ Superior ଶବ୍ଦଟି ବ୍ୟବହାର କରି ନାହାନ୍ତି, 'wonderful' ଶବ୍ଦଟିର ବ୍ୟବହାର କରିଛନ୍ତି ଏବଂ ଏହା ସାମଗ୍ରିକ ଭାବରେ ଭାରତୀୟ ଲୌହଶିଳ୍ପର ପରିପ୍ରେକ୍ଷୀରେ । ଏହା ଅବଶ୍ୟ ସ୍ୱୀକାର୍ଯ୍ୟ, ଅଶୋକ ସ୍ତମ୍ଭ, ଯେକୌଣସି ଲୁହା କଡ଼ିରୁ - ଓଡ଼ିଶାର ହେଉ ଅଥବା ଦିଲ୍ଲୀର, ନିଶ୍ଚୟ ଦୃଷ୍ଟି-ନନ୍ଦନ । ଏ ବିଷୟରେ ଆହୁରି ବିବେଚ୍ୟ ଗାଙ୍ଗୁଲୀଙ୍କର ଠିକ୍ ପୂର୍ବ ଅନୁଚ୍ଛେଦର ବକ୍ତବ୍ୟ । "I believe that the Orissan metallurgists could also have effected an increase in the strength of wrought iron if they willed; they did not do so, for the nature of forging the beams by the method of welding described above demanded of them to make the iron rather weaker (from modern standard) in strength."

କୋଣାର୍କ ଲୁହାକଡ଼ି ଗଢ଼ା ହୋଇଥିଲା ଶହ ଶହ ବର୍ଷ ଧରି ପ୍ରଦତ୍ତ ଭାର ବହନ କରିବା ପାଇଁ ଏବଂ ସେ ତାହା କରିଥିଲା ସଫଳ ଭାବେ ଯେ ପର୍ଯ୍ୟନ୍ତ ଲୋଭୀ ମଣିଷ ସେଥିରେ ବ୍ୟାଘାତ ସୃଷ୍ଟି ନ କରିଛି । କଡ଼ିଗୁଡ଼ିକ ମଧ୍ୟ ଭାଗରେ ମୋଟ ଏବଂ ପ୍ରାନ୍ତ ଭାଗରେ ଅଳ୍ପ ମୋଟ । ଦକ୍ଷିଣ ଦୁଆର ଉପରୁ ଖସିଥିବା ଲୁହାକଡ଼ିର ଉଦାହରଣ ନିଆଯାଉ :

**ଦୈର୍ଘ୍ୟ - ୨୩', ମଧ୍ୟ ଭାଗର ସ୍ଥୂଳତା - ୧୧'', ପ୍ରାନ୍ତଭାଗର ସ୍ଥୂଳତା - ୯ $\frac{୧}{୪}$''**

ଏପରି ଗଠନର କାରଣ, Simple Supported Beam ଉପରେ ସର୍ବାଧିକ force କାର୍ଯ୍ୟ କରି ଥାଏ ମଧ୍ୟ ଭାଗରେ । ଇଞ୍ଜିନିୟର୍ ମନମୋହନ ଗାଙ୍ଗୁଲୀ ତାଙ୍କର Applied Mechanicsର ଜ୍ଞାନ ପ୍ରୟୋଗ କରି ଗଣନା କରି ଦେଖିଲେ, "...... stiffness has been secured without unncecessary waste of material."(୧୪୮)

କଡ଼ିଗୁଡ଼ିକ ଗଢ଼ିବାର ପ୍ରକ୍ରିୟା ମଧ୍ୟ ଥିଲା ବିଚିତ୍ର । ଏ କଡ଼ିଗୁଡ଼ିକ ଭାଙ୍ଗିଲେ ତାହା ଭିତରୁ ଖଣ୍ଡ ଖଣ୍ଡ ଲୁହା ଲମ୍ବ ଭାବେ ସଜା ହୋଇ ଥିବାର ଦିଶୁଛି ଏବଂ ମନେ ହେଉଛି ତାହା ଉପରେ ତରଳ ଲୁହା ଢ଼ଳା ହୋଇଛି । ଏହା କିପରି ହେଲା ? କରୁଣାସାଗର ଓ ଗାଙ୍ଗୁଲୀ ଦୁହେଁ ନାନା ଉପାୟ ଭାବିଛନ୍ତି, କିନ୍ତୁ କୌଣସିଟି ସେମାନଙ୍କୁ ସନ୍ତୁଷ୍ଟ କରି ପାରିନାହିଁ (୧୪୯) । କରୁଣାସାଗର ନିଜେ କହିଛନ୍ତି, କାଠକୋଇଲାର ଚୁଲିରେ ଏହା ସମ୍ଭବ ନୁହେଁ । ଗାଙ୍ଗୁଲୀ କହିଛନ୍ତି, ସେମାନଙ୍କୁ refining, puddling, shingling ଏବଂ rolling ଜଣା ନଥିଲା, ନା ସେମାନଙ୍କର ଥିଲା ଆଧୁନିକ ମେସିନ୍ ଯାହା ବହୁ ଶତାବ୍ଦୀ ପରେ ଆଧୁନିକ ପ୍ରଯୁକ୍ତିବିଦ୍ୟା ଗଢ଼ି ତୋଳିଛି ।

ଆଜି ହୁଏତ ବହୁ ଶିଳ୍ପଶାସ୍ତ୍ର ଲୋପ ପାଇ ଯାଇଛି, ଏହା କିନ୍ତୁ ନିଶ୍ଚିତ, ଆଜିକାର ପ୍ରଯୁକ୍ତି ବିଦ୍ୟା ପୂର୍ବସୂରୀମାନଙ୍କୁ ଜଣାଥିଲା । ଦୁଃଖ ଲାଗେ ଯେତେବେଳେ ଜଣେ ଆଧୁନିକ ପ୍ରଯୁକ୍ତିବିଦ୍ ବିଶନ୍ ସ୍ୱରୂପ ଲେଖନ୍ତି, "There is not much to say about Engineering of the Orissa Temples, ......but it is most likely that it was erected without any scientific method."(150)

କେବଳ ବିଶନ୍ ସ୍ୱରୂପ ନୁହନ୍ତି, ପାଶ୍ଚାତ୍ୟ ଶିକ୍ଷାର ଆଲୋକପ୍ରାପ୍ତ ବହୁ ଭାରତୀୟ ଆଜି ମଧ୍ୟ ବିଶ୍ୱାସ କରି ପାରୁନାହାନ୍ତି, ତ୍ରୟୋଦଶ ଶତାବ୍ଦୀର ଗୋଟିଏ ତଥାକଥିତ ଅନଗ୍ରସର ଜାତି କିପରି ଏ ବିଶାଳ କ୍ରିୟାକାଣ୍ଡ ଅସମ୍ଭବ ଦକ୍ଷତା ସହକାରେ ସମାପନ କରିଥିଲା । ସେମାନଙ୍କର ମୂଳ ଚିନ୍ତାଟା ହିଁ ପରାଧୀନ ଦେଶର ହୀନମନ୍ୟତାପ୍ରସୂତ, ଯାହା ଆଜି ଆଉ ଭାରତୀୟମାନଙ୍କୁ ଶୋଭାପାଏନା । ଏ ବିଷୟ ଆହୁରି ଉଠିବ ଆଗକୁ ବିଭିନ୍ନ ପ୍ରସଙ୍ଗରେ । କିଏ ଜାଣେ, ସେମାନଙ୍କର ଏପରି ସବୁ ସରଞ୍ଜାମ ଥିଲା, ଯାହା ଆଧୁନିକ ବିଶାଳ ଯନ୍ତ୍ରପାତି ଠାରୁ ସରଳ ଅଥଚ ନିର୍ଭରଯୋଗ୍ୟ । ଆଶା କରାଯାଇପାରେ ଏ ଦିଗରେ ଆହୁରି ଗବେଷଣା ହେବ ଏବଂ କେବେ ନା କେବେ ପୂର୍ବସୂରୀମାନଙ୍କର ବୈଷୟିକ ଜ୍ଞାନର ପ୍ରକୃତ ମୂଲ୍ୟାୟନ ହେବ ।

# ପଥର ସବୁ ଉଚ୍ଚକୁ ଉଠିଲା କିପରି ? :

କୁହାଯାଏ, ବାଲି ପୋତି ପୋତି ମନ୍ଦିର ଗଢ଼ା ଯାଏ । ଏ ଚିନ୍ତାଧାରା ଆସିଛି ସାହେବମାନଙ୍କ ପାଖରୁ ଯେଉଁମାନଙ୍କର ଧାରଣା ଥିଲା (ସେ ଯୁଗରେ), ଭାରତୀୟମାନଙ୍କ ଭଳି ଅନଗ୍ରସର ଜାତି ପକ୍ଷରେ ଏହାଠାରୁ ଅଧିକ କିଛି କରିବା ସମ୍ଭବ ନଥିଲା । ୧୯୦୨-୦୩ରେ **PWD**ର **Superintending Engineer, M.H. Arnott** ଆଉ ପାଦେ ଆଗକୁ ଯାଇ କହିଛନ୍ତି, **"it is nearly certain"** । ବାଲି କାଢ଼ି ନେବା ସଙ୍ଗେ ସଙ୍ଗେ ବିଶାଳ ମନ୍ଦିରଟି ନିଜ ଓଜନରେ ଭୁଶୁଡ଼ି ପଡ଼ିଲା । ତାଙ୍କ ଲେଖା ପୁରୀ ଡିଷ୍ଟ୍ରିକ୍ଟ୍ ଗେଜେଟ୍‌ରେ ପ୍ରକାଶ ମଧ୍ୟ ପାଇଲା ।[୧୫୧]

ଅନେକଗୁଡ଼ିଏ କାରଣରୁ ଏହା ସମ୍ଭବ ନୁହେଁ । ଏହା କରିବାକୁ ହେଲେ ପ୍ରତି ସ୍ତରରେ ବାଲିର ଉଚ୍ଚତା ଓ ମୂଳର ଦୈର୍ଘ୍ୟ ବଢ଼େଇ ବଢ଼େଇ ଯିବାକୁ ପଡ଼ିବ ଏବଂ ମନ୍ଦିରର ରୂପରେଖ (**Contour**) ଠିକ୍ ଉଠୁଛି ନା ନାହିଁ ଜଣାପଡ଼ିବ ନାହିଁ । ଯଦିବା ଧରାଯାଏ, ବାଲି ପୋତି ମନ୍ଦିର ତୋଳା ଯାଇଥିଲା; ଏତେ ବିଶାଳ ପଥର ଓ ଲୌହଖଣ୍ଡ କ୍ରମ ବର୍ଦ୍ଧମାନ ବାଲି କୁଢ଼ ଉପରେ ଟଣା ଗଲା କେଉଁ ଉପାୟରେ ? ଏ ପ୍ରଶ୍ନ ମଧ୍ୟ ଉଠୁଛି ଅନ୍ୟ ସ୍ଥାନରେ । ଏତେ ବାଲି ଭୁବନେଶ୍ୱର ଭଳି ସ୍ଥାନରେ ଆସିଲା କୁଆଡ଼ୁ ଏବଂ ମନ୍ଦିର ଶେଷ ହେବା ପରେ ଗଲା କୁଆଡ଼େ ?

ବାଲିରେ ପୋତିଲେ ପ୍ରକୃତରେ କେତେ ପରିମାଣ ବାଲି ପ୍ରୟୋଜନ ହେବ ଏବଂ ସେଥିପାଇଁ କେତେ ସ୍ଥାନର ପ୍ରୟୋଜନ ହେବ- ଏହା ଉପରେ କୌଣସି ବିଜ୍ଞାନ-ସମ୍ମତ ଆକଳନ ହୋଇନାହିଁ । ମୁଠାଏ ବାଲି ତଳେ ଢ଼ାଳିଲେ ୪୫° କୋଣ କରି ଗୋଟିଏ ଓଲଟା କାହାଳି ହୋଇଯିବ । କୋଣାର୍କର ରେଖଦେଉଳ ଓ ଜଗମୋହନ ପୋତିବାକୁ କେତେ ବାଲି ଲାଗିବ ? ଚିତ୍ର ନଂ.୩ ଦେଖନ୍ତୁ । ୪୫୬ ଫୁଟ୍ ବ୍ୟାସ ବିଶିଷ୍ଟ ସ୍ଥାନ ୧,୬୩,୩୭୮.୨୮ବର୍ଗ ଫୁଟ ଅଥବା ୩.୭୫ ଏକର । ଯେହେତୁ ୨୨୮ ଫୁଟ୍ ଉଚ୍ଚତା ଯାଏ ପୋତା ହେବ, ବାଲିର ପରିମାଣ ଲାଗିବ




ରେଖାଚିତ୍ର-୩ : ବାଲିପୋତା ପ୍ରସ୍ତାବ

୧,୮୬,୨୫୦,୯୨ ଘନ ଫୁଟ । ଗୋଟିଏ ସାଧାରଣ ଟ୍ରକ୍‌ରେ ୨୦୦ ଘନ ଫୁଟ ବାଲି ଆସେ (ସେତେବେଳେ ଟ୍ରକ୍ ନଥିଲା କିନ୍ତୁ ଆକଳନଟି ଦିଆଗଲା ବିରାଟତ୍ୱ ବୁଝାଇବା ପାଇଁ) । ୯୩,୧୨୫ ଟ୍ରକ୍ ବାଲିର ପ୍ରୟୋଜନ । ୪୫°ରେ ଯେଉଁ ଢ଼ାଲୁ ଆସୁଛି ତାହା ଉପରେ ମଣିଷ ଠିଆ ହୋଇପାରିବ ନାହିଁ, ପଥର ଟାଣିବା ଦୂରର କଥା । ଯେବେ ସମ୍ଭାବ୍ୟ ଢ଼ାଲୁ ୧୫° ହୁଏ ତେବେ କ'ଣ ହେବ ତାହାର ଗୋଟିଏ ରେଖାଚିତ୍ର ସେଇ ଚିତ୍ର ନଂ.୩ରେ ଦିଆଯାଇଛି । ସେଥିରୁ ନିମ୍ନୋକ୍ତ ତଥ୍ୟ ମିଳୁଛି ।

| | | |
|---|---|---|
| ବ୍ୟାସାର୍ଦ୍ଧ (Radius) | - | ୮୪୮ ଫୁଟ |
| ସ୍ଥାନର ପ୍ରୟୋଜନ | - | ୫୨ ଏକର |
| ବାଲିର ପରିମାଣ | - | ୨୫,୭୬,୫୧,୦୨୦ ଘନଫୁଟ୍; ପ୍ରାୟ ୧୩,୦୦,୦୦୦ ଟ୍ରକ୍ ବାଲି । |

କୋଣାର୍କ କ୍ଷେତ୍ରରେ, ଆକଳିତ ସ୍ଥାନର ପ୍ରାୟ ଅଧା ସମୁଦ୍ର ଗର୍ଭରେ ପଡ଼ିବ, କାରଣ କୋଣାର୍କ ନିର୍ମାଣ ସମୟରେ ବେଢ଼ା ପାଖକୁ ଲାଗିଥିଲା ସମୁଦ୍ର ।

ବର୍ତ୍ତମାନ ପରିଷ୍କାର ବୁଝା ପଡୁଛି, ପରିକଳ୍ପନାଟିର ଅବାସ୍ତବତା । ଗୋଟିଏ ଭୁଲ୍ ପ୍ରତି ମୋର ଦୃଷ୍ଟି ଆକର୍ଷିତ ହୋଇଛି । ଶୁଖିଲା ବାଲି ଢାଳିଲେ ତାହାର ଢାଲୁ ଅର୍ଥାତ୍ Angle of Repose ୪୫° ହୁଏ ନା, ହୁଏ ୩୫° । ସେ କ୍ଷେତ୍ରରେ ବ୍ୟାସାର୍ଦ୍ଧ ବଢ଼ିଯିବ ୩୨୦ ଫୁଟ୍‌କୁ, ସ୍ଥାନର ପରିମାଣ ବଢ଼ିବ ୭.୪୦ ଏକର ଏବଂ ବାଲିର ପ୍ରୟୋଜନ ହେବ ୩,୬୬,୮୮,୪୫୬ ଘନଫୁଟ୍ । କିନ୍ତୁ ଶୁଖିଲା ବାଲିର କାର୍ଯ୍ୟକାରୀ ସ୍ଥାୟିତ୍ୱ ରହେନା, କିଛି ଜଳର ପ୍ରୟୋଜନ ହୋଇଥାଏ । ଭିଜା ବାଲିର AOR କିନ୍ତୁ ୪୫° । ଯେଉଁ ଦିଗରୁ ଦେଖିଲେ ମଧ୍ୟ ନିର୍ଣ୍ଣୟ ବଦଳୁ ନାହିଁ ।

ପୁରୀର ସିଦ୍ଧମହାବୀର ମନ୍ଦିର ଗାତ୍ରରେ ଗୋଟିଏ ପଥର ଖୋଦେଇ କଥା କରୁଣାସାଗର କହିଛନ୍ତି ।[୧୫୨] ଯୋଡ଼ିଏ ଚିତ୍ରରୁ ଦିଶୁଛି, ପଟା ଭଳି କିଛି ଶୂନ୍ୟରୁ ଝୁଲି ଢାଲୁ ସୃଷ୍ଟି କରିଛି ଏବଂ ପଥର ଘୋଷଡ଼ା ହେଉଛି । ଏହାର ଅଳଂକରଣରେ ଥିବା ହଂସ ଲହରୀ କୋଣାର୍କ ଭାସ୍କର୍ଯ୍ୟ ସହିତ ମିଶିଯାଇଛି । ସେଥିରୁ ଅନୁମାନ କରାଯାଉଛି, ଏ ପଥର କୋଣାର୍କ ଦେହରୁ ଆଣି ଏଠାରେ ବସା ହୋଇଛି । ଦୁଇଟି ଖଣ୍ଡରୁ ଖଣ୍ଡେ କୋଣାର୍କ ମ୍ୟୁଜିୟମ୍‌ରେ ଅଛି । ଏହା ଗୋଟିଏ ସମ୍ଭାବ୍ୟ ପନ୍ଥା । ଆଧୁନିକ ଗଗନଚୁମ୍ବୀ ଘରମାନଙ୍କର ନିର୍ମାଣ ହେଉଛି ଲୁହା ପାଇପ୍‌ର scafolding କରି । ପାଇପ୍ ବଦଳରେ ବାଉଁଶର ବ୍ୟବହାର ବହୁଦିନ ଧରି ରହିଥିଲା ଏବଂ ଛୋଟ ଛୋଟ କୋଠାମାନଙ୍କ ନିର୍ମାଣ ସମୟରେ ଏବେ ମଧ୍ୟ ବାଉଁଶର ବ୍ୟବହାର ହେଉଛି ।

ଏହା ଗୋଟିଏ ସମ୍ଭାବ୍ୟ ପନ୍ଥା ଏବଂ ହୁଏତ 'ସାଙ୍ଗିଆ' କାନ୍ଧେଇ ଛୋଟ ଛୋଟ ପଥର ବୁହାଯାଇଥାଇପାରେ ତେବେ ୫ ଠାରୁ ୨୦/୩୦ ଟନ୍ ପଥର, ପଟା ଉପର ଦେଇ ବୋହି ବୋହି ୨୨୮ ଫୁଟ ଉଠିବା ମଣିଷ ପକ୍ଷେ ସମ୍ଭବ ନୁହେଁ । ମନମୋହନ ଗାଙ୍ଗୁଲୀ ବିସ୍ମୟର ସହ କହିଛନ୍ତି, ଯେତେବେଳେ 'steam engine, wire rope, derrick or pulley-tackle' ଆଦି କୌଣସି ଭାରବାହୀ ଯନ୍ତ୍ର ନଥିଲା, କିପରି ବିଶାଳ ପଥର ଓ ଲୁହା କଡ଼ି ଉପରକୁ ଉଠୁଥିଲା ? କିପରି ୫୦ / ୬୦ ଟନ୍ ଓଜନର ଗଜ ସିଂହ ପ୍ରାୟ ୧୦୦ ଫୁଟ ଉପରେ ବସା ହୋଇଥିଲା ?

Steam engine ହୁଏତ ନଥିଲା, କିନ୍ତୁ ସମପରିମାଣର ଶକ୍ତିଶାଳୀ ଅନ୍ୟ କିଛି ଥିଲା ଅଥବା ନଥିଲା; କେହି କେବେବେଳେ ଭାବି ଦେଖିଲେ ନାହିଁ । ହାତୀକୁ Moving Crane କୁହାଯାଇଥାଏ । ହାତୀକୁ ଏବେ ମଧ୍ୟ ବିଶାଳ ବିଶାଳ କାଠଗଣ୍ଡି ଜଙ୍ଗଲ ଭିତରେ ବୋହିବା ପାଇଁ ବ୍ୟବହାର କରାଯାଇଥାଏ । ଓଡ଼ିଶା ହସ୍ତୀବହୁଳ ଦେଶ ଏବଂ ଓଜନିଆ ବସ୍ତୁ ବହନ କରିବାକୁ ହସ୍ତୀର ବ୍ୟବହାର ସ୍ୱାଭାବିକ । ହାତୀ ଅବଶ୍ୟ ପଥର ବୋହି କୋଣାର୍କ ମୁଣ୍ଡରେ ଥୋଇ ଦେଇ ନଥିବ, କିନ୍ତୁ Transfer of power ନାମକ ଉପଯୋଗ ବୁଝିବା ପାଇଁ ଇଂଜିନିୟର ଦରକାର ନାହିଁ । କିଏ କହୁଛି Pulley Tackle ସେତେବେଳେ ନଥିଲା । ଯେଉଁମାନେ ବିଶାଳ ମାପର ଲୁହାକଡ଼ି ଢାଳି ପାରୁଥିଲେ ସେମାନଙ୍କ ପକ୍ଷରେ କେତେଟା Pulley ଓ Capstan (ଡମ୍ବରୁ ଭଳି ଗୋଟିଏ ବସ୍ତୁ) ଢାଳିବା ଗୋଟେ ବଡ଼ କାମ ନଥିଲା । ମାଦଳାପାଞ୍ଜିରେ 'ଶଗଡ଼ି', 'କପିକଳ' ଭଳି ଶବ୍ଦ ଥିବା କଥା କରୁଣାସାଗର କହିଛନ୍ତି ।[୧୫୩] ମଜବୁତ୍ କତା ଦଉଡିର ବ୍ୟବହାର ସମୁଦ୍ର ଯାତ୍ରୀ ଓଡ଼ିଆ, ଭଲରୂପେ ଅବଗତ ଥିଲେ; ହୁଏତ ସମୁଦ୍ର ପାରି ବେପାର-ବଣିଜ ଫଳରେ Manila Rope ର ବ୍ୟବହାର ଜାଣିଥାଇ ପାରନ୍ତି । ଏହା ଇଂଜିନିୟରିଂର ନୂତନ ଛାତ୍ର ମଧ୍ୟ ଜାଣେ, ଛୋଟ ବଡ଼ ପୁଲିର ବ୍ୟବହାର ସହିତ Capstan ନାମକ ଲଟେଇ ବ୍ୟବହାର କରି ବହନ କ୍ଷମତା ବହୁ ଗୁଣ ବଢ଼ା ଯାଇପାରେ । ମୂଳ ଶକ୍ତି ପ୍ରସଙ୍ଗରେ ହାତୀ କଥା କୁହାଯାଇଛି, କିନ୍ତୁ କୋଣାର୍କରେ ଆଉ ଯୋଡିଏ ପ୍ରାକୃତିକ ଶକ୍ତିର ପ୍ରାବଲ୍ୟ ଥିଲା, (୧) ଜଳଶକ୍ତି (୨) ପବନ ଶକ୍ତି । ସମୁଦ୍ରାଭିମୁଖୀ ପ୍ରବହମାନ ଅନେକଗୁଡ଼ିଏ ନଦୀର ସମଷ୍ଟିଗତ ଶକ୍ତି, ସମୁଦ୍ର ଜଳର ଉପର ଓ ତଳ ପ୍ରବାହ, ଏହାର ଉପଯୋଗ କରାଯାଇ ଥାଇପାରେ । ମହାରାଷ୍ଟ୍ରର ଅଓରଙ୍ଗାବାଦ୍‌ର 'ପାନିଚକ୍କି' ଏବେ ମଧ୍ୟ କାର୍ଯ୍ୟକ୍ଷମ । ବିଶାଳ ପଥର ଚକିରେ ଏବେ ମଧ୍ୟ ଗହମ ଚାଉଳ ଇତ୍ୟାଦି ପେଷା ହୋଇଥାଏ । ପବନ ଶକ୍ତି - Wind mill ର ଉପଯୋଗ ଏକମାତ୍ର ମଧ୍ୟଯୁଗୀୟ ୟୁରୋପ ଜାଣିଥିଲା, କିଏ କହୁଛି ? ଓଡ଼ିଶାର ପ୍ରଯୁକ୍ତିବିଦ୍‌ମାନେ ମନ୍ଦିରର ଅନ୍ୟାନ୍ୟ ବିଭାଗରେ ଯେଉଁ ଅସାମାନ୍ୟ ପ୍ରତିଭା ଦେଖାଇଛନ୍ତି ସେମାନେ ସ୍ୱାଭାବିକ ଭାବେ ଏ ସବୁ ପ୍ରକୃତିଦତ୍ତ ଶକ୍ତିର ଉପଯୋଗ କରିଥିବେ, ତାହା ହୁଏତ ୟୁରୋପୀୟ ଧ୍ୟାନ ଧାରଣାଠାରୁ ଭିନ୍ନ ଥିଲା ।

ଜର୍ମାନୀରେ ଏବେ ମଧ୍ୟ ବ୍ୟବହାର ହେଉଥିବା ଗୋଟିଏ ପରିବହନ ବ୍ୟବସ୍ଥା କଥା କହିବା ଏଠାରେ ପ୍ରାସଙ୍ଗିକ ହେବ । ହାଇଡେଲ୍‌ବର୍ଗ ସହରରେ କଙ୍ଗସ୍ଥୁଲ (Kongsthul) ନାମକ ପାହାଡ଼ ଉପରେ ଗୋଟିଏ ପ୍ରାସାଦ (Schloss) ଅଛି । ଉପରୁ ତଳକୁ ଓ ତଳୁ ଉପରକୁ ଯାତାୟାତ କରିବା ପାଇଁ ରଜ୍ଜୁ ପଥ (Rope Way) ଭଳି ଗୋଟିଏ ବ୍ୟବସ୍ଥା ଏଥିରେ ଅଛି । କିନ୍ତୁ ଏହା ଲୁହା ରଶି ବଦଳରେ ଲାଇନ୍ ଉପରେ ଚାଲେ । ଚାରିଟି ବଖରା ଥିବା ଯୋଡ଼ିଏ କ୍ୟାବିନ୍ ଏକା ସାଙ୍ଗରେ ଉପର, ତଳ ହୋଇ ଦୁଇ ପଟରୁ ଚାଲେ । ଏଥିରେ କୌଣସି ଇଲେକ୍‌ଟ୍ରିକ୍ ମୋଟର ବ୍ୟବହାର କରାଯାଇ ନାହିଁ ଏବଂ ବ୍ୟବସ୍ଥାଟି ଚାଲୁଛି ପ୍ରଥମ ବିଶ୍ୱଯୁଦ୍ଧ ସମୟରୁ । ଶୁଣାଯାଏ, ବ୍ୟବସ୍ଥାଟି ଚାଲେ ମାଧ୍ୟାକର୍ଷଣର ବ୍ୟବହାର କରି । ଆଜିକାର ଜ୍ଞାନଗର୍ବୀ ମଣିଷ ଏହା ଆଖିରେ ନ ଦେଖିଥିଲେ ବିଶ୍ୱାସ କରୁ ନଥାଆନ୍ତା । ଆମ ପୂର୍ବସୂରୀମାନେ ଏପରି କୌଶଳ କରି ପାରି ନଥିବେ, ଭାବିବା କାହିଁକି ?

'ନିଉ ଲାଇଟ୍'ର ୧୨୧,୨୬୨ ଓ ୨୬୪ ପୃଷ୍ଠାରେ ହାତୀ ଦ୍ୱାରା ଓଜନ ପଥର ସ୍ଥାନାନ୍ତର କରିବା ଏବଂ ବାଲି ଟାଣିବାର କେତୋଟି ରେଖାଚିତ୍ର ଦିଆଯାଇଛି । ପୃଷ୍ଠା ୨୬୩ରେ capstan ଓ pulleyର ବ୍ୟବହାର ଦେଖାଯାଇଛି । ରେଖାଚିତ୍ରଗୁଡ଼ିକ କୌଣସି ତାଳପତ୍ର ପୋଥିର ଫଟୋଚିତ୍ର ନୁହେଁ । ସେଗୁଡ଼ିକର ପୁରାତନ ନାମ ମଧ୍ୟ ଚିତ୍ର ତଳେ ଦିଆଯାଇଛି । ଯଦିଓ ଏହାକୁ ପ୍ରାମାଣିକ କୁହାଯାଇ ପାରିବ ନାହିଁ, ପଦ୍ଧତିଗୁଡ଼ିକ ବିଶ୍ୱାସଯୋଗ୍ୟ । ଏ ଦିଗରେ ଅଧିକ ଗବେଷଣାର ପ୍ରୟୋଜନ ଅଛି ।



ଫଟୋ-୫: ଜଗମୋହନ (ସଂରକ୍ଷଣ ପୂର୍ବରୁ, ୧୮୯୦)

## ଭାସ୍କର୍ଯ୍ୟ ଖୋଦେଇ :



ଫଟୋ-୬: ପଥର ଦେହରେ ମସ୍‌ଲୀନ୍ କାମ

ଭାସ୍କର୍ଯ୍ୟଗୁଡ଼ିକ ମନ୍ଦିର ଦେହରେ ନିର୍ଦ୍ଧାରିତ ସ୍ଥାନରେ ଗଢ଼ା ହୋଇଛି ଅଥବା ତଳେ ଗଢ଼ା ହୋଇ ମନ୍ଦିର ଦେହରେ ଖଞ୍ଜା ହୋଇଛି ତାହା ନେଇ ବିବାଦ ଅଛି । ଅନେକ ଶିଳ୍ପ କର୍ମରେ ଏକରୁ ଅଧିକ ପଥରଖଣ୍ଡ ବ୍ୟବହାର କରାଯାଇଛି । ଅନେକଙ୍କ ମତ, ନିର୍ଦ୍ଧାରିତ ସ୍ଥାନରେ ଗଢ଼ା ନ ହୋଇଥିଲେ ଯୋଡ଼ ଉପରେ ଲାଇନ୍‌ଗୁଡ଼ିକ ମଧ୍ୟରେ ସମନ୍ୱୟ ରହିପାରନ୍ତା ନାହିଁ । କୋଣାର୍କ ଶିଳ୍ପୀ କଂପ୍ୟୁଟରର ନିପୁଣତାରେ ତାହାର ସୃଷ୍ଟି କାର୍ଯ୍ୟ କରିଛି, ତଥାପି ଭଲ ରୂପେ ନଜର ଦେଲେ, ସମନ୍ୱୟର ଅଭାବ ବହୁ ସ୍ଥାନରେ ଧରି ହେଉଛି । ନିର୍ଦ୍ଧାରିତ ସ୍ଥାନରେ କାର୍ଯ୍ୟ କରିବାର ସବୁଠାରୁ ବଡ଼ ଅସୁବିଧା, ମନ୍ଦିର ଗାତ୍ରର ପ୍ରତିଟି ଇଞ୍ଚ କାରୁକାର୍ଯ୍ୟରେ ପୂର୍ଣ୍ଣ ହୋଇଥିବାରୁ ଅସଂଖ୍ୟ ଭାସ୍କର୍ଯ୍ୟମାନଙ୍କ ପାଇଁ ସ୍ଥାନ କରିବାକୁ ପଡ଼ିଥାଆନ୍ତା ମନ୍ଦିରର ସର୍ବାଙ୍ଗରେ, ଯାହା ଅବଶ୍ୟ ସମ୍ଭବ ନୁହେଁ । ଏବେ ମଧ୍ୟ ଯେଉଁମାନେ କାର୍ଯ୍ୟରତ ପ୍ରସ୍ତର ଶିଳ୍ପୀ ଦେଖିଥିବେ, ବୁଝି ପାରିବେ ଗୋଟିଏ ଗୋଟିଏ ଛୋଟ କାମ କରିବାକୁ କେତେ ସମୟ ଲାଗେ । କେତେକ କାମ ହୁଏତ ମନ୍ଦିର ଦେହରେ କରିବା ଅପରିହାର୍ଯ୍ୟ ଥିଲା, କିନ୍ତୁ ଅଧିକାଂଶ ଭାସ୍କର୍ଯ୍ୟ ମନେ ହୁଏ, ବର୍ଷ ବର୍ଷ ଧରି ଗୋଟିଏ master plan ଅନୁଯାୟୀ ତଳେ ବସି କରାଯାଇଥିଲା ଏବଂ ପରେ ବସା ଯାଇଥିଲା । ୧୯୦୨-୦୩ରେ ବାଲି କାଢ଼ି ସଂରକ୍ଷଣ ଆରମ୍ଭ କରିବା ପୂର୍ବରୁ ମନ୍ଦିର ବାଡ଼ର ଯେଉଁ ଫଟୋଚିତ୍ର ତୋଳା ଯାଇଥିଲା, ତାହା ଦେଖିଲେ ବକ୍ତବ୍ୟର ସମର୍ଥନ ମିଳିବ । (ଫଟୋ -୫)

ଆଉ ଗୋଟିଏ ପ୍ରସଙ୍ଗ ଆଲୋଚନା ନ କଲେ ବୈଷୟିକ ଆଲୋଚନା ଅସଂପୂର୍ଣ୍ଣ ରହିଯିବ । ଯେଉଁ ଧରଣର ସୂକ୍ଷ୍ମ କାରୁକାର୍ଯ୍ୟ ପଥର ଉପରେ ଫୁଟାଯାଇଛି, ତାହା ପାଇଁ ପ୍ରୟୋଜନ ହେଉଥିବା ଛେଣି ହୁଏତ ସେ ସମୟର ଧାତୁବିଜ୍ଞାନୀ ଦେଇ ପାରିଥିଲେ କିନ୍ତୁ ସୂର୍ଯ୍ୟ ପିନ୍ଧିଥିବା ମସଲୀନ ଭଳି ଲୁଗା ଉପରେ ପ୍ରାୟ ଅଧଇଞ୍ଚ ବ୍ୟବଧାନ ଭିତରେ ଯେଉଁ ଅସଂଖ୍ୟ କାର୍ଯ୍ୟ ହୋଇଛି, ମନେ ହେବ ଛେଣିରେ ନ କାଟି ପେନ୍‌ସିଲ ମୁନରେ ଅଙ୍କା ହୋଇଛି । (ଫଟୋ-୬) ଏହା କୌଣସି ଛେଣିର କାମ ନୁହେଁ, ମନେ ରଖିବାକୁ ହେବ, ପ୍ରସ୍ତରଟି ମୁଗୁନି ଏବଂ ସାମାନ୍ୟ ଭୁଲ୍ ହେଲେ ଚୀଡ଼୍ ଧରି ଟୁକୁଡ଼ା ବାହାରି ଆସିବ । ଏହା କୌଣସି ସ୍ଥାନରେ ହୋଇନାହିଁ । ମନେ ହୁଏ Acid burning ଭଳି କୌଣସି ପନ୍ଥା ସେ ଶିଳ୍ପୀ ଅବଗତ ଥିଲେ । ଅଥବା ପେନ୍‌ସିଲ୍ ରେଖା ଉପରେ ଅସଂଖ୍ୟ punch marks କରି ସେଗୁଡ଼ିକ ଛୁରୀ ଭଳି କୌଣସି ଯନ୍ତ୍ର ଦ୍ୱାରା ଘଷିଘଷି ମିଶାଯାଇଛି । ହୁଏତ ପୂରା ମୂର୍ତ୍ତିଟି ଗଢ଼ିବାକୁ ଯେତେ ସମୟ ଲାଗିଥିଲା ଏଇ ଲୁଗା ଖଣ୍ଡିକ ଗଢ଼ିବାକୁ ତାହାଠାରୁ ଅଧିକ ସମୟ ଲାଗିଥିଲା । ଏ ଦିଗରେ ମଧ୍ୟ ଆହୁରି ଗବେଷଣା ହେବା ଉଚିତ୍ ।

## ମୁଣ୍ଡି ମାରିବାର ଗଳ୍ପ :

ମନ୍ଦିର ଗଢ଼ା ଶେଷ ହେଉ ନାହିଁ; ନରସିଂହଦେବ ଅଧୈର୍ଯ୍ୟ ହୋଇ ଉଠିଲେଣି । ରାଜା ମନ୍ଦିର ପ୍ରତିଷ୍ଠା ପାଇଁ ଗୋଟିଏ ବିଶେଷ ଶୁଭ ଦିନ ସ୍ଥିର କଲେ- ବିଶେଷରେ ମାଘ ଶୁକ୍ଳପକ୍ଷ ସପ୍ତମୀ, ସୂର୍ଯ୍ୟ ଦକ୍ଷିଣାୟନ ଶେଷ କରି ଉତ୍ତରକୁ ଢ଼ଳୁଥିବେ । ରାଜା ଘନଘନ ସୂତ୍ରଧରଙ୍କୁ ତାଗିଦ୍ କରିବାକୁ ଲାଗିଲେ ।

ନିର୍ମାଣ କାର୍ଯ୍ୟର ପ୍ରଥମ ବର୍ଷଗୁଡ଼ିକରେ ବର୍ଷାକାଳରେ କାମ ବନ୍ଦ ରହୁଥିଲା, କିନ୍ତୁ ଶେଷ ଆଡ଼କୁ ବର୍ଷା ଋତୁରେ ମଧ୍ୟ କାର୍ଯ୍ୟରେ ବିରାମ ରହିଲା ନାହିଁ । ଏହା ମଧ୍ୟରେ ରାଜା ନିଜେ କୋଣାର୍କ ଯୋଜନାରୁ ୫୦୦ ଲୋକ ଦକ୍ଷିଣର ଯୁଦ୍ଧକୁ ନେଇଗଲେ । ବାୟା ଚକଡ଼ା ଅନୁସାରେ, ମନ୍ଦିର ଗାତ୍ରର ପୂର୍ବ ଦିଗରେ ଗଜସିଂହ ବସେଇବା ପରେ ଶାସ୍ତ୍ରାନୁମୋଦିତ ସମୟର ଦୁଇ ସପ୍ତାହ ପୂର୍ବରୁ ରାଜାଦେଶରେ ପ୍ରଥମ ସିଳିଂ ତରବର କରି ଗଢ଼ି ଦିଆଗଲା । ଏହା ପରେ ଗଣ୍ଡି ଉପରେ 'ବେକୀ' ଗଢ଼ା ହେଲାବେଳକୁ ସ୍ଥିତିହୀନତାର ଲକ୍ଷଣ ଦେଖାଦେଲା । ଦୁଇଥର 'ବେକୀ' ଗଢ଼ିବା


ରେଖାଚିତ୍ର-୪ : ଜଗନ୍ନାଥ ମନ୍ଦିରର ଖଣ୍ଡିତ ଚିତ୍ର
Longitudinal section of vimana (Garvagriha) of lord Jagannath Temple at Puri
Scale- 1:1 mt
12.95 mt
2.7 mt
2.9 mt
13.7 mt
11.45 mt
1.8 mt
14.6 mt
VENTILATOR
8.0 mt
9.0 mt
SECOND MUDA
0.90 mt
39.00 mt
8.85 mt
3.50 mt
10.20 mt
5.00 mt
FIRST MUDA
0.95 mt
8.85 mt
13.80 mt
5.30 mt
GROUND FLOOR
KALIAHAT MANDIR
1.65 mt
Drawn by B.B. Badamali (13/07/70)
D/M. Gr.III, ASI, Puri
Conservation Assistant- GR-!, ASI, Puri

ପ୍ରୟୋଜନ ହେଲା । ସୂତ୍ରଧରଙ୍କ ସମସ୍ୟା ଏଇଠାରେ ଶେଷ ହେଲା ନାହିଁ, ଅଁଳା ଉପରେ ଖପୁରି ବସେଇବା ପରେ ଶେଷ ନିର୍ମାଣ କଳସ ବସି ପାରିଲା ନାହିଁ । ଧର୍ମପଦ ମାନ ରକ୍ଷା କଲେ ।[୧୫୪]

ଶେଷକୁ ଚୂଳି ମରାଗଲା କିପରି ତାହାର କୌଣସି ଐତିହାସିକ ପ୍ରମାଣ ନାହିଁ । ତେଣୁ ଆସିଗଲା ଧର୍ମପଦ କିମ୍ବଦନ୍ତୀ । ଗଳ୍ପଟିରେ ଅନେକଗୁଡିଏ ଛିଦ୍ର ଦିଶୁଛି ଯାହା ପୂର୍ବରୁ ଆଲୋଚିତ ହୋଇଛି । ଏଠାରେ ଗୋଟିଏ ତଥ୍ୟ ଉପସ୍ଥାପନ କଲେ ଯଥେଷ୍ଟ ହେବ ।

ଗଜସିଂହର ସ୍ଥାନ ଅବଶ୍ୟ ଶାସ୍ତ୍ର ଅନୁମୋଦିତ ଏବଂ ପୁରୀ, ଲିଙ୍ଗରାଜ ଆଦି ଯେଉଁ ମନ୍ଦିର ଦେଖିଛୁ, ତାହାର ସ୍ଥାନ ପ୍ରାୟ ଜଗମୋହନ ଚୂଳି ସମତଳରେ । ବର୍ତ୍ତମାନ ଦେଖିବୁ ଜଗନ୍ନାଥ ମନ୍ଦିର ବିମାନର Section drawing, ଇଦାନୀଂ ପ୍ରସ୍ତୁତ କରିଛନ୍ତି ASI (ରେଖାଚିତ୍ର-୪) । ଗଜସିଂହ ବସିଲା ବେଳକୁ ଦୁଇଟି ମୁଦ (ceiling) ଗଢ଼ା ସରିଲାଣି । ଯେହେତୁ କୋଣାର୍କ ମନ୍ଦିର ଜଗନ୍ନାଥ ମନ୍ଦିରଠାରୁ ୨୩ଫୁଟ ୩ ଇଞ୍ଚ ଉଚ୍ଚ, ଗଣ୍ଡି ମଧ୍ୟରେ ଆହୁରି ଗୋଟିଏ ମୁଦ ଥିବା ସମ୍ଭବ । ତେବେ ଗଜସିଂହ ବସେଇବା ପରେ ପ୍ରଥମ ସିଲିଂ ଗଢ଼ିବା ସମ୍ଭବ କିପରି ହେଲା ?

କିମ୍ବଦନ୍ତୀ ଯାହା କହୁ, କିନ୍ତୁ ପ୍ରମାଣ ମିଳୁଛି; ମନ୍ଦିର କାମ ଶେଷ ହୋଇଥିଲା ଓ ବିଗ୍ରହ ପ୍ରତିଷ୍ଠା ହୋଇ ବହୁବର୍ଷ ପୂଜା ପାଠ ହୋଇଥିଲା । ସମସ୍ତ କିମ୍ବଦନ୍ତୀର ଯେପରି ଗୋଟିଏ ମୂଳ ଥାଏ, ସେହିପରି କୋଣାର୍କ ମନ୍ଦିରର ହୁଏତ ନିର୍ମାଣଗତ ଅସୁବିଧା କିଛି ଥିଲା, ଯାହା ପଛେ ପଲ୍ଲବାୟିତ ହୋଇ ଏପରି ସ୍ତରକୁ ଗଲା ଯେ କେତେକ ପଣ୍ଡିତ ପ୍ରଶ୍ନ ତୋଳିଲେ- ମନ୍ଦିରଟି ପ୍ରକୃତରେ ଶେଷ ହୋଇଥିଲା କି ?

ପ୍ରଥମ ପ୍ରଶ୍ନ ତୋଳିଲେ କୌଣସି ଏକ ବ୍ରଜ କିଶୋର ଘୋଷ, ୧୮୪୮ ଖ୍ରୀଷ୍ଟାବ୍ଦରେ; ସେ ଏପରିକି ନରସିଂହଦେବଙ୍କୁ ମଧ୍ୟ ଉଡେଇ ଦେଲେ । ତାଙ୍କ ମତରେ, ମନ୍ଦିରଟି କେଶରୀ ବଂଶର ରାଜା ସିଦ୍ଧ କେଶରୀ, ଶିବେଇ ସାନ୍ତରାଙ୍କ ସହଯୋଗିତାରେ ନିର୍ମାଣ କରିଥିଲେ ୧୨୭୩ ଖ୍ରୀଷ୍ଟାବ୍ଦରେ । କିନ୍ତୁ ତାଙ୍କର ହଠାତ୍ ମୃତ୍ୟୁ ହେବାରୁ ମନ୍ଦିର ନିର୍ମାଣ ଶେଷ ହେଲା ନାହିଁ କି ବିଗ୍ରହ ପ୍ରତିଷ୍ଠା ହୋଇପାରିଲା ନାହିଁ ।[୧୫୫] ପ୍ରତିଷ୍ଠିତ ତଥ୍ୟ ଅନୁଯାୟୀ, ୧୨୭୩ ବେଳକୁ କେଶରୀ ବଂଶ ଶେଷ ହୋଇ ଗଙ୍ଗବଂଶର ଅଷ୍ଟମ ନରପତି, ନରସିଂହଦେବଙ୍କ ପୁତ୍ର ଭାନୁଦେବ ରାଜତ୍ୱ କରୁଛନ୍ତି ଏବଂ ଶିବେଇ ସାନ୍ତରା ଗତ ହେଲେଣି ଅଥବା ଅତିବୃଦ୍ଧ ହେଲେଣି । ଅଧିକ ଆଲୋଚନା ନିଷ୍ପ୍ରୟୋଜନ ।

Dr. Hunter ମାତ୍ର ଦିନକ ପାଇଁ କୋଣାର୍କ ଆସି (February 4, 1870) ରାଜେନ୍ଦ୍ର ଲାଲଙ୍କ କଥାନୁସାରେ ମତ ଦେଇ ପକେଇଲେ, ମନ୍ଦିର ଗଢ଼ା ଶେଷ ହୋଇନଥିଲା । କିନ୍ତୁ Dr. R. L. Mitraଙ୍କର ଐତିହାସିକ ସତତା ଥିଲା, ପରେ ଭୁଲ୍ ସ୍ୱୀକାର କରି ସେ ଏହା ମଧ୍ୟ କହିଲେ, ମନ୍ଦିର ନିର୍ମାଣ ଶେଷ ହୋଇ ବିଗ୍ରହ ପ୍ରତିଷ୍ଠା ହୋଇଥିଲା ।[୧୫୬]

ଏହାପରେ ଆସିଗଲେ Percy Braon ଏବଂ ତାଙ୍କ ପରେ ପରେ Robert Ebersole ସେଇ ଏକା ରାହା ଧରି ।[୧୫୭] ବ୍ରାଉନ୍ ସାହେବ କୋଣାର୍କ ଶିଳ୍ପୀଙ୍କ ପିଠି ଥାପୁଡ଼େଇ ଦେଇ କହିଲେ, "The conception of this temple was that of a genius .... its scale was too great for their power."[୧୫୮]

ଶେଷରେ 1902-03ରେ ଆସିଲେ Arnot ସାହେବ, ଯାହାଙ୍କ ବିଷୟ ଆଲୋଚିତ ହୋଇଛି ୬୫ ପୃଷ୍ଠାରେ । ମନମୋହନ ଗାଙ୍ଗୁଲୀ ଆର୍ଣ୍ଣଟଙ୍କ ମତର ଅନ୍ୟ ଗୋଟିଏ ଦିଗ ଉପସ୍ଥାପନ କରିଛନ୍ତି । ଆର୍ଣ୍ଣଟଙ୍କ ମତ, ମନ୍ଦିରଟି ହଠାତ୍ ଭୁଶୁଡ଼ି ପଡ଼ିବାରୁ ପଥରଗୁଡ଼ିକ କୁଢ଼ ହୋଇ ଭିତରେ ପଡ଼ିଲା, କିନ୍ତୁ ଧୀରେ ଧୀରେ ପଡ଼ିଥିଲେ ଚାରିପଟକୁ ବିଛାଡ଼ି ହୋଇପଡିଥା'ନ୍ତା । ଗାଙ୍ଗୁଲୀ କହିଛନ୍ତି, ଯେବେ ତାହା ହୋଇଥାଆନ୍ତା ତେବେ ଗର୍ଭଗୃହ ମଧ୍ୟରେ ପଥରକୁଢ଼ ତଳୁ ସିଂହାସନ ମିଳି ନଥାନ୍ତା ।[୧୫୯] ମନ୍ଦିର ଶେଷ ହେବା ପୂର୍ବରୁ ସିଂହାସନ ବସାଯିବ କାହିଁକି ?

ଉଲ୍ଲେଖଯୋଗ୍ୟ, ଆର୍ଣ୍ଣଟ୍ ଜଣେ ଉଚ୍ଚପଦସ୍ଥ ସିଭିଲ୍ ଇଞ୍ଜିନିୟର ହେଲେ ମଧ୍ୟ ହିନ୍ଦୁ ମନ୍ଦିରର Cerbelling ପ୍ରକ୍ରିୟାଟି ଭଲ ରୂପେ ବୁଝି ପାରି ନାହାନ୍ତି । Cerbelling ପ୍ରଥାରେ ଦେବାଳ ସବୁବେଳେ ଭିତରକୁ ଢଳି ରହିବ । ଧୀରେ ଧୀରେ ହେଲେ ମଧ୍ୟ ପଥର ଭିତରକୁ ହିଁ ପଡ଼ିବ । ସିଂହାସନ ଉପରେ ଠାକୁର ବସିବା ପୀଢ଼ର ପିଠିଟି ମାତ୍ର ଭାଙ୍ଗିଛି । ଅନ୍ୟ ଅଂଶ କାହିଁକି ଅକ୍ଷତ ରହିଲା, ବିଶନ ସ୍ୱରୂପ ଅନୁସନ୍ଧାନ କରି ନାହାନ୍ତି ।



ଫଟୋ-୭ : ପଥର ଉପରେ ହିସାବ ରକ୍ଷକ ଓ ଭଣ୍ଡାର ରକ୍ଷକଙ୍କ ନାମ (୧୯୦୦-୧୯୦୩)

ମନ୍ଦିର ନିର୍ମାଣ ଶେଷ ହୋଇ ଧର୍ମାଚରଣ ଯେ ବହୁଦିନ ହୋଇଥିଲା, ତାହାର ନିଦା ପ୍ରମାଣ ରତ୍ନ ସିଂହାସନ । ମନ୍ଦିରର ଭଙ୍ଗା ପଥର କୁଢ଼ ଯେତେବେଳେ ଗର୍ଭଗୃହରୁ ବାହାର କରାଗଲା ରତ୍ନ ସିଂହାସନଟି ପ୍ରାୟ ଅକ୍ଷତ ଅବସ୍ଥାରେ ସ୍ୱସ୍ଥାନରେ ଥିଲା, ବିଗ୍ରହ ନଥିଲା କିନ୍ତୁ ବିଗ୍ରହ ପୀଠର ପଶ୍ଚାତ୍ ଭାଗ କ୍ଷତିଗ୍ରସ୍ତ ହୋଇଥିଲା ଏବଂ ସିଂହାସନଟି ବ୍ୟବହାର ହେବାର ବହୁ ଚିହ୍ନ ଥିଲା । ଅସମାପ୍ତ ମନ୍ଦିର ମଧ୍ୟରେ କେହି ଦେବସିଂହାସନ ନିର୍ମାଣ କରନ୍ତି ନାହିଁ ।

ସିଂହାସନଟି ଭଲ ରୂପେ ନିରୀକ୍ଷଣ କଲେ ଦେଖାଯିବ, ସବା ଉପର ଧାଡ଼ିର ଭାସ୍କର୍ଯ୍ୟ ପଦ୍ମ ପାଖୁଡ଼ା ହାତ ଲାଗି ଲାଗି କେତେକ ସ୍ଥାନରେ ପ୍ରାୟ ନିଶ୍ଚିହ୍ନ ହୋଇଯାଇଛି । କଳସ, ଘଟ ଇତ୍ୟାଦି ବହୁବର୍ଷ ବସିବା ଫଳରେ ସ୍ଥାନେ ସ୍ଥାନେ ଗାତ ହୋଇ ଯାଇଛି । ଜଗମୋହନକୁ ଯୋଗ କରୁଥିବା ଦ୍ୱାର ବନ୍ଧର ଯେତିକି ଦିଶୁଛି, ତାହାର ତଳ ବନ୍ଧ ବହୁ ବର୍ଷ ଧରି ଭକ୍ତ ଚରଣ ପାତରେ ଘୋରି ହୋଇଯାଇଛି ।

ବ୍ରହ୍ମପୁରାଣରେ କୋଣାର୍କଠାରେ ପୂଜାବିଧି କଥା ବିସ୍ତୃତ ଭାବେ ଉଲ୍ଲିଖିତ ଅଛି । ପୂଜା ହେଉ ନଥିଲେ ପୂଜାବିଧି କଥା ଆସିବ କିପରି ? ସେହିପରି ବ୍ରହ୍ମାଣ୍ଡପୁରାଣ, କପିଳ ସଂହିତା ଇତ୍ୟାଦି ଗ୍ରନ୍ଥରେ ବିଭିନ୍ନ ମାସରେ କୋଣାଦିତ୍ୟଙ୍କ ଉଦ୍ଦେଶ୍ୟରେ ବିଭିନ୍ନ ମେଳା କଥା ଅଛି । ବିନା ଠାକୁରରେ ମେଳା ହେବ କାହିଁକି ?

ଲାଙ୍ଗୁଳା ନରସିଂହଦେବଙ୍କ ପରେ ଦ୍ୱିତୀୟ ନରସିଂହଦେବଙ୍କଠାରୁ ଚତୁର୍ଥ ନରସିଂହଦେବ (୧୩୮୪)ଙ୍କ ଚାରି ପ୍ରଜନ୍ମ ଏ ମହାନ କୀର୍ତ୍ତି କଥା ସେମାନଙ୍କ ତାମ୍ରଶାସନରେ ବାରଂବାର କହିଛନ୍ତି । ମନ୍ଦିର ସମ୍ପୂର୍ଣ୍ଣ ହୋଇ ନଥିଲେ ସେମାନେ ଏ ଜୟଗାନ କରିଥାଆନ୍ତେ କାହିଁକି ?

କୋଣାର୍କ ଦେଉଳର ଖଣ୍ଡିଏ ଶିଳାଲେଖ କଲିକତାର Indian Museumରେ ଗଚ୍ଛିତ ଅଛି । ସେ ଲେଖାର ପାଠୋଦ୍ଧାର କରି କରୁଣାସାଗର କହିଛନ୍ତି, ସେଥିରେ ଦୁଇଜଣ ଭଣ୍ଡାର ଅଧିକାରୀ ଏବଂ ଜଣେ ହିସାବରକ୍ଷକ କଥା ଲେଖାଅଛି । ମନ୍ଦିର ପରିଚାଳିତ ନ ହେଉଥିଲେ ଏମାନଙ୍କ ନିୟୋଗର ପ୍ରଶ୍ନ ଉଠନ୍ତା ନାହିଁ ।[୧୬୦]

ଆଇନ୍-ଇ-ଆକ୍‌ବରୀ ଯେତେ ବିତର୍କିତ ହେଲେ ମଧ୍ୟ ନିମ୍ନୋକ୍ତ ବାକ୍ୟଟି ଐତିହାସିକ ଓ ଲେଖକମାନେ ଗର୍ବର ସହିତ ସ୍ମରଣ କରନ୍ତି, "Even those whose judgement is critical and who are difficult to please stand astonished at its sight." ମନ୍ଦିରଟି ଶେଷ ହୋଇ ନଥିଲେ, ଏ ବାକ୍ୟଟି ରଚିତ ହୋଇ ନଥାଆନ୍ତା ।

ବର୍ତ୍ତମାନ କାଳର ଗୋଟିଏ ବୈଜ୍ଞାନିକ ଅନୁସନ୍ଧାନ ପ୍ରାସଙ୍ଗିକ ହେବ । ୧୯୨୯ ଖ୍ରୀଷ୍ଟାବ୍ଦରେ I.C.S. ନୀଳମଣି ସେନାପତି କୋଣାର୍କ ଦେଉଳରୁ ପଥର ଖଣ୍ଡିଏ ନେଇ ବୈଜ୍ଞାନିକ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କୁ ପରୀକ୍ଷା କରିବାକୁ ଦେଲେ । ଡକ୍ଟର ପରିଜା, ପଥରଟି ଉପରେ ଶିଉଳି ଓ ଶିଉଳିଜାତ ଉଦ୍ଭିଦ ସ୍ତର ପରୀକ୍ଷା କରି ୩୫୭ ସ୍ତର ପାଇଥିଲେ । ବର୍ଷକୁ ଗୋଟିଏ ଲେଖା ସ୍ତର ଜମାହେବା ହିସାବରେ ୩୫୭ ବର୍ଷ ଧରି ମନୁଷ୍ୟ ଚଳାଚଳ ହୋଇ ନଥିବା କଥା ନିର୍ଣ୍ଣୟ କଲେ ଏବଂ ସେଥିରୁ ଜଣାପଡୁଛି ୧୫୭୩ ଖ୍ରୀଷ୍ଟାବ୍ଦ ପରେ ମନ୍ଦିରର ରକ୍ଷଣାବେକ୍ଷଣ ହୋଇ ନାହିଁ । ସନ୍ଦର୍ଭଟି 'ଝଙ୍କାର' ଓ ପୁରୀ ଜିଲ୍ଲା ଗେଜେଟିୟରରେ ପ୍ରକାଶିତ ହୋଇଥିଲା ।[୧୬୧]

ମନ୍ଦିର ନିର୍ମାଣ ଶେଷ ହୋଇ ବିଗ୍ରହ ପ୍ରତିଷ୍ଠା ହୋଇଥିବା କଥା ପ୍ରମାଣିତ, ଯଦିଓ ମନ୍ଦିର ପ୍ରତିଷ୍ଠାର ବର୍ଷ ମାସ ଦିନ ଏ ଯାଏ ସନ୍ଦେହ ଘେରରେ । ଅନ୍ୟ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ମାଦଳା ପାଞ୍ଜି ବର୍ଣ୍ଣିତ ତଥ୍ୟ ଗ୍ରହଣ କରାଯାଇପାରେ; ୧୨୫୮ ଖ୍ରୀଷ୍ଟାବ୍ଦ, ମାର୍ଗଶିର ଶୁକ୍ଳପକ୍ଷ ସପ୍ତମୀ । (ପ୍ରଥମ ନରସିଂହଦେବଙ୍କ ପୋଥି ମାଦଳାପାଞ୍ଜି, ସଂଖ୍ୟା-୬ ।)

## ପତନର ଇତିହାସ :

ଏଠାରେ ମଧ୍ୟ ଇତିହାସଠାରୁ କିମ୍ବଦନ୍ତୀର ପ୍ରାଧାନ୍ୟ, କିମ୍ବଦନ୍ତୀରୁ ଇତିହାସର ଜଟ ସହଜରେ ଛଡ଼ା ଯାଇ ପାରୁନାହିଁ । ତଥାପି କିମ୍ବଦନ୍ତୀଗୁଡ଼ିକ ଯଥା ସମ୍ଭବ ପଛକୁ ରଖି ଇତିହାସ ଚର୍ଚ୍ଚା କରିବା ।

ଯୋଡ଼ିଏ ପ୍ରଶ୍ନ ଉଠୁଛି; ମନ୍ଦିରଟି ଭାଙ୍ଗିଲା କେବେ ଏବଂ କାହିଁକି ? ମନ୍ଦିରଟି ଗୋଟିଏ ଦିନରେ ଭାଙ୍ଗି ନାହିଁ; ସେ ଧ୍ୱଂସର ଇତିହାସ ଦୀର୍ଘ ଏବଂ କରୁଣ । ମନ୍ଦିରଟି ଭାଙ୍ଗିଲା କାହିଁକି, ସେ ସମ୍ବନ୍ଧରେ ଅନେକଗୁଡ଼ିଏ ମତ ପ୍ରଚଳିତ ଅଛି । ସେଗୁଡ଼ିକ ପ୍ରଥମେ ଆଲୋଚନା କରାଯାଉ ।

**୧. ମନ୍ଦିରଟି ଆଦୌ ସମ୍ପୂର୍ଣ୍ଣ ହୋଇ ନଥିଲା** : ବିଷୟଟି ଆଲୋଚିତ ହୋଇଛି ପୃ ୭୦ ଠାରୁ ୭୧ ମଧ୍ୟରେ ଏବଂ ପ୍ରମାଣିତ ହୋଇଛି, ମତଟି ଭୁଲ୍ ।

**୨. ଅଭିଶାପ** : ଋଷି ଗୌତମଙ୍କ ସ୍ତ୍ରୀ ଅହଲ୍ୟାଙ୍କୁ ଛଳନାରେ ଇନ୍ଦ୍ର ଉପଭୋଗ କରିଥିବାର କାହାଣୀ ସହିତ ସମସ୍ତେ ପରିଚିତ । ଏ କାହାଣୀର ଅନ୍ୟ ଗୋଟିଏ ଭାଷ୍ୟ ହେଉଛି, ସେହି ଲମ୍ପଟ ଇନ୍ଦ୍ର ନୁହଁନ୍ତି ସୂର୍ଯ୍ୟ । ତେଣୁ ମୁନିଙ୍କ ଅଭିଶାପରେ ସୂର୍ଯ୍ୟ ମନ୍ଦିର ଧ୍ୱଂସ ହେଲା । ଏ ଉଦ୍ଭଟ ଗଳ୍ପଟି ଅପ୍ରମାଣ କରିବାକୁ କରୁଣାସାଗର ଅଧପୃଷ୍ଠା ବ୍ୟୟ କରିଛନ୍ତି ।[୧୬୨]

**୩. ଚୁମ୍ବକୀୟ ଶକ୍ତି :** କଳସର ଚୁମ୍ବକୀୟ ଶକ୍ତିରେ ଜାହାଜଗୁଡ଼ିକ ଟାଣି ହୋଇ କୂଳରେ ପିଟିହେବା ଫଳରେ କ୍ଷତିଗ୍ରସ୍ତ ହେଉଥିବାରୁ ନାବିକମାନେ କଳସ କାଢ଼ି ନେଲେ । ତେଣୁ ମନ୍ଦିରଟି କ୍ରମେ ଭୁଶୁଡ଼ି ପଡ଼ିଲା । ଗୋଟିଏ ଜାହାଜକୁ ସମୁଦ୍ର ଭିତରୁ ଟାଣି ଆଣି ପାରିବା ଭଳି ସାଧାରଣ ଚୁମ୍ବକ ତ ଦୂରର କଥା, ଏପରିକି ବିଦ୍ୟୁତ୍‌ଚାଳିତ Electro-magnet ମଧ୍ୟ ଆଜିଯାଏ ତିଆରି ହୋଇନାହିଁ ।

କଳସ ନୁହେଁ, ସମଗ୍ର ମନ୍ଦିରର ବିପୁଳ ସୌନ୍ଦର୍ଯ୍ୟ, ଚୁମ୍ବକ ଭଳି ସମୁଦ୍ରଗାମୀ ଜାହାଜମାନଙ୍କୁ କୂଳକୁ ଟାଣି ଆଣୁଥିଲା ଏବଂ କୋଣାର୍କ ଗୋଟିଏ ବନ୍ଦର ତଥା ଐଶ୍ୱର୍ଯ୍ୟମୟ ନଗର ଥିବାରୁ[୧୬୩] ବାଣିଜ୍ୟିକ ଆଦାନ ପ୍ରଦାନ ଘଟୁଥିଲା । ହୁଏତ କୋଣାର୍କ ସ୍ଥପତିଙ୍କ ଏହା ମଧ୍ୟ ପରିକଳ୍ପିତ ଥିଲା ।

**୪. ଭୂମିକମ୍ପ :** ଏ ମତର ସର୍ବାଗ୍ରେ ଅଛନ୍ତି A. Stirling[୧୬୪]। କେତେଗୁଡ଼ିଏ ତଥ୍ୟ ବିଚାରକୁ ନେଲେ ଅଣବୈଷୟିକ ଲୋକ ମଧ୍ୟ ଏ ମତଟିର ଅସାରତା ବୁଝି ପାରିବ । କୋଣାର୍କ ଦେଉଳର ବିମାନର ଉଚ୍ଚତା ଥିଲା ୨୨୮ ଫୁଟ (ଅକଳିତ), ଦେବାଲର ବେଧ ୧୭ଫୁଟ୍ ୬ଇଞ୍ଚ (କୋଣ ପାଗ), ୨୪ ଫୁଟ୍ ୨ଇଞ୍ଚ (ରହପାଗ) । ତଥ୍ୟଟି ASIର ମୂଳ ମ୍ୟାପ୍‌ରୁ ସଂଗୃହୀତ । ଆଗପଟେ ଦେହକୁ ଦେହ ଲାଗି ରହିଛି ବିଶାଳ ଜଗମୋହନ ଏବଂ ଅନ୍ୟ ତିନି ପଟେ ପୁଣି ଦେହକୁ ଦେହ ଲାଗି ରହିଛି ତିନୋଟି ନିସ ଦେଉଳ । ସମସ୍ତ କିଛି ବସିଛି ଗୋଟିଏ ୧୬ଫୁଟ୍ ୬ଇଞ୍ଚ ଉଚ୍ଚର ନିଦା ପୀଠ ଉପରେ । ନିଅଁ (ସମ୍ପୂର୍ଣ୍ଣ ପୀଠଟି) ଭୂମି ତଳକୁ ଯାଇଛି ଶାସ୍ତ୍ରମତେ ମନ୍ଦିର ଉଚ୍ଚତାର ୧/୩ ଅଂଶ । ଏପରି ଗୋଟିଏ ନିଦା ମନ୍ଦିର ଦୋହଲାଇବାକୁ କେଉଁ ପ୍ରବଳ ସ୍ତରର ଭୂକମ୍ପର ପ୍ରୟୋଜନ ବୈଜ୍ଞାନିକମାନେ କହନ୍ତୁ ଏବଂ Richer Scale ରେ ସେ ସ୍ତରର ଭୂକମ୍ପ ବିଗତ ୮୦୦ ବର୍ଷ ଭିତରେ ଆଦୌ ହୋଇଛି କି ?

ବିଜ୍ଞାନ ଛାଡ଼ି ଦେଇ ସାଧାରଣ ବୁଦ୍ଧି ପ୍ରୟୋଗ କରିବା । ଏଡ଼େ ବିରାଟ ଭୂମିକମ୍ପ ହେଲା, ସଂଲଗ୍ନ ଜଗମୋହନର କିଛି କ୍ଷତି ହେଲା ନାହିଁ; ପୀଠ ଉପରେ ଗୋଟିଏ ଫାଟ ମଧ୍ୟ ହେଲା ନାହିଁ; ପୁରୀ ଦେଉଳର କିଛି ହେଲା ନାହିଁ; ନିକଟବର୍ତ୍ତୀ ଗ୍ରାମମାନଙ୍କର କୌଣସି କ୍ଷତି ହେଲାନାହିଁ– ଏହା ସମ୍ଭବ ନୁହେଁ । ଅଶୀ ଦଶକରେ ଗଡ଼ୱାଲ ଅଞ୍ଚଳରେ ଯେଉଁ ଭୂମିକମ୍ପ ହୋଇଥିଲା ତାହାର ଚିହ୍ନ ୨୦୦/୩୦୦ କିଲୋମିଟର ଦୂରରେ ଥିବା ଛୋଟ ଛୋଟ ମନ୍ଦିର ଏବେ ମଧ୍ୟ ବହନ କରୁଛି । ଭୂମିକମ୍ପ ଗୋଟିଏ ମନ୍ଦିରକୁ କେନ୍ଦ୍ର କରି ହୁଏନା ।

**୫. ବଜ୍ରପାତ :** ଏ ମତବାଦର ଉଦ୍‌ଗାତା ମଧ୍ୟ ସେଇ ଷ୍ଟାର୍ଲିଂ ସାହେବ । ବଜ୍ର ପଡ଼ି ବିମାନ ଭୁଶୁଡ଼ି ପଡ଼ିଲା ଅଥଚ ଜଗମୋହନର କିଛି ହେଲା ନାହିଁ, ଗଠନଗତ ସ୍ଥୂଳତା ଯୋଗୁଁ ଏହା ସମ୍ଭବ ନୁହେଁ । ବିଶନ୍ ସ୍ୱରୂପ, ଯିଏ ଏ ମନ୍ଦିରର ପ୍ରଥମ ବିରାଟ ସଂରକ୍ଷଣ କାର୍ଯ୍ୟ ସହିତ ଯୁକ୍ତ ଥିଲେ, କହୁଛନ୍ତି ୧୯୦୦ ଠାରୁ ୧୯୧୦ ମଧ୍ୟରେ ଦୁଇଥର ବିରାଟ ବଜ୍ରପାତ ହୋଇଥିଲା, ଅଥଚ ଜୀର୍ଣ୍ଣ ଜଗମୋହନର ଆଦୌ କିଛି ଅଧିକ କ୍ଷତି ହେଲାନାହିଁ ।[୧୬୫] ଏବେ ମଧ୍ୟ ବହୁ ମନ୍ଦିର ଅଛି ଯାହା ଉପରେ lightening arrester ଲଗା ହୋଇ ନାହିଁ କିନ୍ତୁ ସେଗୁଡ଼ିକର କିଛି ହେଉନାହିଁ, ବହୁ ବର୍ଷ ଧରି ବଜ୍ରପାତ ହେବା ସତ୍ତ୍ୱେ । ମନ୍ଦିର ନିର୍ମାଣ କୌଶଳରେ ଏମିତି କିଛି ଅଛି ଯେଉଥି ଯୋଗୁଁ ବିଦ୍ୟୁତ୍ ଆଘାତ grounding ହୋଇ ଯାଉଛି ମନ୍ଦିରର କ୍ଷତି ନ କରି ।

**୬. ମୂଳଦୁଆ ଦବିଗଲା :** ଏ ମତ ଏବେ ମଧ୍ୟ ସମୟେ ସମୟେ ଶୁଣାଯାଏ । ମୂଳଦୁଆ କେତେ ଦୃଢ଼ କରି ଗଢ଼ା ଯାଇଥିଲା ତାହାର ବିବରଣୀ ପୂର୍ବରୁ ବହୁ ବାର ଦିଆଯାଇଛି । R.C.C. କୁ ଛାଡ଼ି ଦେଲେ ଏତେ ଦୃଢ଼ ମୂଳଦୁଆ ଏବେ ମଧ୍ୟ ହୁଏ ନାହିଁ । ମନମୋହନ ଗାଙ୍ଗୁଲୀ ଯିଏ ନିଜେ ଜଣେ Chief Engineer ଥିଲେ; ଲେଖିଛନ୍ତି, "I examined the temple very carefully and did not notice anywhere the least trace of the subsidence of the soil. This would have, as a matter of course, occasioned vertical cracks in the structure and horizental one in the floor of the sanctum; the floor, I have noticed, is without any crack; moreover, the collapse due to the subsidence of the soil would have tumbled down the temple on one side which did not occur actually."[୧୬୬]

ଲେଖକ ଅଳ୍ପଦିନ ପୂର୍ବେ (୦୧.୧୧.୨୦୧୦) ASI ଓଡ଼ିଶା ମଣ୍ଡଳର Superintending Archaeologist ଶ୍ରୀ ଅଶୋକ କୁମାର ପଟେଲଙ୍କ ସହିତ ଆଲୋଚନା ସମୟରେ ଅବଗତ ହୋଇଥିଲେ, ଅଳ୍ପଦିନ ତଳେ ଅନୁସନ୍ଧାନ ସାରି ରୁଡ଼୍‌କୀ CBRI କହିଛନ୍ତି ଏବେ ମଧ୍ୟ ମୂଳଦୁଆ ସମ୍ପୂର୍ଣ୍ଣ ସ୍ଥିତିଶୀଳ ଅଛି ।

**୭. ଗଠନଗତ ଦୁର୍ବଳତା :** ଫର୍ଗୁସନଙ୍କ ମତ ଜଳାଜମିରେ ଗଢ଼ା ଯାଇଥିବାରୁ ମୂଳ ଦବି ଗଲା ।[୧୬୭] ସନ୍ଦେହଟି ଅମୂଳକ, ପୂର୍ବେ ଆଲୋଚିତ ହୋଇଛି । ରାଜେନ୍ଦ୍ରଲାଲ ମିତ୍ର, ଜଗମୋହନ ଭିତରେ ଗଡ଼ି ପଡ଼ିଥିବା ଖମ୍ବ ଓ ସିଲିଂ ଦେଖି ଭାବିନେଲେ ଭିତ୍ତିଭୂମି ଦୁର୍ବଳ ଥିଲା ଏବଂ ତାହାହିଁ ହୋଇଥିଲା ବିମାନ କ୍ଷେତ୍ରରେ [୧୬୮] । ମତଗୁଡ଼ିକ ପଛରେ ଗଭୀର ଅନୁସନ୍ଧାନ କିଛି ନାହିଁ । ଗାଙ୍ଗୁଲୀଙ୍କ ଯୁକ୍ତିପୂର୍ଣ୍ଣ ଅଭିମତ ଏ ସବୁ ସନ୍ଦେହକୁ ଧୂଳିସାତ୍ କରିଦେଉଛି । ମନେ ରଖିବାକୁ ହେବ ମନ୍ଦିର ସ୍ଥପତିଙ୍କ ପଛରେ ଅନ୍ୟୂନ ୧୦୦୦ ବର୍ଷର ବୈଷୟିକ ଜ୍ଞାନ ଓ ଦକ୍ଷତା ଥିଲା । ଏହା ଅଗ୍ରାହ୍ୟ ଅଥବା ନ୍ୟୂନ କରି ଦେଖିବା ପଛରେ ଜ୍ଞାନର ଅଭାବ ଓ ସଭ୍ୟତାର ଅହଂକାର ଛଡ଼ା ଅନ୍ୟ କିଛି ନାହିଁ ।

**୮. ବନ୍ଦର ପରିତ୍ୟକ୍ତ ହେଲାରୁ ମନ୍ଦିର ପରିତ୍ୟକ୍ତ ହେଲା :** କୋଣାର୍କ ଗୋଟିଏ ବନ୍ଦରଭିତ୍ତିକ ସହର ଥିଲା, ନଦୀ ଶୁଖିଗଲାରୁ ବନ୍ଦର ବନ୍ଦ ହେଲା ଏବଂ କ୍ରମେ ପରିତ୍ୟକ୍ତ ହେଲା । ଓଡ଼ିଶାରେ କୋଣାର୍କ ଛଡ଼ା ଆହୁରି ଅନେକ ବନ୍ଦର ଥିଲା । ସେ ସବୁ ବର୍ତ୍ତମାନ ମୃତ କିନ୍ତୁ ସେ ସବୁ ଲୋକାଳୟଶୂନ୍ୟ ହୋଇଯାଇ ନାହିଁ ।

**୯. ବାଲୁକାରାଶିର ଅତ୍ୟଧିକ ଉତ୍ତାପ :** କପିଳ ସଂହିତାର ଗୋଟିଏ ସୂତ୍ର (କପିଳ ସଂହିତା, ପୃ.୩୭) ଉଦ୍ଧାର କରି କରୁଣାସାଗର କହିଛନ୍ତି, ଅବାଧ ବାୟୁ ପ୍ରବାହ ଫଳରେ ବାଲିକୁଦ ସୃଷ୍ଟି ହେଲା ଏବଂ ପ୍ରବଳ ଉତ୍ତାପ ହେଲା । ତେଣୁ ଲୋକେ ପଳାୟନ କଲେ ଏବଂ ବାଲି ଝଡ଼ରେ ମନ୍ଦିର ପୋତି ହୋଇଗଲା ।

ବାଲି ଉପରେ ଉତ୍ତାପ ନୂଆ କଥା ନୁହେଁ, ସମୁଦ୍ର ତୀରରେ ତେବେ ଲୋକାଳୟ ଗଢ଼ି ଉଠନ୍ତା ନାହିଁ / ଯାହା ଘଟିଥିଲା ତାହା ସମ୍ପୂର୍ଣ୍ଣ ବିପରୀତ ।

**୧୦. ସମୁଦ୍ରରୁ ଉତ୍‌ଥିତ ପ୍ରବଳ ଜଳପ୍ଲାବନ :** ଏ ପ୍ରସଙ୍ଗରେ କରୁଣାସାଗର ଅନେକଗୁଡ଼ିଏ ତଥ୍ୟ ଉପସ୍ଥାପନ କରିଛନ୍ତି । କମିଶନର୍ E. T. Metcalf ଙ୍କ ଅଭିମତ, ୧୮୩୧ ସାଲର ଜଳ ପ୍ଲାବନରେ ୨୨,୦୦୦ ଅଧିବାସୀଙ୍କ ମୃତ୍ୟୁ, ୧୮୮୫ ରେ false point ବୁଡ଼ିଯିବା ଇତ୍ୟାଦି ଅନେକ କଥା କହିଛନ୍ତି, କିନ୍ତୁ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ନାହାଁନ୍ତି । ୨୨୮ ଫୁଟ୍ ଉଚ୍ଚ ନିଦା ମନ୍ଦିରକୁ ଗଡ଼େଇ ଦେଲା ଭଳି ତୋଫାନ୍ ସେ ସମୟରେ ହୋଇଥିଲା କି ନାହିଁ; ପାଣିପାଗ ବିଭାଗ କହୁନାହିଁ । ତେବେ ଏତିକି କହିଲେ ଯଥେଷ୍ଟ ହେବ, ସେପରି ଝଡ଼ ପ୍ରକୃତରେ ବହିଥିଲେ ପୁରୀ ମନ୍ଦିର ଅକ୍ଷତ ରହି ନଥାନ୍ତା ଏବଂ ଓଡ଼ିଶାର ସାଗରତୀରଠାରୁ ଅନ୍ୟୂନ ୫୦ କିଲୋମିଟର ଭିତରକୁ ଲୋକାଳୟ ନିଶ୍ଚିହ୍ନ ହୋଇ ଯାଇଥାଆନ୍ତା ।

## ମାଦଳା ପାଞ୍ଜି ଓ କଳାପାହାଡ଼ :

ମାଦଳାପାଞ୍ଜିର ପାଠୋଦ୍ଧାର କରି ମନମୋହନ ଗାଙ୍ଗୁଲୀ [୧୬୯], ବିଶନ୍ ସ୍ୱରୂପ [୧୭୦], କୃପାସିନ୍ଧୁ ମିଶ୍ର [୧୭୧] ଏବଂ ଷ୍ଟେଲା କର୍ମରୀଶ୍ [୧୭୨] ସମସ୍ତେ କହିଛନ୍ତି, ୧୫୬୮ ଖ୍ରୀଷ୍ଟାବ୍ଦରେ ବଙ୍ଗଦେଶରୁ ଆଗତ ମୁସଲମାନବାହିନୀ ସହିତ ଯୁଦ୍ଧରେ ମୁକୁନ୍ଦଦେବଙ୍କର ମୃତ୍ୟୁ ହୁଏ । ତାହା ପରେ ମୁସଲମାନ ସେନାଧ୍ୟକ୍ଷ କଳାପାହାଡ଼ ଧ୍ୱଂସ ଓ ଲୁଟପାଟର ପ୍ରବାହ ବୁହାଇ ଦିଏ । ସେ ପ୍ରବାହ ଯାଜପୁରଠାରୁ କୋଣାର୍କ ଯାଏ ବ୍ୟାପୀ ଥିଲା । ବିଶାଳ କୋଣାର୍କ ମନ୍ଦିରଟି ଭାଙ୍ଗି ନପାରି କଳସଟି ଧ୍ୱଂସ କରି ତାହା ଭିତରୁ ଧନରତ୍ନ ଲୁଟ୍‌କରି ନିଏ ସେ ଯବନ । କର୍ବେଲିଂ ପଦ୍ଧତିରେ ଗଠିତ ମନ୍ଦିରର ଭାରସାମ୍ୟ ରଖିବାରେ କଳସର ବିଶେଷ ଭୂମିକା ଥାଏ । କୋଣାର୍କ ରେଖଦେଉଳର କଳସର ଅକଳିତ ଓଜନ ୧୦୦ ଟନ୍ ଥିଲା । ଭାରସାମ୍ୟ ହଟି ଯିବାରୁ କ୍ରମେ ପଥରଗୁଡ଼ିକ କେନ୍ଦ୍ରଚ୍ୟୁତ ହୋଇ ରେଖଦେଉଳର ପତନ ହୁଏ ।

କରୁଣାସାଗର କିନ୍ତୁ କଳାପାହାଡ଼ର ଐତିହାସିକତା ସ୍ୱୀକାର କରୁନାହାନ୍ତି । ଯେହେତୁ ମାଦଳା ପାଞ୍ଜିର ବିଭିନ୍ନ ସଂସ୍କରଣ ଅଛି ଏବଂ ଅନେକେ ଅଭିଯୋଗ କରି ଥାଆନ୍ତି ଅମୁକ୍ ଅମୁକ୍ ତଥ୍ୟ ମାଦଳା ପାଞ୍ଜିରେ ନାହିଁ । ଷ୍ଟେଲା କର୍ମରୀଶ୍ ବ୍ୟବହାର କରିଥିବା ସଂସ୍କରଣର ପରିଚିତି ଦେଇଛନ୍ତି- Prachi edition- p.p.-62. fascicle No.7 of Mukundadev.

କୃପାସିନ୍ଧୁ କହିଛନ୍ତି, କଳାପାହାଡ଼ ଆସିବାର ଖବର ପାଇ ବ୍ରାହ୍ମଣମାନେ ବିଗ୍ରହ କାଢ଼ି ନେଇ କିଛି ଦିନ ଅନ୍ୟତ୍ର ଲୁଚାଇ ଥିଲେ ଏବଂ ପରେ ପୁରୀମନ୍ଦିର ବେଢ଼ା ମଧ୍ୟରେ ପ୍ରତିଷ୍ଠା କଲେ, ଯେଉଁଠାରେ ଏବେ ମଧ୍ୟ ସେ ବିଗ୍ରହ ପୂଜା ପାଉଛନ୍ତି । ଷ୍ଟେଲା କର୍ମରୀଶ୍ କିନ୍ତୁ ନିଜେ ଦେଇଥିବା ମାଦଳାପାଞ୍ଜିର ତଥ୍ୟକୁ ସନ୍ଦେହ ଚକ୍ଷୁରେ ଦେଖିଛନ୍ତି । କାରଣ ଆବୁଲ୍ ଫଜଲ୍‌ଙ୍କ ପ୍ରଶଂସା :

"The gandi was still intact and temple in worship some three hundred years later is evident by Abul Fazal's tribute to the ......, declaring that even those whose judgement is critical and who are difficult to please stand astonished at its sight."

ଷ୍ଟାର୍ଲିଂ, ହଣ୍ଟର ଇତ୍ୟାଦିଙ୍କ କଥା ଛାଡିଦେଲେ ମଧ୍ୟ ମନମୋହନ ଗାଙ୍ଗୁଲୀ ଓ ବିଶନ୍ ସ୍ୱରୂପଙ୍କଠାରୁ ଆଜିକାର କରୁଣାସାଗର ପର୍ଯ୍ୟନ୍ତ ପ୍ରାୟ ସମସ୍ତ ଐତିହାସିକ (ଏକ ମାତ୍ର କୃପାସିନ୍ଧୁଙ୍କ ବ୍ୟତୀତ) ମାଦଳାପାଞ୍ଜିର ଐତିହାସିକତା ନେଇ ଅଳ୍ପାଧିକ ସନ୍ଦିହାନ । ଅଥଚ ସେଇ ବିଦଗ୍ଧ ଐତିହାସିକମାନେ ଆବୁଲ୍ ଫଜଲ୍‌ଙ୍କୁ ବିନା ପ୍ରଶ୍ନରେ ଗ୍ରହଣ କରି ନେଇଛନ୍ତି; ଯେଉଁ ଆବୁଲ୍ ଫଜଲ୍ ନିଜର ସ୍ୱୀକାରୋକ୍ତି ଅନୁଯାୟୀ ଇତିହାସ ଲେଖିଥିଲେ ଶୁଣା କଥାରେ ଏବଂ ଉପସ୍ଥାପିତ କରିଛନ୍ତି କେତେକ ଅସମ୍ଭବ "ତଥ୍ୟ" (ପୃ-୧୨ ଦେଖନ୍ତୁ) । ଏହାର କାରଣ କ'ଣ ? ଆବୁଲ୍ ଫଜଲ୍ ଆକବରଙ୍କ ଦରବାରର ଜଣେ ବିଶିଷ୍ଟ ଅମୀର ଯାହାଙ୍କର ଉଚ୍ଛ୍ୱସିତ ପ୍ରଶଂସା ଦେଶ ବିଦେଶରେ 'ବ୍ୟାନର୍ ହେଡ୍ ଲାଇନ୍'ରେ ପ୍ରଚାର କରି ହେବ ଏବଂ ମାଦଳାପାଞ୍ଜି ଲେଖକ, କରୁଣାସାଗରଙ୍କ ଭାଷାରେ ଜଣେ "ସାଧାରଣ ପୁରୋହିତ" ମାତ୍ର ! ଷ୍ଟେଲା ପୁଣି ସେଇ ଏକା ଅନୁଚ୍ଛେଦରେ ଆବୁଲ୍ ଫଜଲ୍‌ଙ୍କ ଆଉ ଗୋଟିଏ ବାକ୍ୟର ଉଦ୍ଧୃତି ଦେଇଛନ୍ତି;

"........ six other temples within the enclosure and twenty two other in the vicinity."

ଏତେଗୁଡ଼ିଏ ମନ୍ଦିର ଗଲା କୁଆଡ଼େ ? ବିଶେଷ କରି ବେଢ଼ା ଭିତରେ ଇଟାରେ ତିଆରି ଭଗ୍ନାବିଷ୍ଣୁ ମନ୍ଦିରକୁ ମିଶେଇଲେ ୪ଟିରୁ ଅଧିକ ମନ୍ଦିର ନାହିଁ । ଯେବେ ଜଗମୋହନକୁ ଅଲଗା ମନ୍ଦିର ଧରା ଯାଇଥାଏ, ତେବେ ହେବ ପାଞ୍ଚ । ଏ ଇତିହାସ କିଭଳି ଇତିହାସ ? (ରେଖାଚିତ୍ର ୮ ଦେଖନ୍ତୁ)

ଷ୍ଟେଲା ପୁଣି ମାଦଳା ପାଞ୍ଜି ଉଲ୍ଲେଖ କରି (ଖୋର୍ଦ୍ଧା ରାଜବଂଶର ପୁରୁଷୋତ୍ତମ ଦେବଙ୍କର ବିଡ଼ା ସଂଖ୍ୟା ୩) କହିଛନ୍ତି, ଏ ରାଜାଙ୍କ ରାଜତ୍ୱ କାଳ ଯାଏ (୧୬୦୭ ଠାରୁ ୧୬୨୧) ମନ୍ଦିରରେ ପୂଜାପାଠ ହେଉଥିଲା ଏବଂ ରଥଯାତ୍ରା ସମୟରେ ବାର୍ଷିକ ଅନୁଦାନ ଆସୁଥିଲା । ସେ ରାଜା କୋଣାର୍କ, ଲିଙ୍ଗରାଜ ଓ ଜଗନ୍ନାଥ ମନ୍ଦିରତ୍ରୟର ଜରିବ ମଧ୍ୟ କରାଇଥିଲେ । ପୁରୁଷୋତ୍ତମ ପରବର୍ତ୍ତୀ ରାଜା ନରସିଂହଦେବଙ୍କ (୧୬୨୧-୧୬୪୭) ସମୟରେ ୧୬୨୮ ଖ୍ରୀଷ୍ଟାବ୍ଦରେ ବିମାନର ପୂର୍ବ ଦିଗର ଗଜସିଂହ ଖସି ପଡ଼ି ଜଗମୋହନର ପ୍ରଭୂତ କ୍ଷତି ହୁଏ (ନରସିଂହ ଦେବଙ୍କ ବିଡ଼ା ସଂଖ୍ୟା ୬) ଏବଂ ତାହାପରେ ସମସ୍ତ ଅନୁଦାନ ବନ୍ଦ ହୋଇଯାଏ ।[୧୭୩] ଏ ତଥ୍ୟକୁ ମନମୋହନ ଗାଙ୍ଗୁଲୀ ମଧ୍ୟ ସମର୍ଥନ କରୁଛନ୍ତି ।[୧୭୪] ଖୋର୍ଦ୍ଧା ରାଜା ନରସିଂହଦେବ ୧୬୨୮ ଖ୍ରୀଷ୍ଟାବ୍ଦରେ କୋଣାର୍କ ମନ୍ଦିରର ମାପଚୁପ୍ କରାଇଥିଲେ । (ବିଶନ୍ ସ୍ୱରୂପ- ପୃ-୯୭) ସେତେବେଳେ କଳସ ଏବଂ ଅଁଳା ନଥିଲା । ଏ ମାପଚୁପ୍‌କୁ ପରବର୍ତ୍ତୀ ଯୁଗର ଐତିହାସିକମାନେ ଗୁରୁତ୍ୱ ଦେଇଥାଆନ୍ତି କାରଣ ସେତେବେଳକୁ ବିମାନ ଅନ୍ତର୍ହିତ ହୋଇ ସାରିଥିଲା ।

ଏଠାରେ କିଛି ବିଭ୍ରାନ୍ତି ନଜରକୁ ଆସୁଛି । ଯେବେ କଳା ପାହାଡ଼ର ଆଗମନ (୧୫୬୮) ପୂର୍ବରୁ ବିଗ୍ରହ ସ୍ଥାନାନ୍ତରିତ ହୋଇ ସାରିଥିଲା, ୧୬୨୮ ଯାଏ ସେଠାରେ ପୂଜାପାଠ ହେଉଥିଲା କିପରି ? ଗୋଟିଏ ଯୁକ୍ତିଯୁକ୍ତ ଅନୁମାନ କରାଯାଇପାରେ । ବଡ଼ ବଡ଼ ମନ୍ଦିରଗୁଡ଼ିକ ଗୋଟିଏ ଗୋଟିଏ ବହୁମୁଖୀ ଅନୁଷ୍ଠାନ । ତାହା ଉପରେ ଧର୍ମାଚରଣ ଛଡ଼ା ନାନା ଅର୍ଥନୈତିକ କ୍ରିୟାକାଣ୍ଡ ଯୋଡ଼ା ହୋଇଥାଏ ଏବଂ ଅନେକ ମଣିଷର ଜୀବିକା ମଧ୍ୟ । ବିଗ୍ରହ ସ୍ଥାନାନ୍ତରିତ ହୋଇଗଲେ ମଧ୍ୟ ସ୍ୱାର୍ଥଗୁଡ଼ିକ ହଠାତ୍ ଲୋପ ପାଇଯାଏ ନାହିଁ । ପୂଜକକୁଳ କୌଣସି ନା କୌଣସି ଉପାୟରେ କୌଳିକବୃତ୍ତି ବଜାୟ ରଖି ଥାଆନ୍ତି । ଦୁଇଟି ଉଦାହରଣ ଦିଆଯାଇ ପାରେ ।

ବ୍ରିଟିଶ୍ ଅମଳର ସଂରକ୍ଷଣ କାର୍ଯ୍ୟ ମଧ୍ୟରେ (୧୯୦୨ ଠାରୁ ୧୯୧୦), ୧୯୦୯ ସାଲରେ ବାଲିତଳୁ ଖୋଳା ହୋଇ ବାହାରିଲା ପୁରାତନ ସୂର୍ଯ୍ୟ ମନ୍ଦିର ।[୧୭୫] (ଯାହାକୁ ମାୟାଦେବୀ, ରାମଚଣ୍ଡୀ ଇତ୍ୟାଦି ନାମରେ ଡକା ହେଲା) । ଏହାର ୪ବର୍ଷ ପୂର୍ବେ ୧୯୦୫ ସାଲରେ ନାଟମଣ୍ଡପ ବାଲି ତଳୁ ବାହାରି ଥିଲା ଏବଂ ଦେଖା ଯାଇଥିଲା ୧୬ ଫୁଟ୍ ୩ ଇଞ୍ଚ୍ ଉଚ୍ଚ ପୀଠ ଉପରେ ନାଟମଣ୍ଡପ ଭିତର ଖୁଣ୍ଟକୁ ଆଉଜା ହୋଇ ରହିଛି ଗୋଟିଏ ସୂର୍ଯ୍ୟ ବିଗ୍ରହ । (ଫଟୋ-୮ ଚିହ୍ନିତ ହେଲା, ପୁରାତନ ସୂର୍ଯ୍ୟ ମନ୍ଦିରର ପଶ୍ଚିମ ପାର୍ଶ୍ୱଦେବତା ରୂପେ । ବର୍ତ୍ତମାନ ଦିଲ୍ଲୀ National Museum ରେ ଗଚ୍ଛିତ)[୧୭୬] । ବାଲିରେ ପୋତି ହୋଇଯିବା ପୂର୍ବେ ଲୁଣ୍ଠନର



ଫଟୋ-୮ : ନାଟମଣ୍ଡପର ପୁରାତନ ସୂର୍ଯ୍ୟ ମନ୍ଦିରର ପଶ୍ଚିମ ସୂର୍ଯ୍ୟ (୧୯୦୨-୧୯୦୩)

ଉଦ୍ଦେଶ୍ୟ ଥିଲେ କିଏ କାହିଁକି ମୂର୍ତ୍ତିଟିକୁ ଏତେ ଦୂର ଏତେ ଉଚ୍ଚକୁ ବୋହି ଆଣିଥିବ ? ସେ ମନ୍ଦିରକୁ ଲାଗି ଦକ୍ଷିଣ ପଟ ବେଢ଼ାରେ ଗୋଟିଏ ଦ୍ୱାର ଥିଲା ସମୁଦ୍ରବାଟେ ମୂର୍ତ୍ତି ପାଚାର କରିଦେବା ପାଇଁ । ବିଶ୍ୱାସ କରିବାର କାରଣ ଅଛି । ନାଟମଣ୍ଡପଟି ପୂଜା ଆରାଧନା ପାଇଁ ଉଦ୍ଦିଷ୍ଟ ନହୋଇଥିବାରୁ ଏବଂ ଚାରିପଟ ଖୋଲା ଥିବାରୁ ମୁସଲମାନ ଆକ୍ରମଣରୁ ବର୍ତ୍ତି ଯାଇଥିଲା । ଆହୁରି ମଧ୍ୟ ବିଶ୍ୱାସ କରାଯାଇପାରେ ପୂଜକମାନେ ମୂର୍ତ୍ତିଟିକୁ ଏଠାରେ ଆଣି ପୂଜା କରୁଥିଲେ ଏବଂ ଏ ବିଶ୍ୱାସର ଅନ୍ୟ ଗୋଟିଏ କାରଣ ଦ୍ୱିତୀୟ ଉଦାହରଣ ।

**ନବଗ୍ରହ ଶିଳାଟି** କଲିକତା ମ୍ୟୁଜିୟମ୍‌କୁ ସ୍ଥାନାନ୍ତରିତ କରିବାର ଦୁଇଟି ବ୍ୟର୍ଥ ଚେଷ୍ଟା କରାଯାଇଥିଲା । (୧୮୬୮ ଏବଂ ୧୮୯୨) ପ୍ରଥମ ପ୍ରଚେଷ୍ଟାଟି ତ୍ୟାଗ କରାଗଲା ପରିବହନ ସମସ୍ୟା ଯୋଗୁଁ । ଦ୍ୱିତୀୟ ପ୍ରଚେଷ୍ଟାଟି ତ୍ୟାଗ କରାଗଲା ସ୍ଥାନୀୟ ପୂଜକ ଓ ଲୋକମାନଙ୍କ ମିଳିତ ବାଧା ଫଳରେ । ସେତେବେଳକୁ ସେମାନେ ସେଇ ଖୋଲା ଆକାଶ ତଳେ ଫୁଲ, ଚନ୍ଦନ, ସିନ୍ଦୂର ଦେଇ ନବଗ୍ରହ ପୂଜା କରୁଥିଲେ [୧୭୭]ଯାହା ବର୍ତ୍ତମାନ ଗୋଟିଏ ହଲ୍ ଘର ଭିତରେ ସଂପୂର୍ଣ୍ଣ ଅନୁଷ୍ଠାନର ମାନ୍ୟତା ପାଇଛି ।

ଗୋଟିଏ ବିଷୟ ଉଲ୍ଲେଖନୀୟ । ପୃଷ୍ଠା ୨୦୭ରେ ଉପସ୍ଥାପିତ ପଶ୍ଚିମ ପାର୍ଶ୍ୱଦେବଙ୍କ ଆଲୋକଚିତ୍ର (ଫଟୋ ନଂ ୭୩-ଛ) ଯେବେ ପୂର୍ବ ପୃଷ୍ଠାରେ କଥିତ ମୂର୍ତ୍ତି (ଫଟୋ ନଂ-୮) ହୋଇଥାଏ, ତେବେ ଦିଲ୍ଲୀ ମ୍ୟୁଜିୟମ୍‌କୁ ଯିବା ପୂର୍ବେ ଖଣ୍ଡିତ ହୋଇଥିଲା । ଏହା ଆହୁରି ଅନୁସନ୍ଧାନ ସାପେକ୍ଷ ।

ବିଶ୍ୱାସ କରାଯାଇ ପାରେ, ୧୫୬୮ରେ ପ୍ରଥମ ମୁସଲମାନ ଆକ୍ରମଣର ଷାଠିଏ ବର୍ଷ ପରେ ଗଜସିଂହର ପତନ ପରେ ମଧ୍ୟ ଓଡ଼ିଶାର ହିନ୍ଦୁ ରାଜାମାନେ ସୂର୍ଯ୍ୟ ମନ୍ଦିରର ଧାର୍ମିକ ପ୍ରଥା ବହୁ ଦିନ ଜୀବିତ ରଖିଥିଲେ । ସେମାନେ ଆଶା କରୁଥିଲେ, ଏ ଅମର ସୃଷ୍ଟି ପୁନର୍ବାର ଗଢ଼ି ଉଠିବ । ଭାରତର ପଶ୍ଚିମ ଉପକୂଳରେ ତ ପୁଣି ପ୍ରସିଦ୍ଧ ସୋମନାଥ ମନ୍ଦିର ମୁସଲମାନ ଆକ୍ରମଣରେ ୬ଥର ଧ୍ୱଂସ ହୋଇ ୬ଥର ପୁନର୍ନିର୍ମାଣ ହୋଇଛି ।[୧୭୮] କୋଣାର୍କ ଉପରେ ମୁସଲମାନ ଆକ୍ରମଣ କଳାପାହାଡ଼ ପରେ ଶେଷ ହେଲା ନାହିଁ । କରୁଣାସାଗରଙ୍କ ଉପସ୍ଥାପିତ ତଥ୍ୟ ଅନୁଯାୟୀ ଷୋଡଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ **ବାକର୍ ଖାଁ ନାଜମା ସାନୀ** ନାମକ ଓଡ଼ିଶା ସୁବେଦାର କୋଣାର୍କ ଆକ୍ରମଣ କରିଥିଲେ ଏବଂ ତାଙ୍କର ଅତ୍ୟାଚାର ସୀମାତିରିକ୍ତ ହେଲାରୁ ଦିଲ୍ଲୀ ବାଦଶାହ ବାକର ଖାଁଙ୍କୁ ୨୪ ଜୁନ୍ ୧୬୩୨ରେ ଓଡ଼ିଶାରୁ ସ୍ଥାନାନ୍ତର କରିଥିଲେ ।[୧୭୯]

ପ୍ରଶ୍ନ ଉଠିପାରେ, ଅର୍ଦ୍ଧ-ଶତାବ୍ଦୀ ପୂର୍ବେ କଳାପାହାଡ଼ ମନ୍ଦିର ଲୁଣ୍ଠନ କରିବା ପରେ ବାକର ଖାଁ କି ଉଦ୍ଦେଶ୍ୟରେ ପୁଣି ଆକ୍ରମଣ କରିଥିଲେ । ଦୁଇଟି କାରଣ ଥାଇପାରେ । (୧) ପ୍ରଥମ ଆକ୍ରମଣ ପରେ ମଧ୍ୟ ପୂଜାପାଠ ବନ୍ଦ ହେଉ ନଥିଲା ଏବଂ Iconoclast ସତ୍ ମୁସଲମାନର (!) ଏହା ସହ୍ୟ ହେଉ ନଥିଲା । (୨) ଦ୍ୱିତୀୟ କାରଣ ପୁଣି ସେଇ ରତ୍ନଲୋଭ । ବିମାନର ଗଣ୍ଡି ଭିତରେ ଦୁଇ ତିନୋଟି ମୁଦ (ceiling) ଥାଏ, ଯେଉଁଥିରେ ପ୍ରଚଳିତ ବିଶ୍ୱାସ ଅନୁଯାୟୀ ମନ୍ଦିରର ଧନରତ୍ନ ଗଚ୍ଛିତ ରହୁଥିଲା ।[୧୮୦] ସୋମନାଥ ମନ୍ଦିର ଉପରେ ହୋଇଥିବା ଅନେକଗୁଡ଼ିଏ ଆକ୍ରମଣରୁ ୧୦୨୫ ଖ୍ରୀଷ୍ଟାବ୍ଦରେ ହୋଇଥିବା ଆକ୍ରମଣର ଗୋଟିଏ ବିବରଣୀ ମିଳୁଛି ପୂର୍ବୋକ୍ତ ସନ୍ଦର୍ଭରୁ । ସେଥିରେ ଲୁଣ୍ଠନର ଆକଳନ କରାଯାଇଛି କୋଡ଼ିଏ ହଜାର ଦିନାର । ଓଡ଼ିଶା ମନ୍ଦିରରେ ଥିବା ମୁଦ ଭିତରକୁ କେହି ପ୍ରବେଶ କରିବାକୁ ସାହସ କରୁ ନଥିଲେ, ସଂସ୍କାର ତଥା ବହୁବର୍ଷରୁ ଜମା ହୋଇଥିବା ବିଷ ବାଷ୍ପ ଭୟରେ । (୬୯ପୃଷ୍ଠାରେ ଥିବା ରେଖାଚିତ୍ର-୪ ଦେଖନ୍ତୁ) । ଯବନ ଦସ୍ୟୁଙ୍କ କଥା ନିଆରା । ସେମାନେ ବାରେ ବାରେ ଦେବାଳ ଭାଙ୍ଗିବାର ଚେଷ୍ଟା କରିଥିବେ । ୨୦/୨୫ ଫୁଟ୍ ନିଦା ଦେବାଲ୍ ଭାଙ୍ଗିବା ସହଜ ନୁହେଁ । ତେବେ ୫୦/୬୦ ବର୍ଷ ଭିତରେ (କଳସ ଓ ଅଁଳା ପଡ଼ିବା ପରେ) ପଥରସବୁ ହୁଗୁଳା ହୋଇ ଯାଇଥିବ । ରତ୍ନ ସିଂହାସନ ଭିତରେ ମଧ୍ୟ ଧନରତ୍ନ ଜମା ଥିବା କଥିତ ଅଛି । ସିଂହାସନଟି ତିନି ଚାରି ପ୍ରସ୍ତ ପଥରରେ ତିଆରି ବଡ଼ ସିନ୍ଦୁକ ଭଳି ଭ୍ରମ ହୁଏ; ତାହାର ଉପର ପ୍ରସ୍ତ ମଧ୍ୟ ଖୋଲାଯାଇ ଥାଇପାରେ । ସମସ୍ତ ପାରିପାର୍ଶ୍ୱିକ ତଥ୍ୟ ବିଚାରକୁ ନେଲେ ଯବନମାନଙ୍କର ଲୁଣ୍ଠନ ଯେ ଖାଲି କଳସରେ ସୀମିତ ଥିଲା, ମନେ ହୁଏ ନା । ଷାଠିଏ ବର୍ଷ ଭିତରେ ସେମାନେ ତ ଖାଲି ପର୍ଯ୍ୟଟକ ଭଳି ବୁଲିଗଲେ ନାହିଁ ! ବିଶ୍ୱାସ କରିବାର କାରଣ ରହୁଛି, କୋଣାର୍କ ଦେଉଳ ପତନ ପଛରେ ଯବନ ଆକ୍ରମଣର ଭୂମିକା କମ୍ ନଥିଲା ।

# ଗଜସିଂହର ପତନ :

ବିମାନ ଦେହରୁ ଖସି ପଡ଼ିଥିବା ଗଜସିଂହଟି ବିଶାଳ; ବର୍ତ୍ତମାନ ତିନିଖଣ୍ଡରେ ପଡ଼ି ରହିଛି ଜଗମୋହନ ଉତ୍ତର ପଟେ । (ଚିତ୍ର ନଂ.୯ ଦ୍ରଷ୍ଟବ୍ୟ) । ଅଧିକାଂଶ ଐତିହାସିକ ବିଶ୍ୱାସ କରିଥାଆନ୍ତି, ଗଜସିଂହ ଜଗମୋହନ ମୁଣ୍ଡରେ ପଡ଼ି ସେଠାରୁ ଗଡ଼ି ଯାଇ ଉତ୍ତର ପଟେ ତିନି ଖଣ୍ଡ ହୋଇ ପଡ଼ିଥିଲା । ଘଟଣାଟି ଠିକ୍ ଏଇପରି ଘଟି ନଥିଲା । ଗଜସିଂହଟିର ମାପ ଥିଲା : ସିଂହ ମସ୍ତକରୁ ହସ୍ତୀ ପାଦ ଯାଏ ୨୦ ଫୁଟ୍, ତଳ ପଟା- ୧୫ ଫୁଟ୍ ଲମ୍ବ × ୪ ଫୁଟ୍ ୭ ଇଞ୍ଚ ପ୍ରସ୍ଥ ଏବଂ ଗଣ୍ଡି ବାହାରକୁ ବାହାରିଥିବା ଅଂଶ ୭ ଫୁଟ ।[୧୮୧] କୃପାସିନ୍ଧୁଙ୍କ ଅନ୍ଦାଜ ଏହା ଭୂମିରୁ ପ୍ରାୟ ୧୭୦ ଫୁଟ ଉଚ୍ଚରେ ଥିଲା, କରୁଣାସାଗରଙ୍କ ଆକଳନ ୧୫୦ ଫୁଟ । ଏ ଉଚ୍ଚତାର ସଠିକ୍ ମାପର ପ୍ରୟୋଜନ ଅଛି ।

ମନମୋହନ ଗାଙ୍ଗୁଲୀ ଭୁବନେଶ୍ୱର ଓ ପୁରୀର ଅନେକଗୁଡ଼ିଏ ମନ୍ଦିର ମାପ କରି କେତେଗୁଡ଼ିଏ କାର୍ଯ୍ୟକାରୀ ସୂତ୍ର ବାହାର କରିଛନ୍ତି । ଆନୁପାତିକ ହିସାବରେ ଗଜସିଂହ, ଗଣ୍ଡିର ଅଧାରେ ଅର୍ଥାତ୍ ରହପାଗ ଉପରେ ବସା ଯାଇଥାଏ [୧୮୨] । ଗଣ୍ଡିର ଆକଳିତ ଉଚ୍ଚତା ୧୧୭ ଫୁଟ,



**ଫଟୋ-୯ : ବିମାନରୁ ଖସିପଡ଼ିଥିବା ଖଣ୍ଡବିଖଣ୍ଡିତ ଗଜସିଂହ**

ବାଡ଼ର ଆକଳିତ ଉଚ୍ଚତା ୫୮ ଫୁଟ ୬ ଇଞ୍ଚ ଓ ପୀଠରେ ମପା ଯାଇଥିବା ଉଚ୍ଚତା ୧୬ ଫୁଟ୍ ୬ ଇଞ୍ଚ (୧୦୮ ପୃଷ୍ଠା ଦ୍ରଷ୍ଟବ୍ୟ) । ତେଣୁ ଭୂମିଠାରୁ ଗଜସିଂହର ସ୍ଥାନ ଥିଲା ୧୩୩ ଫୁଟ ୬ ଇଞ୍ଚ ଉଚ୍ଚରେ ଯାହା ଜଗମୋହନର ଉଚ୍ଚତା (୧୨୮ ଫୁଟ୍ ୨ ଇଞ୍ଚ, ୧୧୧ପୃଷ୍ଠା ଦ୍ରଷ୍ଟବ୍ୟ) ସହ ପ୍ରାୟ ସମାନ । ଗଜସିଂହ ଥିବା ସ୍ଥାନରୁ ଜଗମୋହନର ମୁଣ୍ଡ ପ୍ରାୟ ୫୦ ଫୁଟ୍ ଦୂରରେ (ଚିତ୍ର ନଂ୭ ଦ୍ରଷ୍ଟବ୍ୟ) ଏବଂ ଗଜସିଂହଠାରୁ ୫ଫୁଟ୍ ୪ଇଞ୍ଚ୍ ନିମ୍ନ ଲେଭେଲ୍‌ରେ । ଏ ବିଶାଳ ଗଜସିଂହର ଓଜନ କେତେ ଥିଲା ଓ ବାହାରକୁ ଝୁଲୁଥିବା ଅଂଶର ଓଜନ କେତେ, ତାହାର ଆକଳନ କରିବାର ପ୍ରୟୋଜନ ଅଛି । ନାଟମଣ୍ଡପ ସମ୍ମୁଖରେ ରଖା ଯାଇଥିବା ଗଜସିଂହ ଯୋଡ଼ି ମଧ୍ୟରୁ ଗୋଟିକର ମାପ ନେଇ ଓଜନ ଆକଳନ କରିଥିଲେ ଗାଙ୍ଗୁଲୀ[୮୩] । ସେ ମାପଗୁଡ଼ିକ ୮ ଫୁଟ ୪ ଇଞ୍ଚ × ୪ ଫୁଟ ୮ ଇଞ୍ଚ ଓ ୧ ଫୁଟ ୨ ଇଞ୍ଚ × ୯ ଫୁଟ ୨ ଇଞ୍ଚ (ଉଚ୍ଚତା) ଯାହାର ଘନଫଳ ପ୍ରାୟ ୩୬୦ ଘନଫୁଟ । କନ୍ଦା ପଥରର ଓଜନ ଘନଫୁଟ ପ୍ରତି ୧୭୧ ପାଉଣ୍ଡ ହୋଇଥିବାରୁ ସେ ଗଜସିଂହର ଆକଳିତ ଓଜନ ୨୭.୪୮ ଟନ୍ । ଦୃଶ୍ୟତଃ ଉପରୁ ପଡ଼ିଥିବା ଗଜସିଂହ, ଏ ଗଜସିଂହର ପ୍ରାୟ ଦୁଇଗୁଣ ଅର୍ଥାତ୍ ପ୍ରାୟ ୫୬ ଟନ୍ ଏବଂ ଶୂନ୍ୟରେ ଝୁଲିଥିବା ଅଂଶର ଓଜନ ପ୍ରାୟ ୨୫ ଟନ୍ । ଯେହେତୁ ଏହା ଗୋଟିଏ **Cantelever,** ଏହାକୁ ସ୍ୱସ୍ଥାନରେ ରଖିବା ପାଇଁ ଏହାର ପଛ ଅଂଶ, ଅର୍ଥାତ୍ **Tenon** ଉପରେ ଅନ୍ତତଃ ଶହେ ଟନ୍ ପଥର ଥିବା ପ୍ରୟୋଜନ ହୋଇଥିବ । ଲକ୍ଷଣୀୟ, ସେ ସ୍ଥାନ ଉପରକୁ ଗଣ୍ଡିର ଅନ୍ତତଃ ୫୦ ଫୁଟ ଓ ତାହା ଉପରକୁ ୩୬ ଫୁଟ ଉଚ୍ଚ ମସ୍ତକ ଥିଲା ଯାହାର ଓଜନ ୧୦୦ ଟନ୍‌ରୁ ବହୁ ଅଧିକ ଥିଲା । ଏହା ଆକଳନ କରିବାର କାରଣ, କଳସ ସ୍ଥାନଚ୍ୟୁତ ହେବା ସଙ୍ଗେ ସଙ୍ଗେ ଗଜସିଂହର ପତନ ଘଟି ନଥିବ । ୧୫୬୮ ଖ୍ରୀଷ୍ଟାବ୍ଦରେ ପ୍ରଥମ ଆକ୍ରମଣର ୬୦ ବର୍ଷ ପରେ ଅର୍ଥାତ୍ ୧୬୨୮ ଖ୍ରୀଷ୍ଟାବ୍ଦରେ ଗଜସିଂହର ପତନ ବିଶ୍ୱାସଯୋଗ୍ୟ । ଏ ସମସ୍ତ ଆକଳନ ଶତ ପ୍ରତିଶତ ନିର୍ଭୁଲ୍ ନହେଲେ ମଧ୍ୟ ନିର୍ଭରଯୋଗ୍ୟ । ପତନ ଯେତେବେଳେ ଘଟିଲା ପ୍ରାୟ ପଚାଶ ଟନ୍ ଶୀଳା ୫୦ ଫୁଟ ଦୂରରେ ଜଗମୋହନ ମୁଣ୍ଡରେ ପଡ଼ି ପାରେ ନା । ତାହା ଘଟିଥିଲେ କ୍ଷୟ କ୍ଷତିର ପରିମାଣ ଅନ୍ୟ ରକମର ହୁଅନ୍ତା । ଗଜସିଂହ ଜଗମୋହନର ପ୍ରଥମ ପୀଢ଼ ଉପରେ ପଡ଼ିବା ସ୍ୱାଭାବିକ ଏବଂ ଏହା ହିଁ ଘଟିଥିଲା । ସେ ପୀଢ଼ ଅଂଶ ଧ୍ୱଂସ କରି ଭିତର ସିଲିଂ ଓ ତାହାର ଭାର ବହନ କରୁଥିବା ଚାରିଟି ଖମ୍ବ ଭାଙ୍ଗି ତିନି ଖଣ୍ଡ ହୋଇ ଗଜ ସିଂହ ପଡ଼ିଲା ଜଗମୋହନ ଭିତରେ ଅଥବା ଗଇଣ୍ଠାଳ ମଧ୍ୟରେ ।

ବହୁ ବର୍ଷ ପରେ ରାଜେନ୍ଦ୍ର ଲାଲ ମିତ୍ର ସେ ଭଙ୍ଗା ଖମ୍ବଗୁଡ଼ିକ ଦେଖି ଭାବିଥିଲେ, ମନ୍ଦିରର ନିଅଁ ଦବିଗଲା ।[୮୪] ଜଗମୋହନର ଯେଉଁ ଅଂଶ ନଷ୍ଟ ହୋଇଥିଲା ତାହାର ଗୋଟିଏ ଫଟୋଚିତ୍ର ମିଳୁଛି (ଫଟୋ-୧୦) । ଫଟୋଟି ୧୯୦୦ ଖ୍ରୀଷ୍ଟାବ୍ଦର ସଂରକ୍ଷଣ ସମୟରେ ଉତ୍ତୋଳିତ ।

ଏହା ନ ଘଟି ଯେବେ ଗଜସିଂହ ଜଗମୋହନର ଉତ୍ତର ଦିଗକୁ ଗଡ଼ିଥାଆନ୍ତା ତେବେ ପ୍ରଥମେ ବିପୁଳ କ୍ଷତି ଘଟନ୍ତା ପ୍ରଥମ ପୀଢ଼ର ଉତ୍ତର-ପଶ୍ଚିମ କୋଣରେ, ଯାହା ହୋଇନାହିଁ ଏବଂ ତାହା ପରେ ପ୍ରଥମ ପୃଷ୍ଠ ଉପର ଦଶ ବାର ଫୁଟ ଓ ପୀଠ ବାଡ଼ର ପ୍ରଭୃତ କ୍ଷତି ଘଟାଇ ତଳେ ପଡ଼ନ୍ତା । ଏହା ମଧ୍ୟ ହୋଇ ନାହିଁ ।

ଇଂଜିନିୟର ବିଶନ୍ ସ୍ୱରୂପ ଯିଏ, ୧୯୦୧-୦୬ ସଂରକ୍ଷଣ କାର୍ଯ୍ୟ ସହିତ ସଂପୃକ୍ତ ଥିଲେ କହିଛନ୍ତି ;

" ---- fell with a great force on the Jagamohan and causing a big hole in the pyramidal roof, rolled along towards the north, on which side it is still lying."[୧୮୫]

ପୀଢ଼ର ମଧ୍ୟସ୍ଥଳରେ ଗୋଟିଏ ବଡ଼ ଗାତ କରିସାରିବା ପରେ ବିଶାଳ ଗଜ ସିଂହ କିପରି ଅନ୍ୟୁନ ୫୦/୫୫ ଫୁଟ ଉତ୍ତରକୁ ସମାନ୍ତରାଳ ଗତି କରିବା ପରେ ପ୍ରଥମେ ପୃଷ୍ଠ ପିଠିରେ ଏବଂ ତାହା ପରେ ତଳେ ପଡ଼ିଲା ଏବଂ ସେ ସବୁ ଅଂଶର କିଛି କ୍ଷତି ଘଟିଲା ନାହିଁ, ଏହା ଦୁର୍ବୋଧ୍ୟ । (ରେଖାଚିତ୍ର ୯,୧୦ ଓ ୭ ଦେଖନ୍ତୁ, ପୃଷ୍ଠା- ୧୧୦,୧୧୩ ଓ ୧୦୦) । ଏହାପରେ ବିଶନ୍ ସ୍ୱରୂପ ଆଉ ଗୋଟିଏ ବିସ୍ଫୋରକ ଉକ୍ତି କହିଛନ୍ତି, ଯାହାର କୌଣସି ବୈଜ୍ଞାନିକ ଭିତ୍ତି ନାହିଁ ।

"The violent shock caused much damage to the roof of the Jagamohan on the south and south-westside, for the heavy lion rolling towards north weighted the roof un-equally and the corbelling on the south and south-west being partly relieved of the pressure came down.[୧୮୫]

ଜଗମୋହନର ପୀଢ଼ ଗୋଟିଏ କାଠ ପୀଢ଼ା ନୁହେଁ ଯେ, ଗୋଟେ ପଟେ ଓଜନ ବଢ଼ିଲେ ଅନ୍ୟ ପଟ ଟେକି ହୋଇଯିବ । ଉତ୍ତରକୁ ଗଡ଼ିଯିବାର ଅନୁମାନର କୌଣସି ଭିତ୍ତି ନାହିଁ । କୋର୍‌ବେଲିଂ (corbelling)ନୀତିରେ ବଳୟର କୌଣସିଠାରେ କ୍ଷତି ହେଲେ ବଳୟଟି ଭିତରକୁ



ଫଟୋ-୧୦ : ପତିତ ଗଜସିଂହ ଦ୍ୱାରା ଜଗମୋହନରେ କ୍ଷତ (୧୯୦୦-୧୯୦୩)



ଫଟୋ-୧୧(କ) : ଦକ୍ଷିଣ ଦିଗରୁ ଜଗମୋହନ (୧୮୯୦)

ସଂକୁଚିତ ହେବାକୁ ଚେଷ୍ଟା କରିବ ଏବଂ ମାତ୍ର ଗୋଟିଏ ଅଂଶ ବାହାରେ ଗଦା ହେବ ନାହିଁ । ଏହା ଘଟିଥିଲେ ତିନିଟି ପୀଢ଼ର ଅନ୍ୟ କୌଣସି ଅଂଶ ଭୁଶୁଡ଼ି ନ ପଡ଼ି କେବଳ ରହପାଗ ଉପରେ ପ୍ରଥମ ପୀଢ଼ର ଛଅଟି ଥାକ (ଏପରିକି ତା' ଉପରେ ବାଜେଣି କନ୍ୟା ଓ ଭୈରବ ମଧ୍ୟ ଅକ୍ଷତ ଅଛନ୍ତି) ଏବଂ ଦକ୍ଷିଣ ଦିଗର ଦ୍ୱାର ଅଂଶ ଧ୍ୱଂସ ହୁଅନ୍ତା ନାହିଁ। (ଫଟୋ ୧୧-କ ଓ ୧୧-ଖ)

ପ୍ରଥମଟି(ଫଟୋ ୧୧-କ) ପ୍ରଥମ ସଂରକ୍ଷଣ କାର୍ଯ୍ୟର ଠିକ୍ ପୂର୍ବରୁ ଏବଂ ଦ୍ୱିତୀୟଟି (୧୧-ଖ) ସାଦା ପଥର ଯୋଡ଼ି ସଂରକ୍ଷଣ କରିବା ପରେ ଚିତ୍ର ବନ୍ଦୀ ହୋଇଛି। ପରିଷ୍କାର ଜଣାପଡୁଛି କେହି ଯେପରି ସେ ଅଞ୍ଚଳରୁ କିଛି ତାଡ଼ି ନେବାର ଚେଷ୍ଟା କରିଛି । କିନ୍ତୁ ମନ୍ଦିର ବାଡ଼ କୌଣସି ଦିଗକୁ ନ ଢ଼ଳି ଖାଡ଼ା ଅଛି । ଏକମାତ୍ର ପୂର୍ବଦ୍ୱାର ଛଡ଼ା ଆଉ ସବୁ ଦ୍ୱାର ଉପରେ ନବଗ୍ରହ ଖଣ୍ଡ ଖଣ୍ଡ କରି ନଅ ଖଣ୍ଡ ପଥରରେ ଗଢ଼ା ହୋଇଥିଲା ।[୧୮୬] ଏହା ଛଡ଼ା New Lightର ପୃଷ୍ଠା ୨୦୬ ଏବଂ ଷ୍ଟାର୍ଲିଂ ପ୍ରଦତ୍ତ ରେଖା ଚିତ୍ରରୁ [୧୮୭] ଜଣାପଡୁଛି ମୁଗୁନି ପଥରର ସାତ ଡାଳିବିଶିଷ୍ଟ ଦ୍ୱାର ବନ୍ଧ (ପୂର୍ବ ଦ୍ୱାରରେ ଏବେ ମଧ୍ୟ ଅଛି) ବାହାରେ ଗୋଟିଏ ବିଶାଳ ତୋରଣ ଥିଲା ଯାହା ପ୍ରଥମ ପୀଢ଼ ଛୁଇଁଥିଲା । ସେ ତୋରଣ ମଧ୍ୟ କାରୁକାର୍ଯ୍ୟପୂର୍ଣ୍ଣ ଥିଲା । ଶିଳ୍ପତସ୍କରମାନଙ୍କ ପାଇଁ ଏ ପରିତ୍ୟକ୍ତ ମନ୍ଦିର ସୁନା ଖଣି ଥିଲା । ଦକ୍ଷିଣ ଦିଗର ବେଢ଼ାଦ୍ୱାରଠାରୁ ସମୁଦ୍ର ଆହୁରି ଘୁଞ୍ଚି ଯାଇ ନଥିଲା । ଶୂନ୍ୟକୁ ଲମ୍ଫ ଦେବାର ଭ୍ରମ ସୃଷ୍ଟି କରୁଥିଲେ ମଧ୍ୟ ଜଗମୋହନର ଉତ୍ତର, ଦକ୍ଷିଣ ଦିଗକୁ ଉଡ଼ି ବୁଲିବାର ସାମର୍ଥ୍ୟ ନଥିଲା ୫୬ ଟନ୍ ଓଜନ ଗଜସିଂହଟିର।

**ଇଂଜିନିୟର ବିଶନ୍ ସ୍ୱରୂପ** ତାଙ୍କ କୋଣାର୍କ ପୁସ୍ତକର ଅଷ୍ଟମ ପରିଚ୍ଛେଦର ପ୍ରଥମ ଧାଡ଼ିରେ ଲେଖିଛନ୍ତି, "There is not much to say about the engineering of the Orissa Temples." ଏବଂ ୫୮ ପୃଷ୍ଠାର ଶେଷ ଧାଡ଼ିରେ ପୁଣି ଲେଖିଛନ୍ତି "It is most likely that it was errected without any scientific method----." ଏପରି ମଣିଷ ନିକଟରୁ ଗଭୀର ଅନୁସନ୍ଧାନର ଆଶା କରିବା ବୃଥା । ତିନିଖଣ୍ଡରେ ବିଭକ୍ତ ଗଜସିଂହର ବର୍ତ୍ତମାନ ସ୍ଥିତି ବିଷୟରେ ଏତିକି କୁହାଯାଇ ପାରେ, ଭିତରୁ ନିଷ୍କାସିତ ପଥର କୁଢ଼ ମଧ୍ୟରୁ କୌଣସି ଏକ ବିଜ୍ଞ ପୁରାତତ୍ତ୍ୱବିତ୍ ପରେ ଖଣ୍ଡଗୁଡ଼ିକୁ ଚିହ୍ନଟ କରି ଏଠାରେ ରଖିଛନ୍ତି ।

ବାକର ଖାଁ ପ୍ରସଙ୍ଗରେ କରୁଣାସାଗର କହିଛନ୍ତି; ମାଦଳାପାଞ୍ଜି, ଜାହାଙ୍ଗୀର ଓ ଶାହାଜାହାନଙ୍କୁ ଗୋଳେଇ ମିଶେଇ ପକେଇଛି । ତାହାପରେ କଟାକ୍ଷ କରି କହିଛନ୍ତି, ଜଣେ ସାଧାରଣ ପୁରୋହିତଠାରୁ ଏହା ଠାରୁ ଅଧିକ ଆଶା କରାଯାଏନା । ଏ କଟାକ୍ଷ ପ୍ରକୃତରେ 'Ordinary Priest' ପାଇଁ ଉଦ୍ଦିଷ୍ଟନୁହେଁ, ମାଦଳାପାଞ୍ଜିର ବିଶ୍ୱାସନୀୟତା ପ୍ରତି ଉଦ୍ଦିଷ୍ଟ ।[୧୮୮] କରୁଣାସାଗରଙ୍କ ଉପସ୍ଥାପନାରୁ ଗୋଟିଏ ବିଷୟ ବୁଝା ପଡୁନାହିଁ । ଜାହାଙ୍ଗୀରଙ୍କ ମୃତ୍ୟୁ ୨୮ ଅକ୍ଟୋବର ୧୬୨୭ ଏବଂ ଶାହାଜାହହାନଙ୍କ ସିଂହାସନ ଆରୋହଣ ୪ ଫେବ୍ରୁଆରି ୧୬୨୮ । ମଝିର ତିନି ମାସର ବ୍ୟବଧାନ, ରାଜସିଂହାସନ କ'ଣ ଖାଲି ପଡ଼ିଥିଲା ? ଡଃ କରୁଣାସାଗର ବେହେରା ଅବଶ୍ୟ ଜଣେ ଅସାମାନ୍ୟ ଐତିହାସିକ, କିନ୍ତୁ ଏ ବିଷୟରେ ସେ ଆଉ କେତୋଟି ମନ୍ତବ୍ୟ ଦେଇଛନ୍ତି ଯାହା ବିବଦମାନ ହେବାକୁ ବାଧ୍ୟ ।

ଡକ୍ଟର ବେହେରା ଲେଖିଛନ୍ତି, କଳାପାହାଡ଼ ମନ୍ଦିର ଧ୍ୱଂସ ହେବା ପାଇଁ ଦାୟୀ ଏହାର କୌଣସି ଠୋସ୍ ପ୍ରମାଣ ନାହିଁ ।[୧୮୯] ୧୪୦ ପୃଷ୍ଠାରେ ପୁଣି କହିଛନ୍ତି, ମନ୍ଦିର ଅପବିତ୍ର କରିଦେବାର ଅନୁମାନ କୌଣସି **ମୋଗଲ ସୂତ୍ରରୁ** ପ୍ରମାଣିତ ହେଉନାହିଁ, ପରବର୍ତ୍ତୀ ପୃଷ୍ଠାରେ (ପୃ୧୪୧) ପୁଣି କହିଛନ୍ତି, ଓଡ଼ିଶାର ମୁସଲିମ୍ ଗଭର୍ଣ୍ଣରଙ୍କ (ବାକର୍ ଖାଁ) ସଠିକ୍ ଭୂମିକା ଏଯାଏ ପ୍ରମାଣିତ ହୋଇନାହିଁ । ସମ୍ମାନୀୟ ପ୍ରଫେସର୍ ସାହେବ କ'ଣ ଆଶା କରୁଥିଲେ, ମୁସଲମାନଙ୍କ ଦ୍ୱାରା ଲୁଣ୍ଠନ ଓ ଅନ୍ୟାନ୍ୟ ଅତ୍ୟାଚାରର ପୁଙ୍ଖାନୁପୁଙ୍ଖ ତାଲିକା ତଥା ବିବରଣୀ ସେ ସମୟର ମୋଗଲ ଇତିହାସରେ ମିଳିବ ! ତେବେ କ'ଣ ସେ ନିଜେ ଉଲ୍ଲେଖ କରିଥିବା J. N. Sarkarଙ୍କ Studies in Mughal India P-203 (ପାରସ୍ୟ ଦେଶୀୟ ମର୍ଶର-ଉଲ୍-ଉମାରା) ମିଥ୍ୟା; ଷ୍ଟେଲା କର୍ମଚାରୀଙ୍କଠାରୁ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ପର୍ଯ୍ୟନ୍ତ ସମସ୍ତେ ଭୁଲ୍ ବୟାନ ଦେଲେ ? ଏବେକାର ଭାରତବର୍ଷର ସାମ୍ପ୍ରଦାୟିକ ଅସହିଷ୍ଣୁତାର ବାତାବରଣରେ ଅପ୍ରିୟ ସତ୍ୟକଥନର ଫଳାଫଳ ନେଇ ହୁଏତ ଚିନ୍ତିତ ଥିଲେ ଡଃ ବେହେରା ?

ଏଠାରେ ଆଉ ଗୋଟିଏ ବିଷୟ ଆଲୋଚନା କରିବା ପ୍ରାସଙ୍ଗିକ ହେବ । ଯବନ ଆକ୍ରମଣରେ ମନ୍ଦିରର ବିପୁଳ କ୍ଷତି ହେବାର ମତଟିକୁ ବିଶେଷ ଗୁରୁତ୍ୱ ଦିଆଯାଉନାହିଁ । କୁହାଯାଉଛି ଉପରୁ କଳସ କାଢ଼ି ନେବା ଫଳରେ ପଥରଗୁଡ଼ିକ କ୍ରମେ ଖସି ପଡ଼ିଲା ଏବଂ ଗଜସିଂହ ମୂର୍ତ୍ତି ଖସିପଡ଼ିବା ପରେ ଧ୍ୱଂସର ଗତି ଦ୍ରୁତତର ହେଲା ।



**ଫଟୋ-୧୧(ଖ) : ଦକ୍ଷିଣ ଦିଗରୁ ଜଗମୋହନ (ସଂରକ୍ଷଣ ପରେ)**

ପୂର୍ବେ ଆଲୋଚିତ ତଥ୍ୟ ଅନୁଯାୟୀ ପ୍ରଥମ ଯବନ ଆକ୍ରମଣ ହୁଏ ୧୫୬୮ରେ ଏବଂ ଗଜସିଂହର ପତନ ହୁଏ ୧୬୨୮ ଖ୍ରୀଷ୍ଟାବ୍ଦରେ। ଗଜସିଂହ ଯେଉଁ ଉଚ୍ଚତାରେ ପ୍ରୋତ୍‌ଥିତ ହୋଇଥିଲା ତାହା ଉପରକୁ କଳସ ଅପସାରିତ ହେବା ପରେ ମଧ୍ୟ ଆହୁରି ୬୦/୬୫ ଫୁଟ୍ ପ୍ରସ୍ତର ବଳୟ ରହୁଛି। ଗାଙ୍ଗୁଲୀ କହିଛନ୍ତି, କଳସ ନ ଥାଇ ମଧ୍ୟ ବହୁ ମନ୍ଦିର ବହୁ ବର୍ଷ ତିଷ୍ଠି ଥିବା ସେ ଦେଖିଛନ୍ତି ।[୧୧୦] ଖାଲି କଳସଟି କାଢ଼ି ନେଲେ, ୬୦/୬୫ ଫୁଟ୍ ପ୍ରସ୍ତର ବଳୟ (ପ୍ରାୟ ନିଦା- ରେଖାଚିତ୍ର ନଂ-୯, ପୃଷ୍ଠା-୧୧୦ ଦେଖନ୍ତୁ) ଷାଠିଏ ବର୍ଷ ଭିତରେ ଆପେ ଆପେ ଖସି ପଡ଼ିବ ନାହିଁ ଏବଂ ତାହା ଅନ୍ତତଃ ବହୁସ୍ତର ନ ଖସିବା ଯାଏଁ ଗଜ-ସିଂହ ପଡ଼ିବ ନାହିଁ, କାରଣ ତାହାର ପୁଚ୍ଛ ଅଂଶ (tenon) କୁ ଉପର ବଳୟ ମାଡ଼ି ବସି ରହିଥିବ। ସେ ବିଶାଳ ପ୍ରସ୍ତର ସ୍ତରକୁ ସ୍ଥାନଚ୍ୟୁତ କରିବାକୁ ନିଶ୍ଚୟ ବାହାରୁ ହସ୍ତକ୍ଷେପ ଘଟିଥିବ। ଜଗମୋହନଟି ଖାଡା ଥିଲେ ମଧ୍ୟ ତାହାର ସମ୍ପୂର୍ଣ୍ଣ ଦକ୍ଷିଣ ଦିଗଟି ଯେପରି ଭାବେ କ୍ଷତିଗ୍ରସ୍ତ ହୋଇଛି ତାହା କଳସ ପଡ଼ିଗଲେ ହେବନାହିଁ; ବାହାରୁ ଆକ୍ରମଣ ଅବଶ୍ୟମ୍ଭାବୀ।

ଆହୁରି ଗୋଟିଏ ବିଷୟ ମଧ୍ୟ ବିବେଚନା ଯୋଗ୍ୟ। ବେଢ଼ାର ଦକ୍ଷିଣ-ପଶ୍ଚିମ କୋଣରେ ଥିବା ପୁରାତନ ସୂର୍ଯ୍ୟ ମନ୍ଦିର (ଅକଳିତ ଉଚ୍ଚତା ୨୫'-୩'') ଏପରି ଥୁଣ୍ଟାକରି ଭାଙ୍ଗିଲା କିଏ ? ଏ ସମସ୍ତ ସୂଚିତ କରୁଛି, ବିଶେଷ କରି ସୂର୍ଯ୍ୟ ମନ୍ଦିର ଉପରେ କାହାରି ଆକ୍ରୋଶ ମାତ୍ରାତିରିକ୍ତ ଥିଲା।

ଏବେ ଯାଏ ଯେତେ ତଥ୍ୟ ଉପସ୍ଥାପିତ ହେଲାଣି ତାହା ବିଚାରକୁ ନେଲେ ମାନିବାକୁ ପଡ଼ିବ ୧୫୬୮ ଠାରୁ ୧୬୨୮ ଯାଏ ଷାଠିଏ ବର୍ଷରୁ ଅଧିକ ସମୟ ଯବନ ଆକ୍ରମଣରେ ଏ ମନ୍ଦିରର ପ୍ରଭୂତ କ୍ଷତି ଘଟେ। କୋଣାର୍କର ଦୁର୍ଭାଗ୍ୟ ଏଇଠାରେ ଶେଷ ହୁଏନା।

୧୫୬୮ରେ ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଓଡ଼ିଶା ଚାଲିଯାଏ ବଙ୍ଗଳାର ଆଫଗାନ୍ ଶାସକ ହାତକୁ। କିନ୍ତୁ ଏହାର ଆହୁରି ୩୪ ବର୍ଷ ପରେ, ଅର୍ଥାତ୍ ୧୫୮୨ରେ ଶାସନ ଚାଲିଯାଏ ମୋଗଲ ହାତକୁ ଯାହାର ଗୋଟିଏ ପ୍ରତିଭୂ ଥିଲେ ପୂର୍ବେ କଥିତ ବାକର ଖାଁ। ଦିଲ୍ଲୀର ମୋଗଲ ଶାସକ ହୁଏତ ଏପରି ବର୍ବର ନଥିଲେ, ଯାହାର ଉଦାହରଣ ବାକର ଖାଁର ବିତାଡ଼ନ କିନ୍ତୁ କୋଣାର୍କ ମନ୍ଦିର ମରାମତି କରି ପୁଣି ବିଗ୍ରହ ସ୍ଥାପନ ସହଜ ନଥିଲା।

ଏଣେ ଜଗନ୍ନାଥ ଧର୍ମର ପ୍ରଭାବ ଏତେ ବଢ଼ିଗଲା ଯେ କପିଳ ସଂହିତାରେ ଲେଖାହେଲା, ଶ୍ରୀ ପୁରୁଷୋତ୍ତମ ସବୁ କ୍ଷେତ୍ରର ରାଜା ଏବଂ ସମସ୍ତ ଦେବ ଦେବୀଙ୍କ ରାଜା। ବଳରାମ ଦାସ 'ବଟ ଅବକାଶ'ରେ କହିଲେ, ଅନ୍ୟାନ୍ୟ ଦେବଦେବୀଙ୍କ ମେଳରେ ସୂର୍ଯ୍ୟଦେବ ଜଗନ୍ନାଥଙ୍କ ଦର୍ପଣ ବହନ କରିଲେ। ପ୍ରଜାର ଭାବାବେଗ ଜଗି ରାଜା, ନଚେତ୍ ଯେଉଁ ରାଜନୈତିକ ପରିବେଶରେ ଜଗନ୍ନାଥ ମନ୍ଦିର ବାରମ୍ବାର ଆକ୍ରାନ୍ତ ହୋଇ ମଧ୍ୟ ବାରମ୍ବାର ଗଢ଼ା ହୋଇଥିଲା, ସେଇ ପରିବେଶରେ କୋଣାର୍କ ମଧ୍ୟ ପୁନଃପ୍ରତିଷ୍ଠିତ ହୋଇପାରନ୍ତା। ରାଜାମାନେ ଆଉ ଆଗେଇଲେ ନାହିଁ ।[୧୧୧]

କରୁଣାସାଗରଙ୍କ ବହୁ ବର୍ଷ ପୂର୍ବରୁ ବିଶନ୍ ସ୍ୱରୂପ କହିଛନ୍ତି- ରାଜଧାନୀ ପୁରୀରୁ ଖୋର୍ଦ୍ଧା ହଟିଯିବା ଫଳରେ ଅଥବା ମନ୍ଦିର ଅପବିତ୍ର ହୋଇଯିବାଯୋଗୁଁ ଆଉ ମରାମତି ହେଲା ନାହିଁ । ଶାସ୍ତ୍ରରେ ଲେଖା ହେଲା - ଶୈବ ମନ୍ଦିର ଅପବିତ୍ର ହୋଇଯିବା ପରେ ପୁନଃ ନିର୍ମାଣ ହେବ ନାହିଁ ।[୧୧୨] ବିଶନ୍ ସ୍ୱରୂପ ଅବଶ୍ୟ କଥିତ ଶାସ୍ତ୍ରର ନାମ ଦେଇ ନାହାନ୍ତି ଏବଂ ସୂର୍ଯ୍ୟ ମନ୍ଦିର ଶୈବ ମନ୍ଦିର ନୁହେଁ, ଯଦିଓ ଅମିୟ ଭୂଷଣ ମଧ୍ୟ ଏହା କହିଛନ୍ତି । (ପୃଷ୍ଠା-୪୯ଦେଖନ୍ତୁ) । କିନ୍ତୁ ଏକଥା ସତ ଯେ ପ୍ରବଳ ଜଗନ୍ନାଥ ଧର୍ମ କ୍ରମେ ସମଗ୍ର ଓଡ଼ିଶାର ମାନସିକତାକୁ ଆଚ୍ଛନ୍ନ କରି ପକାଇଲା। ଲାଙ୍ଗୁଳା ନରସିଂହଦେବ ସୂର୍ଯ୍ୟପୂଜା ଆଳରେ ଯେଉଁ ବିଶ୍ୱଜନୀନ ଦେବାର୍ଚ୍ଚନାର ସ୍ୱପ୍ନ ଦେଖିଥିଲେ ତାହାର ସମାପ୍ତି ଘଟିଲା। କୋଣାର୍କ ଦେଉଳର ଅବକ୍ଷୟ କିନ୍ତୁ ଏଇଠାରେ ଶେଷ ହେଲା ନାହିଁ।

ଅନ୍ୟ ଗୋଟିଏ କାରଣ ମଧ୍ୟ ଉଲ୍ଲେଖଯୋଗ୍ୟ । ବନ୍ଦରଭିତ୍ତିକ ସହର କୋଣାର୍କର ବନ୍ଦର କେବେ ଲୋପପାଇଲା ତାହାର ସଠିକ୍ ଇତିହାସ ନାହିଁ । ଆଜି ଯାହା ଦେଖାଯାଉଛି, କୋଣାର୍କ ଚାରିପଟେ ଥିବା ନଦୀଗୁଡ଼ିକର ସ୍ମୃତି ମାତ୍ର ପଡ଼ି ରହିଛି । ଏ ସମସ୍ତ ଧାରା ଶୁଷ୍କ ହୋଇ କେବେ ମନ୍ଦିର ପରିତ୍ୟକ୍ତ ହେଲା କୁହାଯାଇ ପାରୁନାହିଁ, କିନ୍ତୁ ଏହା ନିଶ୍ଚୟ ଘଟିଥିଲା ଏବଂ ସ୍ଥାନଟି ପରିତ୍ୟକ୍ତ ହୋଇ ଲୋକାଳୟଗୁଡ଼ିକ ଦୂରକୁ ଘୁଞ୍ଚିଗଲା । ଏଣେ ସମୁଦ୍ର ଘୁଞ୍ଚିଯିବାରୁ ବାଲୁକାବେଳାରୁ ଅବାଧ ବାଲୁକା ଝଡ଼ କ୍ରମେ ପରିତ୍ୟକ୍ତ ସଭ୍ୟତାକୁ ଗ୍ରାସ କଲା ।

ମଧ୍ୟ ଯୁଗରୁ ଏ ଯୁଗ ଯାଏ (କାବୁଲର ବହମତି ବୁଦ୍ଧ) କଟ୍ଟରପନ୍ଥୀ ମୁସଲମାନମାନଙ୍କ ଦ୍ୱାରା ମୂର୍ତ୍ତି ଓ ମନ୍ଦିର ଭଙ୍ଗା ଯିବାର ବହୁ ନଜିର୍ ଅଛି। କିନ୍ତୁ ହିନ୍ଦୁଙ୍କ ଦ୍ୱାରା ହିନ୍ଦୁ ମନ୍ଦିର ନଷ୍ଟ କରାଯିବାର ଇତିହାସ (ଆଂଶିକ ହେଲେ ମଧ୍ୟ) କୋଣାର୍କ ଛଡ଼ା ଅନ୍ୟତ୍ର କେଉଁଠାରେ ହୋଇଥିବାର ଇତିହାସ ନାହିଁ ଏବଂ ଏହା ମଧ୍ୟ ହୋଇଥିଲା ସେଇ ଧର୍ମ ନାମରେ (ପରବର୍ତ୍ତୀ ଅଧ୍ୟାୟରେ ଏହା ବର୍ଣ୍ଣିତ) ।



ଫଟୋ-୧୨ : ୧୮୩୭ରେ ଜେମ୍ସ୍ ଫର୍ଗୁସନ୍‌ଙ୍କ ଦ୍ୱାରା ପ୍ରସ୍ତୁତ କୋଣାର୍କର ତୈଳଚିତ୍ର

## ମରହଟ୍ଟାମାନଙ୍କର ଅବଦାନ ! :

ଅଷ୍ଟାଦଶ ଶତାବ୍ଦୀ ବେଳକୁ ମରହଟ୍ଟାମାନେ ଓଡ଼ିଶା ଅଧିକାର କରିଗଲେଣି । ମନେହୁଏ ସେମାନେ ସେତେବେଳକୁ ସେମାନଙ୍କର ଚିରାଚରିତ ଗଣେଶ ଆରାଧନା ଛାଡ଼ି ଜଗନ୍ନାଥ ଭକ୍ତ ପାଲଟି ଗଲେଣି । ସେଇମାନେ ହିଁ ୧୭୬୫ ଖ୍ରୀଷ୍ଟାବ୍ଦରେ କୋଣାର୍କଠାରୁ ଅରୁଣସ୍ତମ୍ଭ ବୋହି ଆଣି ଜଗନ୍ନାଥ ମନ୍ଦିର ସମ୍ମୁଖରେ ଥାପି ଦେଲେ ।[୧୯୩] ସେଇମାନେ ପୁଣି କୋଣାର୍କ ବେଢ଼ା ଭାଙ୍ଗି ସେଠାକାର ପଥର ଆଣି ପୁରୀରେ ଏକ ଅଖ୍ୟାତ ମନ୍ଦିର ଗଢ଼ି ପକାଇଲେ ଏବଂ ବେଢ଼ା ଉପରେ ଥିବା ଅର୍ଦ୍ଧ-ଚନ୍ଦ୍ରାକାର ସ୍ତମ୍ଭ ପଥର ବୋହି ଆଣି ପୁରୀ ମେଘନାଦ ପ୍ରାଚୀରରେ ଲଗେଇଲେ । କୋଣାର୍କରୁ ବହୁ ଶିଳ୍ପସୁଷମ ମୂର୍ତ୍ତି ଆସି ଭୋଗ ମଣ୍ଡପରେ ଲାଗିଲା ।[୧୯୪]

ମରହଟ୍ଟା ଆକ୍ରମଣକାରୀମାନେ ଅତ୍ୟାଚାରୀ 'ବର୍ଗୀ' ନାମରେ ଖ୍ୟାତ ଥିଲେ । ମନେ ହୁଏ ସେମାନଙ୍କର ତଥାକଥିତ ଜଗନ୍ନାଥ ଭକ୍ତି ପଛରେ ରାଜନୈତିକ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ଥିଲା । ସେମାନଙ୍କର ବହୁ ପରେ ଇଂରେଜମାନଙ୍କର ପ୍ରଥମ ଯୁଗରେ East India Company ଅଠରନଳା ପାଖରେ ଜଗନ୍ନାଥ ମନ୍ଦିର ପରିଚାଳନା ପାଇଁ କର ବସେଇ ଖ୍ରୀଷ୍ଟାନ୍ ଯାଜକମାନଙ୍କର ରୋଷର ପାତ୍ର ହୋଇଥିଲେ କିନ୍ତୁ ସଂଖ୍ୟାଧିକ ଜଗନ୍ନାଥ ଭକ୍ତଙ୍କୁ ତୁଷ୍ଟ କରି ପ୍ରଥମେ ସେମାନଙ୍କର ବାଣିଜ୍ୟ ଓ ପରେ ରାଜ୍ୟ ବିସ୍ତାର କରିବାକୁ ସକ୍ଷମ ହୋଇଥିଲେ[୧୯୫] । ଲୁଣ୍ଠନକାରୀର କୌଣସି ଧର୍ମ ନାହିଁ । ଐତିହ୍ୟ ନାମକ ଚିନ୍ତା ତ ବହୁ ଦୂରରେ । ମରହଟ୍ଟା ଦସ୍ୟୁମାନେ ଶାସକ ହୋଇ ମଧ୍ୟ ସେଇ ନୀତିରେ ପରିଚାଳିତ ହୋଇଥିଲେ ।

୧୭୬୫ରେ ଅରୁଣସ୍ତମ୍ଭ ଅପସାରିତ ହେବା ପରେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ବିତିଗଲା । ଇତି ମଧ୍ୟରେ ବଣିକର ଛଦ୍ମବେଶରେ ଇଂରେଜ ଏ ଦେଶରେ ପ୍ରବେଶ କଲା । (East India Company, ସୁତାନୁଟୀରେ ପଦାର୍ପଣ କଲେ ୧୬୯୦ ସାଲରେ । କଲିକତା ଗଢ଼ି ଉଠିବାକୁ ଡେରି ଅଛି ) । ସ୍ଥାନୀୟ ଗ୍ରାମବାସୀ ଧର୍ମ ନାମରେ ଏବଂ ବିଦେଶୀ ଦସ୍ୟୁ ଐତିହ୍ୟ ସଂରକ୍ଷଣ ନାମରେ, କିଛି ଶିଳ୍ପ କର୍ମ ଲୁଟ୍ କଲେ, କୋଣାର୍କ ପ୍ରାୟ ବିସ୍ମୃତ ହେଲା । ବିମାନ ଖଣ୍ଡ ଖଣ୍ଡ ହୋଇ ଖସିବାକୁ ଲାଗିଲା, କ୍ରମେ ବାଲୁକା ସ୍ତୂପ ଓ ଅରଣ୍ୟ ଗ୍ରାସ କରିଗଲା ସୂର୍ଯ୍ୟ ମନ୍ଦିର ।

# ଦେଶୀୟ ନରପତିଙ୍କ ଲୁଣ୍ଠନ ଓ ଉଡ଼୍‌ବର୍ଣ୍ଣଙ୍କ ଭୂମିକା :

୫୬ ବର୍ଷ ପରେ ପୁଣି ପଙ୍କ ଉଠିଛି ୧୮୨୧ ଖ୍ରୀଷ୍ଟାବ୍ଦରେ । ଏହାପରର ଇତିହାସ, ବିଦେଶୀ ଶାସକମାନଙ୍କର ସଂରକ୍ଷଣ ପ୍ରଚେଷ୍ଟା ଓ ଜଣେ ଦେଶୀୟ ନରପତିଙ୍କ ଧର୍ମ ନାମରେ ଲୁଣ୍ଠନ ସହିତ ଜଡିତ ।

୧୮୨୧ – କର୍ଣ୍ଣେଲ୍ ମ୍ୟାକେଞ୍ଜି ଆସି ଦେଖିଲେ, ରେଖଦେଉଳର ୧୨୦' ଦିଶୁଛି, ଆଉ ସମସ୍ତ ବାଲୁକା ଗର୍ଭରେ ।

୧୮୩୭ – ଜେମ୍‌ସ ଫର୍ଗୁସନ୍ ଆସି ଦେଖିଲେ, ଗଣ୍ଡିର ୧୪୦ ଫୁଟ୍ ଠାରୁ ୧୫୦ ଫୁଟ୍ ଅଛି । ଜଗମୋହନ ଦିଶୁଛି ଓ ଆଉ ସମସ୍ତ ଭଙ୍ଗା ପଥର ଓ ବାଲି ଗଦା ଭିତରେ ଲୁପ୍ତ । ସେ ଗୋଟିଏ ଚିତ୍ର କରାଇଥିଲେ । (ଫଟୋ-୧୨)

୧୮୩୭ – ଖୋର୍ଦ୍ଧାରାଜା ପୁରୀ କଲେକ୍ଟରଙ୍କ ଗୋଟିଏ ଅସ୍ପଷ୍ଟ ଅନୁମତି ନେଇ ନିଜ ଗଡ଼ରେ ମନ୍ଦିର ଗଢ଼ିବା ଛଳରେ ସାଦା ପଥର ସହିତ କାରୁକାର୍ଯ୍ୟପୂର୍ଣ୍ଣ ପଥର ସବୁ ବୋହିବାକୁ ଲାଗିଲେ; ପୂର୍ବଦ୍ୱାରର ନବଗ୍ରହ ଶୀଳା ନେବାର ଚେଷ୍ଟା କରିବା ସମୟରେ **Asiatic Society of Bengal** କମିଶନରଙ୍କୁ ଲେଖି ରାଜାଙ୍କର ମୂର୍ଖ ଆଚରଣ ବନ୍ଦ କଲେ । ରାଜା କିନ୍ତୁ ମୃତ୍ୟୁ ପର୍ଯ୍ୟନ୍ତ ନବଗ୍ରହ ଶୀଳା ପୁରୀ ମନ୍ଦିରକୁ ନେବାକୁ ଅସମର୍ଥ ଥିବାରୁ ମ୍ରିୟମାଣ ଥିଲେ । ( **Debla Mitra - P.11-15** )

୧୮୩୮ – ଲେଫ୍‌ଟନାଣ୍ଟ କିଟୋ ଦେଖିଯାଇ ଲେଖିଛନ୍ତି ବିମାନର ଆଉ ମାତ୍ର ୮୦ ଠାରୁ ୧୦୦ ଫୁଟ୍ ଅଛି । (କରୁଣାସାଗର ପୃ.୧୩୨)

୧୮୩୯ – ଆଲଫ୍ରେଡ୍ ବଣ୍ଡ - ସମୁଦ୍ର ଯାତ୍ରାରୁ କହିଛନ୍ତି, ଜଗମୋହନ ଉପରକୁ ଆଉ ମାତ୍ର ୧୦ ଫୁଟ୍ ଅଛି । (କରୁଣାସାଗର ପୃ.୧୩୩)

୧୮୬୮ – ରାଜେନ୍ଦ୍ରଲାଲ ମିତ୍ର - ଗଣ୍ଡି ଦିଶିଲା ନାହିଁ । ରେଖ ଦେଉଳର ଅବଶିଷ୍ଟାଂଶ ବାଲୁକା ମଧ୍ୟରେ ଲୁପ୍ତ ।

**( Antiquitics of Orissa - V-II-p-151 Stella Karmrish- The Hindu Temple, P-607)**

୧୯୦୦ – **Sir John Woodburn**, Lt. Governor, ୧୯୯୦ ଡିସେମ୍ବର ମାସରେ କୋଣାର୍କ ପରିଦର୍ଶନ ପରେ କୋଣାର୍କ ପୁନରୁଦ୍ଧାର ପାଇଁ ପ୍ରଥମ ବଡ଼ ପଦକ୍ଷେପ ନେଲେ । ସେସବୁ ଇତିହାସ ଶେଷ ପରିଚ୍ଛେଦରେ ବିବୃତ ହେବ । ଏ ମହାନ୍ ଇଂରେଜଙ୍କ କାର୍ଯ୍ୟକୁ ଭାରତବାସୀ ଶ୍ରଦ୍ଧାର ସହିତ ସବୁଦିନ ମନେ ରଖିବେ । କିନ୍ତୁ ଏ ବିଶ୍ୱଐତିହ୍ୟ ପ୍ରତି ତଥାକଥିତ ସଭ୍ୟ ଇଂରେଜମାନଙ୍କର ପ୍ରାୟ ଶହେ ବର୍ଷର ଅବହେଳା ମଧ୍ୟ ଇତିହାସରେ ଲେଖାହେବ । (ଷଷ୍ଠ ପରିଚ୍ଛେଦ ଦେଖନ୍ତୁ)

ଭବିଷ୍ୟତରେ ଇତିହାସ ଲେଖକ ଏକଥା ଲେଖିବାକୁ ବାଧ୍ୟ ହେବେ ଯେ; ଏହି ମହାନ୍ ଶିଳ୍ପ ଧର୍ମ, ମତ, ଦେଶ ଓ ଜାତି ନିର୍ବିଶେଷରେ, ଧର୍ମାନ୍ଧତା, ଅଜ୍ଞାନତା ଓ ଅବହେଳାର ଶିକାର ହୋଇଥିଲା; ପ୍ରକୃତି କେବଳ ତାହାର ସ୍ୱଚରିତ୍ରାନୁଯାୟୀ କାର୍ଯ୍ୟ କରିଛି ।

■■■

## ସ୍ଥାପତ୍ୟ ବିଚାର :

ସ୍ଥାପତ୍ୟ ଶବ୍ଦଟିର ଅର୍ଥ ଅତି ବ୍ୟାପକ । ଏହା ସହିତ ବାସ୍ତୁ ବିଜ୍ଞାନ, ପ୍ରଯୁକ୍ତି ଓ ଭାସ୍କର୍ଯ୍ୟ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ସ୍ଥପତି ମୂଳତଃ ଗୋଟିଏ ଶିଳ୍ପୀ । ତାହାର ସୃଷ୍ଟି ପଛରେ ଶିଳ୍ପୀସୁଲଭ ଦାର୍ଶନିକତା ସବୁବେଳେ କାମ କରିଥାଏ । କୋଣାର୍କ ଦେଉଳ ଆଉ ପାଞ୍ଚଟା ଦେଉଳ ଠାରୁ ନିଆରା । ଏହା ଶିଳ୍ପ ଭାସ୍କର୍ଯ୍ୟର ମହାକାବ୍ୟ । ବିଶ୍ୱର ଶହ ଶହ ଶିଳ୍ପୀ, ଲେଖକ, ଦାର୍ଶନିକ ଏ ମହାକାବ୍ୟର ବ୍ୟାଖ୍ୟା କରି ବହୁ ସନ୍ଦର୍ଭ ଓ ଗ୍ରନ୍ଥ ଲେଖିଛନ୍ତି ଏବଂ ଆଗକୁ ଲେଖା ହେବ ମଧ୍ୟ । ଏ ମନ୍ଦିର ନିର୍ମାଣ ପଛରେ କେଉଁ ଦାର୍ଶନିକତା କାର୍ଯ୍ୟ କରିଥିଲା, ବୁଝିବାକୁ ଚେଷ୍ଟା କଲେ ନିର୍ମାଣ ସହିତ ଜଡ଼ିତ ପ୍ରତିଟି ପଦକ୍ଷେପ ବୁଝିବା ସହଜତର ହେବ ।

ଭଗ୍ନ ବିମାନ ସ୍ଥାନରେ, ମନଶ୍ଚକ୍ଷୁରେ ଗୋଟିଏ ପୂର୍ଣ୍ଣ ବିମାନ ବସେଇ ଦେଇ ଦେଖିଲେ ମନେ ହେବ, ଏହା ଗୋଟିଏ ବିଶାଳ ରଥ ଯାହା ଗଡ଼ି ଚାଲିଛି ଅନେକଗୁଡ଼ିଏ ଚକ ଉପରେ । ତାହା ପରେ ନଜର ପଡ଼ିବ ସମ୍ମୁଖର ୭ଟି ଘୋଡ଼ା ଉପରେ । ଦର୍ଶକ ଭାବିବ କାହିଁକି ଏ ପରିକଳ୍ପନା? ସମଗ୍ର ବିଶ୍ୱରେ ରଥ ରୂପେ ପରିକଳ୍ପିତ ସୂର୍ଯ୍ୟ ମନ୍ଦିର, ଏକମାତ୍ର କୋଣାର୍କ । ମନ୍ଦିରର ଅଳଂକରଣରେ ରଥଚକ୍ରର ପରିକଳ୍ପନା କେତେକ ସ୍ଥାନରେ ହୋଇଛି, କିନ୍ତୁ ସେ ବିକ୍ଷିପ୍ତ ପ୍ରଚେଷ୍ଟା ପଛରେ ବିଶେଷ କୌଣସି ଦାର୍ଶନିକତା ନାହିଁ । ଦୃଷ୍ଟାନ୍ତ ସ୍ୱରୂପ, କୁମ୍ଭକୋଣମ୍ ନିକଟସ୍ଥ ଐରାବତେଶ୍ୱର ମନ୍ଦିର କଥା ଉଲ୍ଲେଖ କରାଯାଇଥାଏ । ଏପରିକି କେତେକେ କହିଥାଆନ୍ତି, ଚୋଳବଂଶ ସହିତ ଓଡ଼ିଶାର ଗଙ୍ଗବଂଶର ନୃପତିମାନଙ୍କର ବୈବାହିକ ସମ୍ପର୍କ ଥିବାରୁ ଚୋଳବଂଶର କୀର୍ତ୍ତି ଐରାବତେଶ୍ୱର, କୋଣାର୍କର ରଥ ପରିକଳ୍ପନାକୁ ପ୍ରଭାବିତ କରିଥାଇପାରେ । ଐତିହାସିକ C. Sivaram Murty ଙ୍କ ମତ, ଚୋଳ ରାଜକନ୍ୟା ରାଜସୁନ୍ଦରୀଙ୍କ ସହିତ ଚୋଡଗଙ୍ଗଦେବଙ୍କ ବିବାହ, ଚୋଡ଼ଗଙ୍ଗ ପରବର୍ତ୍ତୀ ସପ୍ତମ ନରପତି ନରସିଂହଙ୍କୁ ପ୍ରଭାବିତ କରିଥାଇପାରେ । କରୁଣାସାଗର ବିଷୟଟିର ବିସ୍ତୃତ ଆଲୋଚନା କରି କେତେକ ତଥ୍ୟ ଉପସ୍ଥାପନ କରିଛନ୍ତି କିନ୍ତୁ କୌଣସି ମତାମତ ଦେଇ ନାହାଁନ୍ତି ।[୧୯୬] ତଥ୍ୟଗୁଡ଼ିକର ବ୍ୟାଖ୍ୟା ଲେଖକର ନିଜସ୍ୱ ।

ରାଜସୁନ୍ଦରୀହେଉଛନ୍ତି ରାଜେନ୍ଦ୍ର ଚୋଳଙ୍କ କନ୍ୟା । ୧୦୬୨ରୁ୧୦୭୦ ଖ୍ରୀଷ୍ଟାବ୍ଦ ମଧ୍ୟରେ ରାଜେନ୍ଦ୍ର ଚୋଳ ରାଜତ୍ୱ କରୁଥିଲେ । ମାତ୍ର ପାର୍ଶୀ ବ୍ରାଉନ୍ଙ୍କ ମତରେ ଐରାବତେଶ୍ୱର ନିର୍ମାଣ ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ । K.A.N. Sastri ଙ୍କ ମତରେ ୧୧୪୬ରୁ୧୧୭୩ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏହା ନିର୍ମିତ ହୋଇଥିଲା । ରାଜସୁନ୍ଦରୀ ତାଙ୍କ ଜନ୍ମର ଶତବର୍ଷ ଅଥବା ତତୋଽଧିକ ବର୍ଷ ପରେ ନିର୍ମିତ ଐରାବତେଶ୍ୱର ସହିତ ପରିଚିତ ଥିବା ସମ୍ଭବ ନୁହେଁ, ଆହୁରି ଅସମ୍ଭବ, ସପ୍ତମ ପୁରୁଷ ନରସିଂହ ଦେବ ପ୍ରଭାବିତ ହେବା । ସ୍ପଷ୍ଟତଃ ଏହା ଗୋଟିଏ କଷ୍ଟକଳ୍ପନା ମାତ୍ର ।

ଇତିହାସ ଛାଡ଼ି ଐରାବତେଶ୍ୱର ମନ୍ଦିରର ଚକ ଓ ଘୋଡ଼ା ଦେଖାଯାଉ । (ଫଟୋ-୧୩)



ଫଟୋ-୧୩ : ଐରାବତେଶ୍ୱର ମନ୍ଦିର

ଏକଚକ୍ର ସୂର୍ଯ୍ୟରଥ କଥା ପୁରାଣରେ ଅଛି ।[୧୯୭] କିନ୍ତୁ ଐରାବତେଶ୍ୱର ସୂର୍ଯ୍ୟ ମନ୍ଦିର ନୁହେଁ, ଶିବ ମନ୍ଦିର । ଚକ୍ର-ଅଶ୍ୱ ସଂଯୋଜନଟି କୌଣସି ବିଶେଷ ଧର୍ମମତ ଅଥବା ଶିଳ୍ପ ଚିନ୍ତାରୁ ହୋଇ ନାହିଁ । ଏହା ଶିଳ୍ପୀର ବିକ୍ଷିପ୍ତ ଚିନ୍ତା ମାତ୍ର, ଏହା ସହିତ କୋଣାର୍କର ସୂର୍ଯ୍ୟରଥ ପରିକଳ୍ପନାର କୌଣସି ଭାବଗତ ସାମଞ୍ଜସ୍ୟ ମଧ୍ୟ ନାହିଁ ।

ଶାସ୍ତ୍ରୋକ୍ତ ଏକଚକ୍ର ରଥ ପରିକଳ୍ପନା ଠାରୁ ମଧ୍ୟ କୋଣାର୍କ ରଥ ପରିକଳ୍ପନା ବହୁ ଆଗକୁ । ୨୪ଟି ରଥଚକ୍ର ଓ ସପ୍ତ ଅଶ୍ୱବାହିତ ଏ ସୃଷ୍ଟି ପଛରେ କେଉଁ ଦାର୍ଶନିକତା କାର୍ଯ୍ୟ କରୁଛି, ଆଗକୁ ବିଚାର କରାଯିବ । କଠୋପନିଷଦରେ ମନୁଷ୍ୟ ଶରୀରକୁ ରଥ ରୂପରେ କଳ୍ପନା କରାଯାଇଛି ।

ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବତୁ ।
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗହମେବ ଚ ।
ଇନ୍ଦ୍ରିୟାଣି ହୟାନ୍ୟାହୁଃ ବିଷୟାଂସ୍ତେଷୁ ଗୋଚରାନ୍ ॥

ଦେଖାଯାଉଛି ଶରୀରକୁ ରଥ ରୂପରେ ଶାସ୍ତ୍ରରେ ମଧ୍ୟ କଳ୍ପନା କରାଯାଇଛି । ମନୁଷ୍ୟ ଶରୀର ପୁଣି ମନ୍ଦିର ରୂପେ ମଧ୍ୟ କଳ୍ପିତ । କୁହାଯାଇଥାଏ, 'ଦେହ ମନ୍ଦିର' । ଦେହ ମଧ୍ୟରେ ଯେଉଁ ଆତ୍ମା, ତାହା ହିଁ ଦେବତା । ଚିନ୍ତା କରାଯାଇପାରେ, ବିମାନ-ପୁରୁଷ ଓ ଜଗମୋହନ ତା'ର ଶକ୍ତି-ନାରୀ । ରେଖଦେଉଳକୁ ପୁରୁଷ ଓ ଜଗମୋହନକୁ ନାରୀ ରୂପେ କଳ୍ପନା କରିଛନ୍ତି ଓଡ଼ିଶା ଭାସ୍କରମାନେ । ଏହାର ଅଙ୍ଗ ପ୍ରତ୍ୟଙ୍ଗ ମଧ୍ୟ ମନୁଷ୍ୟ ଦେହର ଅଙ୍ଗ ପ୍ରତ୍ୟଙ୍ଗର ନାମ ବହନ କରୁଛି [୧୯୮] । ଯେହେତୁ ମନ୍ଦିର ଗଠିତ ହୁଏ ଶିଳ୍ପ ଶାସ୍ତ୍ର ମତେ, ଏହା ଶାସ୍ତ୍ରାନୁମୋଦିତ ଯାହା ଉପରୋକ୍ତ ଶ୍ଳୋକରେ ପ୍ରତିଫଳିତ ହେଉଛି ଏବଂ ଆଗକୁ ଏ ପ୍ରତିଫଳନ ଦିଶିବ ଅନ୍ୟାନ୍ୟ ଶାସ୍ତ୍ରରେ ମଧ୍ୟ । ମାନବ ମାନବୀର ଯତିହୀନ ମିଳିତ ଯାତ୍ରା ଚାଲିଛି ଅନନ୍ତ କାଳ ଧରି । ସୌରଶକ୍ତିବାହିତ ଜୀବନ ରଥ ଗଡ଼ି ଚାଲିଛି ଯୁଗଯୁଗାନ୍ତର ଧରି ପ୍ରହର, ଦିବସ, ମାସ ଓ ବର୍ଷର ବିବର୍ତ୍ତନରେ । ସମ୍ମୁଖର ସପ୍ତ ଅଶ୍ୱ ସୌର କିରଣରେ ପ୍ରତିସରିତ ସପ୍ତ ରଂଗ, ବାରଯୋଡ଼ା ରଥଚକ୍ର- ବାରମାସ ଓ ଚବିଶ ପକ୍ଷର ପ୍ରତୀକ । ରଥ ଚକ୍ରର ଆଠଟି ଖୋଡ଼ି ଅଷ୍ଟ ପ୍ରହରର ପ୍ରତୀକ । କୋଣାର୍କ ଶିଳ୍ପ ଭାସ୍କର୍ଯ୍ୟର ମହାକାବ୍ୟ ଏବଂ ମହାକାବ୍ୟର ଭାଷ୍ୟ ଯୁଗେ ଯୁଗେ ହୋଇଚାଲିଥିବ ସ୍ଥପତିର କାଳାତୀତ ଚିନ୍ତା । ଏହାହିଁ କୋଣାର୍କ ।

## ଆର୍ଯ୍ୟ ସ୍ଥାପତ୍ୟ ଓ ଉତ୍କଳୀୟ ଧାରା :

କୋଣାର୍କ ସ୍ଥାପତ୍ୟ ଭାରତୀୟ-ଆର୍ଯ୍ୟ ( Indo-Aryan ) ସ୍ଥାପତ୍ୟ ଶୈଳୀର ଅନ୍ତର୍ଗତ । ଭାରତୀୟ ମାର୍ଗ ସଙ୍ଗୀତରେ ଯେପରି ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ, ଦୁଇଟି ମୁଖ୍ୟ ଧାରା ଅଛି ଭାରତୀୟ ସ୍ଥାପତ୍ୟର ସେହିପରି ଯୋଡିଏ ମୁଖ୍ୟ ଧାରା– Indo Aryan ଏବଂ Dravidian । ଜଣେ ଗବେଷକଙ୍କର ମତରେ (ଆଶୀସ୍ ନାଙ୍ଗିଆ) Indo Aryan ସ୍ଥାପତ୍ୟ ଉତ୍ତର-ଭାରତରେ ଜନ୍ମ ନିଏ ୮୦୦ ଖ୍ରୀଷ୍ଟାବ୍ଦରେ । ଏହାର ପ୍ରସାର ପଶ୍ଚିମରେ ଗୁଜୁରାଟ ଠାରୁ ଆରମ୍ଭ କରି ପୂର୍ବରେ ଓଡ଼ିଶା ଯାଏ ବିସ୍ତୃତ । ଭାରତୀୟ ଆର୍ଯ୍ୟ ସ୍ଥାପତ୍ୟରେ ମୂଳତଃ ମନ୍ଦିରଟି ଗୋଟିଏ ସ୍ତମ୍ଭହୀନ ଗମ୍ବୁଜ, ଯାହା ବହୁ ଉଚ୍ଚକୁ ଉଠିଥାଏ । ହୁଏତ ଏଇ କାରଣରୁ ଏହାକୁ 'ଶିଖର' କୁହାଯାଏ । ମୁଖଶାଳା ଇତ୍ୟାଦି ପରବର୍ତ୍ତୀ ସଂଯୋଜନ [୧୯୯] । ଏ ସ୍ଥାପତ୍ୟର ଆଉ ଗୋଟିଏ ବୈଶିଷ୍ଟ୍ୟ, ଏହାର ଭୂମିତଳ ବର୍ଗାକୃତି ହୋଇଥାଏ ।

ଦ୍ରାବିଡ଼ ଧାରା ଆର୍ଯ୍ୟ ଧାରାଠାରୁ କିଛି ପ୍ରାଚୀନ, ପ୍ରଥମ ପ୍ରଚଳନ ହୁଏ ଷଷ୍ଠ ଶତାବ୍ଦୀରେ । ଆର୍ଯ୍ୟ ଧାରାରେ ମୂଳ ମନ୍ଦିର ଅର୍ଥାତ୍ ବିମାନ ଠାରୁ କୌଣସି ମନ୍ଦିର ଅଥବା ତୋରଣ ବଡ଼ ହେବା ଅକଳ୍ପନୀୟ । ଦ୍ରାବିଡ଼ ଧାରାରେ କିନ୍ତୁ ତୋରଣ ଅର୍ଥାତ୍ ଗୋପୁରମ୍ ମୂଳ ମନ୍ଦିର ଠାରୁ ବହୁଗୁଣ ବଡ଼ ହୋଇଥାଏ ଏବଂ ତାହାର ପତ୍ତନ ଆୟତାକାର (Rectangular) ହୁଏ । ବେଢ଼ାର ଗଠନ ବିଭିନ୍ନ କାର୍ଯ୍ୟାଳୟ, ଭଜନ ଗୃହ, ଯାତ୍ରୀ ତଥା ପୂଜକମାନଙ୍କ ନିବାସ ଇତ୍ୟାଦି ପାଇଁ ହଲ୍ ଘର ଭଳି ଗଢ଼ା ହୋଇଥାଏ । ବଡ଼ ବଡ଼ ମନ୍ଦିରମାନଙ୍କରେ ଏ ବେଢ଼ା ମଧ୍ୟରେ ଗୋଟିଏ ପୁଷ୍କରିଣୀ ଥାଏ । ମୂଳ ମନ୍ଦିରର ଭୂମିତଳ ବର୍ଗାକାର ହୁଏ ଏବଂ ତାହା ଚାରିପଟେ ସ୍ତମ୍ଭ ଥିବା ବାରଣ୍ଡା ଥାଏ । ସ୍ତମ୍ଭ ଓ ମନ୍ଦିର ବାଡ଼ ଉପରୁ ପିରାମିଡ୍ ଭଳି ଥାକ ଥାକ ହୋଇ ଚୂଳୀକୁ ଉଠିଥାଏ । ଓଡ଼ିଶାର ମୁଖଶାଳା ଓ ଅନ୍ୟାନ୍ୟ ପୀଢ଼ ଦେଉଳ ସହିତ ଦ୍ରାବିଡ଼ ପରିକଳ୍ପନାର ମେଳ ଏକମାତ୍ର ପୀଢ଼ ଅଂଶ, କିନ୍ତୁ ତାହାର ଗଠନ ମଧ୍ୟ ଭିନ୍ନ । ଦ୍ରାବିଡ଼ ଧାରାର ମୂଳ ମନ୍ଦିର ମୁଣ୍ଡରେ କେତେକ ସମୟରେ ଏବଂ ଗୋପୁରମ୍ ମୁଣ୍ଡରେ ସବୁବେଳେ, ଓଲଟାଡଙ୍ଗା ଭଳି କାର୍ଯ୍ୟ ଗୋଟିଏ ଥାଏ । ଏ ପ୍ରଥା ବୌଦ୍ଧ ସ୍ତୂପ ସ୍ଥାପତ୍ୟରୁ ଆଗତ ବୋଲି ଅନେକେ ଦାବି କରିଥାଆନ୍ତି । ଦ୍ରାବିଡ଼ ଧାରାର ମୂଳ ମନ୍ଦିର ସମ୍ମୁଖରେ ଗୋଟିଏ ସମ୍ମିଳନୀ ମଣ୍ଡପ ଥାଏ ଯାହାର ଛାତ ବହନ କରୁଥାଏ ଅନେକଗୁଡ଼ିଏ ଖମ୍ବ । ସେ ମଣ୍ଡପର ଛାତ ସାଧାରଣତଃ ସମତଳ ହୁଏ ଏବଂ କେବେ କେବେ ଓଲଟାଡଙ୍ଗା ଭଳି ମଧ୍ୟ ହୁଏ । ସ୍ପଷ୍ଟତଃ ଏ ଧାରାର ମନ୍ଦିର ନିର୍ମାଣ ଠାରୁ ଆର୍ଯ୍ୟ ଧାରା ଏବଂ ବିଶେଷ କରି ଓଡ଼ିଶାର ମନ୍ଦିର ସମ୍ପୂର୍ଣ୍ଣ ଭିନ୍ନ ।

**Indo-Aryan** ସ୍ଥାପତ୍ୟ ମଧ୍ୟରେ ଓଡ଼ିଶା ଗୋଟିଏ ନିଜସ୍ୱ ସ୍ଥାନ କରିନେଇଛି ଯାହାକୁ କଳିଙ୍ଗ ସ୍ଥାପତ୍ୟ କୁହାଯାଏ । ଭାରତର ବିଭିନ୍ନ ପ୍ରାନ୍ତରେ ମୁଖ୍ୟ ଧାରା ସହିତ ଦ୍ରାବିଡ଼ ଏବଂ ଅନ୍ୟ ଧାରାର ମିଶ୍ରଣ ଘଟିଛି କିନ୍ତୁ ଶେଷ ଯାଏ କଳିଙ୍ଗ ସ୍ଥାପତ୍ୟ ରହିଗଲା ଅକଳଂକିତ ଏବଂ ଏହା ଆଶ୍ଚର୍ଯ୍ୟର ବିଷୟ । ଭୌଗୋଳିକ କାରଣରୁ ଯେଉଁଠାରେ ଦକ୍ଷିଣ ଓ ଉତ୍ତର ଦେହକୁ ଦେହ ଲାଗିଛି ଏବଂ ଦାକ୍ଷିଣାତ୍ୟରୁ ଆଗତ ରାଜାମାନେ ବହୁବର୍ଷ ଓଡ଼ିଶାରେ ଆଧିପତ୍ୟ ବିସ୍ତାର କରିଛନ୍ତି, ସ୍ୱାଭାବିକ ମନେ ହେବ ଏଠାରେ ଦ୍ରାବିଡ଼ୀୟ ସ୍ଥାପତ୍ୟର ଆଧିପତ୍ୟ ରହିବ, କିନ୍ତୁ ତାହା ହୋଇ ନାହିଁ । ଏଠାରେ କିଛି ଇତିହାସ ଚର୍ଚ୍ଚା କଲେ ଓଡ଼ିଶା ଶିଳ୍ପୀର ନିଜ ଶିଳ୍ପଧାରାରେ କେତେ ଗଭୀର ବିଶ୍ୱାସ ଥିଲା, ତାହା ବୁଝାପଡ଼ିବ । ସେ ସମୟର ଇତିହାସ ବିସ୍ତୃତ ଭାବେ ପ୍ରଥମ ପରିଚ୍ଛେଦରେ ଆଲୋଚନା କରାଯାଇଛି । ଏଠାରେ ଚୁମ୍ବକରେ ତାହା ଦୋହରା ଯିବ, ଆଲୋଚ୍ୟ ବିଷୟଟି ସ୍ପଷ୍ଟ କରିବାକୁ ।

ଆଜିକାର ଓଡ଼ିଶା ୧ ୯୩୬ ଏପ୍ରିଲ ପହିଲାରେ ସୃଷ୍ଟି ହୋଇଛି । ତାହା ପୂର୍ବରୁ ଏହାର ରୂପରେଖା ଅସ୍ପଷ୍ଟ ଥିଲା । ପ୍ରଦେଶର ସୀମାରେଖା ବଦଳୁ ଥିଲା । ମହାଭାରତରେ କଳିଙ୍ଗ ସ୍ପଷ୍ଟ ରୂପେ ଉଚ୍ଚାରିତ ହେଉଛି କିନ୍ତୁ ତାହା ମଧ୍ୟରେ ଉତ୍କଳର ନାମ ଉଠୁନାହିଁ । ଆଜି ଯାହାକୁ କଳିଙ୍ଗ ସ୍ଥାପତ୍ୟ କୁହାଯାଉଛି ତାହା ପ୍ରଧାନତଃ ପୁରୀ ଜିଲ୍ଲା ଅନ୍ତର୍ଗତ ଭୁବନେଶ୍ୱର, ପୁରୀ ଓ କୋଣାର୍କ ମନ୍ଦିରର ସ୍ଥାପତ୍ୟ । ଏ ଅଞ୍ଚଳ ଚୋଡ଼ଗଙ୍ଗ ଦେବଙ୍କ ପୂର୍ବରୁ କେବେହେଲେ କଳିଙ୍ଗ ଅନ୍ତର୍ଗତ ନଥିଲା । ଚୋଡ଼ଗଙ୍ଗଦେବ ଏ ଅଞ୍ଚଳ ଦଖଲ କରିନେବା ପୂର୍ବରୁ ତାଙ୍କ କଳିଙ୍ଗ ରାଜ୍ୟର ସୀମାରେଖା ଦକ୍ଷିଣରେ ଗୋଦାବରୀ ଓ ଉତ୍ତରରେ ବୈତରଣୀ ଯାଏ ବିସ୍ତୃତ ଥିଲା । ସେ ଅଞ୍ଚଳର, ବିଶେଷକରି ଋଷିକୂଲ୍ୟାର ଦକ୍ଷିଣ ପଟେ ଦ୍ରାବିଡ଼ୀୟ ସ୍ଥାପତ୍ୟର ଆଧିପତ୍ୟ ଥିଲା । ଚୋଡ଼ଗଙ୍ଗଙ୍କ ସମୟରେ କଳିଙ୍ଗ ଉତ୍କଳକୁ ଗ୍ରାସ କରିଗଲା କିନ୍ତୁ ପରବର୍ତ୍ତୀ ସାତ ପ୍ରଜନ୍ମ ଯାଏ (ଲାଙ୍ଗୁଳା ନରସିଂହଦେବ ଶେଷ ମନ୍ଦିର ସୃଷ୍ଟିକର୍ତ୍ତା) ଦ୍ରାବିଡ଼ ସ୍ଥାପତ୍ୟ ଉତ୍କଳୀୟ ସ୍ଥାପତ୍ୟକୁ ଗ୍ରାସ କରି ପାରିଲା ନାହିଁ । କ୍ରମେ କଳିଙ୍ଗର ଅଙ୍ଗଚ୍ଛେଦ ହୋଇ ଗଞ୍ଜାମ ଆରପଟ ଅଞ୍ଚଳରୁ କଳିଙ୍ଗ ନାମ ଲୁପ୍ତ ହେଲା । କିନ୍ତୁ ବାକି ଥିବା ଅଞ୍ଚଳରେ ଉତ୍କଳୀୟ ସ୍ଥାପତ୍ୟର ପ୍ରାଧାନ୍ୟ ରହିଲା । ଆଧୁନିକ ଯୁଗରେ ସେ ଶିଳ୍ପ ଧାରାକୁ **Kalinga Art & Architecture** କୁହାଯାଉଛି, ଯାହାର ନାମକରଣ ହେବା ଉଚିତ ଥିଲା **Utkal Art & Architecture** । ସେ ଯାହାହେଉ ବର୍ତ୍ତମାନ ଫେରି ଆସିବା ନରସିଂହଦେବଙ୍କ ସମୟକୁ ଏବଂ କୋଣାର୍କ ନିର୍ମାଣ ପ୍ରସଙ୍ଗକୁ ।

ବାୟାଚକଡ଼ା ଓ ମାଦଳାପାଞ୍ଜି ଉପରେ ନିର୍ଭର କରି ଷ୍ଟେଲା କର୍ମରୀଶ୍ ଗୋଟିଏ ଘଟଣା ବିବୃତ କରିଛନ୍ତି । ନରସିଂହଦେବଙ୍କ ଶ୍ୱଶୁର ପାଣ୍ଡ୍ୟାରାଜା କୋଣାର୍କ ନିର୍ମାଣରେ ସାହାଯ୍ୟ କରିବାକୁ କେତେକ ସ୍ଥପତି ପଠାଇଥିଲେ । କୋଣାର୍କର 'ସୂତ୍ରଧର' ସେମାନଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ନହୋଇ ବିଦାୟ କରିଦେବାକୁ ଚାହିଁଥିଲେ କିନ୍ତୁ ପରେ ଛୋଟ ମୋଟ ଆଳଂକାରିକ କାର୍ଯ୍ୟରେ ଲଗାଇଥିଲେ ।[୨୦୦] ଲେଖକ ହରପ୍ରସାଦ ଦାସ ଆଉ ପାଦେ ଆଗେଇ ଯାଇ ଲେଖିଛନ୍ତି, 'ଓଡ଼ିଆଙ୍କ ହିସାବ ସେମାନଙ୍କ ମୁଣ୍ଡରେ ପଶିଲା ନାହିଁ ।'[୨୦୧] ଏକଥା କହିବା ଠିକ୍ ନୁହେଁ, ପାଣ୍ଡ୍ୟା ରାଜା ପଠାଇ ଥିବା ଶିଳ୍ପୀମାନଙ୍କ (ମଦୁରାଇ ମଣ୍ଡଳ ଶିଳ୍ପୀ, ବାୟା ଚକଡାରେ ଅନ୍ୟତ୍ର କଥିତ) ମୁଣ୍ଡରେ ପଶିଲା ନାହିଁ । ପାଣ୍ଡ୍ୟା ରାଜା ଜ୍ୱାଇଁଙ୍କ ପାଖକୁ କିଛି ଆଜେବାଜେ ଶିଳ୍ପୀ ପଠାଇ ନଥିବେ । ମଦୁରାଇର ମୀନାକ୍ଷୀ ମନ୍ଦିର ତଥା ମହୀଶୂରର ହଳେବିଡ଼ ଇତ୍ୟାଦି ଦାକ୍ଷିଣାତ୍ୟର ଅନ୍ୟାନ୍ୟ ମନ୍ଦିର ଯିଏ ଦେଖିଥିବ, ବୁଝି ପାରିବ ସେଠାକାର ଶିଳ୍ପୀ ମଧ୍ୟ ଉଚ୍ଚକୋଟୀର କାର୍ଯ୍ୟ କରିଥାଆନ୍ତି, ତେବେ ସେମାନଙ୍କ ଦ୍ରାବିଡ଼ ଧାରାରେ । ଏପରି ନୁହେଁ ଯେ ଓଡ଼ିଶାରେ ଦ୍ରାବିଡ଼ ଧାରାର ମିଶ୍ରଣ କରି ପରୀକ୍ଷା ନିରୀକ୍ଷା ହୋଇନାହିଁ । ଉଦାହରଣ : ବୋଇତାଳ, ଭାସ୍କରେଶ୍ୱର ଓ ଶିଶିରେଶ୍ୱର । କୋଣାର୍କ ସ୍ଥପତି ଏ ମନ୍ଦିରରେ ଅନ୍ୟ କୌଣସି ମିଶ୍ରଣ ଚାହିଁ ନଥିଲେ, ଯେଉଁଥି ପାଇଁ ଆଜି କୋଣାର୍କକୁ କୁହାଯାଉଛି ଭାରତୀୟ ଆର୍ଯ୍ୟ **(Indo-Aryan)** ଧାରାର ଶେଷ ଅକଳଂକିତ ଉଜ୍ଜ୍ୱଳ ନିଦର୍ଶନ । ଘଟଣା ଯେପରି ଘଟିଥିଲା ବାୟଚକଡ଼ାମତେ, ତାହା ବିବୃତ ହୋଇଛି ।

ମଦୁରାଇ ଶିଳ୍ପୀ ଆସିବା ପରେ ସେମାନଙ୍କ ପାଇଁ ଉଚିତ୍ ବାସସ୍ଥାନ ଓ ଖାଦ୍ୟର ବ୍ୟବସ୍ଥା କରାଗଲା । କିନ୍ତୁ ସେମାନଙ୍କ କାର୍ଯ୍ୟ ସୂତ୍ରଧର (ସଦାଶିବ ସାମନ୍ତରାୟ ମହାପାତ୍ର)ଙ୍କର ପସନ୍ଦ ନ ହେଲାରୁ ସେମାନେ ଅପମାନିତ ବୋଧ କଲେ । ମହାରାଜଙ୍କ ନିକଟକୁ ତତ୍‌କ୍ଷଣାତ୍ ପତ୍ର ଗଲା ଓ ଉତ୍ତର ମଧ୍ୟ ଆସିଗଲା । ରାଜାଦେଶରେ ସେମାନଙ୍କୁ ସ୍କ୍ରୋଲ୍ କାମ(ଡାଳି କାମ)ରେ ଲଗାଗଲା । ଡାଳି କାମ ଖାଲି ଲତାପତ୍ରର ନକ୍ସା ନୁହେଁ । ଯେ କେହି ମୁହନ୍ତିଗୁଡିକର କାର୍ଯ୍ୟ ଦେଖିଥିବେ । ବୁଝି ପାରିଥିବେ, ସମଗ୍ର ଭାସ୍କର୍ଯ୍ୟ ପରିବେଷଣରେ ଏହାର ମୂଲ୍ୟ କେତେ ! ପ୍ରଥମେ ସେମାନଙ୍କୁ ଲଗାଗଲା ପୀଠରେ । ଏହା ପରେ ସେମାନେ ପୁରୀ ଯିବାକୁ ଚାହିଁଲେ ନବବର୍ଷ ଉତ୍ସବ ଦେଖିବାକୁ । ସେମାନଙ୍କୁ ପାଲିଙ୍କି ଦିଆଗଲା । ଜଗମୋହନର ପ୍ରଥମ ପୀଢ଼ କାର୍ଯ୍ୟ ଯେତେବେଳେ ହେଲା ସେମାନେ ଏବଂ ଦୁଇଜଣ ଓଡ଼ିଆ ଶିଳ୍ପୀ ଲାଗିଲେ ହାତୀ ଓ ରାଜବନ୍ଧ ମୁହନ୍ତିରେ । ଏହାପରେ ବିଭିନ୍ନ ଡାଳି କାମ ଛଡ଼ା ୧୦ଟି ମୂର୍ତ୍ତି ଗଢ଼ିବାକୁ ଦିଆଗଲା । ମଦୁରାଇ ଶିଳ୍ପୀମାନେ ବିଭିନ୍ନ ଶିଳ୍ପ କାର୍ଯ୍ୟରେ (ଡାଳି ମୁଖ୍ୟତଃ) ମନ୍ଦିର ପ୍ରତିଷ୍ଠା ଶେଷ ହେଲା ଯାଏ ଥିଲେ ଏବଂ ମନ୍ଦିର ପ୍ରତିଷ୍ଠା ପରେ ନରସିଂହଦେବ ବିଦାୟ ନେବା ପରେ ସେମାନଙ୍କୁ ଯଥାଯୋଗ୍ୟ ସମ୍ମାନ ସହିତ ତାଙ୍କ ଦେଶକୁ ଫେରାଇ ଦିଆଗଲା ।[୨୦୨] ଏଥିରେ ଓଡ଼ିଆ ସ୍ଥପତିର ମର୍ଯ୍ୟାଦା ବଢ଼ିଲା, ମଦୁରାଇ ଶିଳ୍ପୀମାନେ ସମର୍ପିତ ଚିତ୍ତରେ କାର୍ଯ୍ୟ କରିଗଲେ ଏବଂ ଲାଙ୍ଗୁଳା ନରସିଂହଦେବଙ୍କର ଚରିତ୍ରର ଗୋଟିଏ ଉଜ୍ଜ୍ୱଳ ଦିଗ ଉନ୍ମୁକ୍ତ ହେଲା ।

## ଗ୍ରୀକ୍-ରୋମାନ୍ ପ୍ରଭାବ :

ଇଂରେଜମାନେ ଯେତେବେଳେ ଆମ ଦେଶ ଅଧିକାର କରନ୍ତି, ସେତେବେଳେ ଏ ଦେଶବାସୀ ଅବକ୍ଷୟର ଅତଳରେ ବୁଡ଼ି ଗଲେଣି; ଅଶିକ୍ଷା, କୁଶିକ୍ଷା, କୁସଂସ୍କାରର ପଙ୍କରେ ଘାଣ୍ଟି ହେଉଛନ୍ତି । ସେତେବେଳେ ଆଲୋକପ୍ରାପ୍ତ ଶିକ୍ଷିତ ଇଂରେଜମାନେ ଚିନ୍ତା ମଧ୍ୟ କରି ପାରୁନଥିଲେ ଏ ଜାତି ଏକ ସମୟରେ ଅତି ଉନ୍ନତ ଜାତି ଥିଲା । ଶାସକର ଅହଂକାର ଅବଚେତନରେ କାର୍ଯ୍ୟ କରୁଥିଲା । ଡଃ ଫର୍ଗୁସନ୍‌ଙ୍କ ଭଳି ପଣ୍ଡିତ ବ୍ୟକ୍ତି ମଧ୍ୟ ବିଶ୍ୱାସ କରୁଥିଲେ, ଏ ଦେଶରେ ଆଲେକ୍‌ଜାଣ୍ଡରଙ୍କ ଭାରତ ଆକ୍ରମଣ ପୂର୍ବରୁ ପ୍ରସ୍ତର ସ୍ଥାପତ୍ୟ ନଥିଲା । ଐତିହାସିକ Vincent Smith, ତାଙ୍କ Greco-Roman Influence on Civilisation of India ପୁସ୍ତକରେ ଲେଖିଛନ୍ତି :

'No Indian example in stone either of architecture on sculpture earlier than Ashoka (B.C. 260-232)) has yet been discovered and the wel-known theory of Mr. Fergusson, that the sudden introduction of stone instead of wood for the purpose of both architecture and sculpture in India was the result of communication between the empire of Alexander and his successors and that of Maurya dynasty of Chandra Gupta and Ashoka, in my opinion, certainly correct.'

ଜେନେରାଲ କନିଂହାମ୍, ଯିଏ କିଛି ଭିତରକୁ ପ୍ରବେଶ କରିଥିଲେ, ଲେଖିଛନ୍ତି ;

'As the city of Girivraja or Old Rajgriha was built by Bimbisara, the contemporary of Buddha, we have another still existing example of Indian stone building at least 250 years older than the date of Ashoka'[(203)].

କୁଶାଣ ଯୁଗର (ଦ୍ୱିତୀୟ ଶତାବ୍ଦୀ) ଶିଶୁପାଳଗଡ଼ର ଖନନ କାର୍ଯ୍ୟ ଏବେ ମଧ୍ୟ ସଂପୂର୍ଣ୍ଣ ହୋଇନାହିଁ । ଏହା ଆଲେକ୍‌ଜାଣ୍ଡାରଙ୍କ ଭାରତ ଆଗମନର ବହୁ ପୂର୍ବର କୀର୍ତ୍ତି । ଶାସ୍ତ୍ର-ପୁରାଣମାନଙ୍କରେ ଏ ବିଷୟରେ କ'ଣ ଲେଖାଅଛି, ଉପସ୍ଥାପନ କରିବା ପ୍ରାସଙ୍ଗିକ ହେବ, କାରଣ ପୁରାଣଗୁଡ଼ିକ ଆଲେକ୍‌ଜାଣ୍ଡାରଙ୍କ ସମୟ ଆଗରୁ ଲେଖା ହୋଇଥିଲା ।

'ସୁରଦ୍ରୁମଲତୋଦ୍ୟାନଂ ବିଚିତ୍ରୋପବନାନ୍ୱିତଂ ।
ହେମଶୃଙ୍ଗୈର୍ଦିବିସ୍ପୃଗଭିଃ ସ୍ଫଟିକାଟ୍ଟାଳ ଗୋପୁରୈଃ ॥'

(ଶ୍ରୀମଦ୍‌ଭାଗବତ, ଦଶମ ସ୍କନ୍ଧ, ପଞ୍ଚାଶତ୍ ଅଧ୍ୟାୟ)

'ଶିଳାନ୍ୟାସସ୍ତୁ କର୍ତ୍ତବ୍ୟଃ ପ୍ରାସଦେତୁ ଶିଳାମୟେ ।
ଇଷ୍ଟକାନାନ୍ତୁ ବିନ୍ୟାସଃ ପ୍ରାସାଦେ ଚେଷ୍ଟକାଳୟେ ॥'

'ଆଦାବେବଂ ସମାସେନ ଶିଳାଲକ୍ଷଣମୁତ୍ତମଂ ।
ଶିଳାନ୍ୟାସ ବିଧାନଂ ଚ ପ୍ରୋଚ୍ୟତେ ତଦନନ୍ତରଂ ॥'

'ଶିଳାବା ଚେଷ୍ଟକା ବାପି ଚତସ୍ରୋ ଲକ୍ଷଣାନ୍ୱିତାଃ ।
ପ୍ରାସାଦାଦୌ ବିଧାନେନ ନ୍ୟସ୍ତବ୍ୟାଃ ସୁମନୋହରାଃ ॥'

(ମତ୍ସ୍ୟ ପୁରାଣ)

'କୋଟି କୋଟି ଗୁଣଂ ପୁଣ୍ୟଂ ଫଳଂ ସ୍ୟାଦିଷ୍ଟକାଳୟେ ।
ଦ୍ୱିପରାର୍ଦ୍ଧଗୁଣଂ ପୁଣ୍ୟଂ ଶୈଳଜେ ତୁ ବିଦୁଃ ବୁଧାଃ ॥'

(ଭବିଷ୍ୟ ପୁରାଣ)

'ଇଷ୍ଟକ ଗୃହଦାନେ ତୁ ତସ୍ମାତ୍ ଶତଗୁଣଂ ଭବେତ୍ ।
ତତୋଽୟୁତଂ ଗୁଣଂ ପୁଣ୍ୟଂ ଶିଳାଗେହପ୍ରଦାନତଃ ॥'

(ମହାନିର୍ବାଣ ତନ୍ତ୍ର, ତ୍ରୟୋଦଶୋଲ୍ଲାସ)

ଆଉ ଗୋଟିଏ ମୁଖ୍ୟ ପ୍ରମାଣ ମଣିଷର ସ୍ୱଭାବ । ତାହାର ଯେଉଁ ସୃଷ୍ଟି ସେ ଅମର କରି ରଖିବାକୁ ଚାହେଁ ସେଥିରେ ସେ ଏପରି ବସ୍ତୁ ବ୍ୟବହାର କରେ, ଯାହା ସହଜଲଭ୍ୟ କିନ୍ତୁ ଦୀର୍ଘସ୍ଥାୟୀ । ଓଡ଼ିଶାରେ କନ୍ଦାପଥର (ଖଣ୍ଡୋଲାଇଟ୍) ସହଜ ଲଭ୍ୟ । (ରେଖାଚିତ୍ର ନଂ.୨ ଦେଖନ୍ତୁ, ପୃଷ୍ଠା-୫୫) । ଏହା ସ୍ୱାଭାବିକ, ମନ୍ଦିର, ଯାହା ଈଶ୍ୱରଙ୍କୁ ସମର୍ପିତ, ସେଥିରେ ସେ ପଥର ବ୍ୟବହାର କରିବ । ମାଟିପୋଡ଼ା ଇଟାର ବ୍ୟବହାର ସେ ଜାଣିଥିଲା; ହୁଏତ ତାହାର ବ୍ୟବହାର ଥିଲା ବାସଗୃହରେ ଏବଂ ଅଳ୍ପ କିଛି ମନ୍ଦିରରେ । କିନ୍ତୁ ମନ୍ଦିର ତଥା ଦୁର୍ଗରେ ସେ ବ୍ୟବହାର କରୁଥିଲା ପଥର । ମନମୋହନ ଗାଙ୍ଗୁଲୀ ବିଷୟଟି ଉପରେ ଗୋଟିଏ ସଂପୂର୍ଣ୍ଣ ପରିଚ୍ଛେଦ ବ୍ୟୟ କରିଛନ୍ତି ତାଙ୍କର ପ୍ରସିଦ୍ଧ ପୁସ୍ତକ "Orissa and her remains-ancient and mediaeval" (Chapter v, Page 88-104) ରେ । ନିମ୍ନରେ ସେଥିରୁ କିଛି ଉପସ୍ଥାପିତ କରାଗଲା ।

ରାଣୀ ଗୁମ୍ଫା ସମ୍ମୁଖରେ ଆଣ୍ଠୁ ପର୍ଯ୍ୟନ୍ତ ବୁଟ୍‌ଜୋତା ପିନ୍ଧିଥିବା ଦ୍ୱାରପାଳର ମୂର୍ତ୍ତି ଦେଖି ୟୁରୋପୀୟ ଐତିହାସିକମାନେ ଧରି ନେଇଛନ୍ତି ଏହା ୟୁରୋପରୁ ଆଗତ । ରାଜେନ୍ଦ୍ର ଲାଲ୍ ମିତ୍ର ତାଙ୍କର Indo-Aryan, Vol-Iରେ ପ୍ରମାଣ କରିଛନ୍ତି, ଭାରତୀୟମାନଙ୍କର ନିଜସ୍ୱ ବୁଟ୍ ଜୋତା ଥିଲା । ଡକ୍ଟର ମିତ୍ରଙ୍କ ପ୍ରମାଣକୁ ଛାଡ଼ିଦେଲେ ମଧ୍ୟ ପ୍ରଶ୍ନ ରହୁଛି, କିଏ କାହା ନିକଟରୁ ଅନୁକରଣ କରିଥିଲେ- ଖାଲି ପରିଧାନରେ ନୁହେଁ, ଆହୁରି ଉଚ୍ଚତର ବିଷୟରେ । ଜଣେ ୟୁରୋପୀୟ ପଣ୍ଡିତ (Pocoke) ତାଙ୍କ "India in Greece" ପୁସ୍ତକରେ ଦୀର୍ଘ ପ୍ରମାଣ ଶୃଙ୍ଖଳ ଉପସ୍ଥାପନ କରି କହୁଛନ୍ତି, ପ୍ରାକ୍-ଐତିହାସିକ ଯୁଗରେ ଭାରତୀୟମାନେ ଗ୍ରୀସ୍‌ରେ କଲୋନି ସ୍ଥାପନ କରିଥିଲେ, ଯାହାର ଅଲିଭା ଚିହ୍ନ ରହିଯାଇଛି ଗ୍ରୀକ୍‌ମାନଙ୍କ ଉପରେ । ପ୍ରଖ୍ୟାତ୍ ଦାର୍ଶନିକ ପିଥାଗୋରାସ୍ ଭାରତୀୟ ଶାକ୍ୟମୁନିଙ୍କ ସହିତ ଦେଖା କରିଥିବା ଏବଂ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିବାର ପ୍ରମାଣ ମିଳୁଛି ।

ଗାଙ୍ଗୁଲୀ ଖମ୍ବଗୁଡ଼ିକର ମାପଚୁପ୍ କରି ଦେଖାଇ ଦେଇଛନ୍ତି ସେସବୁ ଭାରତୀୟ ଶିଳ୍ପଶାସ୍ତ୍ର 'ମନସାରା' ନିୟମାନୁସାରେ ଗଠିତ, ଗ୍ରୀକ୍ ଶିଳ୍ପଶାସ୍ତ୍ର ନିୟମାନୁସାରେ ନୁହେଁ । ଚତୁର୍ଭୁଜ, ପଞ୍ଚଭୁଜ କୋଣବିଶିଷ୍ଟ ଖମ୍ବମାନଙ୍କର ଶାସ୍ତ୍ରୋକ୍ତ ନାମ ଅଛି । ଯଥାଃ ବ୍ରହ୍ମକାଣ୍ଡ, ଶିବକାଣ୍ଡ ଇତ୍ୟାଦି । ପ୍ରସିଦ୍ଧ ଅରୁଣସ୍ତମ୍ଭକୁ ଅନେକେ ମନେ କରିଥାଆନ୍ତି ଗ୍ରୀକ୍ ରୋମାନ୍ ପ୍ରଭାବିତ । ଏ ୧୬ କୋଣ ବିଶିଷ୍ଟ ଖମ୍ବ, ପ୍ରକୃତରେ 'ରୁଦ୍ର-କାଣ୍ଡ' ( History of Science, P-12, Ganguly-P-89 )

ଆଲେକ୍‌ଜାଣ୍ଡାରଙ୍କର ଭାରତ ଅଭିଯାନ ଚତୁର୍ଥ ଶତାବ୍ଦୀର ପ୍ରଥମ ଭାଗରେ ଘଟିଥିଲା ଯାହାର ସ୍ଥାୟୀତ୍ୱ ସୀମିତ ଥିଲା । ସେ ଭାରତବର୍ଷ ଭିତରକୁ ପ୍ରବେଶ କରି ରାଜ୍ୟ ବିସ୍ତାର ଅଥବା କଲୋନୀ ସ୍ଥାପନ କରି ନ ଥିଲେ । ପଞ୍ଜାବ ସୀମାନ୍ତରୁ ଓଡ଼ିଶା ବହୁଦୂର ଏବଂ ସେ ସମୟରେ ପାହାଡ଼, ପର୍ବତ, ଘନ ଜଙ୍ଗଲ, ନଦୀ ନାଳ ଯୋଗୁଁ ଦୁର୍ଗମ ଥିଲା । ସେ ସ୍ୱଳ୍ପସ୍ଥାୟୀ ଗ୍ରୀକ୍ ଅଭିଯାନର ଛାପ, ଓଡ଼ିଶାର କଳା ସଂସ୍କୃତିରେ ପଡ଼ିଥିବା- କଷ୍ଟ କଳ୍ପନା । ବ୍ରିଟିଶ୍ କଲୋନୀ ଯାହା ଅନେକ ଦୀର୍ଘସ୍ଥାୟୀ ଥିଲା, ଏହା କରି ପାରି ନାହିଁ । ଏପରିକି ଦକ୍ଷିଣୀ ରାଜାମାନେ, ଯିଏ ଓଡ଼ିଶା ଦଖଲ କରିଗଲେ, ଶେଷରେ ନିଜେ ଓଡ଼ିଆ ହୋଇଗଲେ ସିନା ଏଠାକାର କଳା ସଂସ୍କୃତିକୁ ଦକ୍ଷିଣୀ କରିପାରିଲେନାହିଁ । ଏଇଠାରେ ଏ ଦେଶର କଳା-ସଂସ୍କୃତିର ଅନ୍ତର୍ନିହିତ ଶକ୍ତି ।

## ଓଡ଼ିଶାରେ ମନ୍ଦିର ଶିଳ୍ପର କ୍ରମବିକାଶ ଓ କୋଣାର୍କ :

ଉପରୋକ୍ତ ଶୀର୍ଷ ନାମରେ କିଛି ଆଲୋଚନାର ପ୍ରୟୋଜନ ଅଛି । ଏ ବିଷୟରେ ସାମାନ୍ୟ ସୂଚନା ଦିଆଯାଇଛି ପ୍ରଥମ ପରିଚ୍ଛେଦରେ । ପ୍ରଖ୍ୟାତ ଶିଳ୍ପ ଐତିହାସିକ ଚାର୍ଲସ୍ ଲୁଇ ଫାବ୍ରି ( ୧୮୯୯-୧୯୬୮ )ଙ୍କ ମତରେ ଖଣ୍ଡଗିରିର ଜୈନ ଗୁମ୍ଫା ଠାରୁ ପର୍ଶୁରାମେଶ୍ୱର ମନ୍ଦିର ଯାଏ ପ୍ରାୟ ଆଠଶହ ବର୍ଷର କୌଣସି ଇତିହାସ ନାହିଁ । [୨୦୪]

ଫାବ୍ରି ଲେଖିଛନ୍ତି, ଅନେକଙ୍କ ମତ ପର୍ଶୁରାମେଶ୍ୱର ଅଷ୍ଟମ ଶତାବ୍ଦୀର ମନ୍ଦିର । କିନ୍ତୁ ନିଜେ ଅନ୍ୟତ୍ର କହିଛନ୍ତି ପର୍ଶୁରାମେଶ୍ୱରର ଗଠନ କାଳ ୬୩୦ ଖ୍ରୀଷ୍ଟାବ୍ଦ । ଛ'ଶହ ବର୍ଷ ମଧ୍ୟରେ ଓଡ଼ିଶାର ମନ୍ଦିର ସ୍ଥାପତ୍ୟ ଶିଳ୍ପର କ୍ରମବିକାଶ ହୋଇ କିପରି କୋଣାର୍କର ଶୀର୍ଷ ବିନ୍ଦୁରେ ଉପନୀତ ହେଲା ତାହା ଉପସ୍ଥାପନ କରିବାର ଚେଷ୍ଟା କରାଯିବ ।

ଗୋଟେ ସମୟର ଐତିହାସିକ ଅସ୍ପଷ୍ଟତାର ଗୋଟିଏ କାରଣ, ଚାର୍ଲସ୍ ଫାବ୍ରି, Dr. K. C. Panigrahi ଇତ୍ୟାଦି ହାତ ଗଣତି କେତେଜଣଙ୍କୁ ବାଦ୍ ଦେଲେ, ଅଧିକାଂଶ ଗବେଷଣା ଭୁବନେଶ୍ୱର, ପୁରୀ ଇତ୍ୟାଦିରେ ଦେଖାଯାଉଥିବା ହିନ୍ଦୁ ମନ୍ଦିରମାନଙ୍କ ଉପରେ ପର୍ଯ୍ୟବସିତ । ଶିଶୁପାଳଗଡ଼ରେ ଥିବା ତୃତୀୟ ଓ ଚତୁର୍ଥ ଶତାବ୍ଦୀର କୁଶାଣ ଯୁଗର ଇତିହାସ ଏଯାଏ ସମ୍ପୂର୍ଣ୍ଣ ଉନ୍ମୋଚିତ ହୋଇନାହିଁ । ଫାବ୍ରି ନିଜେ ସମ୍ବଲପୁର ଜିଲ୍ଲାରେ କିଛି ଆବିଷ୍କାର କରିଛନ୍ତି ଯାହା ପଞ୍ଚମ, ଷଷ୍ଠ, ଏପରିକି ସପ୍ତମ ଶତାବ୍ଦୀ ଯାଏ ଆଲୋକପାତ କରୁଛି । ରତ୍ନଗିରିର ଆବିଷ୍କାର ୫୫୦ ଖ୍ରୀଷ୍ଟାବ୍ଦର ଉଜ୍ଜ୍ୱଳ ନିଦର୍ଶନ । ଦୀର୍ଘ ସମୟର ବୌଦ୍ଧ ପ୍ରଭାବକୁ ବୁଝିବାର ଚେଷ୍ଟା ନ କଲେ, ତତ୍‌ପରବର୍ତ୍ତୀ ହିନ୍ଦୁ ମନ୍ଦିର ସ୍ଥାପତ୍ୟର ହଠାତ୍ ବିସ୍ଫୋରଣ ବୁଝି ହେବ ନାହିଁ – ଏହା ଫାବଙ୍କ ମତ ।[୨୦୫]

ଫାବ୍ରି କିନ୍ତୁ ଗୋଟିଏ ବିଷୟ ସଠିକ୍ ରୂପେ ଧରି ପାରିନାହାନ୍ତି । ଶିଳ୍ପୀକୁ ଗଣେଶ ଗଢ଼ିବାକୁ କହିଲେ ଗଢ଼ିବ, ଦୁର୍ଗା ଗଢ଼ିବାକୁ କହିଲେ ଗଢ଼ିବ, କିନ୍ତୁ ଗଠନଗତ ଶିଳ୍ପ ପରିଭାଷା ତାହା ଭିତରେ ଗଢ଼ି ଉଠିଛି ନିଜସ୍ୱ ଧ୍ୟାନ ଧାରଣାରୁ । ଶାସକର ପରିବର୍ତ୍ତନ ହୁଏ, କିନ୍ତୁ ଶିଳ୍ପୀ ରହିଯାଏ ତାହାର ଐତିହ୍ୟକୁ ଧରି; ବୌଦ୍ଧଯୁଗୀୟ ଶାସକର ଇଚ୍ଛା ଅବଶ୍ୟ କିଛି ଛାୟାପାତ କରେ, କିନ୍ତୁ କଳିଙ୍ଗଶିଳ୍ପୀ ରହିଯାଏ କଳିଙ୍ଗ ଶିଳ୍ପୀ ହୋଇ । ଫାବ୍ରି ଅବଶ୍ୟ ଠିକ୍ ଧରିଛନ୍ତି, ଯେଉଁଠାରେ ସେ କହିଛନ୍ତି ସେ ସମୟର ଶିଳ୍ପୀ, 'Wandering Craftsman' ଗୋଟିଏ ସ୍ଥାନରେ ମନ୍ଦିର ଗଢ଼ିବା ଶେଷ କରି ଅନ୍ୟତ୍ର ଚାଲି ଯାଉଛି ।[୨୦୬] ସେ ପ୍ରଦେଶ ମଧ୍ୟରେ ହୋଇପାରେ, ବାହାରେ ମଧ୍ୟ ହୋଇପାରେ । ଏହା ଛଡ଼ା ହିନ୍ଦୁ ଧର୍ମର ବିରାଟ ପରିଧି ମଧ୍ୟରେ ବୁଦ୍ଧ ମଧ୍ୟ ଅଛନ୍ତି । ବୁଦ୍ଧ, ଦଶ ଅବତାର ମଧ୍ୟରେ ଗୋଟିଏ ଅବତାର ।

ବୌଦ୍ଧ ଛାୟାପାତ ବାହାରେ ମଧ୍ୟ ଅନ୍ୟ ଉତ୍ତର-ଭାରତୀୟ ଛାୟା ପଡ଼ିଛି ଏ ମହାସ୍ରୋତ ମଧ୍ୟରେ । କେଶରୀ ବଂଶର ଇତିହାସ ଘାଣ୍ଟିବାକୁ ଯାଇ ଗାଙ୍ଗୁଲୀ, ମାଦଳାପାଞ୍ଜି, Dr. Kielhorn ଓ କେତେକ ଶିଳାଲିପିର ସାକ୍ଷ୍ୟ ପ୍ରମାଣ ଧରି ଲେଖିଛନ୍ତି :

ଅଷ୍ଟମ ଶତାବ୍ଦୀର ତିଭରଦେବ କୋଶଳ ରାଜପୁତ୍ର ଚନ୍ଦ୍ରଗୁପ୍ତଙ୍କ ଅନ୍ୟନାମ । ଚନ୍ଦ୍ରଗୁପ୍ତଙ୍କ ପରେ ଚତୁର୍ଥ ପୁରୁଷ ମହାଶିବଗୁପ୍ତ ଯଯାତି କେଶରୀଙ୍କ ଅନ୍ୟ ନାମ ଏବଂ ତାଙ୍କ ରାଜତ୍ୱ ୮୦୦ ଖ୍ରୀଷ୍ଟାବ୍ଦ, ଯଦିଓ କିଛି ମତଭେଦ ଅଛି ।[୨୦୭] ଆମର ବକ୍ତବ୍ୟ ନୁହେଁ ଯଯାତି କେଶରୀ ୪୭୦ ଅଥବା ୮୦୦ ଖ୍ରୀଷ୍ଟାବ୍ଦର ନରପତି; ଆମର ବକ୍ତବ୍ୟ ଚନ୍ଦ୍ରଗୁପ୍ତ ଠାରୁ ଯଯାତି କେଶରୀ କିଛି ଉତ୍ତର ଭାରତୀୟ ଧ୍ୟାନ ଧାରଣା ବହନ କରି ଆଣିଥିଲେ । ଏହା ସର୍ବଜନବିଦିତ, ଗଙ୍ଗବଂଶ ବହୁବର୍ଷ ଧରି ସେମାନଙ୍କର ଦାକ୍ଷିଣାତ୍ୟର ମୂଳ ଓ ବୈବାହିକ କାରଣରୁ ଦ୍ରାବିଡ଼ ଧାରା ଓଡ଼ିଶାକୁ ବହନ କରି ଆଣିଥିଲେ । କିନ୍ତୁ ଉତ୍କଳ ଶିଳ୍ପୀର ମହତ୍ତ୍ୱ, ସେ ନା ଉତ୍ତର-ଭାରତୀୟ ନା ଦକ୍ଷିଣ ଭାରତୀୟ ଧ୍ୟାନ ଧାରଣାରେ ସମ୍ପୂର୍ଣ୍ଣ ଡୁବି ଗଲା । ଉତ୍କଳ ଶିଳ୍ପୀ ବିଭିନ୍ନ ଶିଳ୍ପ ଧାରା ଦେଇ କିଛି କିଛି ପରୀକ୍ଷା କରିଥିଲେ ମଧ୍ୟ ଶେଷ ପର୍ଯ୍ୟନ୍ତ ରହିଗଲା ଓଡ଼ିଶାର ନିଜସ୍ୱ ।

ଚାର୍ଲସ୍ ଫାବ୍ରିଙ୍କର କେତୋଟି କଥା ଉପସ୍ଥାପନ କରିବା ଅତି ପ୍ରାସଙ୍ଗିକ ହେବ ।

'There is consistency and logic in Orissan Temple architecture that is most impressive. The hesitations and experimentations even of Aihole and Pattadakal are almost entirely absent. A few frek buildings exist; notably the Bhaskaresvar, the Boitala Deul at Bhubaneswar and the two yogini temples just dealt with. But after a quick and brilliant start around 600 A.D. the Orissan architect rapidly finds his own style and then unhesitatingly bursts in to a passionate and almost frantic activity, raising temple after temple, always sticking to his well-established style, always ready to make minor changes, but never stopping until in 1250 AD he raises the ultimate and triumphal Sun Temple at Konarka."[୨୦୮]

ଓଡ଼ିଶାର ରେଖ-ଦେଉଳ ଭାରତୀୟ ଆର୍ଯ୍ୟ ସ୍ଥାପତ୍ୟର ଅଂଶ । ଉତ୍କଳ ଶିଳ୍ପୀ ଏଥିରେ ନିଜସ୍ୱ ଛାପ ରଖିବା ପାଇଁ ବିଭିନ୍ନ ପରୀକ୍ଷା ନିରୀକ୍ଷା କରିଛି । କିନ୍ତୁ ଶିଖର ଶୈଳୀର ଅଗ୍ରଭେଦୀ ସମ୍ପର୍କରେ କୌଣସି ପରିବର୍ତ୍ତନ ଆଣି ନାହିଁ । **ପୀଢ଼ ଦେଉଳର**, ବିଶେଷକରି ପୀଢ଼ ଅଂଶରେ ପାଞ୍ଚ ଛଅଶହ ବର୍ଷ ମଧ୍ୟରେ ବିଶେଷ ପରିବର୍ତ୍ତନ ଘଟିଛି ।

ଚାରିଟି କାନ୍ଥ ଗଢ଼ି ଦେବା ସହଜ, ତାହା ଉପରେ ଆଚ୍ଛାଦନ ପକାଇଲା ବେଳେ ଆସେ ଯେତେ ପ୍ରକାରର କଳା କୌଶଳ । ସପ୍ତମ ଶତାବ୍ଦୀରେ ନିର୍ମିତ ହୋଇ ବୋଇତାଳ ମନ୍ଦିରର ମୁଖଶାଳା ଠାରୁ ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ କୋଣାର୍କ ଦେଉଳର ମୁଖଶାଳାକୁ ଦେଖିଲେ ପରିବର୍ତ୍ତନଟି ସ୍ପଷ୍ଟ ହେବ ।

ବୋଇତାଳ, ପର୍ଶୁରାମେଶ୍ୱର ଓ ଶିଶିରେଶ୍ୱର ମନ୍ଦିରର ମୁଖଶାଳା ଦେଖିବାକୁ ପ୍ରାୟ ଏକା ପ୍ରକାର । ଦେବାଲ ଉପରେ ପ୍ରଥମେ ଗୋଟିଏ ସ୍ତର ଢ଼ାଲୁ ପଥରର ଛାଉଣି ଚାରିପଟେ ଘେରିଯାଇଛି । ଏହା ତିନି ଚାରି ଫୁଟରୁ ଅଧିକା ଓସାର ହୁଏ ନାହିଁ । ଏହା ଉପରକୁ ପାରାଖୋପ ଭଳି ଅଳ୍ପ ଉଚ୍ଚ ବନ୍ଧ ଗୋଟିଏ ଚାରିପଟେ ବୁଲିଥାଏ ଏବଂ ତାହା ଉପରେ ଥାଏ ସମତଳ ଛାତ । ତଳୁ ସମତଳ ପରି ଦିଶୁଥିଲେ ମଧ୍ୟ ଏହା ଦୁଇପଟକୁ କିଛି ଢ଼ାଲୁ ଥାଏ ।

ବୋଇତାଳ - ୬୦୦ ଖ୍ରୀଷ୍ଟାବ୍ଦ

**ପର୍ଶୁରାମେଶ୍ୱର** - ୬୦୦ ଠାରୁ ୬୩୦ ଖ୍ରୀଷ୍ଟାବ୍ଦ(ଫଟୋ : ୧୪-କ)

**ଶିଶିରେଶ୍ୱର** - ଅଷ୍ଟମ ଶତାବ୍ଦୀ । ଏ ମନ୍ଦିରଗୁଡ଼ିକର ଭୂମିତଳ ଆୟତାକାର ।

ସପ୍ତମ ଠାରୁ ଅଷ୍ଟମ ଶତାବ୍ଦୀ ମଧ୍ୟରେ ଆଉ କିଛି ପୀଢ଼ଦେଉଳ ଗଢ଼ା ହେଲା, ଯେଉଁଥିରେ ଏକ ବଦଳରେ ଦୁଇଟି ଢାଲୁ ଛାଉଣି ଆସିଛି ଏବଂ ସବା ଉପର ଛାତ ଦୁଇ ପଟକୁ ଆହୁରି ଢ଼ାଲୁ ହୋଇଛି, ଯାହା ଫଳରେ ପରବର୍ତ୍ତୀ ଯୁଗର ପୀଢ଼ଦେଉଳର ଆଭାସ ମିଳୁଛି । ଉଦାହରଣ :

**ସିଂହନାଥ ମନ୍ଦିର** - ସପ୍ତମ ଶତାବ୍ଦୀ । ଏହା ମହାନଦୀ ଭିତରେ ବଡ଼ମ୍ବା ନିକଟସ୍ଥ ଗୋଟିଏ ଦ୍ୱୀପରେ ଅବସ୍ଥିତ । (ଫଟୋ : ୧୪-ଖ)



ଫଟୋ-୧୪(କ) : ପର୍ଶୁରାମେଶ୍ୱର ମନ୍ଦିର



ଫଟୋ-୧୪(ଖ) : ସିଂହନାଥ ମନ୍ଦିର



ଫଟୋ-୧୪(ଗ) : ରାଜରାଣୀ ମନ୍ଦିର



ଫଟୋ-୧୪(ଘ) : ଲିଙ୍ଗରାଜ ମନ୍ଦିର



ଫଟୋ-୧୪(ଡ) : କୋଣାର୍କ ମନ୍ଦିର- କ୍ରମବିବର୍ତ୍ତନ ଧାରାରେ ପୀଢ଼ଦେଉଳର ଶେଷ ପର୍ଯ୍ୟାୟ

**ଗନ୍ଧାର୍ଦ୍ଧି ଯୋଡ଼ି ମନ୍ଦିର** - ୭୫୦ ଠାରୁ ୮୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ । ଏଥିରୁ ଗୋଟିଏ ବିଷ୍ଣୁ ଓ ଅନ୍ୟଟି ଶିବ ମନ୍ଦିର । ଯୋଡ଼ିଏ ଢାଲୁ ଛାତ ଓ ସବା ଉପରେ ଗୋଟିଏ ଛୋଟ ଛାତ ଦେଖିବାକୁ ମିଳୁଛି । ଏହା ଫୁଲବାଣୀ ଜିଲ୍ଲାରେ ଅବସ୍ଥିତ ।

ଏହା ପରେ ଗଢ଼ା ହେଲା । ଏବେ ଯେପରି ଦେଖାଯାଉଛି ସେଇପରି ପୀଢ଼ ଦେଉଳ, କିନ୍ତୁ ପୀଢ଼ର ସଂଖ୍ୟାରେ ବିଭିନ୍ନତା ଦେଖାଗଲା । ପାରାଘର କେଉଁଥିରେ ରହିଲା, କେଉଁଥିରେ ରହିଲା ନାହିଁ ।

**ମୁକ୍ତେଶ୍ୱର** - ୯୦୦ ଖ୍ରୀ.ଅ. । ଏଥିରେ ୧୧ଟି ପୀଢ଼ ଉଠି ଯାଇଛି ମୁଣ୍ଡ ଉପର କ୍ଷୁଦ୍ର ଗୋଲାକାର ସମତଳକୁ । ସେଠାରେ ଅଁଳା, ଖପୁରି ଇତ୍ୟାଦି ନାହିଁ କିନ୍ତୁ ଛୋଟ କଳସଟିଏ ଅଛି । ମନେହୁଏ, ଏ ସମୟରୁ ମୁଖଶାଳା ବର୍ଗାକୃତି ହେବାକୁ ଲାଗିଲା । ମୁକ୍ତେଶ୍ୱରର ଭାସ୍କର୍ଯ୍ୟ ପାଇଁ ଖ୍ୟାତି ପୃଥିବୀ ବ୍ୟାପୀ, କିନ୍ତୁ ପୀଢ଼ ଅଂଶ ସମପରିମାଣ ପ୍ରଶଂସାର ଯୋଗ୍ୟ ନୁହେଁ ।

**ରାଜରାଣୀ** - ୧୦୦୦ ଖ୍ରୀ.ଅ. । ଏହା ମଧ୍ୟ ମୁକ୍ତେଶ୍ୱର ଭଳି କିନ୍ତୁ ୧୩ଟି ପୀଢ଼ ଅଛି ଏବଂ ମସ୍ତକରେ ଅଂଳା ଅଥବା ଖପୁରି ନାହିଁ । (ଫଟୋ : ୧୪-ଗ)

**ବ୍ରହ୍ମେଶ୍ୱର** - ୧୦୦୦ ଠାରୁ ୧୦୫୦ ଖ୍ରୀ.ଅ. । ଏଥିରେ ମଧ୍ୟ ୧୧ଟି ପୀଢ଼ କିନ୍ତୁ ପ୍ରଥମ ଦୁଇ ଥାକ ଖପୁରି ଯୋଡ଼ା ହେଲା ।

**ମାଧବ ମନ୍ଦିର** - ଏକାଦଶ ଶତାବ୍ଦୀ । ଏଥିରେ ୬ ଥାକ ପୀଢ଼ ପରେ ପ୍ରଥମ, ଗୋଟିଏ ପାରାଘର ଯୋଡ଼ା ହେଲା ଏବଂ ତାହା ଉପରକୁ ଆହୁରି ୫ ଥାକ ପୀଢ଼ । ଏହା ଉପରେ ଦୁଇଥାକ ଖପୁରି ଅତି ସୁନ୍ଦର । କଳସଟି ଛୋଟ ।

**ଲିଙ୍ଗରାଜ** - ୧୦୬୦ ଠାରୁ ୧୧୦୦ ଖ୍ରୀ.ଅ. । ଏଥିରେ ପ୍ରଥମ ୯ ଥାକ ପୀଢ଼ ପରେ ଗୋଟିଏ ପାରା ଘର ଏବଂ ତାହା ପରେ ୬ ଥାକ ପୀଢ଼ । ଏଥିରେ ପ୍ରଥମ କରି ଅମଳା ଯୋଡ଼ାଗଲା ଏବଂ ଦୁଇଟି ପୀଢ଼ ଥାକ ମଧ୍ୟରେ ଅପୂର୍ବ କାରୁକାର୍ଯ୍ୟମୟ ସିଂହପୀଠ ଯୋଡ଼ାଗଲା । (ଫଟୋ : ୧୪-ଘ)

**ପୁରୀ ଜଗନ୍ନାଥ ମନ୍ଦିର** - ଏକାଦଶ ଶତାବ୍ଦୀ - ଏଥିରେ ୭ ଥାକ ପୀଢ଼ ପରେ ଗୋଟିଏ ପାରାଘର ଏବଂ ତାହା ଉପରକୁ ୫ ଥାକ ପୀଢ଼ । ମନେ ହୁଏ ମନ୍ଦିରଟି ହେଲାରେ ଗଢ଼ା ଯାଇଥିଲା, ଲିଙ୍ଗରାଜ ମନ୍ଦିରର ଶିଳ୍ପ ଐଶ୍ୱର୍ଯ୍ୟ ଏ ମନ୍ଦିରରେ ନାହିଁ ।

**କୋଣାର୍କ** - ୧୨୫୬ ଖ୍ରୀ.ଅ.- ବର୍ତ୍ତମାନ ଆସିଗଲା ତିନି ଥାକ ପୀଢ଼ ଓ ଦୁଇଥାକ ପାରାଘର । ପ୍ରଥମ ଥାକରେ ୬ଟି ପୀଢ଼, ଦ୍ୱିତୀୟ ଥାକରେ ପୁଣି ୬ଟି ପୀଢ଼ ଓ ଶେଷ ଥାକରେ ୫ ଥାକ ପୀଢ଼ । ସ୍ଥପତିର ଶିଳ୍ପ ଚିନ୍ତାରେ ସାମଞ୍ଜସ୍ୟ ଓ ସନ୍ତୁଳନ ('Sense of proportion and balance') ର ପଟ୍ଟାନ୍ତର ନାହିଁ । ମନ୍ଦିର ଶିଳ୍ପ ଶୀର୍ଷ ବିନ୍ଦୁ ଛୁଇଁଗଲା । (ଫଟୋ : ୧୪-ଙ)

ପୀଢ଼ ଦେଉଳର କ୍ରମ ବିବର୍ତ୍ତନର ଚିତ୍ରମାଳା ୯୧-୯୨ ପୃଷ୍ଠାରେ ପ୍ରଦତ୍ତ ହେଲା ।

# ସ୍ଥାପତ୍ୟ ପରିଚିତି :

କୋଣାର୍କର ଶିଳ୍ପ ବିଶେଷତ୍ୱ କ'ଣ ବୁଝିବା ପାଇଁ ଏ ସ୍ଥାପତ୍ୟର ବିଭିନ୍ନ ବିଭାଗ ସହିତ ପରିଚିତ ହେବା ଆବଶ୍ୟକ ।

**ଭିତ୍ତିଭୂମି** - ବିଷୟଟି ପୂର୍ବରୁ ଆଲୋଚିତ ହୋଇଛି ଅନ୍ୟ ପ୍ରସଙ୍ଗରେ । ତଥାପି ପୁଣିଥରେ ଆଲୋଚିତ ହେଉଛି; ନଚେତ୍ 'ସ୍ଥାପତ୍ୟ ପରିଚିତି' ଅସଂପୂର୍ଣ୍ଣ ରହିଯିବ । ଯେ କୌଣସି ଇମାରତ୍‌ର ଆରମ୍ଭ ନିଅଁ ଖୋଳାରୁ । ସେ ଭାବରେ ଦେଖିବାକୁ ଗଲେ ଓଡ଼ିଶା ଦେଉଳର ନିଅଁ ହୁଏନା ଅର୍ଥାତ୍ କାନ୍ଥ ତଳକୁ ଚଉଡ଼ା କରି ଖୋଳା ଯାଏନା, ସମ୍ପୂର୍ଣ୍ଣ ମନ୍ଦିରଟି ଗୋଟିଏ ନିଦା ଚଟାଣ ଉପରେ ନିର୍ମିତ ହୁଏ । ସେ ଚଟାଣ ଜମି ସହିତ ସମତୁଳ ରହିପାରେ (ଯଥା ଲିଙ୍ଗରାଜ) ଅଥବା ଗୋଟିଏ ପୀଠ ଆକାରରେ ଉଠିପାରେ (ଯଥା ରାଜରାଣୀ, କୋଣାର୍କ ଇତ୍ୟାଦି) ସେ ପତନ ଅଥବା ପୀଠ ପଥରରେ ଗଢ଼ା ହୋଇଥାଏ ଏବଂ ମାଟିତଳକୁ ଯାଇଥାଏ । କେତେ ତଳକୁ ? ସାଧାରଣତଃ ସମ୍ପୂର୍ଣ୍ଣ ମନ୍ଦିରର ୧/୩ ଅଂଶ ।[୨୦୯] କୋଣାର୍କ ମନ୍ଦିରର ଆକଳିତ ଉଚ୍ଚତା ଥିଲା ୨୨୮ ଫୁଟ୍ । ତେଣୁ ଏହାର ପୀଠ ୭୬ ଫୁଟ୍ ମାଟି ତଳକୁ ଯିବା କଥା । ଭୂମି ଚୟନ ନେଇ ସେ ଯୁଗରେ ବହୁ ବାଧ୍ୟବାଧକତା ଥିଲା, ଅଗ୍ନି ପୁରାଣରେ ଏ ବିଷୟରେ ବସ୍ତୃତଭାବେ ଉପଦେଶ ଲିପିବଦ୍ଧ ଅଛି । ଏହାଛଡ଼ା ସେ ଯୁଗରେ ମଧ୍ୟ soil testing କଥା ଜଣାଥିଲା । କଶ୍ୟପ ପୁରାଣ ଓ ମତ୍ସ୍ୟ ପୁରାଣରେ ମାଟି ପରୀକ୍ଷା କରିବାର ଗୋଟିଏ ସହଜ ପନ୍ଥା ଉଲ୍ଲିଖିତ ଅଛି । ହାତେ ଗଭୀର ଗୋଟିଏ ଗର୍ତ୍ତ ଖୋଳି ଖୋଳା ହୋଇଥିବା ମାଟି ପୁଣି ସେ ଗାତରେ ଭରି ଦେବାକୁ ପଡ଼ିବ । ଭରିଥିବା ମାଟି ଗାତରୁ ଉଛୁଳି ପଡ଼ିପାରେ, ସମତୁଲ ହୋଇପାରେ କିମ୍ବା ଭର୍ତ୍ତି ନ ହୋଇପାରେ । ଏହା ଯଥାକ୍ରମେ 'ଭଲ', 'ଚଳନଯୋଗ୍ୟ, ଏବଂ 'ମନ୍ଦ' ସୂଚିତ କରିବ । ଇମାରତ୍‌ର ଆକାରକୁ ନଜରରେ ରଖି ପ୍ରଥମ ଦୁଇଟି ବିକଳ୍ପ ଚୟନ କରାଯିବ କିନ୍ତୁ ଦ୍ୱିତୀୟ ବିକଳ୍ପ ସର୍ବଦା ବର୍ଜନୀୟ ହେବ ।[୨୧୦] ଏ ସମସ୍ତ ସାଧାରଣ ନିୟମ ବାହାରେ ଦେଖିଲେ, ଓଡ଼ିଶା ମାଟିତଳେ ଅଛି laterite ପଥରର ଗୋଟିଏ କଠିଣ substratum । ସ୍ଥପତିର ଲକ୍ଷ୍ୟ ଥିଲା ମାଟି ଖୋଳି ସମଗ୍ର ମନ୍ଦିର ତଳ ଗୋଟିଏ ଟାଣ ଭୂମି ଉପରେ ରଖିଦେବ ।[୨୧୧] ଆଜି ଯେଉଁମାନେ କହୁଛନ୍ତି, କୋଣାର୍କର ମୂଳ ଦବି ଯିବାରୁ ମନ୍ଦିରଟି ଧ୍ୱଂସ ହେଲା ସେମାନେ ପୁରାତନ ବିଜ୍ଞାନର ଏ ଦିଗଟି ପ୍ରତି ନଜର ଦେଲେ ଭଲ ହୁଅନ୍ତା ।

# ମନ୍ଦିରର ଦିଗ ନିର୍ଣ୍ଣୟ :

ଏହା ପର ପଦକ୍ଷେପ ସଠିକ୍ ଦିଗ ନିର୍ଣ୍ଣୟ । ଆଧୁନିକ ସ୍ଥପତି ମଧ୍ୟ ଦିଗ ନିର୍ଣ୍ଣୟ କରିଥାଏ, କିନ୍ତୁ ସହର ଜୀବନରେ କ୍ରମବର୍ଦ୍ଧମାନ ସ୍ଥାନାଭାବ ଯୋଗୁଁ, କେଉଁ ପଟକୁ ମୁହଁ କରି ଘର ତୋଳା (ଗଢ଼ା) ହେବ, ସମୟେ ସମୟେ ସ୍ଥପତିଙ୍କ କର୍ତ୍ତୃତ୍ୱ ବାହାରେ । ଏପରି ସୀମାବଦ୍ଧତା ଭିତରେ ଆଧୁନିକ ସ୍ଥପତି ତାହାର ବାସ୍ତୁବିଜ୍ଞାନ ଅନୁଯାୟୀ ଘରର ବିଭିନ୍ନ ବିଭାଗ ସଜାଉଛି । ଖଣ୍ଡଗିରି ଉଦୟଗିରିର ଗୁମ୍ଫାଗୁଡ଼ିକ ଦେଖିଲେ ମନେହେବ, ମଣିଷ ବାସଯୋଗ୍ୟ ଘରରେ ସେପରି ନିର୍ଦ୍ଦିଷ୍ଟ କୌଣସି ନିୟମ ନଥିଲା । ହିନ୍ଦୁମାନେ ଯଦିଓ ଉତ୍ତର ଅଥବା ପୂର୍ବାସ୍ୟ ହୋଇ ପୂଜା କରିଥାଆନ୍ତି, ଓଡ଼ିଶାର ସମସ୍ତ ମନ୍ଦିର ପୂର୍ବାସ୍ୟ ହୋଇଥାଏ ଅର୍ଥାତ୍ ପୂଜକ ବସିବେ ପଶ୍ଚିମକୁ ମୁହଁକରି । ଏହାର ବ୍ୟତିକ୍ରମ ମୁକ୍ତେଶ୍ୱର ଓ ପର୍ଶୁରାମେଶ୍ୱର ମନ୍ଦିର ଯାହା ପଶ୍ଚିମାସ୍ୟ, କିନ୍ତୁ ସେ ମନ୍ଦିରଗୁଡ଼ିକ ଗଢ଼ାହୋଇଥିଲା ଯେତେବେଳେ ମନ୍ଦିର ଶିଳ୍ପରେ ପରୀକ୍ଷା ନିରୀକ୍ଷା ଲାଗି ରହିଥିଲା । ପୁରୀ, ଭୁବନେଶ୍ୱର, କୋଣାର୍କ ଇତ୍ୟାଦି ଅଧିକାଂଶ ଦଶମଠାରୁ ତ୍ରୟୋଦଶ ଶତାବ୍ଦୀ ମଧ୍ୟରେ ନିର୍ମିତ । ମନେ ହୁଏ, ମନ୍ଦିର ସ୍ଥପତି କ୍ରମେ ପୂର୍ବାସ୍ୟ ମନ୍ଦିରମାନଙ୍କର ସ୍ଥାପତ୍ୟଗତ ଉପଯୋଗିତା ପାଇଥିଲେ ଏବଂ ତାହାକୁ ନିୟମରେ ପରିଣତ କରିଥିଲେ । ଗାଙ୍ଗୁଲୀ Prismatic Compass ଏବଂ Theodlite ସାହାଯ୍ୟରେ କୋଣାର୍କର ଜରିପ୍ କରିଥିଲେ । ସେଥିରୁ ପରିଷ୍କାର ଜଣାପଡୁଛି କୋଣାର୍କ ସ୍ଥପତିଙ୍କ ଦିଗନିର୍ଣ୍ଣୟ ସମ୍ପୂର୍ଣ୍ଣ ନିର୍ଭୁଲ ।[୨୧୨]

# ଭିତ୍ତିଭୂମିର ନକ୍ସା (ରଥ ପରିକଳ୍ପନା) ଃ

ମନ୍ଦିରର ମେଜିଆ ସବୁବେଳେ ବର୍ଗାକାର ହୋଇଥାଏ । ଏହାର ଧାର୍ମିକ ପ୍ରୟୋଜନ କିଛି ଥିଲା ଅଥବା ନୁହେଁ ଜଣାନାହିଁ କିନ୍ତୁ ଏପରି ଗଠନ ପଛରେ ସ୍ଥାପତ୍ୟଗତ କାରଣ ଅଛି । ସ୍ଥପତି ସବୁବେଳେ ଚେଷ୍ଟିତ ତାହାର ସୃଷ୍ଟି ଦୃଢ଼, ପ୍ରୟୋଜନ ଉପଯୋଗୀ ତଥା ନାନ୍ଦନିକ ହେଉ କିନ୍ତୁ ଯେପରି ଅପ୍ରୟୋଜନୀୟ ବ୍ୟୟ ନ ହେଉ । ଏହା ଏକଦେଶଦର୍ଶୀ ଅର୍ଥ ସଂକୋଚନ ନୁହେଁ, ବିଜ୍ଞାନସମ୍ମତ ମିତବ୍ୟୟିତା । ବର୍ଗାକାର ଭୂମିତଳ କଥା ଚିନ୍ତା କରାଯାଉ । ଧରାଯାଉ ଗୋଟିଏ ଘରର ଭୂମିତଳ ୨୦' × ୨୦' ଏବଂ ଦେବାଲର ବେଧ ୧ ଫୁଟ୍ (ମନ୍ଦିର ଦେବାଲର ବେଧ ଅନେକ ଅଧିକ ହୋଇଥାଏ) ଓ ଉଚ୍ଚତା ୧୦ ଫୁଟ୍ । ସେଠାରେ ଃ

ଭୂମିତଳ - ୨୦' × ୨୦' = ୪୦୦ ବର୍ଗଫୁଟ୍ - ବ୍ୟବହାର୍ଯ୍ୟ ସ୍ଥାନ

ଦେବାଲ୍‌ର ଲମ୍ବ - ୨୦' × ୨' + ୨୨' × ୨ = ୮୪ ଫୁଟ୍

ଘନଫୁଟ୍ ନିର୍ମାଣ - ୮୪' × ୧' × ୧୦' = ୮୪୦ ଘନ ଫୁଟ୍

**ଆଉ ଗୋଟିଏ ଦୃଷ୍ଟାନ୍ତ ନିଆଯାଉ ଃ**

ଭୂମିତଳ - ୨୫' × ୧୬' = ୪୦୦ ବର୍ଗଫୁଟ୍ - ବ୍ୟବହାର୍ଯ୍ୟ ସ୍ଥାନ ।

ଦେବାଲର ଲମ୍ବ - ୨୫' × ୨ + ୧୮' × ୨ = ୮୬ ଫୁଟ୍ ।

ଘନଫୁଟ୍ ନିର୍ମାଣ - ୮୬' × ୧' × ୧୦' = ୮୬୦ ଘନ ଫୁଟ୍ ।

ବ୍ୟବହାର୍ଯ୍ୟ ସ୍ଥାନ ସମାନ ରଖି ମାତ୍ର ଦଶ ଫୁଟ୍ ଉଚ୍ଚତାରେ ବର୍ଗାକୃତି ଘରଟିରେ ଆୟତକ୍ଷେତ୍ରାକୃତି ଘରଠାରୁ ୨୦ ଘନ ଫୁଟ୍ ନିର୍ମାଣଗତ ଖର୍ଚ୍ଚ କମ୍ ହେଉଛି । ମନେ ରଖିବାକୁ ହେବ, ମନ୍ଦିର ଦେବାଲର ବେଧ ୧୫ ଠାରୁ ୨୫ ଫୁଟ୍ ଏବଂ ଉଚ୍ଚତା ଶହେ ଦୁଇଶହ ଫୁଟ୍‌କୁ ଯାଇଥାଏ ।

ଭୂମିତଳ ବର୍ଗାକୃତି ହେଲେ ମଧ୍ୟ ବାହାର ଦେବାଲ୍ ନାନା ଖାଞ୍ଜ କଟା ହୋଇ ଏପରି ରୂପ ନିଏ, ହଠାତ୍ ଦେଖିଲେ ମନେ ହେବ ପାଖୁଡ଼ା ମେଲେଇଥିବା ଗୋଲ ଫୁଲଟିଏ । ଏହିଠାରେ ଆସୁଛି ରଥ ପରିକଳ୍ପନା, ଯାହା ଆର୍ଯ୍ୟ ସ୍ଥପତିର ଗୋଟିଏ ଆଶ୍ଚର୍ଯ୍ୟଜନକ ଆବିଷ୍କାର ।

ଆଶ୍ଚର୍ଯ୍ୟଜନକ ଏଇଥିପାଇଁ, ଏଥିରେ ଶିଳ୍ପ ଓ ପ୍ରଯୁକ୍ତି ବିଦ୍ୟା ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ପରିକଳ୍ପନାଟିର ତିନିଟି ଉଦାହରଣ ରେଖାଚିତ୍ର-୫ରେ ଉପସ୍ଥାପିତ ହେଲା ।

ଆର୍ଯ୍ୟ ତଥା ଉତ୍କଳ ସ୍ଥପତି ମନ୍ଦିର ଗଠନରେ ସ୍ତମ୍ଭ ବ୍ୟବହାର କରେ ନାହିଁ କିନ୍ତୁ ଦେବାଲ୍ ସହିତ ସଂଯୁକ୍ତ ଏଇ ଯେଉଁ Projection ଗଢ଼େ, ତାହାର ନାମ ଇଂରାଜୀରେ ଲେଖାଯାଉଛି Pilaster ଅର୍ଥାତ୍ ଆୟତାକାର ସ୍ତମ୍ଭ । ଶିଳ୍ପ ଶାସ୍ତ୍ରରେ ଏହାର ନାମ 'ପାଗ' ।

୧) ଯେଉଁ ମନ୍ଦିରରେ ପାଗ ଆଦୌ ନାହିଁ ତାହାର ନାମ 'ଏକରଥ' (ଚିତ୍ର ୫-କ) ।

୨) ଯେଉଁ ମନ୍ଦିରରେ ଗୋଟିଏ ମାତ୍ର କେନ୍ଦ୍ରିକ ପାଗ ଅର୍ଥାତ୍ 'ରହପାଗ' ଓ ଯୋଡ଼ିଏ 'କୋଣପାଗ' ଥାଏ, ତାହାକୁ 'ତ୍ରିରଥ' କୁହାଯାଏ । (ଚିତ୍ର ନଂ.୫-ଖ)

୩) ଯେଉଁ ମନ୍ଦିରରେ ଗୋଟିଏ 'ରହପାଗ', ଯୋଡ଼ିଏ 'ଅନର୍ଥପାଗ' ଓ ଯୋଡ଼ିଏ 'କୋଣ ପାଗ' ଥାଏ ତାହାକୁ 'ପଞ୍ଚରଥ' କୁହାଯାଏ । (ଚିତ୍ର ନଂ.୫-ଗ) ଏକରଥ ମନ୍ଦିର ଛଡ଼ା ଆଉ ସମସ୍ତ ମନ୍ଦିରରେ ଗୋଟିଏ 'ରହପାଗ' ଏବଂ ଯୋଡ଼ିଏ 'କୋଣପାଗ' ରହିବ କିନ୍ତୁ 'ଅନର୍ଥ ପାଗ' ବଢ଼ିପାରେ । ପଞ୍ଚରଥରେ ଆଉ ଯୋଡ଼ିଏ ଅନର୍ଥପାଗ ଯୋଡ଼ିଲେ 'ସପ୍ତରଥ' ମନ୍ଦିର ହେବ ଏବଂ ଏଇ ରୀତିରେ 'ନବରଥ' ମନ୍ଦିର ହେବ ।[୨୧୩] କେତୋଟି ଉଦାହରଣ ନିମ୍ନରେ ଦିଆଗଲା ଃ

**ଏକରଥ** – ବୋଇତାଳ

**ତ୍ରିରଥ** – ପର୍ଶୁରାମେଶ୍ୱର

**ପଞ୍ଚରଥ** – ଅନନ୍ତବାସୁଦେବ, ରାଜରାଣୀ, ମୁକ୍ତେଶ୍ୱର, ବ୍ରହ୍ମେଶ୍ୱର, ଭାସ୍କରେଶ୍ୱର, କେଦାରେଶ୍ୱର, ଲିଙ୍ଗରାଜ, କୋଣାର୍କ ଇତ୍ୟାଦି ଓଡ଼ିଶାରେ ଅଧିକାଂଶ ମନ୍ଦିର ପଞ୍ଚରଥ ହୋଇଥାଏ ।

**ସପ୍ତରଥ** – ଶାରିଦେଉଳ, ଗୌରୀମନ୍ଦିର - ବିମାନ ପଞ୍ଚରଥ, ଜଗମୋହନ ସପ୍ତରଥ । (P. 290. Ganguly) ଓଡ଼ିଶାରେ ନବରଥ ମନ୍ଦିର ହୁଏନାହିଁ ।

ପାଗ ଗଠନର କେତୋଟି ନିର୍ଦ୍ଦିଷ୍ଟ ନିୟମ ଅଛି । ଗୋଟିଏ ପଞ୍ଚରଥ ମନ୍ଦିରର ଉଦାହରଣ ଧରାଯାଉ । ବହିଃପାର୍ଶ୍ୱର ଦୈର୍ଘ୍ୟ ଧରାଯାଉ 'କ' ।

କୋଣ ପାଗର ଦୈର୍ଘ୍ୟ — କ /୨୦ × ୪

ଅନର୍ଥ ପାଗର ଦୈର୍ଘ୍ୟ — କ /୨୦ × ୩

ରହ ପାଗର ଦୈର୍ଘ୍ୟ — କ /୨୦ × ୬

ଏହା ଶାସ୍ତ୍ରୋକ୍ତ ମତ ।[୨୧୪] କିନ୍ତୁ ସାଧାରଣ ଦର୍ଶକ ଦେଖିଲା ବେଳକୁ ପାଗଗୁଡ଼ିକ ଜ୍ୟାମିତିକ ସରଳରେଖାରେ ନଥିବ; ଶିଳ୍ପୀ ପୁଣି ସେଗୁଡ଼ିକରେ ନକ୍ସା କାଟିବା ପାଇଁ ବହୁ ଭାଙ୍ଗ କରି ସାରିଥିବେ । ମନ୍ଦିରଟି ବର୍ଗାକାର ହେଲେ ମଧ୍ୟ ଏଇ ରୀତିରେ ମନେହେବ, ପ୍ରାୟ ଗୋଲାକାର ଫୁଲ, ଗୋଟିଏ ପାଖୁଡ଼ା ମେଲେଇଛି ।

ଦେବାଲ୍‌ର ବେଧ ଅଥବା ସ୍ଥୂଳତା କୋଣପାଗର ଦୈର୍ଘ୍ୟ ସହିତ ସମାନ ହେବ ।[୨୧୫] ଏ ନିୟମ କିନ୍ତୁ କୋଣାର୍କ କ୍ଷେତ୍ରରେ ଲାଗୁ ନାହିଁ । ASI ପ୍ରଦତ୍ତ ମ୍ୟାପ୍ ଅନୁଯାୟୀ କୋଣାର୍କ ବିମାନର କୋଣ ପାଗର ଦୈର୍ଘ୍ୟ ୧୩'-୫" କିନ୍ତୁ ସେଇ ଅଂଶର ବେଧ ୧୭'-୬" । ଏପରି ବିଚ୍ୟୁତି କୋଣାର୍କ ମନ୍ଦିରର ବହୁ ସ୍ଥାନରେ ମିଳୁଛି, କିନ୍ତୁ କୌଣସିଠାରେ ଅସଙ୍ଗତି ବିନ୍ଦୁମାତ୍ର ଆଖିରେ ପଡୁନାହିଁ । ମନେ ହୁଏ, ସାଧାରଣ ନିୟମ ସାଧାରଣ କାରିଗର ପାଇଁ କିନ୍ତୁ ଅସାଧାରଣ ସୃଷ୍ଟିର କାରିଗର ନିଜ ନିୟମ ଗଢ଼ି ତୋଳିବାର କ୍ଷମତା ରଖିଥାଏ ।




ଚିତ୍ର - କ




ଚିତ୍ର - ଖ




ଚିତ୍ର - ଗ




ଚିତ୍ର - ଘ

ରେଖାଚିତ୍ର-୫ଃ ରଥ ପରିକଳ୍ପନା

# ଉନ୍ନତାଂଶ ( Elevation ) :

ଉନ୍ନତାଂଶ ଅର୍ଥାତ୍ Elevation, ମୂଳତଃ ତିନି ଭାଗରେ ବିଭକ୍ତ; (କ) ବାଡ଼ (ଖ) ଗଣ୍ଡି (ଗ) ମସ୍ତକ । ଏ ତିନି ଭାଗର ବିଭିନ୍ନ ଉପବିଭାଗ ଥାଏ । ବିମାନ ଓ ମୁଖଶାଳାର ବାଡ଼, ଭୂମି ଉପରେ ସିଧା ୯୦°ରେ ଉଠି ଥାଏ । ବାଡ଼ ଉପରକୁ ବିମାନର ଗଠନ ଓ ଜଗମୋହନର ଗଠନ ଭିନ୍ନ ରୂପ ଧରିଥାଏ । ବିମାନର ଗଣ୍ଡି କ୍ରମ ବକ୍ରରେଖାରେ ଧୀରେ ଧୀରେ ବହୁ ଉପରକୁ ଉଠିଥାଏ ଯାହାକୁ ଇଂରାଜୀରେ Corbelling କୁହାଯାଏ । ଜଗମୋହନର ଗଣ୍ଡି ପିରାମିଡ୍ ଭଳି ଖୁବ୍ ଶୀଘ୍ର ବିମାନ ତୁଳନାରେ ଅପେକ୍ଷାକୃତ ଅଳ୍ପ ଉଚ୍ଚ ଉଠିଥାଏ, ଏ ଉତ୍ଥାନ କିନ୍ତୁ ଥାକ ଥାକ ହୋଇ ଓଲଟା ଶିଢ଼ି ଆକାରରେ ଉଠିଥାଏ । ତେଣୁ ଏହାକୁ ଇଂରାଜୀରେ inverted ladder structure କୁହାଯାଇଥାଏ ।

ବିମାନର ଗଣ୍ଡି ମଧ୍ୟ କହିବାକୁ ଗଲେ ଓଲଟା ଶିଢ଼ି ଭଳି (ରେଖାଚିତ୍ର ନଂ.୬) କିନ୍ତୁ ପ୍ରତି ଥାକରେ ଭିତରକୁ ଏତେ ଅଳ୍ପ ବାହାରିଥାଏ ଯେ, ପାହାଚ ଭଳି ଦିଶେ ନାହିଁ । ଦୁଇଟିଯାକ ପ୍ରଣାଳୀର ଉଦ୍ଦେଶ୍ୟ ଏକ - ଭାରର କେନ୍ଦ୍ରୀକରଣ । ପ୍ରତିଟି ଥାକର ପରିଧି ଛୋଟ ହୋଇ ହୋଇଗଲେ ଭିତରକୁ ପଡ଼ିବାର ପ୍ରବଣତା ରହିବ । ତାହା ହେବାକୁ ଗଲେ ବୃତ୍ତ ଅଥବା ପରିଧି ଛୋଟ ହେବାର ଚେଷ୍ଟା କରିବ ଏବଂ ପାର୍ଶ୍ୱବର୍ତ୍ତୀ ପଥର ତାହା ରୋଧ କରିବ । ଉପରକୁ ପିଚିକି ଉଠିବାର ପ୍ରବଣତା ଦେଖାଦେଲେ ଉପର ଥାକ ବାଧା ଦେବ । ଏହାର ମୁଖ୍ୟ କାରଣ, ଓଡ଼ିଶାର ଦେଉଳମାନଙ୍କରେ ବ୍ୟବହୃତ ପଥର ଏତେ ପାଲିସ୍ କରି କଟା ହୁଏ ଯେ ପରସ୍ପର ଭିତରେ ସୂତାଏ ବି ଫାଙ୍କ ରୁହେ ନାହିଁ । ଏ ରୀତିରେ ଉପରୁ ଉପରକୁ ଉଠି ଯେତେବେଳେ ଗୋଟିଏ କ୍ଷୁଦ୍ର ସ୍ଥାନ ଗଢ଼ିଉଠେ ତାହା ଉପରେ ଗଢ଼ା ହୁଏ ମସ୍ତକ, ଯାହାକୁ Load Stone କୁହାଯାଇପାରେ । ଏ ଅଂଶର ବିପୁଳ ଓଜନ ପ୍ରସ୍ତର ବଳୟଗୁଡ଼ିକୁ ସ୍ଥାନଚ୍ୟୁତ ହେବାକୁ ଦିଏ ନାହିଁ । ଯେହେତୁ ପ୍ରୟୋଗ କୌଶଳଟି ସମ୍ପୂର୍ଣ୍ଣ ରୂପେ ସମତୁଳନ (balance) ନିର୍ଭର, କୌଣସି ଗୋଟିଏ ପଥର ଯେତିକି ଓଜନର ଏବଂ କେନ୍ଦ୍ରଠାରୁ ଯେତିକି ଦୂରତ୍ୱରେ ଥିବ ତାହାର ଠିକ୍ ଅପର ପାର୍ଶ୍ୱର ପଥର ସେତିକି ଓଜନର ଏବଂ କେନ୍ଦ୍ରଠାରୁ ସେତିକି ଦୂରତ୍ୱରେ ରହିବା ଜରୁରୀ । ଆଶ୍ଚର୍ଯ୍ୟ ଲାଗେ ଚିନ୍ତା କରିବାକୁ ଏପରି ସହଜ ଅଥଚ କାର୍ଯ୍ୟକାରୀ କରିବାକୁ ଏମିତି ଜଟିଳ ପ୍ରକ୍ରିୟା ସେ ଯୁଗର ଶିଳ୍ପୀମାନେ କେତେ ନିଶ୍ଚୟତା ସହିତ କାର୍ଯ୍ୟ କରିଥିଲେ ।




ରେଖାଚିତ୍ର-୬ : ରେଖଦେଉଳର ଗଠନ (Corbelling)

ନବାଗତ ସାହେବମାନେ ଭାବୁଥିଲେ ଓଡ଼ିଆମାନଙ୍କୁ ସେତେବେଳେ ଆଧୁନିକ 'ଆର୍ଚ୍ଚ' ବିଜ୍ଞାନ ଜଣାନଥିବାରୁ ସେ Corbelling କୁ ବାଛି ନେଇଥିଲା । ଆକ୍ଷେପଟି ସତ୍ୟ ନୁହେଁ । ଓଡ଼ିଆ ସ୍ଥପତିକୁ ଆର୍ଚ୍ଚ କରିବା ଜଣାଥିଲା, ଯାହାର ଉଜ୍ଜ୍ୱଳ ଉଦାହରଣ, ରାଜରାଣୀ ମନ୍ଦିରର ତୋରଣ ଏବଂ ପୁରୀର ଅଠରନଳା । କିନ୍ତୁ ସେମାନେ ଆର୍ଚ୍ଚକୁ ବିଶ୍ୱାସ କରୁ ନଥିଲେ । ଆର୍ଚ୍ଚ ବିଜ୍ଞାନରେ Lines of forces, ଦେବାଲ ମୂଳରୁ ବହୁ ଦୂରରେ ଭୂମି ସହିତ ମିଳିତ ହୁଏ, ଫଳରେ ମୂଳକୁ ବହୁ ଓସାର ଓ ଦେବାଲକୁ ମାତ୍ରାତିରିକ୍ତ ଦୃଢ଼ କରିବାକୁ ପଡ଼ିଥାଏ । ପାଶ୍ଚାତ୍ୟର ସ୍ଥପତିମାନଙ୍କ ମଧ୍ୟରେ ଗୋଟିଏ କଥା ପ୍ରଚଳିତ ଅଛି, "An arch never sleeps". ଯେଉଁ ଯୁଗରେ reinforced cement concrete ଉଦ୍ଭାବିତ ହୋଇ ନଥିଲା, ସେ ଯୁଗରେ ଓଡ଼ିଆ ଶିଳ୍ପୀ ମନ୍ଦିରରେ ଯେଉଁ ନାନ୍ଦନୀକ ତଥା ଦାର୍ଶନିକ ପରିକଳ୍ପନା କରିଛି ସେଥିପାଇଁ ରେଖ ଓ ପୀଢ଼ ଦେଉଳ ନିର୍ଭରଯୋଗ୍ୟ ଉତ୍ତର ଥିଲା ।

## ନାମ ବିବାଦ :

ବିମାନ, ଜଗମୋହନ ଓ ପୀଠର ବିଭିନ୍ନ ଅଂଶର ବିଭାଗ ତଥା ଉପବିଭାଗଗୁଡ଼ିକର ନାମ ନେଇ କିଛି ବିଭ୍ରାନ୍ତି ଦେଖାଦେଇଛି । ୧୯୧୨ରେ ପ୍ରକାଶିତ ମନମୋହନ ଗାଙ୍ଗୁଲୀଙ୍କ Orissa and Her Remains ପୁସ୍ତକର ପୃଷ୍ଠା ୧୧୦, ୧୧୨ ଓ ୧୨୮ ରେ ଯେଉଁସବୁ ନାମ ଦିଆଯାଇଛି ୧୯୧୯ରେ ପ୍ରକାଶିତ କୃପାସିନ୍ଧୁଙ୍କର କୋଣାର୍କରେ ତାହାହିଁ ରଖାଯାଇଛି । (ପୃ.୧୨୦) । ଫରକ୍ ଦେଖାଗଲା ୧୯୭୪ରେ ପ୍ରକାଶିତ Charlse Fabriଙ୍କ History of the Art of India ଗ୍ରନ୍ଥରେ (Pages 143 & 144) । ସେଇ ନାମକରଣ ରଖାଯାଇଛି ଦେବଳା ମିତ୍ରଙ୍କର Konarka ପୁସ୍ତକରେ (Pages 44 to 49 Vol.I) । ଏମାନେ କିନ୍ତୁ କେହି କହିନାହାନ୍ତି ମୂଳ ତଥ୍ୟ କେଉଁଠାରୁ ହସ୍ତଗତ ହୋଇଛି । ଶିଳ୍ପସାରିଣୀ ନାମକ ପୋଥି କଥା ମଧ୍ୟେ ମଧ୍ୟେ ଉଚ୍ଚାରିତ ହୋଇଛି ଅନ୍ୟ ପ୍ରସଙ୍ଗରେ, କିନ୍ତୁ ସେ ପୋଥି ବର୍ତ୍ତମାନ ଦୁର୍ଲଭ । New Light on The Sun Temple of Konark (Boner, Sarma & Das) ଗ୍ରନ୍ଥ ଶେଷରେ Architectural Terms ନାମକ ଗୋଟିଏ ସଂଯୋଜନ ଅଛି । ସେଥିରେ ଲିଖିତ କେତେକ ନାମ ଗାଙ୍ଗୁଲୀଙ୍କ ସହିତ ମିଳୁଛି କେତେକ ଫାବ୍ରିଙ୍କ ସହିତ । ସେ ଆଲୋଚନା ଅନ୍ୟତ୍ର ହୋଇଛି । ନାମକରଣରେ ପ୍ରଭେଦଗୁଡ଼ିକ ୭ନମ୍ବର ସାରଣୀରେ ଉପସ୍ଥାପିତ କରାଗଲା ।

**ସାରଣୀ ନଂ.୭**

**ନାମ ବିବାଦ**

| ୧୯୧୯ ପୂର୍ବ | | ୧୯୭୪ ପର |
|---|---|---|
| ତଳ ଜଙ୍ଘା | – | ପାଭାଗ |
| ବାରଣ୍ଡି (ଶକର) | – | ତଳ ଜଙ୍ଘା (ଶକର) |
| ବାରଣ୍ଡି (ଶିକର) | – | ଜଙ୍ଘା (ଶିକର) |
| ଉପରଜଙ୍ଘା | – | ବାରଣ୍ଡା |
| ତ୍ରିପଟ ଧାରା ଖପୁରି | – | ------ |
| କଳସ ପାଦ ଖପୁରି | – | ଖପୁରି |
| କଳସ/କଳସ ହାଣ୍ଡି | – | କଳସ |
| କଳସ ଡୋରି | – | ----- |
| ଧ୍ୱଜଦଣ୍ଡ | – | ଧ୍ୱଜ |
| ପାଦ | – | ଖୁର, ତଳକୁ ମୁହାନ୍ତି |
| ପଟା | – | ପଟା ଏବଂ ଭରଣି |
| କଣି | – | କଣି ଓ ନୋଳି |
| ----- | – | ଫେଣି |

୧୯୧୦ ନଭେମ୍ବର ୧୭ ତାରିଖ କୋଣାର୍କଠାରେ ଗୋଟିଏ ଆଲୋଚନା ସଭାରେ ଜଣେ ସ୍ଥାନୀୟ ପଥରଶିଳ୍ପୀଙ୍କ ସହିତ ଆଲୋଚନା ହୋଇଥିଲା । ସେ ଯାହା କହିଲେ, ତାହା ଆହୁରି ବିଭ୍ରାନ୍ତିକର । ପୁରାତନ ପୋଥି କାହା କାହା ଘରେ ଅଛି କିନ୍ତୁ ସେ ସବୁ ପୋଥିର ବିଷୟବସ୍ତୁ ସେମାନଙ୍କୁ ଅଜଣା, ସେମାନେ ଏକା ବସ୍ତୁର ବିଭିନ୍ନ ନାମକରଣ ବିଭିନ୍ନ ସମୟରେ କରି ଥାଆନ୍ତି । ଯେହେତୁ ମନ୍ଦିର ଏବେ ମଧ୍ୟ ଗଢ଼ା ହେଉଛି, ସାଧାରଣ ଓଡ଼ିଆ ଭାଷାରେ ଗୋଟିଏ ବୈଷୟିକ ପୁସ୍ତକ ଲେଖି ତାହାର ବହୁଳ ପ୍ରସାରର ପ୍ରୟୋଜନ ଅଛି ଏବଂ ସେ ପ୍ରଚେଷ୍ଟା ହେବା ଉଚିତ୍ ପ୍ରସ୍ତରଶିଳ୍ପୀ ମହଲରୁ । ଯେହେତୁ ମନ୍ଦିର ଗାତ୍ର ବର୍ଣ୍ଣନାର ଅଧିକ ତଥ୍ୟ ମିଳୁଛି ଦେବଳା ମିତ୍ର ଏବଂ କରୁଣାସାଗରଙ୍କଠାରୁ, ଏ ପୁସ୍ତକରେ ଉପସ୍ଥାପିତ ରେଖାଚିତ୍ରଗୁଡ଼ିକରେ ସେମାନେ ବ୍ୟବହାର କରିଥିବା ନାମଗୁଡ଼ିକ ଦିଆଗଲା ।

ପାର୍ଶ୍ୱଦେବତା

୧. ଦକ୍ଷିଣ ସୂର୍ଯ୍ୟ
୨. ପଶ୍ଚିମ ସୂର୍ଯ୍ୟ
୩. ଉତ୍ତର ସୂର୍ଯ୍ୟ

୩୨'-୪" x ୩୨'-୪"
ବିମାନ

୬୦' x ୬୦'
ଜଗମୋହନ

୮୦'

୪୨'

## ପ୍ରଥମପୃଷ୍ଠର ସର୍ବାଧିକ ଦୈର୍ଘ୍ୟ ଓ ପ୍ରସ୍ଥ

ପୂର୍ବ-ପଶ୍ଚିମ-------------------------୩୨୦ଫୁଟ୍ ୩ଇଞ୍ଚ
ଉତ୍ତର-ଦକ୍ଷିଣ ଜଗମୋହନ ମଧ୍ୟଦେଇ------ ୨୩୪ଫୁଟ୍
ଉତ୍ତର-ଦକ୍ଷିଣ ଦେଉଳ ମଧ୍ୟଦେଇ---- ୧୭୪ଫୁଟ୍ ୯ଇଞ୍ଚ

## ଜଗମୋହନ ଓ ବିମାନର ଦୈର୍ଘ୍ୟ

| | ଜଗମୋହନ | ବିମାନ |
|---|---|---|
| ରହପାଗଠାରୁ ରହପାଗ | ୧୦୮ଫୁଟ୍ - | ୮୧ଫୁଟ୍ ୯ଇଞ୍ଚ |
| ଅନର୍ଥପାଗଠାରୁ ଅନର୍ଥପାଗ- | ୯୮ଫୁଟ୍ - | ୭୬ଫୁଟ୍ ୯ଇଞ୍ଚ |

ପୂର୍ବ

ରେଖାଚିତ୍ର-୭: ଜଗମୋହନ ଓ ବିମାନର ଭୂମି ନକ୍ସା

# ମାପର ପ୍ରାମାଣିକତା ଓ ମନ୍ଦିର ନକ୍ସା :

ଏହା ଆଗକୁ କୋଣାର୍କ ଦେଉଳର ବିମାନ, ଜଗମୋହନ ଓ ଅନ୍ୟାନ୍ୟ ଦେହ ବିଭାଗଗୁଡ଼ିକ ବହୁଳ ଆଲୋଚିତ ହେବ । ବିମାନ ଓ ଜଗମୋହନର ଯୋଡ଼ିଏ ନିର୍ଭରଯୋଗ୍ୟ ରେଖାଚିତ୍ର ଉପସ୍ଥାପନ କରିବା ଅତି ପ୍ରୟୋଜନ।

ଜଗମୋହନ ଏବେ ମଧ୍ୟ ଖାଡ଼ା ଅଛି, ମାପ କରିବା ସମ୍ଭବ ଏବଂ ତାହା ହୋଇଛି ମଧ୍ୟ, କିନ୍ତୁ ବିମାନର ଗଣ୍ଡି ଓ ବାଡ଼ର ତଳଜଙ୍ଘା ଉପରକୁ ପ୍ରାୟ ସମସ୍ତ ଅଂଶ ଲୁପ୍ତ ହୋଇ ଯାଇଛି । ନିର୍ଭର କରିବାକୁ ପଡୁଛି କେତେକ ପାରିପାର୍ଶ୍ୱିକ ପ୍ରମାଣ ଉପରେ ।

ଯେକୌଣସି ଇମାରତ ଖାଡ଼ା ହୁଏ ତାହାର ଭୂମି ନକ୍ସା ଉପରେ। ଏହାର କେତୋଟି ନକ୍ସା ମିଳିଛି ଭୁବନେଶ୍ୱର ଏ.ଏସ୍.ଆଇ. ସୌଜନ୍ୟରୁ । ଭୁବନେଶ୍ୱରର Superintending Archaeologist A. K. Patel ଦାବି କରନ୍ତି ମୂଳ ନକ୍ସାଟି ୧୯୦୦ ସାଲର ପ୍ରସିଦ୍ଧ ସଂରକ୍ଷଣ ସମୟରେ ତିଆରି କରାଯାଇଥିଲା, ତେଣୁ ନିର୍ଭରଯୋଗ୍ୟ। ଗାତ୍ରରେଖାଗୁଡ଼ିକୁ ଅଧିକ ଦନ୍ତୁରିତ କରିବା ଫଳରେ କୋଣଗୁଡ଼ିକ ଅସ୍ପଷ୍ଟ । ଶ୍ରୀଯୁକ୍ତ ପଟେଲ୍‌ଙ୍କ ସହ ଆଲୋଚନା ପରେ କୋଣବିନ୍ଦୁଗୁଡ଼ିକ ନିର୍ଦ୍ଧାରିତ ହୋଇଛି ଏବଂ ତାହାରି ଉପରେ ନିର୍ଭର କରି ପାଗଗୁଡ଼ିକ ରେଖାଚିତ୍ର-୭ରେ ଦେଖାଯାଇଛି ।

Newlight on the Sun Temple ର ମୁଖ୍ୟ ରଚୟିତା ଡକ୍ଟର ବୋନ୍‌ର ସେ ଗ୍ରନ୍ଥର ପରିଶିଷ୍ଟରେ କେତେଗୁଡ଼ିଏ ଭୂମି ନକ୍ସା ଉପସ୍ଥାପନ କରିଛନ୍ତି ସେ ଗ୍ରନ୍ଥର ଚିତ୍ର ସଂଖ୍ୟା (2-b)ରେ । ଗ୍ରନ୍ଥର ଉପକ୍ରମଣିକାରେ ବୋନର୍ ଦାବି କରନ୍ତି, ଚିତ୍ରଟି ଅଙ୍କା ଯାଇଛି ଶିଳ୍ପସାରଣୀମତେ ଏବଂ ଏହା ଏ.ଏସ୍.ଆଇ. ପ୍ରଦତ୍ତ ମ୍ୟାପ୍ ସହିତ ମିଶି ଯାଉଛି । ସେ ଆହୁରି ମଧ୍ୟ ଦାବି କରନ୍ତି, କାର୍ଯ୍ୟ କରୁଛି "cosmic vision operating with fundamental principles crystalised in geometrical forms----." ବକ୍ତବ୍ୟ ପ୍ରମାଣିତ କରିବାପାଇଁ ଚିତ୍ରଟିରେ ଅନେକଗୁଡ଼ିଏ ବୃତ୍ତ ଓ ରେଖା ସଂଯୋଗରେ ମହାଜାଗତିକ ସଂଯୋଗ କଥା କୁହାଯାଇଛି। ଯେକୌଣସି ଜ୍ୟାମିତିକ ନକ୍ସାରେ ଗୋଟିଏ ଛନ୍ଦ ଥାଏ । ହିନ୍ଦୁମାନେ ବହୁପୂର୍ବରୁ ସୃଷ୍ଟି ଉପରେ ଗ୍ରହ ନକ୍ଷତ୍ରର ପ୍ରଭାବ ଥିବାର ବିଶ୍ୱାସ କରନ୍ତି ଏବଂ ମନ୍ଦିରର ବିଭିନ୍ନ ସ୍ଥାନରେ ମଧ୍ୟ ତାହାର ବୋଧଗମ୍ୟ ଉପସ୍ଥାପନା କରିଛନ୍ତି। ଯଥାଃ ଦିକ୍‌ପାଳ, ନବଗ୍ରହ ଇତ୍ୟାଦି । କିନ୍ତୁ ଭୂମି ନକ୍ସାରେ ସୌରମଣ୍ଡଳର ପ୍ରଭାବ କେଉଁଠି କିପରି କାର୍ଯ୍ୟ କରୁଛି ତାହାର ଆଲୋଚନା ନକରି କେତେଗୁଡ଼ିଏ ବୃତ୍ତ, ବର୍ଗକ୍ଷେତ୍ର ଓ ରେଖାର ସମଷ୍ଟି ଉପସ୍ଥାପନ କଲେ ତାହା ଖାଲି ବାକ୍‌ଚାତୁରୀରେ ପରିଗଣିତ ହେବାକୁ ବାଧ୍ୟ । ବୋନର୍ ସ୍ୱୀକାର କରିଛନ୍ତି, "although the ultimate rationale behind such plan- the knowledge of the initiate- may for ever remain the secret of the ancient temple builders." । ଯେହେତୁ ଭିତ୍ତିଭୂମିର ମାପଗୁଡ଼ିକ ଏବେ ମଧ୍ୟ ଆଉ ଥରେ ମପାଯାଇ ପାରିବ ଏବଂ ଏ.ଏସ୍.ଆଇ. ଗୋଟିଏ ଦାୟିତ୍ୱସଂପନ୍ନ ସଂସ୍ଥା, ଧୂଆଁଳିଆ ମହାଜାଗତିକ ବୃତ୍ତ ଓ ରେଖା କଥା ଚିନ୍ତା ନ କରି ଏ.ଏସ୍.ଆଇ. ନକ୍ସା ଭିତରେ ସାଧାରଣ ପାଠକ ବୁଝିଲା ଭଳି ଗୋଟିଏ ଭୂମିନକ୍ସା (ground plan) ରେଖାଚିତ୍ର -୭ରେ ଉପସ୍ଥାପିତ ହେଲା ।

ଭୂମିନକ୍ସା ନିର୍ଭର କରି ଉନ୍ନତାଂଶ (elevation) ଅଙ୍କାହୁଏ କିନ୍ତୁ ସେଥିରେ ମଧ୍ୟ ଆହୁରି ଅନେକ ମାପ ତଥା ତଥ୍ୟର ପ୍ରୟୋଜନ ହୁଏ ଯଥାଃ ଉପବିଭାଗଗୁଡ଼ିକର ଉଚ୍ଚତା ଓ ମିଳିତ ସଂପୂର୍ଣ୍ଣ ଉଚ୍ଚତା, ସମାନ୍ତରାଳ ଭାସ୍କର୍ଯ୍ୟ (ପାଭଗ, ଜଙ୍ଘା, ବନ୍ଧନ ଇତ୍ୟାଦି) ଏବଂ ସେମାନଙ୍କ ବାହ୍ୟରେଖା (profile) । ଏ.ଏସ୍.ଆଇ. ବିମାନର କଳ୍ପିତ ଉନ୍ନତାଂଶର ଚିତ୍ର ମଧ୍ୟ ଦେଇ ନାହାନ୍ତି । କିନ୍ତୁ ଜଗମୋହନର ଦୁଇଟି ଉନ୍ନତାଂଶର ଚିତ୍ର ଉପସ୍ଥାପନ କରିଛନ୍ତି । ଚିତ୍ର ଦୁଇଟି ଜଗମୋହନର ପୂର୍ବଦିଗର ଦୃଶ୍ୟ। ଚିତ୍ର ଦୁଇଟିରେ ଦ୍ୱିତଳ ପୃଷ୍ଠର (ପୀଠ) ୨ୟପୃଷ୍ଠ ବାଡ଼ ସହିତ ମିଶାଇ ଦିଆଯାଇଛି । ବାଡ଼ର ମୂଳ ପାଞ୍ଚଭାଗ ଅର୍ଥାତ୍ ପାଭାଗ, ତଳଜଙ୍ଘା, ବନ୍ଧନ, ଉପରଜଙ୍ଘା ଓ ବାରଣ୍ଡାର କୌଣସି ମାପ ଦିଆଯାଇ ନାହିଁ ଏବଂ ଦୁଇଟି ନକ୍ସା ମଧ୍ୟରେ ମାପଗତ ବୈଷମ୍ୟ ଅଛି । ଦ୍ୱିତୀୟ ପୀଠକୁ ମିଶେଇ ଏ.ଏସ୍.ଆଇ. ଚିତ୍ରିତ ଜଗମୋହନର ଉଚ୍ଚତା ଗୋଟିଏ ଚିତ୍ରରେ ୧୨୫ ଫୁଟ୍ ଏବଂ ଅନ୍ୟ ଚିତ୍ରରେ ପାଭାଗର ଉଚ୍ଚତାକୁ ବାଦ୍‌ଦେଇ ୧୧୯ ଫୁଟ୍ ୪ଇଞ୍ଚ୍ । ପାଭାଗର ପ୍ରତିଷ୍ଠିତ ଉଚ୍ଚତା ୧୦ଫୁଟ୍ ୧୧ଇଞ୍ଚ । ବାଡ଼ ଅଞ୍ଚଳର ଭୂମି ବିସ୍ତାର ଗୋଟିଏ ଚିତ୍ରରେ ୨୮.୬୯୧ ମିଟର (୯୪ ଫୁଟ୍) ଓ ଅନ୍ୟ ଚିତ୍ରରେ ୨୮.୬୦ ମିଟର (୯୩ଫୁଟ୍ ୯.୫ଇଞ୍ଚ) ଏ ପାର୍ଥକ୍ୟ ଖୁବ୍ କମ୍ କିନ୍ତୁ ଉନ୍ନତାଂଶ ଉଠାଯାଇନାହିଁ। ପ୍ଲାନ୍‌ର ସୁଦୂରତମ ବିନ୍ଦୁରୁ ଅର୍ଥାତ୍ ରହପାଗରୁ ରହପାଗ ଯାହା ୧୦୮ ଫୁଟ୍ । (ଚିତ୍ର ନମ୍ବର-୧୦, ପୃଷ୍ଠା-୧୧୧ ଦେଖନ୍ତୁ) ଅନର୍ଥ ପାଗରୁ ଅନର୍ଥପାଗ ୯୮ ଫୁଟ୍ ଯାହାର ପାଖାପାଖି ଏ ଚିତ୍ର । ଏ ଚିତ୍ର ଦ୍ୱୟରେ ଆହୁରି ଅନେକ ଅମେଳ ଅଛି ଏବଂ କେତେକ ମାପ ପ୍ରତିଷ୍ଠିତ ଐତିହାସିକମାନଙ୍କ ମାପଠାରୁ ବହୁ ଦୂରରେ। ଏ.ଏସ୍.ଆଇ.ର ଏ ଚିତ୍ର ଦୁଇଟି ପ୍ରାମାଣିକ ଧରାଯାଇ ପାରିବ ନାହିଁ ।

ଏଲିସ୍ ବୋନ୍‌ର 'ନିଉ ଲାଇଟ୍' ଗ୍ରନ୍ଥ ଶେଷରେ ତନୋଟି ଉନ୍ନତାଂଶର (elevation) ଉପସ୍ଥାପନ କରିଛନ୍ତି । Fig-1, (Page-204), Fig-2.c (page-206) ଏବଂ Fig- 2.d (page-208) । ଏଥିରୁ ଶେଷୋକ୍ତ ଦୁଇଟି ଗ୍ରାଫ୍ କାଗଜରେ ଅଙ୍କାଯାଇଛି । 'ମୂଳସୂତ୍ର' ନାମକ ଗୋଟିଏ ଶବ୍ଦ ବାରେ ବାରେ ବ୍ୟବହାର କରାଯାଇଛି । ଶବ୍ଦଟିର ଅର୍ଥ କ'ଣ ?

ଆହୁରି କୁହାଯାଇଛି ଏହା ଭୂମି ନକ୍ସାର ଦେଢ଼ଗୁଣ ("according to a mulasutra one and a half times bigger than that of the ground plan") ଏହାର ଅର୍ଥ କ'ଣ ? ଭୂମିନକ୍ସା ଗୋଟିଏ ରେଖା, ବୃତ୍ତ ଅଥବା ବର୍ଗକ୍ଷେତ୍ର ନୁହେଁ । ଯେକୌଣସି ବୈଷୟିକ ନକ୍ସା ଅଙ୍କନରେ ମାପର ମୂଳ ୟୁନିଟ୍ ଫୁଟ୍, ଇଞ୍ଚ, ଗଜ, ମିଟର ଏପରିକି ଚେନ୍ ଓ ସେ ଯୁଗର କାଠି ପ୍ରଚଳିତ । ଏ ମୂଳସୂତ୍ର ୟୁନିଟ୍ ହିସାବରେ

କ'ଣ ? ସେ ମୂଳ ଯାହା ମଧ୍ୟ ହୋଇଥାଉ ଗ୍ରାଫ୍ କାଗଜରେ ରଚିତ ଜଗମୋହନ ଓ ବିମାନର ରେଖାଚିତ୍ର ଦୁଇଟି (2.c ଓ 2.d) ବିଶ୍ଳେଷଣ ସାପେକ୍ଷ । ପ୍ଲାନ୍‌ର ଦୁଇଦିଗର ସୁଦୂରତମ ବିନ୍ଦୁରୁ ମାପ ନେଇ ଏଲିଭେସନ୍‌ର ଦୁଇପାର୍ଶ୍ୱର ରେଖା ସ୍ଥିର କରାଯାଏ । ବିମାନର ରହପାଗଠାରୁ ରହପାଗ ଯାଏ ୮୧ ଫୁଟ୍ ୯ ଇଞ୍ଚ ଯାହା ପ୍ରମାଣିତ ତଥ୍ୟ (୭ ଓ ୯ ନମ୍ବର ଚିତ୍ର ଦେଖନ୍ତୁ) । ବୋନର୍‌ଙ୍କ ଗ୍ରାଫ୍ ଚିତ୍ରର ମୂଳ ଦୈର୍ଘ୍ୟ ୧୩ ସେଣ୍ଟିମିଟର । ତେଣୁ ସ୍କେଲ୍ ୧ ସେ.ମି = ୬.୨୮୮ ଫୁଟ୍ । ଯେହେତୁ ଗ୍ରାଫ୍‌ରେ ବିମାନର ଉଚ୍ଚତା ୩୬.୫ ସେଣ୍ଟିମିଟର ବିମାନର ଆକଳିତ ଉଚ୍ଚତା ଆସୁଛି ୨୨୯ ଫୁଟ ୬ ଇଞ୍ଚ । ଖୋର୍ଦ୍ଧା ରାଜବଂଶର ନରସିଂହଦେବ ୧୬୧୦ ସାଲରେ କରିଥିବା ଜରୀପ୍‌ରେ ବିମାନର ଉଚ୍ଚତା ୨୧୦ ଫୁଟ୍ ୬ ଇଞ୍ଚ । ଆଗକୁ ଏହା ଆହୁରି ଆଲୋଚିତ ହେବ । ଫରକ୍‌ଟି ନଗଣ୍ୟ ନୁହେଁ । ଅନ୍ୟ ଦିଗରୁ ବିଚାର କଲେ ଯେବେ ବୋନର୍ କଥିତ ମୂଳସୂତ୍ରକୁ ଭିତ୍ତିଭୂମିର ସର୍ବାଧିକ ଓସାର କଥା ଭାବି ଥାଆନ୍ତି (ଅର୍ଥାତ୍ ରହପାଗରୁ ରହପାଗ) ପ୍ରଦତ୍ତ ସୂତ୍ର ଅନୁଯାୟୀ ବିମାନର ଉଚ୍ଚତା ଆସିବ ୯ଫୁଟ ୯ଇଞ୍ଚ × $\frac{୧୨}{୮}$ = ୧୨୨ ଫୁଟ୍ ୬ ଇଞ୍ଚ । ଏହା ମଧ୍ୟ ଅସମ୍ଭବ ।

ଜଗମୋହନ କ୍ଷେତ୍ରରେ (2.c) ଭୂମିତଳ ମାପ ଆସୁଛି ୧୮ ସେଣ୍ଟିମିଟର । ଜଗମୋହନର ତଳ ଦୈର୍ଘ୍ୟ (ରହପାଗଠାରୁ ରହପାଗ) ୧୦୮ ଫୁଟ୍ ହୋଇଥିବାରୁ (ରେଖାଚିତ୍ର ନମ୍ବର- ୭ ଓ ୧୦ ଦେଖନ୍ତୁ) ଏଠାରେ ଏକ ସ୍କେଲ୍ ଆସୁଛି ୧ ସେ.ମି = ୬ ଫୁଟ୍ । ବୋନର୍‌ଙ୍କ ଗ୍ରାଫ୍ ଚିତ୍ର ଅନୁଯାୟୀ ଉଚ୍ଚତା ୨୪.୫ ସେ.ମି । ତେଣୁ ଉଚ୍ଚତା ୧୪୭ ଫୁଟ୍ ଏବଂ ଅନ୍ୟ ସୂତ୍ରରେ ୧୦୮ × $\frac{୧୨}{୮}$ = ୧୬୨ ଫୁଟ୍ । ଦୁଇଟିରୁ କୌଣସି ଗୋଟିଏ ହେଲେ ଠିକ୍ ନୁହେଁ । କଳସ ନଥିବା ଅବସ୍ଥାରେ ଗାଙ୍ଗୁଲୀ ଫିତାରେ ମାପି ଉଚ୍ଚତା ପାଇଥିଲେ ୧୧୧ ଫୁଟ୍ ୮ ଇଞ୍ଚ ଯାହା Theodlite ଜରିପ ସହିତ ପ୍ରାୟ ମିଶୁଛି । କଳସର ଉଚ୍ଚତା ଏ.ଏସ୍.ଆଇ.ର ଗୋଟିଏ ରିପୋର୍ଟ ଅନୁଯାୟୀ ୨୫ ଫୁଟ ଥିଲା ।[୨୧୬] ଏହା ଧରିଲେ ମଧ୍ୟ ମପାଯାଇଥିବା ଉଚ୍ଚତା କୌଣସି କ୍ରମେ ୧୬୨ ଫୁଟ୍ ଅଥବା ୧୪୭ ଫୁଟ୍ ହେବନାହିଁ । ଯେତେବେଳ ଯାଏ କଥିତ ମୂଳସୂତ୍ରର ସଠିକ ବ୍ୟାଖ୍ୟା ନ ମିଳୁଛି ଚିତ୍ରଗୁଡ଼ିକ ଗ୍ରହଣଯୋଗ୍ୟ ହେବ ନାହିଁ ।

ଆହୁରି ଗୋଟିଏ ତ୍ରୁଟି ପରିଲକ୍ଷିତ ହେଉଛି New lightର App. No-1 ରେଖାଚିତ୍ରରେ । ଏଠାରେ ଗଣ୍ଡି ମଧ୍ୟରେ ତିନିଟି ମୁଦ ଦେଖାଯାଇଛି । ଦ୍ୱିତୀୟ ମୁଦ ଘଡ଼ଚକଡ଼ ଛୁଇଁଛି ଏବଂ ତୃତୀୟ ମୁଦ ବେକୀ ଟପି ଅମଳା ଛୁଇଁଛି । ଏହା କର୍‌ବେଲିଂ ବିଜ୍ଞାନସମ୍ମତ ନୁହେଁ । କ୍ରମ କେନ୍ଦ୍ରାଭିମୁଖୀ ଗଣ୍ଡି ସାଧାରଣତଃ ଘଡ଼ଚକଡ଼ଠାରୁ ଅନ୍ତତଃ ତିନି ଚାରି ଫୁଟ ତଳେ ମୁଦି ହୋଇଯାଏ ଏବଂ ସେଠାରେ ଲୁହା କଡ଼ି ବିଛେଇ ଉପରକୁ ନିଦା କରି ଗଢ଼ାଯାଏ । ଘଡ଼ଚକଡ଼ ଉପରକୁ ବେକୀ, ଅମଳା, କଳସ ଇତ୍ୟାଦି ସମସ୍ତ କର୍ମକୁ ମସ୍ତକ କୁହାଯାଏ । ଏହାକୁ ବାସ୍ତୁ ବିଜ୍ଞାନୀ ଲୋଡ୍ ଷ୍ଟୋନ୍ କହିଥାଆନ୍ତି । ଏହାର କାର୍ଯ୍ୟ କର୍‌ବେଲ୍ ବଳୟଗୁଡ଼ିକୁ ସ୍ଥାନଚ୍ୟୁତ ନ ହେବାକୁ ଦେବା । କୌଣସି କ୍ରମେ ଏହାକୁ ପୋଲା କରାଯାଇ ପାରିବ ନାହିଁ ।

ପ୍ରାୟ ସମସ୍ତ ଐତିହାସିକ, ରେଖ ଓ ପୀଢ଼ ମଧ୍ୟରେ ଏକାଧିକ Ceiling (ଶାସ୍ତ୍ରୀୟ ପରିଭାଷାରେ 'ମୁଦ') କଥା କହିଥାଆନ୍ତି । କିନ୍ତୁ କେହି ତାହା ଭିତରକୁ ପ୍ରବେଶ କରିବାକୁ ସାହସ କରୁ ନଥିଲେ । କାରଣ, କିଛିଟା ସଂସ୍କାର, କିଛିଟା ଭୟ । କିଛି ବର୍ଷ ପୂର୍ବେ ପୁରୀ ମନ୍ଦିରର ଗର୍ଭଗୃହ ମଧ୍ୟରେ ଅମ୍ଳଜାନ ଅଭାବରୁ କେତେକ ଯାତ୍ରୀ ଅଚେତ ହୋଇଯାଆନ୍ତି । ନିରାକରଣ ପାଇଁ, ଠାକୁର ମାଉସୀମା ଘରେ ଥିବା ସମୟରେ ଏ.ଏସ୍.ଆଇ.ର ଅଧିକାରୀମାନେ ଆଲୋକ ଓ ସରଞ୍ଜାମ ଧରି ଭିତରକୁ ପ୍ରବେଶ କରନ୍ତି । ସେଇ ଅବସରରେ ମୁଦଗୁଡ଼ିକର ଜରିବ କରି ଗୋଟିଏ ପୂର୍ଣ୍ଣାଙ୍ଗ ସେକ୍‌ସନ୍ ଡ୍ରଇଂ ତିଆରି କରାଯାଏ । ଚିତ୍ରଟିର ଗୋଟିଏ ଫଟୋକପି ଉପସ୍ଥାପିତ ହୋଇଛି ଚିତ୍ରସଂଖ୍ୟା-୪, ପୃଷ୍ଠା-୬୯ରେ । ମୋର ଉପରୋକ୍ତ ବକ୍ତବ୍ୟ ଚିତ୍ରରେ ସମର୍ଥିତ ହେଉଛି । ଚିତ୍ରଟିରେ ଦୁଇଟି ମୁଦ ଅଛି । କୋଣାର୍କ ବିମାନ ପୁରୀ ମନ୍ଦିରଠାରୁ ଅନେକ ଉଚ୍ଚ । ଆନୁପାତିକ ହାରରେ କୋଣାର୍କ ବିମାନ ମଧ୍ୟରେ ତିନିଟି ମୁଦ ଥିବା ସମ୍ଭବ ମନେହୁଏ ।

ଜଗମୋହନର ପୀଢ଼ ମଧ୍ୟରେ କେତୋଟି ମୁଦ ଥିଲା ତାହାର କୌଣସି ତଥ୍ୟ ନାହିଁ । ଅନ୍ତତଃ ଗୋଟିଏ ମୁଦ ଥିବା କଥା ରାଜେନ୍ଦ୍ର ଲାଲ୍ ଅନୁମାନ କରିଥିଲେ ।[୨୧୭] ୧୯୦୨ ସାଲର ସଂରକ୍ଷଣ ସମୟରେ ଜଗମୋହନ ଅଭ୍ୟନ୍ତରର ଯେଉଁ ଫଟୋ ତୋଳା ହୋଇଥିଲା ସେଥିରୁ ମନେହୁଏ ଅନ୍ତତଃ ଆହୁରି ଗୋଟିଏ ମୁଦ ପୀଢ଼ ମଧ୍ୟରେ ଥିଲା । (ଫଟୋ-୧୫ ଦ୍ରଷ୍ଟବ୍ୟ) ଏଠାରେ ଗୋଟିଏ ବିଷୟ କହିବା ପ୍ରୟୋଜନ ଯେ ଜଣେ ଅଭିଜ୍ଞ ଇଂଜିନିୟରଙ୍କ ମତରେ ଚିତ୍ରଟି ତୈଳଚିତ୍ର । ସେ କିଛି ଗଠନଗତ ବୈଷମ୍ୟ ଧରି ପାରିଛନ୍ତି । ତୈଳଚିତ୍ର ମଧ୍ୟ ବାସ୍ତବତା ଭିତ୍ତିରେ ହୋଇଥାଏ ଯଦିଓ ସେଥିରେ ଇଂଜିନିୟରିଂ ଡ୍ରଇଂର ପ୍ରାମାଣିକତା ନଥାଏ ।

ପ୍ରାମାଣିକ ଚିତ୍ର ଆଙ୍କିବା ପାଇଁ, ବିଭାଗ, ଉପବିଭାଗମାନଙ୍କର ଯେଉଁ ସବୁ ତଥ୍ୟ ପ୍ରୟୋଜନ ତାହା ବହୁଳାଂଶରେ ପୂରଣ କରିଛନ୍ତି ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲୀ ତାଙ୍କ ରଚିତ Orissa and her heritage ଗ୍ରନ୍ଥରେ (Chapter V & X) ଭୁବନେଶ୍ୱର, ପୁରୀ ଓ କୋଣାର୍କର ମନ୍ଦିରଗୁଡ଼ିକର ଟିକିନିଖି ମାପ କରି ଗାଙ୍ଗୁଲୀ କେତେକ କାର୍ଯ୍ୟକାରୀ ଅନୁପାତ କାଢ଼ିଥିଲେ । (ପୃଷ୍ଠା- ୧୦୬ଠାରୁ ୧୧୨) ଦେଖନ୍ତୁ । ସୂତ୍ରଗୁଡ଼ିକ କେତେଦୂର ନିର୍ଭରଯୋଗ୍ୟ ତାହା ମଧ୍ୟ କେତେକ ଶାସ୍ତ୍ରୀୟ ସୂତ୍ରରେ ମିଳେଇ ଦେଖିଛନ୍ତି । ଏ ଉପାୟରେ କୋଣାର୍କ ବିମାନର ଅଦୃଶ୍ୟ ଅଂଶଗୁଡ଼ିକର ମାପ ସ୍ଥିର କରିବା ପରେ ସେ ମାପଗୁଡ଼ିକର ସମଷ୍ଟିଗତ ଉଚ୍ଚତା ଏବଂ ଖୋର୍ଦ୍ଧା ନରସିଂହଦେବଙ୍କ କରିଥିବା ଜରୀବର ମାପ ମିଳେଇ ଦେଖିଛନ୍ତି ।



**ଫଟୋ-୧୫ : ବାଲି ଭର୍ତ୍ତିହେବା ପୂର୍ବରୁ ଜଗମୋହନର ଭିତର ଦୃଶ୍ୟ (୧୯୦୩)**

ଫରକ୍ ନଗଣ୍ୟ । ଏହାଛଡ଼ା ଜଗମୋହନର ଉଚ୍ଚତା Theodliteରେ ମାପି ଫିତା ମାପ ସହିତ ମିଳେଇ ଦେଖିଛନ୍ତି ଏବଂ ସାମାନ୍ୟ ପାର୍ଥକ୍ୟର କାରଣ ବ୍ୟାଖ୍ୟା କରିଛନ୍ତି । ଗାଙ୍ଗୁଲୀ ଅନୁସରଣ କରିଥିବା ପ୍ରକ୍ରିୟା ଏଇ ପରିଚ୍ଛେଦର ବିଭିନ୍ନ ସ୍ଥାନରେ ଆଲୋଚିତ ହୋଇଛି । ବହୁ ଐତିହାସିକ ଯେଉଁମାନଙ୍କ ମଧ୍ୟରେ ଡକ୍ଟର କରୁଣାସାଗର ବେହେରାଙ୍କ ଭଳି ସହଜରେ ସନ୍ତୁଷ୍ଟ ନହେବା ପରି ଐତିହାସିକ ମଧ୍ୟ ଅଛନ୍ତି, [୨୧୮] ଗାଙ୍ଗୁଲୀଙ୍କ ପନ୍ଥା ନିର୍ଭରଯୋଗ୍ୟ ବୋଲି ମନେ କରନ୍ତି । ତଥାପି ଗାଙ୍ଗୁଲୀ ପ୍ରଦତ୍ତ ସୂତ୍ରଗୁଡ଼ିକ କେତେକ କ୍ଷେତ୍ରରେ ପ୍ରଯୁଜ୍ୟ ହୋଇ ପାରୁ ନଥିବା ଲକ୍ଷ୍ୟ କରାଯାଇଛି । ଏପରି ଗୋଟିଏ ଅସଙ୍ଗତି 'ଭୂମି' ଚିତ୍ର ଗଠନ ସମ୍ବନ୍ଧିତ । ରେଖିଦେଉଳ ଗଣ୍ଡିର ଅନର୍ଥ ପାଗ ଅନେକଗୁଡ଼ିଏ ସମାନ୍ତରାଳ ଭାଗରେ ବିଭକ୍ତ । ଏହାକୁ 'ଭୂମି' କୁହାଯାଇଥାଏ । ଦୁଇଟି ଭୂମି ମଧ୍ୟସ୍ଥ ପଟ୍ଟିକୁ ଭୂମି-ଅମଳା କୁହାଯାଇଥାଏ । ଦେବଳା ମିତ୍ର ତାଙ୍କ ପୁସ୍ତକରେ ଦଶଟି ଭୂମି ଦେଖାଇଛନ୍ତି [୨୧୯] କିନ୍ତୁ ମାପ ଦେଇ ନାହାନ୍ତି । ଗାଙ୍ଗୁଲୀ ମଧ୍ୟ ବଡ଼ ବଡ଼ ମନ୍ଦିରମାନଙ୍କରେ ଦଶଟି ଭୂମି କଥା କହିଛନ୍ତି ଏବଂ ତାହାର ଗଠନରେ ଗୋଟିଏ ଜ୍ୟାମିତିକ ହାର ଉପସ୍ଥାପିତ କରିଛନ୍ତି ।[୨୨୦] ଗାଙ୍ଗୁଲୀଙ୍କ ସୂତ୍ର :

ପ୍ରଥମ ଭୂମି - ୩/୪ × କୋଣ ପାଗର ଦୈର୍ଘ୍ୟ
ଦ୍ୱିତୀୟ ଭୂମି - ୩/୪ × ପ୍ରଥମ ଭୂମି
ତୃତୀୟ, ଚତୁର୍ଥ ଇତ୍ୟାଦି ଏଇ ହାରରେ ଚାଲିବ ।

ସୂତ୍ରଟି କିନ୍ତୁ ପରୀକ୍ଷା ଉତ୍ତୀର୍ଣ୍ଣ ହେଉନାହିଁ । କୋଣପାଗର ଦୈର୍ଘ୍ୟ ୧୪ ଫୁଟ୍ ୬ ଇଞ୍ଚ (ଚିତ୍ର ନମ୍ବର ୭ ଓ ୯ ଦ୍ରଷ୍ଟବ୍ୟ) ହୋଇଥିବାରୁ ପ୍ରଥମ ଭୂମିର ଦୈର୍ଘ୍ୟ ୧୦ ଫୁଟ୍-୧୦.୫ ଇଞ୍ଚ । ଏଇ ରୀତିରେ ଦଶମ ଭୂମି ଯାଏ ହିସାବ କରିଗଲେ ଦଶମ ଭୂମିର ଦୈର୍ଘ୍ୟ (ଭୂମି ଅମଳା ସହିତ) ମାତ୍ର ୯ ଇଞ୍ଚ ହେବ ଏବଂ ଦଶଟି ଭୂମିମାପର ଯୋଗଫଳ ହେବ ୪୧ ଫୁଟ୍ । ଗଣ୍ଡିର ଆକଳିତ ଉଚ୍ଚତା ୧୧୭ ଫୁଟ୍ । ମନେହୁଏ ସୂତ୍ରଟି ଛୋଟ ଛୋଟ ମନ୍ଦିର ପାଇଁ ପ୍ରଯୁଜ୍ୟ ଯେଉଁଠାରେ ଭୂମିସଂଖ୍ୟା ଅନେକ କମ୍ ହୋଇଥାଏ । କୋଣାର୍କ ଶିଳ୍ପୀ ବଡ଼ ଗାୟକ ଭଳି ପ୍ରଚଳିତ ରୀତି ଭାଙ୍ଗି ନିଜ ନିୟମରେ ସୃଷ୍ଟି କରିଛନ୍ତି ଯାହାର ଆକଳନ ସାଧାରଣ ମାନବର ବୁଦ୍ଧି ବହିର୍ଭୂତ ।

ଜଗମୋହନର ଏଲିଭେସନ୍ ଟାଣିବା ପୂର୍ବରୁ ଆଉ ଗୋଟିଏ ପନ୍ଥା ଅନୁସରଣ କରାଗଲା । ବିଶନ୍ ସ୍ୱରୂପ ଯିଏ ୧୯୦୦ ମସିହାର ବିରାଟ ସଂରକ୍ଷଣ କାର୍ଯ୍ୟ ସହିତ ଜଡ଼ିତ ଥିଲେ ସେ ଅନେକଗୁଡ଼ିଏ ମାପ ନେଇଥିଲେ । ପଣ୍ଡିତ କୃପାସିନ୍ଧୁ, ଯିଏ ମୁଖ୍ୟତଃ ଗାଙ୍ଗୁଲୀଙ୍କୁ ଅନୁସରଣ କରିଛନ୍ତି ସେ ମଧ୍ୟ କେତେକ ଭିନ୍ନ ମାପ ଦେଇଛନ୍ତି । କେତେଗୁଡ଼ିଏ ମାପ ଆସୁଛି ପୃଷ୍ଠା ୧୧୨ ଓ ୧୧୪ରେ କରାଯାଇଥିବା ଆକଳନରୁ । ମାପଗୁଡ଼ିକ ସାରଣୀରେ ସଜାଗଲା । ୮ ନମ୍ବର ସାରଣୀରେ **ASI**ର ଦୁଇଟି ନକ୍ସାରୁ ମାପ ଓ କରୁଣାସାଗର ପ୍ରଦତ୍ତ କେତେକ ମାପ ମଧ୍ୟ ଅନ୍ତର୍ଭୁକ୍ତ କରାଗଲା ।

## ସାରଣୀ ସଂଖ୍ୟା-୮

# ଜଗମୋହନର ମାପ (ବିଭିନ୍ନ ସୂତ୍ରରୁ)

| ବିଭାଗ / ଉପବିଭାଗ | ASI ୧ମ ନକ୍ସା | ASI ୨ୟ ନକ୍ସା | ବିଶନ୍ ସ୍ୱରୂପ (ପୃ: ୧୭-୨୧) | ମନମୋହନ (ପୃ: ୪୫୮-୪୬୧) | କୃପାସିନ୍ଧୁ ମିଶ୍ର (ପୃ: ୯୫-୯୯) | କରୁଣାସାଗର (ପୃ:୧୦୮-୧୧୧) | ମନ୍ତବ୍ୟ |
|---|---|---|---|---|---|---|---|
| ଭିତ୍ତି ଦୈର୍ଘ୍ୟ | 93'-9$\frac{1}{2}$" * | 94' | – | – | – | – | 108' |
| ପାଭାଗ | 9'-2$\frac{1}{2}$" | 7'-2" | 11' | 10'-11" | 10'-11" | – | ଗ୍ରହଣୀୟ |
| ତଳ ଜଙ୍ଘା | 10'-7$\frac{1}{2}$" | 4'-9$\frac{1}{2}$" | 8'-9" | 8'-10" | 8'-10" | – | |
| ବନ୍ଧନ | 1'-10$\frac{1}{2}$" | 5' | 2'-6" | 2'-7$\frac{1}{2}$" | 2'-7$\frac{1}{2}$" | – | |
| ଉପର ଜଙ୍ଘା | 9'-2$\frac{1}{4}$" | 7'-3" | 8' | 8'-1$\frac{1}{2}$" | 8'-1$\frac{1}{2}$" | – | |
| ବାରଣ୍ଡା | 9'-6" | 10' | 9'-6" | 9'-4" | 9'-4" | – | |
| **ବାଢ଼ (ଭିତ୍ତିଠାରୁ ବାରଣ୍ଡା)** | **40'-4$\frac{1}{2}$"** | **34'-2$\frac{1}{2}$"** | **39'-9"** | **39'-10"** | **39'-10"** | **40'** | *୨ୟ ପୃଷ୍ଠାରୁ |
| ୧ମ ପୀଢ଼ (ପୋଟଳ) | 17'-8" | 18' | 15'-6" | 15'-8" | 15'-8" | 16'-6" | |
| ୧ମ କାନ୍ତି | 5'-6" | 7' | 7'-4" | 7' | 7'-4" | 7' | |
| ୨ୟ ପୀଢ଼ (ପୋଟଳ) | 17'-8" | 17' | 10'-6" | 10'-6" | 10'-6" | 12-6" | |
| ୨ୟ କାନ୍ତି | 5'-6" | 6' | 5'-4" | 5'-6" | 5'-7" | 5' | |
| ୩ୟ ପୀଢ଼ (ପୋଟଳ) | 13' | 13' | 7'-6" | 7'-4" | 7'-6" | 9' | |
| **ଗଣ୍ଡି (୧ମ ରୁ ୩ୟ ପୀଢ଼)** | **59'-4"** | **61'** | **46'-2"** | **46'-1"** | **46'-7"** | **50'** | |
| ୧ମ ବେକୀ | 2'-6" | 4'-6" | 17'-8" | – | 17'-8" | 8' | |
| ଘଣ୍ଟାର ନିମ୍ନ ଭାଗ | 4'-1" | 8' | 17'-8" | – | 17'-8" | 8' | |
| ଘଣ୍ଟାର ଉପର ଭାଗ | 8'-6" | 7'-6" | 17'-8" | – | 17'-8" | 8' | |
| ୨ୟ ବେକୀ | 1'-3" | 2' | 17'-8" | – | 17'-8" | 2' | |
| ଅମଳା | 5'-4$\frac{3}{8}$" | 4' | 7'-10" | – | 7'-10" | 6'-6" | |
| **ମସ୍ତକ (କଳସ ଛଡ଼ା)** (୧ମ ବେକୀରୁ ଅମଳା ଯାଏ) | **21'-8$\frac{3}{8}$"** | **26'** | **25'-6"** | **25'-9"** | **25'-6"** | **24'-6"** | |
| **ପଦ୍ମପୃଷ୍ଠଠାରୁ ଉଚ୍ଚତା** (ବାଢ଼, ଗଣ୍ଡି ଓ ମସ୍ତକ) | **121'-4$\frac{7}{8}$"** | **121'-2$\frac{1}{2}$"** | **111'-5"** | **111'-8"** | **111'-11"** | **114'-6"** | *ପଦ୍ମପୃଷ୍ଠ ମଧ୍ୟାରୁ |
| **ଭୂମିଠାରୁ ପଦ୍ମପୃଷ୍ଠ*** | **16'-6"** | **16'-6"** | **16'-6"** | **16'-6"** | **16'-6"** | **15'-4"** | * ଗାଙ୍ଗୁଲୀଙ୍କ ମାପ |
| **ଭୂମିଠାରୁ ଉଚ୍ଚତା*** | **137'-10$\frac{7}{8}$"** | **137'-8$\frac{1}{2}$"** | **127'-11"** | **128'-2"** | **128'-5"** | **129'-10"** | *କଳସ ଛଡ଼ା |

## ଗାଙ୍ଗୁଲୀଙ୍କ ଦ୍ୱାରା ନିଆଯାଇଥିବା Theodlite ମାପ - 129'-8" (461-O & H.R)

| ବିଭାଗ / ଉପବିଭାଗ | ASI ୧ମ ନକ୍ସା | ASI ୨ୟ ନକ୍ସା | ବିଶନ୍ ସ୍ୱରୂପ (ପୃ: ୧୭-୨୧) | ମନମୋହନ (ପୃ୪୫୮-୪୬୧) | କୃପାସିନ୍ଧୁ ମିଶ୍ର (ପୃ: ୯୫-୯୯) | କରୁଣାସାଗର (ପୃ୧୦୮-୧୧୧) | ମନ୍ତବ୍ୟ |
|---|---|---|---|---|---|---|---|
| ଘଡ଼ ଚକଡ଼ର ଦୈର୍ଘ୍ୟ | 35' | 41' | – | 46'-1"* | – | – | *ଆକଳିତ |
| ୧ମ ବେକୀର ବ୍ୟାସ | 17'-8" | 22' | – | 23'-3 $\frac{1}{4}$ "* | – | – | *ଆକଳିତ |
| ୨ୟ ବେକୀର ବ୍ୟାସ | 7' | 15' | – | – | – | – | |
| ଘଣ୍ଟାର ବ୍ୟାସ | 3'-5" | 29'-6" | – | – | – | – | |
| ଅମଳାର ବ୍ୟାସ | 11' | 16'-6" | – | – | – | – | |
| ବାଡ଼ ବାହାରକୁ ୧ମ ପୀଢ଼ | 3' | 5'-6" | 3'-9" | 4'-8"* | – | – | *ଆକଳିତ |
| ବାଡ଼ ବାହାରକୁ ୧ମ କାନ୍ଥି | 1'-7' | 3' | 3'-6" | – | – | – | |
| ବାଡ଼ ବାହାରକୁ ୨ୟ କାନ୍ଥି | 1'-7" | 3'-9" | 2'-7" | – | – | – | |
| ପୂର୍ବ ଦ୍ୱାର (ଖୋଲା ଅଂଶ) | 7'×15' | 7'-3"×14' | 6'-10" (w) | – | – | *6'-6" (w) 14'-11" (h) | କରୁଣାସାଗରଙ୍କ |
| ଦ୍ୱାର ବନ୍ଧ | 16'-9"×24' | 19'×19' | 15'-10" (w) | – | – | *16'-6" (w) 19'-5" (h) | Fig 22 (P.110) |

*ଏ.ଏସ୍.ଆଇ. ଯୋଗାଇ ଥିବା ଭିତ୍ତି ନକ୍ସା (ଗ୍ରାଉଣ୍ଡ ପ୍ଲାନ୍) ଅନୁଯାୟୀ, କୋଣପାଗଠାରେ ୯୦ ଫୁଟ୍, ଅନର୍ଥପାଗଠାରେ ୯୮ ଫୁଟ୍ ଓ ରହପାଗଠାରେ ୧୦୮ ଫୁଟ୍ । ଏଲିଭେସନ୍‌ରେ ବୃହତ୍ତମ ମାପ ନେବା କଥା । ଲେଖକ ଉନ୍ନତାଂଶ ଆଙ୍କିବା ସମୟରେ ସେଇ ରୀତି ଅନୁସରଣ କରିଛି ।

ଦେଖାଯାଉଛି ମନମୋହନ ଗାଙ୍ଗୁଲୀ ଓ ବିଶନ୍ ସ୍ୱରୂପଙ୍କ ମାପ ପ୍ରାୟ ମିଶିଯାଉଛି । ଏଠାରେ ପ୍ରଦତ୍ତ ତଥ୍ୟ ଓ ପୃଷ୍ଠା ୯୬ ଠାରୁ ୯୭ ମଧ୍ୟରେ ଉପସ୍ଥାପିତ ତଥ୍ୟ ଅନୁସରଣ କରି ବିମାନ ଓ ଜଗମୋହନର ଯୋଡ଼ିଏ ରେଖାଚିତ୍ର ଉପସ୍ଥାପିତ ହୋଇଛି ଚିତ୍ର ସଂଖ୍ୟା ୯ ଓ ୧୦ରେ (ପୃଷ୍ଠା-୧୧୦ ଓ ୧୧୩) । ଆଶା କରାଯାଏ ଚିତ୍ର ଦୁଇଟି ନିର୍ଭରଯୋଗ୍ୟ ହେବ ।

# ନିର୍ମାଣ ଭୂମି ନକ୍ସା :

ଆଗକୁ କୋଣାର୍କ ବେଢ଼ା ମଧ୍ୟରେ ଥିବା ବିଭିନ୍ନ ସୌଧ ଅଥବା ଭାସ୍କର୍ଯ୍ୟ ନାନା କାରଣରେ ଆଲୋଚିତ ହେବ । ବେଢ଼ା ମଧ୍ୟରେ କେଉଁ ସୌଧ ଅଥବା ଭାସ୍କର୍ଯ୍ୟ କେଉଁଠାରେ ଅଛି ତାହାର ଗୋଟିଏ ନିର୍ମାଣ ଭୂମି ନକ୍ସା (ଗ୍ରାଉଣ୍ଡ ପ୍ଲାନ୍) ରେଖାଚିତ୍ର-୮ ରେ ଉପସ୍ଥାପିତ କରାଗଲା ।

## ପୀଠ(Plinth) :

ଓଡ଼ିଶାର ଅଧିକାଂଶ ମନ୍ଦିର ଭୂମି ଉପରୁ ଉଠିଥାଏ, କୌଣସି ପୀଠ (plinth) ନଥାଏ । କେତେକ ମନ୍ଦିରରେ, ବିଶେଷରୂପେ ବଡ଼ ବଡ଼ ମନ୍ଦିରମାନଙ୍କରେ ପୀଠ ଥାଏ କିନ୍ତୁ ତାହାର ଉଚ୍ଚତା ସାମାନ୍ୟ । ଏକମାତ୍ର କୋଣାର୍କରେ ଅଛି ୧୬'-୬" ଉଚ୍ଚ ପୀଠ ଯାହା ଦୁଇ ଭାଗରେ ବିଭକ୍ତ- ତଳପୃଷ୍ଠ, ଉପର ଅଥବା ଖୁର ପୃଷ୍ଠ । ତଳ ପୃଷ୍ଠ ତଳକୁ ଆହୁରି ଗୋଟିଏ କର୍ମ ଅଛି ଯାହାକୁ 'ଉପନ' କୁହାଯାଏ । ମନ୍ଦିର ବାଡ଼ରେ ଯେପରି ପାଞ୍ଚଟି ମୂଳ ବିଭାଗ ଅଛି, ତଳପୃଷ୍ଠରେ ମଧ୍ୟ ସେହିପରି । ତଳପୃଷ୍ଠ ଉପରେ ଖୁରପୃଷ୍ଠ ଯାଏ ୧୦' ଠାରୁ ୧୨' ଓସାରରେ ଦେଉଳ ପରିକ୍ରମା ଅଛି । ଖୁରପୃଷ୍ଠ ଉପରେ ମନ୍ଦିର ବାଡ଼ ଯାଏ ବିଭିନ୍ନ ସ୍ଥାନରେ ୯"ରୁ ୧୮" ଯାଏ ସ୍ଥାନ ଅଛି । ପୃଷ୍ଠ ପରିକଳ୍ପନାର ରେଖାଚିତ୍ର ଉପସ୍ଥାପିତ କରାଯାଇଛି (ରେଖାଚିତ୍ର -୭ ଓ ୧୫ରେ) ।

୧. ନରସିଂହଦେବଙ୍କ ସୂର୍ଯ୍ୟ ମନ୍ଦିର
୨. ପୁରାତନ ସୂର୍ଯ୍ୟ ମନ୍ଦିର
୩. ଇଟା ତିଆରି ମନ୍ଦିର
୪. ନାଟ ମଣ୍ଡପ
୫. ରନ୍ଧନଶାଳା
୬. କୂପ
୭. ଯୁଦ୍ଧ ଅଶ୍ୱ
୮. ରଣହସ୍ତୀ
୯. ମନ୍ଦିର ଉପରୁ ପଡ଼ିଥିବା ଗଜସିଂହ
୧୦. ବଟବୃକ୍ଷ

ରେଖାଚିତ୍ର-୮ : ନିର୍ମାଣ ଭୂମି ନକ୍ସା

ଭାରତୀୟ ଆର୍ଯ୍ୟ (**Indo-Aryan**) ସ୍ଥାପତ୍ୟର ମୂଳ ସୃଷ୍ଟି ଶିଖର ଦେଉଳ, ପୀଢ଼ ଆକାରର ମୁଖଶାଳା ପରବର୍ତ୍ତୀ ସଂଯୋଜନ । ଭୁବନେଶ୍ୱର ଓ ପୁରୀ ମନ୍ଦିରର ବିମାନ ମୁଖଶାଳା ସହିତ ସଂଯୁକ୍ତ ହୋଇ ଗଢ଼ା ହୋଇଥିଲା । ନାଟମଣ୍ଡପ ଓ ଭୋଗମଣ୍ଡପ ପଛରେ ସଂଯୁକ୍ତ ହେଲା । କୋଣାର୍କ ଶିଳ୍ପୀ ବିମାନ ଓ ଜଗମୋହନର ଏପରି ପରିକଳ୍ପନା କରିଲେ ଯାହା ଦେହକୁ ଲାଗି ଅନ୍ୟ କୌଣସି ମନ୍ଦିର ଗଢ଼ିବା ସମ୍ଭବ ନୁହେଁ । ଏ ଦିଗରେ ପ୍ରଧାନ ପ୍ରତିବନ୍ଧକ, ଏହାର ପୀଠ ଗଠନ । ଅନେକ ମନ୍ଦିରରେ ପୀଠ ଥାଏ ଏବଂ ଅନେକ ମନ୍ଦିରରେ ପୀଠ ନଥାଏ । ଲିଙ୍ଗରାଜ ମନ୍ଦିର ଭୂମିତଳରୁ ଉଠିଛି । ପୁରୀ ମନ୍ଦିରରେ ୫'-୨" ଉଚ୍ଚ ପୀଠ ଅଛି । କିନ୍ତୁ ତାହାର କୌଣସି ସ୍ୱାତନ୍ତ୍ରତା ନାହିଁ । କୋଣାର୍କ ପୀଠର ଉଚ୍ଚତା ସବୁ ମିଶି ୧୬ ଫୁଟ୍ ୬ ଇଞ୍ଚ ଏବଂ ମନ୍ଦିର ଗାତ୍ରରୁ ଏ ପୀଠର ଦାଢ଼ ଯାଏଁ କେଉଁଠି ୧୨ ଫୁଟ୍ ତ କେଉଁଠି ୧୫ ଫୁଟ୍, ନାନ୍ଦନୀକ ଦୃଷ୍ଟିକୋଣରୁ ଯେପରି ଯେଉଁଠି ଉପଯୋଗୀ ହୋଇଛି । ସମ୍ମୁଖରେ ପ୍ରଥମ ପାହାଚଠାରୁ ମନ୍ଦିର ବାଡ଼ ଯାଏ ୮୦ ଫୁଟ୍ । ତଳ ପୃଷ୍ଠର ଗଠନ ମନ୍ଦିର ଦ୍ୱୟର ପଞ୍ଚରଥ ପରିକଳ୍ପନାର ସମାନ୍ତରାଳ ନୁହେଁ, ସହଯୋଗୀ । ପୀଠଟି ଗୋଟିଏ ରଥର ପତ୍ତନ ଭଳି ଗଢ଼ାଯାଇଛି ଯେଉଁଥିରେ ଅଛି ୨୪ଟି ବିଶାଳ ଚକ ଏବଂ ସମ୍ମୁଖରେ ସାତଟି ଅଶ୍ୱ । ୨୪ଟି ଚକ ନିମ୍ନୋକ୍ତ ଭାବେ ଗଢ଼ାଯାଇଛି ।

| | | |
|---|---|---|
| ବିମାନର ଦକ୍ଷିଣ ଦିଗରେ | – ୬ ଗୋଟି, | ଉତ୍ତର ଦିଗରେ – ୬ ଗୋଟି |
| ଜଗମୋହନର ଦକ୍ଷିଣ ଦିଗରେ | – ୪ ଗୋଟି, | ଉତ୍ତର ଦିଗରେ – ୪ ଗୋଟି |
| ସମ୍ମୁଖସ୍ଥ ସୋପାନର ଦକ୍ଷିଣ ଦିଗରେ | – ୨ ଗୋଟି, | ଉତ୍ତର ଦିଗରେ – ୨ ଗୋଟି |

ମୋଟ - ୨୪ ଗୋଟି । ପ୍ରତି ଚକର ଉଚ୍ଚତା ୯ ଫୁଟ୍ ୮ଇଞ୍ଚ ଓ ବଳୟର ଓସାର ୮'' । ଏକ ଫୁଟ୍ ଉଚ୍ଚ 'ଉପନ' (ତଳପତ୍ତନ) ଉପରେ ପ୍ରତିଷ୍ଠିତ ପୀଠ, ଦୁଇ ଭାଗରେ ବିଭକ୍ତ ।

| | | |
|---|---|---|
| ତଳ ପୃଷ୍ଠ | – | ୧୩'-୨" |
| ଉପର ପୃଷ୍ଠ | – | ୨'-୪" |
| **ମୋଟ** | **–** | **୧୫'-୬" ଉପନକୁ ମିଶେଇ ୧୬'-୬"** |

ତଳ ପୃଷ୍ଠର ବାଡ଼ଠାରୁ ଉପନର ଦାଢ଼ ଯାଏ ଫୁଟେ ଦୂରତ୍ୱ, ଯାହା ଉପରେ ଚକ ଗଡୁଥିବା ପରି ମନେ ହେବ । ଉପନ ତଳେ ମଧ୍ୟ ପଥରର ଚଟାଣ ଅଛି ଯାହା ଭୂମି ସମତଳରେ ମିଶି ଯାଉଛି ।

ତଳ ପୃଷ୍ଠରେ ମନ୍ଦିର ବାଡ଼ ଭଳି ପାଞ୍ଚଟି ଭାଗ ଅଛି । ସେଗୁଡ଼ିକର ଉପବିଭାଗ ଓ ଉଚ୍ଚତା ୧୪ ନମ୍ବର ଚିତ୍ରରେ ଉପସ୍ଥାପିତ ହୋଇଛି । ସେଗୁଡ଼ିକର ଭାସ୍କର୍ଯ୍ୟ ଆଲୋଚିତ ହେବ 'ଭାସ୍କର୍ଯ୍ୟ' ବିଭାଗରେ, ବର୍ତ୍ତମାନ ଏତିକି କହିଲେ ଯଥେଷ୍ଟ ହେବ, ବିମାନ ଓ ଜଗମୋହନ ଯେଉଁ ସମତଳରେ ଛିଡ଼ା ହୋଇଛି ତାହା ଭୂମିତଳରୁ ୧୬'-୬" ଉଚ୍ଚରେ । ଦୂରରୁ ଦେଖିଲେ କିନ୍ତୁ ଉପନ ଓ ଉପର ପୃଷ୍ଠର ସ୍ୱାତନ୍ତ୍ର୍ୟ ଦେଖାଯିବ ନାହିଁ, ପ୍ରଥମଟି ମିଶି ଯାଉଛି ତଳପୃଷ୍ଠ ସହିତ ଏବଂ ଦ୍ୱିତୀୟଟି ମନ୍ଦିର ସହିତ ।

ଉପର ପୃଷ୍ଠ (ଖୁର ପୃଷ୍ଠ)ର ଉଚ୍ଚତା ମାତ୍ର ୨'-୪" ଏବଂ ଏହାର ଉପର ଦାଢ଼ ମନ୍ଦିର ଗାତ୍ରରୁ ଅଳ୍ପ କେତେ ଇଞ୍ଚ ମାତ୍ର । ଉପର ପୃଷ୍ଠରେ ଅଛି ତିନି କାମ । ଜଗମୋହନର ପୂର୍ବ, ଦକ୍ଷିଣ ଓ ଉତ୍ତର ପଟ ବିଶାଳ ଦ୍ୱାର ତିନୋଟିର ଠିକ୍ ଆଗକୁ ଉଚ୍ଚ ପୀଠ ଆରୋହଣ କରିବାପାଇଁ ତିନୋଟି ବିଶାଳ ସୋପାନଶ୍ରେଣୀ ଗଢ଼ା ହୋଇଥିଲା । ସେଗୁଡ଼ିକ ମଧ୍ୟ ଧ୍ୱଂସ ହୋଇ ଯାଇଥିଲା, ପରେ ଗଢ଼ା ହୋଇଛି । ପୂର୍ବପଟ ସୋପାନ ଦୁଇପଟେ ସାତଟି ଘୋଡ଼ା ଗଢ଼ା ହୋଇଥିଲା । ଯେପରି ଏ ସପ୍ତ ଅଶ୍ୱ ସୂର୍ଯ୍ୟ ରଥକୁ ଉଡେଇ ନେଇ ଯାଉଛି । ସାତଟିର ୪ଟି ସୋପାନର ଦକ୍ଷିଣ ପଟେ ଏବଂ ୩ଟି ଉତ୍ତର ପଟେ ।

## କୋଣାର୍କ ବିମାନ :

ଉପର ପୃଷ୍ଠ ବିମାନ ଓ ଜଗମୋହନ ପାଇଁ ସମାନ ଉଚ୍ଚ । ତାହା ଉପରେ ଏ ବିଶାଳ ପଞ୍ଚ ରଥ ମନ୍ଦିରର ବାଡ଼ର ଉଚ୍ଚତା ଥିଲା ୫୮'-୬", ଯାହା ବହୁ ପ୍ରସିଦ୍ଧ ମନ୍ଦିରର ସଂପୂର୍ଣ୍ଣ ଉଚ୍ଚତାଠାରୁ ମଧ୍ୟ ଅଧିକ, ଯଥା ରାଜରାଣୀ (୪୬'), ମୁକ୍ତେଶ୍ୱର (୩୪'), ସିଦ୍ଧେଶ୍ୱର (୪୭') । ଏ ବାଡ଼ରେ ମଧ୍ୟ ଥିଲା ପାଞ୍ଚ ମୂଳ ବିଭାଗ – ପାଭାଗ, ତଳଜଙ୍ଘା, ବନ୍ଧନ, ଉପର ଜଙ୍ଘା ଓ ବାରଣ୍ଡା । ମନ୍ଦିରର ଗଣ୍ଡି ସମ୍ପୂର୍ଣ୍ଣ ଧ୍ୱଂସ ପାଇଛି ଏବଂ ତାହା ସହିତ ବାଡ଼ର ବାରଣ୍ଡା ଓ ଉପର-ଜଙ୍ଘାର ଅଧିକାଂଶ । ବଞ୍ଚି ଯାଇଛି ପାଭାଗ, ତଳଜଙ୍ଘାର ଅଧିକାଂଶ ଏବଂ ବନ୍ଧନର କିଛି । ମନ୍ଦିରର ଦକ୍ଷିଣ-ପୂର୍ବ କୋଣରେ ବନ୍ଧନର କିଛି ଏବଂ ଉପର ଜଙ୍ଘାର ସାମାନ୍ୟ କିଛି ବଞ୍ଚି ଯାଇଛି । ନିସ ମନ୍ଦିର ତ୍ରୟର ମୁଣ୍ଡ ଧ୍ୱଂସ ପାଇଛି କିନ୍ତୁ ବଞ୍ଚି ଯାଇଛନ୍ତି ପାର୍ଶ୍ୱଦେବତା ତ୍ରୟ କ୍ଷତ ବିକ୍ଷତ ହୋଇ । ପ୍ରଚଳିତ କିମ୍ବଦନ୍ତୀ, ଯବନମାନେ ମୂର୍ତ୍ତିଗୁଡ଼ିକର ହାତ ଓ ନାକ କାଟିନେଲେ । ପ୍ରକୃତ ଘଟଣା କିନ୍ତୁ ତାହା ନୁହେଁ । ଆମର ବିଗ୍ରହମାନେ ସାଧାରଣତଃ ତାଙ୍କ ଦଣ୍ଡ ଧରି କହୁଣିରୁ ବାହୁ ସମକୋଣରେ ରଖିଥାଆନ୍ତି । ବାଡ଼ଭାଙ୍ଗି ଯେତେବେଳେ ମୂର୍ତ୍ତି ମୁହଁମାଡ଼ି ପଡ଼ିଲେ, ଆଗେ ଆଘାତ ହେଲା ବାହୁରେ ଏବଂ ତା'ପରେ ଅନ୍ୟାନ୍ୟ ଉନ୍ନତ ଅଂଶରେ । ଯଥାଃ ନାକ, ଆଣ୍ଠୁ । ତେଣୁ ସେଗୁଡ଼ିକ ମଧ୍ୟ ଆଘାତପ୍ରାପ୍ତ ହେଲେ ।

ପାଭାଗରେ ପଞ୍ଚ କର୍ମ । ଉପ-ବିଭାଗଗୁଡ଼ିକ - ଖୁର, କୁମ୍ଭ, ପଟ, କଣି ଏବଂ ବସନ୍ତ ।

ବନ୍ଧନରେ ଥିଲା ପୁଣି ପଞ୍ଚ କର୍ମ - ଭରାଣି, ନୋଲି, ପଟ, ନୋଲି ଏବଂ ବସନ୍ତ ।

ବାରଣ୍ଡାରେ ଦଶ କର୍ମ - ଭରାଣି, ଫେଣି, ନୋଲି, ପଟ, ପଟ, ନୋଲି, ପଟ, ପଟ, ନୋଲି ଓ ବସନ୍ତ ।

ଏ ତିନି ଭାଗ ପଟି ଭଳି ଦେଉଳ ବେଷ୍ଟନ କରିଛନ୍ତି, ଅଧିକାଂଶ ସ୍କ୍ରୋଲ୍ କାମ । ତଳ ଓ ଉପର ଜଙ୍ଘାରେ, ମନୁଷ୍ୟ, ଦେବତା, ଅର୍ଦ୍ଧ ଦେବତା 'ବିଡାଳ'ର ନାନା ଉପସ୍ଥାପନ, ଯାହା ଭାସ୍କର୍ଯ୍ୟ ପରିଚ୍ଛେଦରେ ଆଲୋଚିତ ହେବ ।

ନିସ ଦେଉଳର ତଳ ଘରେ କେତେକ ଦେବ ଦେବୀଙ୍କ ଅଧିଷ୍ଠାନ ଥିଲା କିନ୍ତୁ ଉପର ଘରେ ଥିଲେ ପାର୍ଶ୍ୱଦେବମାନେ । ସେମାନଙ୍କ ଅଧିଷ୍ଠାନ ମଧ୍ୟ ତଳ ଜଙ୍ଘାର ରହ ପାଗରେ । ଖୋଲି ଧ୍ୱଂସ ପାଇଛି କିନ୍ତୁ ନୂଆ ଗଢ଼ା ହୋଇଛି । ପାର୍ଶ୍ୱଦେବତାଙ୍କ ସ୍ଥାନ ଏବଂ ସେଠାକୁ ଉଠିବା ସୋପାନ ଦେଖା ହୋଇଛି ଚିତ୍ର ନମ୍ବର ୭ରେ ।

ଜଗମୋହନର ସବୁ ଦୁଆର ବନ୍ଦ କରି ଦେବା ପରେ ଗର୍ଭଗୃହ ମଧ୍ୟକୁ ଉପରୁ (ଉତ୍ତର ପଶ୍ଚିମ କୋଣରେ) ପଥର ସିଡ଼ି ଗଢ଼ା ଯାଇଥିଲା କାରଣ ଭିତରେ ଏବେ ମଧ୍ୟ ଅଛି ରତ୍ନ ସିଂହାସନ । ବର୍ତ୍ତମାନ ସେଠାକୁ ଏବଂ ପାର୍ଶ୍ୱଦେବତାମାନଙ୍କ ନିକଟକୁ ଯିବାର ବାଟ ବନ୍ଦ କରି ଦେଇଛନ୍ତି ASI ।

## ବିମାନର ଉଚ୍ଚତା (ସୂତ୍ର ଅନୁସନ୍ଧାନ) :

ଅଗ୍ନି ପୁରାଣ ଅନୁଯାୟୀ ବିମାନର ଉଚ୍ଚତା ଭୂମିତଳ ଲମ୍ବର ୨ ଠାରୁ ୩ ଗୁଣ ହୋଇଥାଏ । ବୃହତ୍ ସଂହିତାରେ ମଧ୍ୟ ଏ ଅନୁପାତ ୨ ଧରାଯାଇଛି । ବାଡ଼ ଅଞ୍ଚଳର ରହପାଗ ମଧ୍ୟସ୍ଥ ବ୍ୟବଧାନ ଓ ବାଡ଼ର ଉଚ୍ଚତା ସମାନ ହୋଇପାରେ, ଅସମାନ ମଧ୍ୟ ହୋଇପାରେ । ବୃହତ୍ ସଂହିତା ଅନୁଯାୟୀ ମନ୍ଦିରର ଉଚ୍ଚତା ବାଡ଼ର ଉଚ୍ଚତାର ତିନିଗୁଣ ହେବା ଉଚିତ୍ । ଆହୁରି ଅନେକ ନିୟମ ମିଳିବ Orissa & Her Remainsର ପଞ୍ଚମ ପରିଚ୍ଛେଦରେ ।

ବିଭିନ୍ନ ସମୟରେ ଗଠିତ ଓଡ଼ିଶାର ମନ୍ଦିରଗୁଡ଼ିକରେ ଏ ସବୁ ନିୟମର ବିଚ୍ୟୁତି କିଛି କିଛି ଘଟିଛି । କେତେଗୁଡ଼ିଏ କାର୍ଯ୍ୟକାରୀ ସୂତ୍ର କାଢ଼ିବାକୁ ଗାଙ୍ଗୁଲୀ ଭୁବନେଶ୍ୱର ଓ ପୁରୀର ଅନେକଗୁଡ଼ିଏ ମନ୍ଦିରର ମାପ କରିଥିଲେ ଫିତା ତଥା ଥିଓଡଲାଇଟ୍ ସାହାଯ୍ୟରେ । ତଥ୍ୟଗୁଡ଼ିକ ଉପସ୍ଥାପନ କରାଗଲା ତିନୋଟି ସାରଣୀରେ । (ଗାଙ୍ଗୁଲୀ- ପୃ ୧୩୦-୧୩୨)

### ସାରଣୀ ନଂ. ୯

| ମନ୍ଦିର ନାମ | ବାହାର ଓସାର | ମନ୍ଦିର ଉଚ୍ଚତା | ଅନୁପାତ |
|---|---|---|---|
| ମୁକ୍ତେଶ୍ୱର | ୧୫' | ୩୪' | ୨.୩ |
| ରାଜାରାଣୀ | ୧୭' | ୪୬' | ୨.୭ |
| ପୁରୀ ଜଗନ୍ନାଥ ମନ୍ଦିର | ୮୦' | *୨୦୯' | ୨.୬ |
| ଅନନ୍ତ ବାସୁଦେବ | ୨୨' | ୬୦' | ୨.୭ |

*ଉତ୍ତରପାର୍ଶ୍ୱ ମଠଭୂମିରୁ Theodlite ମାପ ନିଆଯାଇଛି ।

**ଲେଖକର ସଂଯୋଜନ**

| | | |
|---|---|---|
| କୋଣାର୍କ | କୋଣପାଗ ଠାରେ - ୬୪'-୬" -୨୨୮' (ଆକଳିତ) | - ୩.୫୩ |
| | ରହପାଗ ଠାରେ - ୮୯'-୬" | - ୨.୫୪ |

ଉଲ୍ଲେଖଯୋଗ୍ୟ, ମନ୍ଦିରର ଓସାର ଧରାଯାଏ ରହପାଗରୁ ।

## ସାରଣୀ ନଂ.୧୦

| ମନ୍ଦିରର ନାମ | ଓସାର | ବାଡ଼ର ଉଚ୍ଚତା | ଅନୁପାତ |
|---|---|---|---|
| ଅନନ୍ତ ବାସୁଦେବ | ୨୨'-୧" | ୧୬'-୧" | ୦.୭୨ |
| ପର୍ଶୁରାମେଶ୍ୱର | ୧୯'-୯" | ୧୪'-୩" | ୦.୭୨ |
| ମୁକ୍ତେଶ୍ୱର | ୧୫' | ୧୦'-୯" | ୦.୭୧ |
| ବୋଇତାଳ | ୨୦' | ୧୩'-୧୧" | ୦.୭୦ |
| ଲିଙ୍ଗରାଜ (ବିମାନ) | ୬୬' | ୪୩'-୫.୧/୨" | ୦.୬୬ |

**ଲେଖକର ସଂଯୋଜନ**

କୋଣାର୍କ (ବିମାନ) – ୮୯'-୯" – ୫୮'-୬" (ଆକଳିତ) – ୦.୬୫

ମନେହୁଏ ବଡ଼ ବଡ଼ ଦେଉଳମାନଙ୍କରେ (ଯଥା ଲିଙ୍ଗରାଜ) ଛୋଟ ଦେଉଳ ତୁଳନାରେ ଏ ଅନୁପାତ ୧.୫ ଶତାଂଶ କମ୍ ହୁଏ ।

## ସାରଣୀ ନଂ.୧୧

| ମନ୍ଦିରର ନାମ | ବାଡ଼ର ଉଚ୍ଚତା | ରେଖଦେଉଳର ଉଚ୍ଚତା (କଳସ ଛଡ଼ା) | ଅନୁପାତ |
|---|---|---|---|
| ମୁକ୍ତେଶ୍ୱର | ୧୦'-୯" | ୩୧' | ୩ |
| ସିଦ୍ଧେଶ୍ୱର | ୧୬' | ୪୭' | ୩ |
| ଲିଙ୍ଗରାଜ | ୪୩'-୫" | ୧୨୭'-୧" | ୩ |

ଏହା ବ୍ୟତୀତ ଆହୁରି ଅନେକ ମାପଚୁପ କରି ଗାଙ୍ଗୁଲୀ ସିଦ୍ଧାନ୍ତକୁ ଆସିଲେ **ଜଙ୍ଘାର ପାଭାଗ ଉଚ୍ଚତା ସହିତ ୧୩/୩ ଗୁଣିଲେ ବାଡ଼ର ଉଚ୍ଚତା ମିଳିଯିବ** । ସାଧାରଣତଃ ତଳ ଜଙ୍ଘା ଓ ଉପରଜଙ୍ଘା ଏକା ଉଚ୍ଚତାର ହୋଇଥାଏ । କୋଣାର୍କ ରେଖ ଦେଉଳର ତଳ ଜଙ୍ଘା ବଞ୍ଚିଯାଇଛି ।

# କୋଣାର୍କ ରେଖଦେଉଳର ଉଚ୍ଚତା ଆକଳନ :

ଉପରୋକ୍ତ ତଥ୍ୟଗୁଡ଼ିକ ସାହାଯ୍ୟରେ ଗାଙ୍ଗୁଲୀ ନିମ୍ନୋକ୍ତ ଆକଳନରେ ଉପନୀତ ହୋଇଛନ୍ତି ।

| | | |
|---|---|---|
| ଜଙ୍ଘର ଉଚ୍ଚତା (ପାଭାଗ) | – ୧୩'-୬" | – ୧୩'-୬" |
| ବାଡ଼ର ଉଚ୍ଚତା | – ୧୩'-୬" × ୧୩/୩ = ୫୮'-୬" | – ୫୮'-୬" |
| ଗଣ୍ଡିର ଉଚ୍ଚତା | – ବାଡ଼ × ୨ = ୧୧୭' | – ୧୧୭' |
| **ବିମାନର ଉଚ୍ଚତା (ମସ୍ତକ ଛଡ଼ା)** | | **– ୧୭୫'-୬"** |
| ମାଦଳାପାଞ୍ଜି ଅନୁଯାୟୀ ମସ୍ତକର ଉଚ୍ଚତା[୨୨୧] | – ୩୬' | – ୩୬' |
| ପୀଠର ଉଚ୍ଚତା (ଚିତ୍ର ନଂ.୧୫) | – ୧୬'-୬" | – ୧୬'-୬" |
| **ମନ୍ଦିରର ଆକଳିତ ଉଚ୍ଚତା ଭୂମି ତଳରୁ** | | – ୨୨୮' |
| ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଭୂମି ତଳୁ ଉଚ୍ଚତା [୨୨୨] | | – ୧୪୩' |
| ପୁରୀ ଜଗନ୍ନାଥ ମନ୍ଦିରର ଭୂମି ତଳୁ ଉଚ୍ଚତା [୨୨୩] | | – ୨୧୪'-୮" |

ଏଠାରେ ଗୋଟିଏ ବିଷୟ ଉଲ୍ଲେଖ କରାଯାଇପାରେ । କୃପାସିନ୍ଧୁ ଏ.ଏସ୍.ଆଇ.ର ୧୯୦୩-୪ ରିପୋର୍ଟର ଉଲ୍ଲେଖ କରି କହିଛନ୍ତି, ମସ୍ତକର ଉଚ୍ଚତା ୨୫ ଫୁଟ୍ ଥିଲା । ମାଦଳାପାଞ୍ଜି ଅନୁସାରେ ଖୋର୍ଦ୍ଧାରାଜା ପୁରୁଷୋତ୍ତମ ଦେବ(୧୬୦୭-୧୬୨୧)ଙ୍କ ପୁତ୍ର ନରସିଂହ ଦେବ ୧୬୩୨ରେ କରାଇଥିବା ମାପରେ ମସ୍ତକର ଉଚ୍ଚତା ୩୬ ଫୁଟ୍ । ମସ୍ତକ ୧୯୦୩ ବେଳକୁ ନଥିଲା, ନା ଥିଲା ୧୬୨୮ ବେଳକୁ । (ପୃଷ୍ଠା-୭୪ ଦେଖନ୍ତୁ) ପୁରୀ ଓ ଲିଙ୍ଗରାଜ ମନ୍ଦିରର ଗଣ୍ଡି ଓ ଅନୁପାତ ମପାଯାଇପାରେ । ତେବେ ମନେ ହୁଏ କୋଣାର୍କର ବିଶାଳ ଗଣ୍ଡି ପାଇଁ ୩୬ ଫୁଟ ମସ୍ତକ ଉଚିତ ହେବ । ସମସ୍ତ କିଛି ବିଚାରକୁ ନେଇ ରେଖାଚିତ୍ର ୯ ଅଙ୍କା ଯାଇଛି ।

## ନିସ ଦେଉଳ :

ବଡ଼ ବଡ଼ ବିମାନ ଦେହକୁ ଲାଗି ଉତ୍ତର, ଦକ୍ଷିଣ ଓ ପଶ୍ଚିମ ଦିଗରେ ତିନିଟି ଛୋଟ ଦ୍ୱିତଳ ମନ୍ଦିର ଗଢ଼ାହୋଇଥାଏ । ଏହାକୁ ନିସ ଦେଉଳ କୁହାଯାଏ । (ଚିତ୍ର-୭, ପୃଷ୍ଠା-୯୯ ଦେଖନ୍ତୁ) ଏହାର ଦ୍ୱିତଳ ତିନିପଟ ଖୋଲା ହଲ୍ ଯାହା ଭକ୍ତ ସମାଗମ ପାଇଁ ଉଦ୍ଦିଷ୍ଟ ଥିଲା । ସମ୍ମୁଖରେ ମୂଳ ମନ୍ଦିରର ରହପାଗ ମଧ୍ୟରେ ଖୋଦିତ ସ୍ଥାନ ମଧ୍ୟରେ ପାର୍ଶ୍ୱଦେବତାଙ୍କ ଅବସ୍ଥିତି । ନିସ ଦେଉଳର ଶୀର୍ଷ ପ୍ରାୟ ମୂଳ ମନ୍ଦିରର ବାଡ଼ ଉଚ୍ଚ ହୋଇଥାଏ । ଏହାର ଉଚ୍ଚତା ମୂଳ ମନ୍ଦିରର ଏକ ଚତୁର୍ଥାଂଶ ହୋଇଥାଏ । ମନ୍ଦିରର ଆକଳିତ ଉଚ୍ଚତା ୨୧୧ଫୁଟ ୬ଇଞ୍ଚ ହୋଇଥିବାରୁ (ପୃ-୧୦୮ ଦେଖନ୍ତୁ) ନିସ ଦେଉଳର ଆକଳିତ ଉଚ୍ଚତା ଥିଲା ୫୨ ଫୁଟ ୯ଇଞ୍ଚ । ବିମାନ ବାଡ଼ର ଆକଳିତ ଉଚ୍ଚତା ୫୮ ଫୁଟ ୬ଇଞ୍ଚ । ନିସ ଦେଉଳ ତିନିଟିର ପୀଢ଼ ଛାତ ବିମାନର ଗଣ୍ଡି ସହିତ ଧ୍ୱଂସ ହୋଇଯାଇଛି । ପଥର କୁଢ଼ ଭିତରୁ ପାର୍ଶ୍ୱଦେବତାମାନଙ୍କୁ ଉଦ୍ଧାର କରି ବିମାନବାଡ଼ ଦେହରେ ନୂଆ ଖୋଳି ବସେଇ ଦିଆଯାଇଛି । ବିଶାଳ ବିମାନକୁ ତିନିପଟୁ (ଚତୁର୍ଥ ପଟେ ଜଗମୋହନ ଅଛି) ଠେସ ଦେଇ ସ୍ଥିତିଶୀଳ କରିବା ନିସ ଦେଉଳର ମୂଳ ପ୍ରୟୋଜନ କିନ୍ତୁ କୋଣାର୍କ ଶିଳ୍ପୀ ବୈଷୟିକ ପ୍ରୟୋଜନଟି ଅତି ସୁନ୍ଦର ଭାବେ ମିଶେଇ ଦେଇଛନ୍ତି ତାହାର ନାନ୍ଦନିକ ପରିକଳ୍ପନାରେ ।

## ଜଗମୋହନ :

କୋଣାର୍କ ଜଗମୋହନର ତୁଳନା ଏକମାତ୍ର ସେ ହିଁ । ଏହା ଖାଲି ଗୋଟିଏ ବିରାଟ ମନ୍ଦିର ବୋଲି ନୁହେଁ, ଏତେ ସୁଷମ ଗଠନ କୌଣସି ମନ୍ଦିରରେ ଦେଖାଯାଏନା । ପୀଢ଼ ଦେଉଳର ଭିତର ଦୈର୍ଘ୍ୟ ଓ ବାଡ଼ର ଉଚ୍ଚତା ସମାନ ହୋଇଥାଏ ଅଥବା ବାଡ଼ ସାମାନ୍ୟ ଉଚ୍ଚ ହୋଇଥାଏ । ଏଠାରେ ଜଗମୋହନ ଭିତର ଦୈର୍ଘ୍ୟ ୬୦ଫୁଟ୍ ଏବଂ ବାଡ଼ର ଉଚ୍ଚତା ୩୯ଫୁଟ୍ ୧୦ ଇଞ୍ଚ୍, ତଥାପି ଦୃଷ୍ଟିକଟୁ ଲାଗୁ ନାହିଁ । ବାଡ଼ର ଉଚ୍ଚତା ୩୯ଫୁଟ୍ ୧୦ ଇଞ୍ଚ୍ ହେବା ସ୍ଥଳେ ପୀଢ଼ର ଉଚ୍ଚତା ୪୬'-୧" (ଚିତ୍ର ନଂ.୧୦) । ରେଖାଚିତ୍ର ଦେଖିଲେ ମନେ ହେବ ବିଶାଳ ପୀଢ଼ ବାଡ଼କୁ ମାଡ଼ି ବସିଛି, କିନ୍ତୁ ମନ୍ଦିରଟି ଚାକ୍ଷୁଷ ଦେଖିଲେ ସେପରି ମନେ ହେବ ନାହିଁ, ମନେ ହେବ ଯେପରି ଗୋଟିଏ ବିଶାଳ ଦେହ ମୁଣ୍ଡରେ ଟୋପର ପିନ୍ଧିଛି । ଏ ଦୃଷ୍ଟି ବିଭ୍ରମ (optical illusion)ର କାରଣ ପୀଢ଼ର ଦୂରତ୍ୱ ଏବଂ ତିନି ଭାଗରେ ପୀଢ଼ ଅଞ୍ଚଳର ବିଭକ୍ତୀକରଣ । ପ୍ରଥମ ଥାକ ପୋତାଳରେ ଅଛି ଛ'ଟି ପୀଢ଼, ତାହାପରେ କାଣ୍ଠି ନାମକ ଥାକଟିଏ ଯାହା ଉପରେ ବାଜେଣି କନ୍ୟା ଓ ଭୈରବ ନାଚୁଛନ୍ତି । କାଣ୍ଠିକୁ 'ପାରାଘର' ମଧ୍ୟ କୁହାଯାଇଥାଏ । ତାହା ଉପର ପୋତାଳରେ ପୁଣି ଛ'ଟି ପୀଢ଼ ଏବଂ ତାହା ଉପରେ ଆଉ ଗୋଟିଏ କାଣ୍ଠି । ସବା ଶେଷ ପୋତାଳରେ ପାଞ୍ଚଟି ପୀଢ଼ । ପୀଢ଼ ଉପରେ ମସ୍ତକର ଉଚ୍ଚତା ୨୫ଫୁଟ୍ ୯ଇଞ୍ଚ୍ (୩୦ ଫୁଟ୍) କିନ୍ତୁ ତାହାର ଗଠନ ଆଶ୍ଚର୍ଯ୍ୟ ଛନ୍ଦମୟ । ବାଡ଼ ଦେହରେ ସେଇ ପାଞ୍ଚଟି ମୂଳ ବିଭାଗ - ପାଭାଗ, ତଳଜଙ୍ଘା, ବନ୍ଧନ, ଉପର ଜଙ୍ଘା ଓ ବାରଣ୍ଡା । ଉପର ବିଭାଗଗୁଡ଼ିକ ବିମାନ ବାଡ଼ର ଉପବିଭାଗ ଭଳି କିନ୍ତୁ ସ୍ୱାଭାବିକ ଭାବେ ଉଚ୍ଚତା ଓ କାମରେ ଫରକ୍ ଅଛି । ଏହା ମଧ୍ୟ ଆଲୋଚିତ ହେବ ଭାସ୍କର୍ଯ୍ୟ ପରିଚ୍ଛେଦରେ ।

ମୁଖ୍ୟ ପ୍ରବେଶ ଦ୍ୱାର ପୂର୍ବ ପଟେ । ଏ ଦ୍ୱାର ବନ୍ଧ ମୁଗୁନି ପଥରରେ ତିଆରି । ସିଂହ ଦ୍ୱାରର ଖୋଲା ଅଂଶ (ସିଲ୍ କରିବା ପୂର୍ବେ) ଥିଲା ୬'-୬" × ୧୪'-୧୧" ଏବଂ ବନ୍ଧ ବାହାର ମାପ ୧୯' × ୧୯' । ଏଥିରୁ ଅନ୍ଦାଜ ହେଉଛି ଦ୍ୱାରଗୁଡ଼ିକ କେତେ ବିରାଟ ଥିଲା । ଦ୍ୱାର ବନ୍ଧର ଓସାର ୬'-୩" ଯେଉଁଥିରେ ଅଛି କାରୁକାର୍ଯ୍ୟପୂର୍ଣ୍ଣ ଆଠଟି ପଟି । ଏହା ଉପରେ ଥିଲା ସେଇ ପ୍ରସିଦ୍ଧ ନବଗ୍ରହ ପଟ ଯାହା ପ୍ରଥମେ ଖୋର୍ଦ୍ଧା ରାଜା ଏବଂ ପରେ Asiatic Society of Bengal ଅପସରଣ କରିବାର ଚେଷ୍ଟା କରିଥିଲେ । ଅନ୍ୟ ତିନୋଟି ଦ୍ୱାର ମଧ୍ୟ ଏକା ରକମର ଥିଲା । ଦକ୍ଷିଣ ଦ୍ୱାର ଲୁପ୍ତ । ତାହା ଉପରେ ପଥର ବାଡ଼ ଦିଆଯାଇଛି । ପଶ୍ଚିମ ଦ୍ୱାର ସିଲ୍ କରି ଦିଆଯାଇଛି । ଉତ୍ତର ଦ୍ୱାର ସିଲ୍ କରିଦେଲେ ମଧ୍ୟ କିଛି ଅଂଶ ଏବେ ମଧ୍ୟ ଦିଶୁଛି । ନବଗ୍ରହ ଶିଳା ସବୁ ଲୁଣ୍ଠିତ । ପୂର୍ବଦିଗର ନବଗ୍ରହପାଟ ବ୍ୟତୀତ ଅନ୍ୟଗୁଡ଼ିକ ଗୋଟିଏ ପଥରରେ ତିଆରି ହୋଇ ନଥିଲା ।

ଅନବଦ୍ୟ ଶିଳ୍ପ କର୍ମଗୁଡ଼ିକ ଛାଡ଼ିଦେଲେ ମଧ୍ୟ ସ୍ଥାପତ୍ୟରେ ଏପରି ଗଠନଗତ ସୌନ୍ଦର୍ଯ୍ୟ ଫୁଟି ଉଠିଛି ଯାହାର ପଟାନ୍ତର ନାହିଁ । ଧରାଯାଉ ପଞ୍ଚରଥ ପରିକଳ୍ପନା କଥା । ଏତେ ବଡ଼ ମନ୍ଦିରରେ ସ୍ୱାଭାବିକ ଭାବେ ମନ ଯିବ ସପ୍ତ ଅଥବା ନବରଥ ଗଢ଼ିବାକୁ । କୋଣାର୍କ ଶିଳ୍ପୀ ଭାବି ଚିନ୍ତି ତାହା କରି ନାହାନ୍ତି । ମନ୍ଦିରରେ ଇଞ୍ଚେ ହେଲେ ଖାଲି ସ୍ଥାନ ନାହିଁ, ତଥାପି କୌଣସି ଭାସ୍କର୍ଯ୍ୟର ଆଧିକ୍ୟ ଅଥବା ଅଭାବ ବୋଧ ହେଉନାହିଁ ।

ଶିଳ୍ପୀକୁ ଗୋଟିଏ ବିରାଟ ପଟ ( Canvas ) ମିଳିଲା ସୂକ୍ଷ୍ମାତିସୂକ୍ଷ୍ମ କାର୍ଯ୍ୟ ଫୁଟାଇବାକୁ । ଅସଂଖ୍ୟ ଭାଞ୍ଜ ଓ ଲକ୍ଷ ଲକ୍ଷ ଖୋଦନ କାର୍ଯ୍ୟ ଯେଉଁ ଆଲୋକ ଏବଂ ଅନ୍ଧାରର ଖେଳ ଦେଖାଉଛି, ଗୋଟିଏ ଶବ୍ଦରେ 'ଅନବଦ୍ୟ' । ରେଖ ଦେଉଳ ଜଗମୋହନ ଠାରୁ ବହୁ ଉଚ୍ଚ, ତାହା ଗଣ୍ଡି ଉପରେ କାରୁକାର୍ଯ୍ୟ ଲମ୍ବାକାର ( Vertical ) କିନ୍ତୁ ତାହା ଆଗକୁ ଜଗମୋହନ କାର୍ଯ୍ୟ ସମାନ୍ତରାଳ (Horizontal) ପରସ୍ପର ପରସ୍ପରର ପରିପୂରକ, ଏହା ଗୋଟିଏ ଅପୂର୍ବ ପରିକଳ୍ପନା ଯାହା ଆସିପାରେ ଏକମାତ୍ର ଆତ୍ମମଗ୍ନ ଶିଳ୍ପୀର ଆଜୀବନ ବ୍ୟାପୀ ସାଧନାରୁ ।

ବିମାନ ଓ ଜଗମୋହନ ପରସ୍ପର ସଂଯୁକ୍ତ କିନ୍ତୁ ଦେହକୁ ଦେହ ଲଗା ନୁହେଁ; ଯେ ଯାହାର ସ୍ୱାଧୀନ ବ୍ୟକ୍ତିତ୍ୱ ପ୍ରକଟ କରୁଛି କିନ୍ତୁ ତଥାପି ନିବିଡ଼ ବନ୍ଧନରେ ବଦ୍ଧ । ସଂଯୁକ୍ତୀକରଣ ଘଟିଥାଏ 'ଗଇଣ୍ଡାଳ' ମାଧ୍ୟମରେ । ଏହା ଅତି ଦୀର୍ଘ ହେଲେ ଦେଉଳ ବାହାରୁ ମଧ୍ୟ ଟନେଲ୍ ଭଳି ମନେ ହେବ, ଅତି ହ୍ରସ୍ୱ ହେଲେ ଦୁଇଟି ମନ୍ଦିର ବ୍ୟକ୍ତିତ୍ୱ ହରାଇବ । ଏହା ଏତେ ସଂଯମର ସହିତ ଗଢ଼ା ଯାଇଛି ଯେ ଥିଲା ଭଳି ମନେ ହୁଏନା । ଏହିପରି ସବୁ ନାନା ଅବ୍ୟକ୍ତ ସମତୁଳନ ସଚେତନ ଚେଷ୍ଟାର ଫଳ ନୁହେଁ, ଚେତନାର କେଉଁ ଗଭୀର ପ୍ରଦେଶରୁ ଉତ୍‌ଥିତ ।

ସବୁଠାରୁ ବଡ଼ ସ୍ଥାପତ୍ୟ ପରିକଳ୍ପନା ମନ୍ଦିର ବାହାରର ଅଳଂକରଣ । ଲତା ପତ୍ର ଠାରୁ ନାନା ଜୀବ ଜନ୍ତୁ, ଦେଖା ଅଦେଖା ଅନେକ ଜୀବ, ମଣିଷ ତଥା ଜୀବ ଜଗତର ନାନା କର୍ମ, ଭାସ୍କର ହୁଏତ ନିହଣର ନିଖୁଣତାରେ ଫୁଟେଇ ତୋଳିଛି କିନ୍ତୁ ସମସ୍ତ କିଛିର ସୁଷମ ଉପସ୍ଥାପନ ମନ୍ଦିରକୁ କରି ତୋଳିଛି ଜୀବନ୍ତ, ଚଳମାନ ଜୀବନର ଛବି ଯାହା ଚାଲି ଅଛି ବର୍ଷ ବର୍ଷ ଯୁଗ ଯୁଗ ଧରି । କୋଣାର୍କ ମନ୍ଦିରର ମୂଳ ପରିକଳ୍ପନାର ଏହା ଏକ ବିସ୍ମୟକର ପରିପୂରକ ।

## ପୀଢ଼ ଦେଉଳର ବିଭାଗୀକରଣ :

ଜଗମୋହନ ତିନି ପ୍ରକାରର ହୋଇଥାଏ [୨୨୪] :

(କ) ଘଣ୍ଟାଶ୍ରୀ ମୋହନ - ମସ୍ତକରେ ଅମଳା, ତ୍ରିପଟଧାରା, କଳସ, ଇତ୍ୟାଦି ମସ୍ତକର ସମସ୍ତ ଉପବିଭାଗ ଥାଏ ।

(ଖ) ନାଡୁ ମୋହନ - ପୀଢ଼ମାନଙ୍କ ମଧ୍ୟସ୍ଥ କାଣ୍ଟି ପାରାଘର ନ ଥାଏ ।

(ଗ) ପୀଢ଼ ମୋହନ - ପୀଢ଼, କାଣ୍ଟି ଥାଏ କିନ୍ତୁ ମସ୍ତକରେ ଅଁଳା, କଳସ ଇତ୍ୟାଦି କିଛି ନଥାଏ ।

କୋଣାର୍କର ଜଗମୋହନ ପ୍ରଥମ ଶ୍ରେଣୀଭୁକ୍ତ ।

## କୋଣାର୍କ ଜଗମୋହନର ଉଚ୍ଚତା [୨୨୫] : (ସାରଣୀ-୮ ଦ୍ରଷ୍ଟବ୍ୟ)

| | | | | |
|---|---|---|---|---|
| **ଗଣ୍ଡି** | : | ପାଭାଗ | ୧୦'-୧୧" | |
| | | ତଳଜଙ୍ଘ | ୮' - ୧୦" | |
| | | ବନ୍ଧନ | ୨' - ୭.୧/୨" | |
| | | ଉପରଜଙ୍ଘ | ୮' - ୧.୧/୨" | |
| | | ବାରଣ୍ଡା | ୯' - ୪" | |
| | | **ବାଡ଼ର ଉଚ୍ଚତା** | **୩୯'-୧୦"** ------------ | **୩୯'-୧୦"** |
| **ପୀଢ** | : | ପ୍ରଥମ ପୋଟାଳ | ୧୫' - ୮" | |
| | | ପ୍ରଥମ କାଣ୍ଟି | ୦୭' | |
| | | ଦ୍ୱିତୀୟ ପୋଟାଳ | ୧୦'- ୬" | |
| | | ଦ୍ୱିତୀୟ କାଣ୍ଟି | ୦୫'-୭" | |
| | | ତୃତୀୟ ପୋଟାଳ | ୭' - ୪" | |
| | | **ପୀଢ଼ର ଉଚ୍ଚତା** | **୪୬'-୧"** ------------- | **୪୬'-୧"** |
| **ମସ୍ତକ** | : | ଅମଳା, ବେକି, ଶ୍ରୀ, ଇତ୍ୟାଦି (କଳସ ଛଡ଼ା) | **୨୫'-୯"** ------------- | **୨୫'-୯"** |
| **ପୀଠ** | : | ଉପନ, ତଳପୃଷ୍ଠ, ଖୁରା ପୃଷ୍ଠ | **୧୬'-୬"** ------------- | **୧୬'-୬"** |
| | | **ମୋଟ ଭୂମିଠାରୁ ଜଗମୋହନର ଉଚ୍ଚତା** | **୧୫୧'-୧୧"** ------------ | **୧୨୮'-୨"** |

## ଭୂମିଠାରୁ ଜଗମୋହନର ଉଚ୍ଚତା :

ମନମୋହନ ଗାଙ୍ଗୁଲୀ ପ୍ରଥମେ ମାପଗୁଡ଼ିକ ଫିତା ସାହାଯ୍ୟରେ କରିଥିଲେ ଏବଂ ପୂରା ଜଗମୋହନର ମାପ ଥିଓଡଲାଇଟ୍ ସାହାଯ୍ୟରେ କରିଥିଲେ । ସେତେବେଳେ କଳସ ନ ଥିଲା । କଳସ ଛଡ଼ା ସବୁ ବିଭାଗର ମୋଟ ଫିତାମାପ ଆସୁଛି ୧୨୮'-୨'', ଥିଓଡଲାଇଟ୍‌ର ମାପ ଆସିଥିଲା ୧୨୯'-୮'' । ଫରକ୍ ହେବାର କାରଣ ଗାଙ୍ଗୁଲୀ ଲେଖିଛନ୍ତି, ଅସମତଳ ଭୂମିପାଇଁ ହୋଇପାରେ ଏବଂ ଫିତା ମାପରେ ଭୁଲ୍ କରିଥିବା ଯୋଗୁଁ ମଧ୍ୟ ହୋଇପାରେ । **ଦେଖା ଯାଉଛି, କୋଣାର୍କ ଜଗମୋହନର ଉଚ୍ଚତା ଲିଙ୍ଗରାଜ ବିମାନର ଉଚ୍ଚତା ଠାରୁ ମଧ୍ୟ (୧୨୭'-୧'') ଅଧିକ ଥିଲା ।** ତେବେ ଫରକ୍‌ଟି ଏତେ ବଡ଼ ଦେଉଳ ପକ୍ଷେ ସାମାନ୍ୟ ।




**ରେଖାଚିତ୍ର-୧୦ : କୋଣାର୍କ ଜଗମୋହନର ଉନ୍ନତାଂଶ**

ଏଠାରେ ଗୋଟିଏ ବିଷୟ ଉଲ୍ଲେଖଯୋଗ୍ୟ । ରେଖାଚିତ୍ର ୧୦ରେ କଳସ ସହିତ ଜଗମୋହନର ଉଚ୍ଚତା (ଦ୍ୱିତୀୟପୃଷ୍ଠ ଉପରେ) ୧୧୫'-୧୧" । ଏହା ସହିତ ପୀଠର ଉଚ୍ଚତା ୧୬'୬" ଯୋଗ କରିଲେ ଭୂମି ଉପରୁ ଉଚ୍ଚତା ଆସୁଛି- ୧୩୨'୫" କିନ୍ତୁ Theodlite ମାପ ଆସିଥିଲା ୧୨୯'୮" । ଅବଶ୍ୟ ସେ ମାପଟି କଳସକୁ ଛାଡ଼ି । ତେବେ କ'ଣ କଳସର ଉଚ୍ଚତା ଥିଲା ମାତ୍ର ୨ଫୁଟ ୯ଇଞ୍ଚ ? ୯ ନମ୍ବର ଚିତ୍ରଟି ଆଙ୍କିବାକୁ ଲେଖକ ଭୂମି ନକ୍ସାରୁ (ଚିତ୍ର ସଂଖ୍ୟା-୬) ରହପାଗଠାରୁ ରହପାଗ ଯାଏ ମାପ (୧୦୮') ଏବଂ ଗାଙ୍ଗୁଲୀଙ୍କ ପ୍ରଦତ୍ତ ବାଡ଼ ଓ ପୀଢ଼ ମାପ ଗ୍ରହଣ କରିଛି । ଗାଙ୍ଗୁଲୀ ଏବଂ ବିଶନ୍ ସ୍ୱରୂପଙ୍କ ମାପର ମେଳ ଅଛି । ମସ୍ତକ ଅଞ୍ଚଳର ମାପ ସମସ୍ତଙ୍କ ଅନ୍ଦାଜ । ତେବେ ମସ୍ତକଟି ଅଙ୍କାଗଲା କିପରି ? ଗାଙ୍ଗୁଲୀଙ୍କ ଗୋଟିଏ ସୂତ୍ରମତେ- ଯାହା 'ନିଉ ଲାଇଟ୍' ଶେଷରେ ଉପସ୍ଥାପିତ ଚିତ୍ର ସହିତ ମେଳ ଖାଉଛି- ପ୍ରଥମ ପୀଢ଼ର ପ୍ରାନ୍ତବିନ୍ଦୁ ସହିତ ଘଡ଼ଚକଡ଼ର ପ୍ରାନ୍ତବିନ୍ଦୁ (X,Y )କୁ ଯୋଡ଼ି ଉର୍ଦ୍ଧ୍ୱକୁ ରେଖା ଟାଣିଲେ ମଧ୍ୟରେଖାର ଯେଉଁଠାରେ ମିଶିବ, ତାହା ମନ୍ଦିରର ଶୀର୍ଷ ବିନ୍ଦୁ । ଘଡ଼ଚକଡ଼ର ଓସାର ମଧ୍ୟ ଗାଙ୍ଗୁଲୀ ସୂତ୍ରମତେ ଟଣାଯାଇଛି । ବର୍ତ୍ତମାନ ମସ୍ତକର ଉଚ୍ଚତା ଆସିଲା ୩୦ ଫୁଟ୍ ।

| | | |
|---|---|---|
| ମାଦଳାପାଞ୍ଜି | ୩୫ ଫୁଟ୍ | କଳସ ସହିତ |
| ଗାଙ୍ଗୁଲୀ | ୨୫ ଫୁଟ୍ ୬ ଇଞ୍ଚ | କଳସ ବ୍ୟତୀତ |
| ବିଶନ୍ ସ୍ୱରୂପ | ୨୫ ଫୁଟ୍ ୬ ଇଞ୍ଚ | କଳସ ବ୍ୟତୀତ |
| ଏ.ଏସ୍.ଆଇ. | ୨୧ ଫୁଟ୍ ୮ ଇଞ୍ଚ | କଳସ ବ୍ୟତୀତ (୩/୮ / ୨୬) |

ଦେଖାଯାଉଛି କଳସର ଉଚ୍ଚତା ୯ ଫୁଟ୍ ଅଥବା କିଞ୍ଚିତ୍ ଅଧିକ ଥିଲା । ଲେଖକର ରେଖାଚିତ୍ରରେ କଳସର ଉଚ୍ଚତା ଆସିଛି ୮ ଫୁଟ୍ । ମସ୍ତକର ଓ ଅନ୍ୟାନ୍ୟ ଉପରିଭାଗର ମାପ ଯାହା ଦିଆଯାଇଛି ୭ ନଂ ସାରଣୀରେ, ତାହା ଏ.ଏସ୍.ଆଇ. ମ୍ୟାପ୍ ଦୁଇଟିକୁ ସ୍କେଲିଂ କରି ମିଳିଛି ଏବଂ ସେଥିରେ ମଧ୍ୟ ବହୁ ବିଭ୍ରାନ୍ତି । ତେଣୁ ସ୍ମରଣ କରିବାକୁ ପଡ଼ିଲା ଫାବ୍ରିଙ୍କ ଉପଦେଶ; କୌଣସି ଶିକ୍ଷା ସଂପୂର୍ଣ୍ଣ ନୁହେଁ "without hypothesis and conjuncture" ୨/୩ ଫୁଟ୍ ଫରକ ସତ୍ତ୍ୱେ ଜଗମୋହନର ରେଖାଚିତ୍ରଟି ମନେକରାଯାଏ ସତ୍ୟର ପାଖାପାଖି ହେବ ।

## ବାଡ଼ର ଉପ ବିଭାଗଗୁଡ଼ିକର ଅନୁପାତ (୨୨୬) :

ବହୁ ମନ୍ଦିର ମାପଚୁପ୍ କରି ବାଡ଼ର ଉପ-ବିଭାଗଗୁଡ଼ିକର କେତେକ ଅନୁପାତ ବାହାର କରିଛନ୍ତି ଗାଙ୍ଗୁଲୀ । ପାଭାଗ, ତଳଜଙ୍ଘା, ବନ୍ଧନ, ଉପରଜଙ୍ଘା ଓ ବାରାଣ୍ଡା- ଅନୁପାତ ୧:୫/୬:୧/୩:୫/୬:୧ । କେତେକ ମନ୍ଦିରରେ ୫/୬ ନହୋଇ ୭/୮ ହେବାର ମଧ୍ୟ ଦେଖାଯାଇଛି । ଏଠାରେ ମଧ୍ୟ କୋଣାର୍କ ଶିଳ୍ପୀ କିଛି ବ୍ୟତିକ୍ରମ ଘଟାଇଛନ୍ତି (ପୃ.୧୨୦ ଦେଖନ୍ତୁ) କିନ୍ତୁ ତାଳ କଟି ନାହିଁ; ଅର୍ଥାତ୍ ପ୍ରଥମ ଓ ଶେଷ ଉପୃତ୍ତି ଭାଗ ସମାନ, ୨ୟ ଓ ଚତୁର୍ଥ ଉପରିଭାଗ ସମାନ, ମଧ୍ୟମ ୧/୩ । ଉପରୋକ୍ତ ତଥ୍ୟ ଓ ୮ ନମ୍ବର ସାରଣୀରୁ ନିର୍ଭରଯୋଗ୍ୟ ମାପନେଇ ଜଗମୋହନର ରେଖାଚିତ୍ର ଉପସ୍ଥାପିତ ହେଲା ଚିତ୍ର ସଂଖ୍ୟା ୯ରେ ।

## ବିମାନ ଓ ଜଗମୋହନ ଭିତର ଭାସ୍କର୍ଯ୍ୟ :

ମନ୍ଦିର ଭିତର ସମ୍ପୂର୍ଣ୍ଣ ଭାସ୍କର୍ଯ୍ୟଶୂନ୍ୟ । କାନ୍ଥ ଦେହରେ ତିନୋଟି ଡୋରି ଛଡ଼ା କୌଣସି କାରୁକାର୍ଯ୍ୟ ଭାସ୍କର୍ଯ୍ୟ ନାହିଁ । ମୁଣ୍ଡ ଉପରେ ଅବଶ୍ୟ ପଦ୍ମ ଚନ୍ଦ୍ରାତପ ଥିଲା, କିନ୍ତୁ ଏହା ବହୁ ଉପରେ । ଗର୍ଭଗୃହରେ ଆଲୋକର ପ୍ରବେଶ ମଧ୍ୟ ସୀମିତ । ବହୁ ଶହ ବର୍ଷ ପୂର୍ବେ ମନ୍ଦିର ମଧ୍ୟରେ ନାନା ଅଳଂକରଣ ସହ ନାନା ମୂର୍ତ୍ତି ମଧ୍ୟ ଗଢ଼ା ହେଉଥିଲା । କୋଣାର୍କ ଠାରୁ ଦୁଇଶହ ବର୍ଷ ପୁରାତନ ମୋଧେରାର (୧୦୨୬ ଖ୍ରୀ.ଅ.) ମୁଖଶାଳା ଭିତରେ, ଏପରି କି ଗର୍ଭଗୃହ ଦ୍ୱାରରେ ମଧ୍ୟ ଖାଲି ବିଭିନ୍ନ ମୂର୍ତ୍ତି ନୁହେଁ; ମିଥୁନ ଯୁଗଳ ମଧ୍ୟ ନିବିଡ଼ ବନ୍ଧନରେ ଦେଖାଯାଇଛି, କିନ୍ତୁ ଓଡ଼ିଶା ମନ୍ଦିରର ଅଭ୍ୟନ୍ତର ଶହଶହ ବର୍ଷ ଧରି ଅଳଙ୍କରଣ ଶୂନ୍ୟ । ଦାର୍ଶନିକ ସ୍ଥପତି ବୁଝି ପାରିଥିଲେ, ବାହାରର ସମସ୍ତ ରଙ୍ଗରସର ଜୀବନ ପ୍ରବାହ ଡ଼େଇଁ ମନୁଷ୍ୟ ଯେତେବେଳେ ପରମାତ୍ମାଙ୍କ ନିକଟରେ ସମର୍ପିତ ହେବାକୁ ଚାହୁଁଛି, ସେତେବେଳେ ଚାପଲ୍ୟ ଶୋଭା ପାଏ ନା, ସେତେବେଳେ ପରିବେଶ, ସହଯୋଗୀ ହେବା ପ୍ରୟୋଜନ ।

## ପୁରାତନ ସୂର୍ଯ୍ୟ ମନ୍ଦିର :

ବେଢ଼ା ଭିତରେ ଦକ୍ଷିଣ ପଶ୍ଚିମ କୋଣରେ ଥିବା ୨ନମ୍ବର ମନ୍ଦିର (ଚିତ୍ର ନଂ.୮ ଦେଖନ୍ତୁ) ପୁରାତନ ସୂର୍ଯ୍ୟ ମନ୍ଦିର । ଏହାକୁ ମାୟାଦେବୀ, ଛାୟାଦେବୀ, ରାମଚଣ୍ଡୀ ଇତ୍ୟାଦି ନାନା ନାମରେ ଅଭିହିତ କରାଯାଇଥିଲେ ମଧ୍ୟ ଏହା ଯେ ଗୋଟିଏ ପୁରାତନ ସୂର୍ଯ୍ୟ ମନ୍ଦିର ତାହା ପ୍ରତିଷ୍ଠିତ ହୋଇଛି ପୃଷ୍ଠା ୪୧-୪୨ରେ । ଏଠାରେ ଆଲୋଚିତ ହେବ ବଡ଼ ମନ୍ଦିରଠାରୁ (୧ନମ୍ବର ମନ୍ଦିର) ଏହାର ସ୍ଥାପତ୍ୟଗତ ଭିନ୍ନତା । ଏଇ ପୁରାତନ ମନ୍ଦିରର ଭୂମି ନକ୍ସା ରେଖାଚିତ୍ର-୧୧ରେ ଉପସ୍ଥାପିତ ହେଲା ।



ଫଟୋ-୧୬ : ପୁରାତନ ସୂର୍ଯ୍ୟମନ୍ଦିର



ଫଟୋ-୧୭ : ପୁରାତନ ସୂର୍ଯ୍ୟମନ୍ଦିରର ପୀଠ

ଏକନମ୍ବର ମନ୍ଦିର ବିଶାଳକାୟ ହୋଇ ମଧ୍ୟ ପଞ୍ଚରଥ, କିନ୍ତୁ ଏ କ୍ଷୁଦ୍ର ମନ୍ଦିର ସପ୍ତରଥ (ରେଖାଚିତ୍ର -୧୧) । ଦେବଳା ମିତ୍ରଙ୍କ ଅନୁସନ୍ଧାନରେ ଏହା ସପ୍ତରଥ ହେଲେ ମଧ୍ୟ କୋଣପାଗ କଡ଼ରେ ଗୋଟିଏ ପତଳା ପାଗ ଗଠନ ଯୋଗୁଁ ପଞ୍ଚରଥ ପରି ଦେଖାଯାଏ ।[୨୨୭] ଯେଉଁ ସ୍ଥପତି ଭାସ୍କର୍ଯ୍ୟର ପରାକାଷ୍ଠା ଦେଖାଇବାକୁ ବିଶାଳ ୧ନମ୍ବର ମନ୍ଦିର ପଞ୍ଚରଥ କରିଥିଲେ, ସେ କେବେହେଲେ ଏତେ ଛୋଟ ମନ୍ଦିରରେ ସପ୍ତରଥ ପରିକଳ୍ପନା କରନ୍ତେ ନାହିଁ । ୧ନମ୍ବର ବଡ଼ ଦେଉଳର ବିମାନର ଭିତ୍ତିଭୂମିର ଓସାର ୯୦' (କୋଣପାଗଠାରେ) ହୋଇଥିବା ସ୍ଥଳେ ୨ନମ୍ବର ମନ୍ଦିରର ବିମାନର ଭିତ୍ତିଭୂମିର ଓସାର ୩୦'×୨୫'ଫୁଟ୍ (ରେଖାଚିତ୍ର-୧୧ ଦେଖନ୍ତୁ) । ଏହାଛଡ଼ା ଏ ମନ୍ଦିରର ଭିତ୍ତିଭୂମି ଆୟତାକାର, ବର୍ଗାକାର ନୁହେଁ । ଶାରି ଦେଉଳ ଓ ଗୌରୀ ମନ୍ଦିରକୁ ଛାଡ଼ି ଦେଲେ ସପ୍ତରଥ ମନ୍ଦିର ପ୍ରାୟ ଗଢ଼ା ହୋଇ ନାହିଁ ଏବଂ ଏକାଦଶ ଶତାବ୍ଦୀରେ ଗଠିତ ଲିଙ୍ଗରାଜ ଠାରୁ କୌଣସି ବଡ଼ ଦେଉଳରେ ପଞ୍ଚରଥ ଛଡ଼ା ଅନ୍ୟ ପରିକଳ୍ପନା ହୋଇନାହିଁ । ଶାରି ଏବଂ ଗୌରୀ ମନ୍ଦିର ଦଶମ ଶତାବ୍ଦୀରେ ଗଠିତ, ଯେତେବେଳେ ମନ୍ଦିର ଗଠନରେ ଆହୁରି ପରୀକ୍ଷା ନିରୀକ୍ଷା ଚାଲିଥିଲା ।

ଜଗମୋହନ ଆଗରେ ଗୋଟିଏ ଖୋଲା ପୀଠ ଅଛି, ଯାହାର ଉଚ୍ଚତା ମନ୍ଦିରର ତଳ ପୀଠ ଉଚ୍ଚତା ସହିତ ସମାନ । ମନ୍ଦିରଦ୍ୱୟର ତଳ ପୀଠରେ ତିନି କାମ - ଖୁର, କଣି ଓ ବସନ୍ତ; କିନ୍ତୁ ଏ ପୀଠର ବାଡ଼ରେ ଗୋଟେ ଛାଡି ଗୋଟେ କଖର ମୁଣ୍ଡି ଓ ବଜ୍ର ମୁଣ୍ଡିର ସମାରୋହ । ୧ ନମ୍ବର ମନ୍ଦିରର ପୀଠ ଗଠନରେ ଯେଉଁ ପାଞ୍ଚ ବିଭାଗ ଅଛି, ଏ ପୃଷ୍ଟରେ ତାହା ଅନୁପସ୍ଥିତ । ପୀଠର ଉଚ୍ଚତା ୩'-୩'' । ତାହା ଉପରକୁ ଆଠ ଦଶ ଇଞ୍ଚ ଛାଡ଼ି ମନ୍ଦିର ବାଡ଼ ଉଠିଛି । ବିମାନ ଓ ଜଗମୋହନ ବାଡ଼ର ପାଭାଗର ଉଚ୍ଚତା ଯଥାକ୍ରମେ ୬'-୯'' ଏବଂ ୫' । ପାଭାଗରେ ପ୍ରଥାନୁସାରେ ପଞ୍ଚ କର୍ମ - ଖୁର, କୁମ୍ଭ, ପଟ, କଣି ଓ ବସନ୍ତ । ଏହା ଉପରକୁ ତଳ ଜଙ୍ଘା ବର୍ତ୍ତମାନ ସୁଦ୍ଧା ଅଛି । କିନ୍ତୁ ତାହା ଉପରକୁ ମନ୍ଦିର ଧୂଳିସାତ୍ ହୋଇଯାଇଛି । ବଞ୍ଚି ଯାଇଛି, ଦୁଇ ପାର୍ଶ୍ୱଦେବ ଓ ବାଡ଼ ଗାତ୍ରର କିଛି ଭାସ୍କର୍ଯ୍ୟ । ତିନି ପାର୍ଶ୍ୱ- ଦେବତା ମଧ୍ୟରୁ ପଶ୍ଚିମ ପାର୍ଶ୍ୱ ଦେବ ଅଦୃଶ୍ୟ ହୋଇଯାଇଛନ୍ତି । ଏହା ଆଲୋଚିତ ହେବ ଭାସ୍କର୍ଯ୍ୟ ପ୍ରସଙ୍ଗରେ ।

ତଳ ଜଙ୍ଘା ଉପରକୁ ବନ୍ଧନରେ ପାଞ୍ଚ କାମ ଥିଲା - ଖୁର, କୁମ୍ଭ, ପଟ, କଣି ଓ ବସନ୍ତ, ବର୍ତ୍ତମାନ ଅଧିକାଂଶ ଧ୍ୱଂସ ପାଇଯାଇଛି । ଯେଉଁ ସୂତ୍ରରେ ବଡ଼ମନ୍ଦିରର ଉଚ୍ଚତା ଆକଳନ କରିଥିଲେ ଜଗମୋହନ ଗାଙ୍ଗୁଲୀ ସେଇ ସୂତ୍ରରେ ଏ ପୁରାତନ ମନ୍ଦିରର ଉଚ୍ଚତା ମଧ୍ୟ ଆକଳନ କରାଯାଇ ପାରେ, ଯେହେତୁ ପାଭାଗ (ଗାଙ୍ଗୁଲୀଙ୍କ ମତେ ଜଙ୍ଘା) ବଞ୍ଚିଯାଇଛି ।

| | | | | |
|---|---|---|---|---|
| ପାଭାଗର ଉଚ୍ଚତା | = | ୦୬'-୦୯" | ----- | ୦୬'-୦୯" |
| ବାଡ଼ର ଉଚ୍ଚତା - ୦୬'-୦୯"× ୧୩/୩ | = | ୨୯'-୧୧" | ----- | ୨୯'-୧୧" |
| ଗଣ୍ଡିର ଉଚ୍ଚତା - ବାଡ଼ × ୨ | = | ୨୧'-୦୭" | ----- | ୨୧'-୦୭" |
| ମସ୍ତକର ଉଚ୍ଚତା (ଅନ୍ଦାଜ) | = | ୧୦'-୦୬" | ----- | ୧୦'-୦୬" |
| ପୀଠର ଉଚ୍ଚତା | = | ୦୩'-୦୩" | ----- | ୦୩'-୦୩" |
| **ଭୂମି ତଳୁ ମନ୍ଦିରର ଆକଳିତ ଉଚ୍ଚତା** | = | | | **୬୫'-୦୩''** |

ଜଗମୋହନ ଓ ବିମାନ ଭିତରେ ବହୁ କାର୍ଯ୍ୟ ହୋଇଛି ଯାହା ଓଡ଼ିଶା ମନ୍ଦିର ଭିତରେ ଅନ୍ତତଃ ଏକାଦଶ ଶତାବ୍ଦୀରୁ ହେଉ ନାହିଁ । ମନ୍ଦିର ବାହାର ଦେହର ରଥ ପରିକଳ୍ପନା ଭଳି ପାଗ ଗଢ଼ା ହୋଇଛି ଭିତରେ । ବାହାର ଗାତ୍ର ଭଳି ନାନା ଅଳଂକରଣ ତଥା ନାନା ମୂର୍ତ୍ତିରେ ସଜ୍ଜିତ ହୋଇଥିଲା ଭିତର ଗାତ୍ର । ସେଥିରୁ ଅଧିକାଂଶ ଲୁଣ୍ଠିତ, କିଛି ବିଭିନ୍ନ ମ୍ୟୁଜିୟମରେ ଶୋଭା ପାଉଛି । ଗର୍ଭ ଗୃହରୁ ଦେବ ଅଥବା ଦେବୀ ଅନ୍ତର୍ହିତ । କେହିଜଣେ ଗୋଟିଏ ଭଙ୍ଗା ଛୋଟ ମୂର୍ତ୍ତି ଶୂନ୍ୟ ସିଂହାସନ ଉପରେ ଥୋଇଦେଇଛି ଯାହା ସହିତ ଆସନର ମଧ୍ୟ ମେଳ ନାହିଁ ।

ପ୍ରଶ୍ନ : ଏ ମନ୍ଦିରର ଏପରି ଦଶା ହେଲା କିପରି ? ଏହା ମଧ୍ୟ କ'ଣ ମଧ୍ୟଯୁଗୀୟ ବର୍ବରତାର ଶିକାର ?

ଉପରୋକ୍ତ ଆଲୋଚନାରୁ ପରିଷ୍କାର ଜଣାପଡୁଛି, ଏ ମନ୍ଦିର ବଡ଼ ମନ୍ଦିରର (୧ନମ୍ବର ମନ୍ଦିର) ସମସାମୟିକ ନୁହେଁ, ବହୁ ବର୍ଷ ପୂର୍ବେ ଗଠିତ । ଏ ମନ୍ଦିର ଛାୟାଦେବୀ ଅଥବା ମାୟାଦେବୀ ମନ୍ଦିର ହୋଇ ପାରେନା, କାରଣ ଖୋଦ ସୂର୍ଯ୍ୟଙ୍କ ମନ୍ଦିର ଗଢ଼ା ହେବାର ବହୁ ଶହ ବର୍ଷ ପୂର୍ବରୁ ସେଠାରେ ସୂର୍ଯ୍ୟ ପତ୍ନୀଙ୍କ ମନ୍ଦିର ନିର୍ମିତ ହୋଇଥିବା ଅକଳ୍ପନୀୟ । ବରଂ ଦେବଳା ମିତ୍ରଙ୍କ ଅନ୍ଦାଜ ସମ୍ଭବ ହୋଇପାରେ । "It is not known if an image of one of the wives of the surya was consecrated in it after the erection of the New temple." [୨୨୮]

# ଇଷ୍ଟକନିର୍ମିତ ବିଷ୍ଣୁ ମନ୍ଦିର :

ପୁରାତନ ସୂର୍ଯ୍ୟ ମନ୍ଦିର ପଛପଟେ ୫୫ ଫୁଟ୍ ଦୂରରେ ଗୋଟିଏ ଇଟା ତିଆରି ମନ୍ଦିର ଅଛି । ଏ ମନ୍ଦିରର ମଧ୍ୟ ଛାତ ନାହିଁ । ବାଲି ଓ ଭଙ୍ଗା ଇଟା ଅପସାରଣ ସମୟରେ ଦକ୍ଷିଣ କୁଲୁଙ୍ଗିରୁ ଗୋଟିଏ ବରାହ ମୂର୍ତ୍ତି ଓ ଉତ୍ତର କୁଲୁଙ୍ଗିରୁ ତ୍ରିବିକ୍ରମ ମୂର୍ତ୍ତି ମିଳିଥିବାରୁ ଐତିହାସିକମାନେ



ଫଟୋ-୧୮ (କ) : ବିଷ୍ଣୁ ମନ୍ଦିର



ଫଟୋ-୧୮(ଖ) : ବିଷ୍ଣୁ ମନ୍ଦିର ଭୂମିନକ୍ସାର ଆକାର

ଏହାକୁ ବିଷ୍ଣୁ ମନ୍ଦିରରୂପେ ଚିହ୍ନିତ କରିଛନ୍ତି । ବରାହ ଓ ତ୍ରିବିକ୍ରମ ବିଷ୍ଣୁଙ୍କ ପାର୍ଶ୍ୱଦେବତା । ମୂର୍ତ୍ତି ଦୁଇଟି ବର୍ତ୍ତମାନ କୋଣାର୍କ ମ୍ୟୁଜିୟମ୍‌ରେ ସଂରକ୍ଷିତ ଅଛି ।[୨୨୯]

୧୯୦୬-୦୭ରେ ମିଳିଥିବା ବିଷ୍ଣୁ ଓ ବଳରାମ ମୂର୍ତ୍ତିରୁ ଦେବଳା ମିତ୍ର ଅନୁମାନ କରନ୍ତି, ଏହା ଅନନ୍ତ ବାସୁଦେବ ମନ୍ଦିର ।[୨୩୦] କରୁଣାସାଗର କିନ୍ତୁ ସହମତ ହୋଇପାରି ନାହାନ୍ତି କାରଣ, ସୁଭଦ୍ରା ମୂର୍ତ୍ତି ଏ ଯାଏ ମିଳିନାହିଁ ।[୨୩୧] ସାଧାରଣ ବାସ୍ତବ ବୁଦ୍ଧି ପ୍ରୟୋଗ କଲେ ଏ ଦୁଇ ପ୍ରଖ୍ୟାତ ଗବେଷକଙ୍କ ଯୁକ୍ତି ଗ୍ରହଣଯୋଗ୍ୟ ମନେ ହେଉନାହିଁ । ପ୍ରଥମ କଥା, କେହି କହୁ ନାହାନ୍ତି, ମୂର୍ତ୍ତି ଦୁଇଟି ଗୋଟିଏ ପଥରରେ ଗଢ଼ା ହୋଇଥିଲା ଅଥବା ଭିନ୍ନ ଭିନ୍ନ ପଥରରେ । ବିଷ୍ଣୁଙ୍କ ସହସ୍ର ନାମ ଓ ସହସ୍ର ଅବତାର । ଜଗନ୍ନାଥ ଓ ଶ୍ରୀକୃଷ୍ଣ ଦିହେଁ ବିଷ୍ଣୁଙ୍କ ଅବତାର । ମହାଭାରତରେ ବଳରାମଙ୍କ ନାମ ଆସେ ଶ୍ରୀକୃଷ୍ଣଙ୍କ ସହିତ । ଜଗନ୍ନାଥଙ୍କ ସହିତ ବଳଭଦ୍ର ଓ ସୁଭଦ୍ରାଙ୍କ ନାମ କିପରି ଯୋଡ଼ା ହେଲା ତାହା ଅନ୍ୟ ଗବେଷଣାର ପରିସରଭୁକ୍ତ କିନ୍ତୁ ଏକଥା ସୁନିଶ୍ଚିତ, ସବୁବେଳେ କୁହାଯାଇଥାଏ 'କୃଷ୍ଣ-ବଳରାମ' ଅଥବା 'ଜଗନ୍ନାଥ-ବଳଭଦ୍ର-ସୁଭଦ୍ରା' । କେବେହେଲେ କୁହାଯାଏ ନାହିଁ 'ବିଷ୍ଣୁ-ବଳରାମ' । ଗର୍ଭଗୃହରୁ କୌଣସି ଦେବତା ମିଳି ନଥିଲେ । ଯେତେବେଳ ଯାଏ ରତ୍ନ ସିଂହାସନରେ ଯେଉଁ ଦେବ ଅଧିଷ୍ଠିତ ଥିଲେ ସେ ନ ମିଳିଛନ୍ତି ଅଥବା ଅନ୍ୟ କିଛି ଏପିଗ୍ରାଫିକ୍ ପ୍ରମାଣ ନ ମିଳିଛି, ଏ ଆଲୋଚନା ଅସାର ।

ମନ୍ଦିରଟି ପଞ୍ଚରଥ ଥିଲା (ଫଟୋ : ୧୮-ଖ ଦେଖନ୍ତୁ) । ବିମାନ ଅଭ୍ୟନ୍ତରରେ ତ୍ରିରଥ ଓ ମୁଖଶାଳା ଭିତରେ ପଞ୍ଚରଥ ପରିକଳ୍ପନା ହୋଇଛି । ମନମୋହନ ଗାଙ୍ଗୁଲୀଙ୍କ ମତ, ଏ ମନ୍ଦିର ଆଦୌ ଶେଷ ହୋଇ ନଥିଲା, କାରଣ ସ୍ଥପତିମାନେ ହୁଏତ ବୁଝି ପାରିଥିଲେ ଏ ମନ୍ଦିରର ଇଟା ସମ୍ପୂର୍ଣ୍ଣ ଓଜନ ସହି ନପାରେ ।[୨୩୨] ମନେହୁଏ ଇଂଜିନିୟର ଗାଙ୍ଗୁଲୀ ସାହେବ ଏ ମତ ଦେଇଛନ୍ତି ହେଳାରେ । ସେ ଯୁଗରେ ବଡ଼ ମାପର ଇଟା ବ୍ୟବହାର ହେଉଥିଲା, ଯାହା ହୋଇଛି ଏ ମନ୍ଦିରରେ । ସେ ଯୁଗରେ କ'ଣ ଚିମନି ଇଟା ଥିଲା ? ନଚେତ୍ ଉପରଭାଗଟି ଇଟା ଏତେ ଦିନ ତିଷ୍ଠି ଅଛି କିପରି ? ଯେଉଁ ମନମୋହନ କୋଣାର୍କର ପଥର, ଲୁହା ନେଇ ପରୀକ୍ଷାଗାରରେ ମୂଲ୍ୟାୟନ କରାଇଥିଲେ, ସେ ଅନ୍ତତଃ ଏଠାକାର ଇଟାକୁ ସେହିପରି ପରୀକ୍ଷା କରାଇ ପାରିଥା'ନ୍ତେ । ଦେବଳା ମିତ୍ର, ASI ର D.G. ହିସାବରେ ମଧ୍ୟ ତାହା କରି ପାରି ଥାଆନ୍ତେ । ବର୍ତ୍ତମାନ ମଧ୍ୟ ଏହା କରାଯାଇ ପାରେ । ଏହାଛଡ଼ା ଭିତ୍ତି ପରୀକ୍ଷା କରିବାକୁ ଆଧୁନିକ ବିଜ୍ଞାନ ସକ୍ଷମ, ଯାହା ବର୍ତ୍ତମାନ ମୂଳ ମନ୍ଦିରରେ ହେଉଥିବା କଥା ପତ୍ରପତ୍ରିକାରୁ ଜଣାପଡୁଛି ।

କରୁଣାସାଗର କହିଛନ୍ତି, ମନ୍ଦିର ନିର୍ମାଣ ଶେଷ ହୋଇଥିଲା, କାରଣ ପାର୍ଶ୍ୱଦେବତା ବସି ସାରିଥିଲେ[୨୩୩] । ଏପରି କୌଣସି ନିୟମ ନାହିଁ ମନ୍ଦିର ଶେଷ ହେବା ପୂର୍ବରୁ ପାର୍ଶ୍ୱଦେବତା ବସି ପାରିବେ ନାହିଁ । ପାର୍ଶ୍ୱଦେବତା ଦୁଆରବନ୍ଧ ଇତ୍ୟାଦି ପଥରନିର୍ମିତ । ପଥରରେ ମୂର୍ତ୍ତି ନିର୍ମାଣ କରିବାକୁ ବହୁତ ସମୟ ଲାଗେ; ହୁଏତ ମନ୍ଦିର ନିର୍ମାଣର ବହୁ ପୂର୍ବରୁ ପଥର ଶିଳ୍ପୀଙ୍କୁ ଆଦେଶ ମିଳିଥିଲା ମୂର୍ତ୍ତି ଗଢିବାପାଇଁ । ଗଢ଼ାସରିବା ପରେ କାନ୍ଥ ସହିତ ଯୋଡ଼ିଦେବା, ଅନ୍ତତଃ ଇଟା ଦେଉଳରେ ସହଜ ଥିଲା । ବର୍ତ୍ତମାନ ବିମାନ ଓ ମୁଖଶାଳାର ବାଡ଼ ଉପରକୁ କିଛି ନାହିଁ । ବାହାର ଦେବାଲ୍ ଚୌର୍ଯ୍ୟ ଓ ପ୍ରକୃତିର ଗ୍ରାସରେ ଏତେ କ୍ଷତିଗ୍ରସ୍ତ ଯେ, ପାଗ ବିଭାଗ ଜଣା ପଡୁ ନାହିଁ । ପାଭାଗର ତିନି କାମ, ତଳଜଙ୍ଘା, ବନ୍ଧନ ଉପରଜଙ୍ଘା ଓ ବାରଣ୍ଡା ଦେଖାଯାଉଛି । ବନ୍ଧନରେ ଗୋଟିଏ ପଟି ଏବଂ ବାରଣ୍ଡାରେ ଚାରିକାମ, କୌଣସି କାରୁକାର୍ଯ୍ୟ ଜଣାପଡୁ ନାହିଁ । ପାର୍ଶ୍ୱଦେବଙ୍କ କୁଲୁଙ୍ଗୀ ଅଛି କିନ୍ତୁ ପାର୍ଶ୍ୱଦେବତା ତ୍ରୟ ଓ ଜଙ୍ଘା ଉପର ସମସ୍ତ କାମ ଚୋରି ହୋଇଯାଇଛି (ପୃଷ୍ଠା-୧୧୮ରେ ଫଟୋ-୧୮(କ) ଦ୍ରଷ୍ଟବ୍ୟ) । ପ୍ରବେଶ ଦ୍ୱାରରେ ଦୁଇଟି ଦ୍ୱାରପାଳ ଓ ଭିତର ଦ୍ୱାର ବନ୍ଧ ଉପରେ ଗୋଟିଏ ଲକ୍ଷ୍ମୀ ପଟ ଛଡ଼ା ଆଉ କିଛି ନାହିଁ । ଏ ମନ୍ଦିର ଭିତରେ କିନ୍ତୁ ପାଗ ଗଢ଼ା ହୋଇଥିଲା, ଆଉ କିଛି ନାହିଁ । କେହି ଜଣେ ଗୋଟିଏ ଅର୍ଦ୍ଧଭଗ୍ନ ବିଷ୍ଣୁ ମୂର୍ତ୍ତି ପୀଠ ଉପରେ ଥୋଇ ଦେଇଛି, ଯାହା ସ୍ପଷ୍ଟତଃ ଏ ମନ୍ଦିରର ନୁହେଁ । ଏ.ଏସ୍.ଆଇ. ଯେବେ ଐତିହ୍ୟ ସୁରକ୍ଷାପାଇଁ ଉଦ୍ଦିଷ୍ଟ, ଏସବୁ ବନ୍ଦ କରନ୍ତୁ । ପାରିଲେ ମୂଳ ଭାସ୍କର୍ଯ୍ୟଗୁଡ଼ିକୁ ଉଦ୍ଧାର କରି ସ୍ୱସ୍ଥାନରେ ବସାନ୍ତୁ । ଅନ୍ତତଃ ଜୀର୍ଣ୍ଣଦଶାଗତ ମନ୍ଦିରର ସଂସ୍କାର କରି କିଛିଟା ମୂଳ ଚେହେରାକୁ ଫେରାଇ ଆଣନ୍ତୁ; ଇଟା ତିଆରି ଦେବାଲରେ ଏହା କଷ୍ଟସାଧ୍ୟ ନୁହେଁ ।

## ନାଟମଣ୍ଡପର ସ୍ଥାପତ୍ୟ :

ନାଟମଣ୍ଡପର ଭୂମିତଳ ନକ୍ସା ରେଖାଚିତ୍ର-୧୨ରେ ଉପସ୍ଥାପିତ ହେଲା । ଆକାଶମାର୍ଗରୁ ଉତ୍ତୋଳିତ ଫଟୋ-୧୯ ସହିତ ମିଳେଇ ଦେଖିଲେ ବୁଝାଯିବ, ଏ ମନ୍ଦିର ଅଥବା ମଣ୍ଡପ ଅନ୍ୟାନ୍ୟ ମନ୍ଦିରଠାରୁ କେତେ ଭିନ୍ନ ।

ମୂଳ ମନ୍ଦିର ଭଳି ଏହା ମଧ୍ୟ ପଞ୍ଚରଥ ପରିକଳ୍ପନା ଏବଂ ଏହାର ମଧ୍ୟ ଗୋଟିଏ ଉଚ୍ଚ ପୀଠ (plinth) ଅଛି । ତିନି ଥାକରେ ପୃଷ୍ଠର ଉଚ୍ଚତା ୧୬'-୪'' ଯାହା ମୂଳ ମନ୍ଦିରର ପୃଷ୍ଠଠାରୁ ମାତ୍ର ୨'' ଛୋଟ ।

ମଣ୍ଡପର ଚାରି ପଟେ ଚାରିଟି ସୋପାନ ଅଛି, ଯାହା ଭୂମି ଠାରୁ ଉଠି ଯାଇଛି ଦ୍ୱିତୀୟ ପୃଷ୍ଠ ଉପରକୁ (୧୧'-୧୧'') । ଏକମାତ୍ର ଦକ୍ଷିଣ ଦିଗର ସୋପାନ ଛଡ଼ା ବାକି ତିନୋଟି, ମଣ୍ଡପ ନିର୍ମାଣ ହେବାର ବହୁ ପରେ ନିର୍ମିତ ହୋଇଛି । ପୀଠ ବାଡ଼ରେ ଥିବା ଶିଳ୍ପକର୍ମଗୁଡ଼ିକୁ ଏ ତିନୋଟି ସୋପାନ ବହୁ ସ୍ଥାନରେ ଢାଙ୍କି ପକାଇଛି । ବକ୍ତବ୍ୟ ପରିଷ୍କାର ହେବ ଫଟୋ ନମ୍ବର(୨୦-କ,ଖ,ଗ,ଘ) ଦେଖିଲେ ।




ରେଖାଚିତ୍ର-୧୨ : ନାଟମଣ୍ଡପର ଭୂମିନକ୍ସା



ଫଟୋ-୧୯ : ଆକାଶମାର୍ଗରୁ ନାଟମଣ୍ଡପ



ଫଟୋ-୨୦ (କ) : ଦକ୍ଷିଣ ବାଡ଼ରେ ନାଟମଣ୍ଡପ ପାହାଚ



ଫଟୋ-୨୦ (ଖ) : ପଶ୍ଚିମ ବାଡ଼ରେ ନାଟମଣ୍ଡପ ପାହାଚ



ଫଟୋ-୨୦ (ଗ) : ଉତ୍ତର ବାଡ଼ରେ ନାଟମନ୍ଦିର ପାହାଚ



ଫଟୋ-୨୦ (ଘ) : ପୂର୍ବବାଡ଼କୁ ପାହାଚ ଯେଉଁଠାରେ ଛୁଇଁଛି

ଯେଉଁ ସ୍ଥପତି ମୂଳ ମନ୍ଦିରସମଷ୍ଟିର ଜଟିଳ ଯୋଜନା କମ୍ପ୍ୟୁଟର ନିପୁଣତାରେ ସମ୍ପାଦନ କରି ପାରିଥିଲେ, ତାଙ୍କ ପକ୍ଷରେ ଏପରି ଅଗ୍ରପଶ୍ଚାତ୍ ଚିନ୍ତାହୀନ କାର୍ଯ୍ୟ କରିବା ସମ୍ଭବ ନୁହେଁ । ଏହା ଅନ୍ୟତମ କାରଣ, ଯେଉଁଥିରୁ ମନେହେବ, ନାଟ ମଣ୍ଡପ ମୂଳ ମନ୍ଦିର ସହିତ ଗଢ଼ା ହୋଇ ନଥିଲା । ପୂର୍ବ ଦିଗର ସୋପାନ ସମ୍ମୁଖରେ ଯେଉଁ ଗଜସିଂହ ଦ୍ୱୟ ଅଛନ୍ତି, ସେ ଦୁଇଟି ପୂର୍ବେ ମୂଳ ମନ୍ଦିର ସମ୍ମୁଖରେ ଥିବାର ଅନୁମାନ କରନ୍ତି ଐତିହାସିକମାନେ ।

ଗୋଟିଏ ବିଷୟ ଏଠାରେ ଆଲୋଚନା କରିବା ପ୍ରାସଙ୍ଗିକ ହେବ । ପୂର୍ବେ ବହୁବାର ଆଲୋଚିତ ହୋଇଛି, ମାଘ ଶୁକ୍ଳପକ୍ଷ ସପ୍ତମୀ, ସୂର୍ଯ୍ୟ ଦକ୍ଷିଣାୟନ ଶେଷ କରି ଉତ୍ତରାୟଣକୁ ଗତି କରିବା ସମୟରେ ପ୍ରତ୍ୟୁଷରେ ସିଂହଦ୍ୱାର ଖୋଲି ଦେଲେ ସୂର୍ଯ୍ୟାଲୋକ ପଡୁଥିଲା ବିଗ୍ରହ ଉପରେ । ସିଂହଦ୍ୱାର କହିଲେ ଜଗମୋହନର ପୂର୍ବ ଦ୍ୱାରକୁ ବୁଝାଉଛି । ଯେହେତୁ ଜଗମୋହନର ଉପର ପୃଷ୍ଠ ଏବଂ ମୂଳ ମନ୍ଦିରର ଉପର ପୃଷ୍ଠ ପ୍ରାୟ ଏକା ସମତଳରେ ଅବସ୍ଥିତ ଏବଂ ନାଟମଣ୍ଡପ, ଜଗମୋହନ ଓ ବିମାନ ଗୋଟିଏ ରେଖାରେ ଅବସ୍ଥିତ, ପ୍ରତ୍ୟୁଷରେ ସୂର୍ଯ୍ୟକିରଣ ଯିବାକୁ ପଡ଼ିବ ପ୍ରଥମେ ନାଟମଣ୍ଡପ ଭିତର ଦେଇ ଏବଂ ତା'ପରେ ଜଗମୋହନ ଭିତର ଦେଇ । ଦୂରତ୍ୱ କମ୍ ନୁହେଁ । ନାଟମଣ୍ଡପ ପାର ହେବା ପରେ ସୂର୍ଯ୍ୟ କିରଣକୁ ଗତି କରିବାକୁ ପଡ଼ିବ ଅନ୍ୟୁନ ୨୮୪ ଫୁଟ । ସେ ଲାଇନ୍‌ରେ ପୁଣି ଅରୁଣସ୍ତମ୍ଭ ଥିଲା । ସେ ପରିସ୍ଥିତିରେ ନାଟମଣ୍ଡପ ଥିବା ଅବସ୍ଥାରେ ସୂର୍ଯ୍ୟକିରଣ ବିଗ୍ରହ ଉପରେ ପଡ଼ିବା ସହଜ ନୁହେଁ, ଏହା ଚିନ୍ତା କରିବା ଜଣେ ସ୍ଥପତିପାଇଁ ସ୍ୱାଭାବିକ । ଏହା ମଧ୍ୟ ଗୋଟିଏ କାରଣ, ଯାହା ସୂଚିତ କରୁଛି, ନାଟମଣ୍ଡପ ମୂଳ ମନ୍ଦିର ସହିତ ନିର୍ମିତ ହୋଇ ନଥିଲା ।

ନାଟମଣ୍ଡପର ପୀଢ଼ ଅନେକ ଦିନରୁ ଧ୍ୱଂସ ପାଇଛି, ବାଡ଼ ତୁଳନାରେ ପୀଠର ପ୍ରାଧାନ୍ୟ ଦିଶୁଛି ବର୍ତ୍ତମାନ । ନାଟମଣ୍ଡପର ପୀଠ ପାର୍ଶ୍ୱଚିତ୍ର ଉପସ୍ଥାପିତ ହୋଇଛି ୧୭ନମ୍ବର ରେଖାଚିତ୍ରରେ (ପୃଷ୍ଠା-୨୧୨ ଦେଖନ୍ତୁ) । ଏଠାରେ ଉପସ୍ଥାପିତ ହେଲା ଫଟୋ ୨୧(କ) ଏବଂ ୧୨୩ ପୃଷ୍ଠାରେ ୨୧-ଖ । ମୂଳ ମନ୍ଦିରରେ ଦୁଇଟି ପୀଠ (ତଳପୃଷ୍ଠ ଓ ଖୁରପୃଷ୍ଠ) ଥିବା ବେଳେ ଏଠାରେ ତିନୋଟି ପୃଷ୍ଠ ଅଛି । କିନ୍ତୁ ତିନି ପୃଷ୍ଠର ପ୍ରଥମ ପୃଷ୍ଠ ପାଇଁ କୌଣସି ଶାସ୍ତ୍ରୀୟ ନାମ ନାହିଁ । ମୂଳ ମନ୍ଦିରର ତଳ ପୃଷ୍ଠ ଚକ ତଳେ ଅବଶ୍ୟ ଗୋଟିଏ ଉପନ ଅଛି, କିନ୍ତୁ ସେଥିରେ ବାଡ଼ର ଚରିତ୍ର ନାହିଁ- ଖାଲି ପଟି ଗୋଟିଏ । ଏଠାରେ ପ୍ରଥମ ପୃଷ୍ଠରେ ତିନିକାମ- ଖୁର, ନୋଳି ଓ ବସନ୍ତ, ଉଚ୍ଚତା ୨'-୧'' । ପ୍ରଥମ ପୃଷ୍ଠ ଉପରେ ଫୁଟେ ଭିତରକୁ ଆରମ୍ଭ ହୋଇଛି ୯'-୭'' ଉଚ୍ଚ ଦ୍ୱିତୀୟ ପୃଷ୍ଠ । ଏହାର ବାଡ଼ରେ ପ୍ରଥମତଃ ପାଞ୍ଚ ଭାଗ - ପାଭାଗ, ତଳଜଙ୍ଘା, ବନ୍ଧନ, ଉପର ଜଙ୍ଘା ଓ ବାରଣ୍ଡି । ବିଭାଗଗୁଡ଼ିକର ଉପବିଭାଗଗୁଡ଼ିକ ଚିତ୍ରରେ ବର୍ଣ୍ଣିତ ହୋଇଛି । କୋଣ ସ୍ତମ୍ଭ ଏବଂ ବାଡ଼ ଅନ୍ତର୍ଗତ ମଧ୍ୟବର୍ତ୍ତୀ ସ୍ତମ୍ଭଗୁଡ଼ିକୁ ଛାଡ଼ିଦେଲେ, ପାଭାଗର ଅସ୍ତିତ୍ୱ ଲୋପ



ଫଟୋ-୨୧(କ) : ନାଟମଣ୍ଡପର ପୀଠପାର୍ଶ୍ୱଚିତ୍ର

ପାଇଛି ଏବଂ ମିଶି ଯାଇଛି ତଳ ଜଙ୍ଘାର ସମତଳରେ । ଫଟୋ ନଂ.୨୧ ଦେଖନ୍ତୁ । ଯଦିଓ ମଣ୍ଡପ ତଥା ପୀଠ ପଞ୍ଚରଥ ପରିକଳ୍ପନା, ପାଗଗୁଡ଼ିକ ଖୁବ୍ ସ୍ପଷ୍ଟ ନୁହେଁ । ଫଳତଃ ୨ୟ ପୃଷ୍ଠର ବାଡ଼ ଗୋଟିଏ ସମତଳ ପୃଷ୍ଠଭଳି ଦିଶୁଛି, ଏହା ମୂଳ ମନ୍ଦିରରେ ଅଚିନ୍ତନୀୟ । ଦ୍ୱିତୀୟ ପୀଠ ଉପରେ ବଡ଼ ସୋପାନ ଶେଷ ହୋଇଛି । ଏହା ଉପରେ ୧୧ ଫୁଟ୍ ସ୍ଥାନ ଅଛି ପରିକ୍ରମାପାଇଁ କିନ୍ତୁ ମଣ୍ଡପ ଦେବାଳ ଉଠି ନାହିଁ ୧୧ ଫୁଟ୍ ପରେ । ସେଠାରୁ ଆରମ୍ଭ ହୋଇଛି ୪'- ୫'' ଉଚ୍ଚ ତୃତୀୟ ପୃଷ୍ଠ । ତୃତୀୟ ପୃଷ୍ଠ ଦେହରେ ତିନି କାମ- ଖୁର, ପଟ, ବସନ୍ତ ।

ତୃତୀୟ ପୀଠ ଉପର ଦାଢ଼ରୁ ୧'-୯'' ଭିତରକୁ ଆରମ୍ଭ ହୋଇଛି ମଣ୍ଡପର ଦେବାଳ । ତୃତୀୟ ପୀଠର ୪'-୫'' ଚଢ଼ିବାକୁ ଚାରି ପଟେ ପୁଣି ଚାରିଟି କ୍ଷୁଦ୍ର ସୋପାନ ଅଛି । ନାଟମଣ୍ଡପର ପ୍ରଥା ମତ ଦେବାଲ୍ ବୋଲି କିଛି ନାହିଁ, ଚାରି ପଟେ ଦଶଟି ଖୋଲା ଦୁଆର ଅଛି । ଏହାର ବନ୍ଧ ନାହିଁ କି କବାଟ ନାହିଁ, ଖୋଲା ଅଂଶ ଉପରେ ସୁନ୍ଦର କାରୁକାର୍ଯ୍ୟ ପୂର୍ଣ୍ଣ ଲିଣ୍ଟେଲ୍ ଥିଲା, ଯାହାର ଖଣ୍ଡ ବର୍ତ୍ତମାନ ବଟଗଛ ନିକଟରେ ପଡ଼ିଛି । ଖମ୍ବ ଉପରେ ଗୋଟିଏ ଚନ୍ଦ୍ରାତପ ସିଲିଂ ଥିଲା । ଯାହା ନାଟମଣ୍ଡପ ନିକଟରେ ପଡ଼ିଥିବା ଦେଖାଯାଇଥିଲା ୧୯୦୨ ସଂସ୍କାର ସମୟରେ । ଖମ୍ବଗୁଡ଼ିକ ଚତୁଷ୍କୋଣ ଏବଂ ବେଧ ସମାନ ନୁହେଁ । ରେଖାଚିତ୍ର ନଂ.୧୨ ଦେଖନ୍ତୁ । ଏହା ଦେହର ବିଭିନ୍ନ ଅଂଶର ମାପ ନିମ୍ନରେ ରଖାଗଲା :

| | | |
|---|---|---|
| ମୂଳରୁ ଉପରକୁ | – | ୨'-୧୦" - କୌଣସି କାରୁକାର୍ଯ୍ୟ ନାହିଁ । |
| ପାଭାଗ | – | ୨'- ୧/୪" |
| ତଳଜଙ୍ଘ | – | ୩' - ୮" |
| ବନ୍ଧନ | – | ୧'-୨.୧/୪" |
| **ମୋଟ** | – | **୯'- ୮.୧/୨"** |

ଏହା ଉପରକୁ ଧ୍ୱଂସ ପ୍ରାପ୍ତ ଖମ୍ବଗୁଡ଼ିକର ଚାରିପଟେ ଏବଂ ଦେବାଲ୍‌ର ବାହାର ପଟେ ନାନା ଅଳଂକରଣ ଥିଲେ ମଧ୍ୟ, ଦେବାଲ୍‌ର ଭିତର ଅଂଶ ସମ୍ପୂର୍ଣ୍ଣ ଅଳଂକରଣଶୂନ୍ୟ । ସ୍ଥାପତ୍ୟଗତ ଭିନ୍ନତା ଛଡ଼ା ମୂଳମନ୍ଦିର ଓ ନାଟମଣ୍ଡପ ମଧ୍ୟରେ ଶିଳ୍ପଗତ ଭିନ୍ନତା ଅନେକ । ସେ ଆଲୋଚନା ହେବ ଚତୁର୍ଥ ପରିଚ୍ଛେଦରେ ।



**ଫଟୋ-୨୧(ଖ) : ନାଟମଣ୍ଡପର ପୀଠପାର୍ଶ୍ୱଚିତ୍ର**

## ରନ୍ଧନଶାଳା :




ଫଟୋ-୨୨ (କ) : ରନ୍ଧନଶାଳା

ନାଟମଣ୍ଡପରେ ଦକ୍ଷିଣ ଦିଗରେ ୧୨୦ ଫୁଟ ଦୂରରେ ଗୋଟିଏ ରନ୍ଧନଶାଳା ଗଢ଼ା ହୋଇଥିଲା ଯାହା ୮ ନମ୍ବର ରେଖାଚିତ୍ରରେ ପୃଷ୍ଠା-୧୦୬ରେ ଦେଖାଯାଇଛି । ଏହାର ଚାରିପଟେ ଆହୁରି ଚାରିଟି ଛୋଟବଡ଼ ଘର ଗଢ଼ା ହୋଇଥିଲା । ବର୍ତ୍ତମାନ କିଛି ଭଙ୍ଗା ଖମ୍ବ ବ୍ୟତୀତ ଦେବାଲ୍, ଛାତ କିଛି ନାହିଁ । ଏବଂ ଦେବାଲ୍ ଥିବାର ଚିହ୍ନ ମଧ୍ୟ ଦିଶୁ ନାହିଁ । ପୀଠଗୁଡ଼ିକ ଭୂମିଠାରୁ ଦୁଇ ତିନି ଫୁଟ ଉଚ୍ଚ । ପୀଠ ଓ ଖମ୍ବଗୁଡ଼ିକ କିଛି ଖଣ୍ଡୋଲାଇଟ୍ ଓ କିଛି ଲାଟେରାଇଟ୍‌ରେ ଗଢ଼ା ହୋଇଥିଲା, ଯେଉଁଥିରେ କୌଣସି କାରୁକାର୍ଯ୍ୟ ନାହିଁ । ପେଜ ଢଳା ନଳା, ଗୋଟିଏ ଚୁଲିର ଭଗ୍ନାଂଶ ଓ ଯୋଡ଼ିଏ ବଡ଼ ପାଣିକୁଣ୍ଡ ଦେଖି କରୁଣାସାଗର ଏହାକୁ ରନ୍ଧନଶାଳା ରୂପେ ଚିହ୍ନିତ କରିଛନ୍ତି । ଏସବୁ ଧର୍ମଶାଳାରେ ମଧ୍ୟ ଥାଇପାରେ । ପୀଠର ଉତ୍ତର-ପୂର୍ବ କୋଣରେ ଗୋଟିଏ କୂଅ ଅଛି- ପଥର ଓ ପୋଡ଼ା ଇଟାରେ ତିଆରି । ତାହାର ପଥର ବନ୍ଧ ଉପରେ ଗୋଲ ଗୋଲ ଖାଲୁଆ ଜାଗା ଦେଖି କରୁଣାସାଗର ବିଶ୍ୱାସ କରନ୍ତି, ବହୁଦିନ ଜଳପାତ୍ର ରହି ରହି ଏପରି ହୋଇଛି । ଏଗୁଡ଼ିକ କୂଅର ଗୋଟିଏ ଦିଗରେ ଅଛି ଏପରିକି ତଳେ ମଧ୍ୟ ଅଛି । ଗାତଗୁଡ଼ିକ ଯେତେ ଗଭୀର ହୋଇଛି ସେଥିରୁ ମନେହୁଏ ଏଗୁଡ଼ିକ ଭାସ୍କର କାଟି ଦେଇଛି । ଦୃଷ୍ଟିଯୋଗ୍ୟ ଏହି କେତୋଟି ଗୋଲ ଗର୍ତ୍ତ ଛଡ଼ା ରନ୍ଧନଶାଳା ଓ ତାହାର ସହଯୋଗୀ ପୀଠମାନଙ୍କରେ କୌଣସି ନାନ୍ଦନିକ କାର୍ଯ୍ୟ ନାହିଁ ଯାହା ମୂଳ କୋଣାର୍କ ଶିଳ୍ପୀ ପାଇଁ ଅଚିନ୍ତନୀୟ । ଆହୁରି ଗୋଟିଏ ବିଷୟ ଚିନ୍ତନୀୟ, ନାଟମଣ୍ଡପ ଯେବେ ଭୋଗମଣ୍ଡପ ହୋଇଥାଆନ୍ତା, ରନ୍ଧନଶାଳା ୧୨୦ ଫୁଟ ଦୂରରେ ଗଢ଼ା ହୁଅନ୍ତା ନାହି । ଗୋଟିଏ କଥା ସ୍ପଷ୍ଟ, ଏ ଗୃହଗୁଡ଼ିକ ରନ୍ଧନଶାଳା ହେଉ ବା ଧର୍ମଶାଳା ହେଉ, ମୂଳମନ୍ଦିର ଏପରିକି ନାଟମଣ୍ଡପର ମଧ୍ୟ ସମସାମୟିକ ନୁହେଁ । ପରବର୍ତ୍ତୀ ସମୟର ପ୍ରୟୋଜନରେ ଗଠିତ । ଏହା ଆଉ ଗୋଟିଏ ଦିଗକୁ ନିର୍ଦ୍ଦେଶ କରୁଛି – କୋଣାର୍କ ମନ୍ଦିର ଗଢ଼ାହେବା ପରେ ବହୁବର୍ଷ ପର୍ଯ୍ୟନ୍ତ କାର୍ଯ୍ୟକାରୀ ଥିଲା ।



ଫଟୋ-୨୨ (ଖ) : ରନ୍ଧନଶାଳା କୂପ

# ଅରୁଣ ସ୍ତମ୍ଭ :

ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ମରାଠାମାନେ ଏ ସ୍ତମ୍ଭକୁ କୋଣାର୍କ ଠାରୁ ଅପସାରଣ କରି ପୁରୀ ମନ୍ଦିର ସମ୍ମୁଖରେ ସ୍ଥାପନ କଲେ । ଦେଖାଯାଉଥିବା ଅଂଶର ଉଚ୍ଚତା ୩୪ ଫୁଟ୍ । ମୁଗୁନି ପଥରରେ ନିର୍ମିତ ଏ ବିଶାଳ ସ୍ତମ୍ଭର ପାଦପୀଠର ଉଚ୍ଚତା ୧୧'-୪'' ଓ ତାହାର ତଳ ପୀଠର ଉଚ୍ଚତା ୨'-୧୧'' (Ganguli- P.410-411) ଏହାର ଉପନ ଓ ତଳପୃଷ୍ଠ ପଞ୍ଚରଥ ପଦ୍ଧତିରେ ଗଠିତ । ଉପନ ଉପରକୁ ଅଛି ତିନିଟି ଉପବିଭାଗ- ଖୁର, କଣି ଓ ବସନ୍ତ । ଖୁର ଉପରେ ଅଛି ପଦ୍ମପାଖୁଡ଼ାର କାମ ଏବଂ ବସନ୍ତର ମୁହଁନ୍ତିରେ ଚଳମାନ ହଂସଯୂଥ । ଏହା ବିଶେଷରୂପେ ସୂର୍ଯ୍ୟ ମନ୍ଦିରର ପରିଚୟ ବହନକରେ । ଷୋଳକୋଣ ବିଶିଷ୍ଟ ଏ ସ୍ତମ୍ଭର ଘେର (circumference) କରୁଣାସାଗରଙ୍କ ମତରେ ୬'-୩ $\frac{୨}{୨}$'' (Vol.I-P-63) ଅର୍ଥାତ୍ ଏହାର ବ୍ୟାସ ଦୁଇ ଫୁଟ୍ ।

ଉପର ମୁଣ୍ଡରେ ଗୋଟିଏ କାରୁକାର୍ଯ୍ୟମୟ ଚତୁଷ୍କୋଣ ପୀଠ ଉପରେ ଅରୁଣଙ୍କ ଅଧିଷ୍ଠାନ । ଏହାକୁ ସ୍ଥିର ରଖିବା ପାଇଁ ମାଟି ତଳକୁ ଏ ସ୍ତମ୍ଭର କେତେ ଅଂଶ ପୋତା ହୋଇଛି, ତାହାର କୌଣସି ତଥ୍ୟ ମିଳୁ ନାହିଁ । ତେବେ ଗୋଟିଏ ତିନି ମହଲା ସମ ପରିମାଣ ଉଚ୍ଚ ସ୍ତମ୍ଭକୁ ସ୍ଥିର ରଖିବା ପାଇଁ ଅନ୍ତତଃ ୧୦ ଫୁଟ୍ ପୋତା ଯାଇଥିବ ।

ଓଡ଼ିଶାର ଅନ୍ୟତ୍ର ମନ୍ଦିର ସମ୍ମୁଖରେ ଏପରି ଖମ୍ବ ଅଛି କି ନାହିଁ ଜଣାନାହିଁ, କିନ୍ତୁ ଅବିକଳ ଏଇ ସ୍ତମ୍ଭ ଭଳି ଗୋଟିଏ ସ୍ତମ୍ଭ ଅଛି ଯାଜପୁର ଜିଲ୍ଲାର ବିରଜା ମନ୍ଦିରଠାରୁ ପ୍ରାୟ ୨ କିଲୋମିଟର ଦୂରରେ ଥିବା ଚଣ୍ଡେଶ୍ୱର ନାମକ ଗ୍ରାମର ପୁଷ୍କରିଣୀ ତୀରରେ । ଯାହାକୁ ସ୍ଥାନୀୟ ଲୋକେ ଶୁଭସ୍ତମ୍ଭ କୁହନ୍ତି ।

■ ■ ■



ଫଟୋ-୨୩ : ଅରୁଣ ସ୍ତମ୍ଭ-୧୮୯୨

## ଭାସ୍କର୍ଯ୍ୟ ଚର୍ଚ୍ଚା :

'They built like Titans and finished like jewellers'.

ଫର୍ଗୁସନ ଲିଙ୍ଗରାଜ ମନ୍ଦିର ଦର୍ଶନ କରି ଲେଖିଛନ୍ତି, ''ଏ ମନ୍ଦିର ଗଢ଼ିବାକୁ ଯେବେ ଲକ୍ଷେ ଟଙ୍କା ବ୍ୟୟ ହୋଇଥିବ ତେବେ, ଏହାର ଅଳଂକରଣରେ ନିଶ୍ଚୟ ତିନି ଲକ୍ଷ ବ୍ୟୟ ହୋଇଥିବ''[୨୩୪] । ଏ ଉକ୍ତି ଓଡ଼ିଶାର ସମସ୍ତ ମନ୍ଦିର ପ୍ରତି ପ୍ରଯୁଜ୍ୟ ଏବଂ କୋଣାର୍କ କ୍ଷେତ୍ରରେ ଅଳଂକରଣରେ ବ୍ୟୟ ତିନିଗୁଣ ନ ହୋଇ ଚାରି କି ଛଅ ଗୁଣ ହୋଇଥିଲେ ମଧ୍ୟ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଦେଉଳ ଶବ୍ଦଟିର ମୂଳ 'ଦେବାଳୟ'- ଦେବତାଙ୍କ ଆଳୟ । ଧର୍ମପ୍ରାଣ ଓଡ଼ିଶାବାସୀଙ୍କ ନିକଟରେ ସେ ଆଳୟ ସଜ୍ଜାରେ କୌଣସି ବ୍ୟୟ ଅତିରିକ୍ତ ନଥିଲା । ଓଡ଼ିଆ ଜୀବନର ପ୍ରତି ପଦକ୍ଷେପ ଥିଲା ଦେବତାଙ୍କୁ ସମର୍ପିତ । ମନମୋହନ ଗାଙ୍ଗୁଲୀଙ୍କ ମତ, ଗ୍ରୀକ୍‌ମାନଙ୍କର ଭାସ୍କର୍ଯ୍ୟରେ ଆତ୍ମଗରିମାର ପ୍ରକାଶ ଓତପ୍ରୋତ ଜଡିତ, କିନ୍ତୁ ହିନ୍ଦୁ ନିକଟରେ ଏହା ଅହଂଶୂନ୍ୟ ନିବେଦନ ।[୨୩୫] ଗାଙ୍ଗୁଲୀଙ୍କ ସମୟ (୧୮୮୨-୧୯୨୫ ଖ୍ରୀ.ଅ.)ରେ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମଧ୍ୟରେ ପ୍ରଚଳିତ ମତ ଥିଲା, ଭାରତୀୟ କଳା ଭାସ୍କର୍ଯ୍ୟ ଇତ୍ୟାଦି ଆଲେକ୍‌ଜାଣ୍ଡାରଙ୍କ ଭାରତ ଅଭିଯାନ ପରେ ଗ୍ରୀକ୍ କଳା ଭାସ୍କର୍ଯ୍ୟ ଦ୍ୱାରା ପ୍ରଭାବିତ । ଏହା ଅସତ୍ୟ ପ୍ରମାଣ କରିବାକୁ ମନମୋହନ ଗାଙ୍ଗୁଲୀ **'Orissa and Her Remains'** ଗ୍ରନ୍ଥର ବହୁ ପୃଷ୍ଠା ବ୍ୟୟ କରିଛନ୍ତି ଯାହା ଆଲୋଚିତ ହୋଇଛି ୯୦-୯୧ ପୃଷ୍ଠାରେ । ଦୁଇଟି ଶିଳ୍ପଧାରାର ମୂଳ ତତ୍ତ୍ୱର ଫରକ୍ ଦେଖାଇବାକୁ ଯାଇ ସେ ଉପରୋକ୍ତ ମନ୍ତବ୍ୟଟି ଦେଇଛନ୍ତି ।

ମନ୍ଦିରରେ ରାଜା ନରସିଂହ ଦେବଙ୍କର କୀର୍ତ୍ତି ସବୁ ଏତେ ବିପୁଳ ଭାବେ ଉତ୍‌କୀର୍ଣ୍ଣ ହୋଇଛି ଯେ, ବହୁ ଐତିହାସିକ କହନ୍ତି ନରସିଂହଦେବ ଏ ମନ୍ଦିର ନିର୍ମାଣ କରିଥିଲେ ଆତ୍ମଗରିମା ପ୍ରଚାର କରିବାକୁ । ଏ ଟିପ୍ପଣୀରେ କିଛି ଅତିଶୟୋକ୍ତି ଅଛି, କିନ୍ତୁ ଲାଙ୍ଗୁଳା ନରସିଂହଦେବଙ୍କ ଜୀବନ ପର୍ଯ୍ୟାଲୋଚନାରୁ ଜଣାପଡୁଛି, ସେ ଖାଲି ଗଙ୍ଗ ବଂଶର ନୁହଁନ୍ତି, ସମସ୍ତ ହିନ୍ଦୁ ନରପତିମାନଙ୍କ ମଧ୍ୟରେ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ । ଯେଉଁ ସମୟ ଯୁଦ୍ଧ କ୍ଷେତ୍ରରେ ରହୁ ନଥିଲେ, ତାଙ୍କର ସମସ୍ତ ଧ୍ୟାନ ଧାରଣା କେନ୍ଦ୍ରୀଭୂତ ଥିଲା କୋଣାର୍କ ଦେଉଳ ନିର୍ମାଣରେ । ସ୍ୱୀୟ ଛାପ ରହିବା ସ୍ୱାଭାବିକ ।

ଗାଙ୍ଗୁଲୀଙ୍କ ମନ୍ତବ୍ୟରେ କିନ୍ତୁ ଗୋଟିଏ ମୂଳ ସତ୍ୟ ନିହିତ ଅଛି । କୋଣାର୍କ ନିର୍ମାଣରେ ବାର ଶହ ଅଥବା ଅଧିକ ଶିଳ୍ପୀ ନିୟୋଜିତ ହୋଇଥିଲେ, ତାହା ବିତର୍କିତ ହୋଇପାରେ କିନ୍ତୁ ଏହା ଧ୍ରୁବ ସତ୍ୟ, ଯେଉଁମାନେ ଏହାକୁ ଗଢ଼ିଥିଲେ ସେମାନେ ଥିଲେ ସମ୍ପୂର୍ଣ୍ଣ ଆତ୍ମ-ମଗ୍ନ ସମର୍ପିତ ପ୍ରାଣ । ଏ ସୃଷ୍ଟି, ଚାବୁକ୍ ପ୍ରହାରରେ କ୍ରୀତଦାସଙ୍କ ଦ୍ୱାରା ଗଢ଼ା ଯାଇନାହିଁ । କରୁଣାସାଗର ଗୋଟିଏ ସୁନ୍ଦର କିମ୍ବଦନ୍ତୀ ଉପସ୍ଥାପନ କରିଛନ୍ତି ।[୨୩୬] ନରସିଂହଦେବ ମଝିରେ ମଝିରେ ନିଜେ ବୁଲି ବୁଲି ନିର୍ମାଣ କାର୍ଯ୍ୟ ତଦାରଖ କରୁଥିଲେ । ଦିନେ ସେ ଗୋଟିଏ ଆତ୍ମମଗ୍ନ ଶିଳ୍ପୀ ଓ ତା' ହାତରେ ଫୁଟି ଉଠିଥିବା ଶିଳ୍ପ ଦେଖି ରହିଗଲେ । ଶିଳ୍ପୀ ଏତେ ମଗ୍ନ ଥିଲେ, ମହାରାଜାଙ୍କ ଉପସ୍ଥିତି ମଧ୍ୟ ଜାଣିପାରିଲେ ନାହିଁ । ମହାରାଜ ଶିଳ୍ପୀକୁ ପାନ ଖଣ୍ଡେ ବଢ଼େଇ ଦେଲେ । ଶିଳ୍ପୀ ତାହା ଗ୍ରହଣ କଲେ, କିନ୍ତୁ ନଜର ଉଠେଇ ଦେଖିଲେ ମଧ୍ୟ ନାହିଁ, ଦାତା କିଏ ? ହୁଏତ ଏହା କିମ୍ବଦନ୍ତୀ ମାତ୍ର, କିନ୍ତୁ ସେ କିମ୍ବଦନ୍ତୀର ମୂଳ ମଧ୍ୟ ଫୁଟି ଉଠୁଛି ନୈସର୍ଗିକ କୋଣାର୍କ ଶିଳ୍ପର ଛତ୍ରେ ଛତ୍ରେ; ଯାହା ଏକମାତ୍ର ସମ୍ଭବ ସମ୍ପୂର୍ଣ୍ଣ ସମର୍ପିତ ଶିଳ୍ପୀର ନିହଣ ମୁନରୁ ।

ଏକଥା ସତ୍ୟ, ପ୍ରକୃତ ଶିଳ୍ପୀ ପ୍ରଚାର ଖୋଜେ ନାହିଁ ଏବଂ ସମୟେ ସମୟେ ପ୍ରଚାରଠାରୁ ଦୂରେଇ ରହେ କାରଣ ତାହା ଅହଂଭାବ ଜାଗ୍ରତ କରି କାର୍ଯ୍ୟରେ ବ୍ୟାଘାତ ଘଟାଇଥାଏ । ବିଶେଷକରି ଯେଉଁ ଶିଳ୍ପୀ ଦେବ-ସମର୍ପିତ ପ୍ରାଣ, ସେ କେବେହେଲେ ଚାହିଁବ ନାହିଁ ଆତ୍ମପ୍ରଚାର ।

ରବୀନ୍ଦ୍ରନାଥଙ୍କ ଭାଷାରେ :

"ଆମାର ମାଥା ନତ କରେ ଦାଓ ହେ ତୋମାର ଚରଣଧୂଳାର ତଲେ ।
ସକଲ ଅହଂକାର ହେ ଆମାର ଡୁବାଓ ଚୋଖେର ଜଲେ ॥
ଆମାରେ ନା ଯେନ କରି ପ୍ରଚାର ଆମାର ଆପନ କାଜେ ।
ତୋମାରି ଇଚ୍ଛା କରୋ ହେ ପୂର୍ଣ୍ଣ ଆମାର ଜୀବନ ମାଝେ ।"

—ଗୀତବିତାନ, ପ୍ରଥମ ଖଣ୍ଡ, ପୃ-୯୪

ଶିଳ୍ପୀ ହୁଏତ ପ୍ରଚାର ଚାହିଁ ନାହିଁ କିନ୍ତୁ ଯେଉଁମାନେ ଏ ଅମର ସୃଷ୍ଟି ରଖିଗଲେ ବିଶ୍ୱବାସୀଙ୍କ ପାଇଁ, ସେମାନଙ୍କୁ ଭୁଲି ଯିବା ସତ୍ କଳାପ୍ରେମୀ ମଣିଷ ପକ୍ଷରେ ମଧ୍ୟ ଅକ୍ଷମଣୀୟ ଅପରାଧ ଏବଂ ସେ ଅପରାଧୀଙ୍କ ଧାଡ଼ିରେ ପ୍ରଥମେ ଆସିବେ ଲାଙ୍ଗୁଳା ନରସିଂହଦେବ ସ୍ୱୟଂ ।

ସଚ୍ଚି ରାଉତରାୟଙ୍କ ତିରସ୍କାର ମଧ୍ୟ ଯଥାର୍ଥ :

ତୁମେ ଦେଖିଅଛ ଶିଳାରେ ତାର ତ
ରମ୍ୟ କଳାର ରୂପ,
ମୁଁ ଦେଖିଚି ତହିଁ କୋଟି କଂକାଳ
ଭଗ୍ନ ବୁକୁର ସ୍ତୂପ ।
× × ×
ରମ୍ୟ କଳାର ଲୀଳା !
କିଛି ତ କହିନି ମଣିଷର କଥା,
କହିବାର ଯାହାଥିଲା ।

—ପାଣ୍ଡୁଲିପି, ପୃ- ୩୨-୩୫

ଏ ଧାରା ଆଜି ଯାଏ ଗଡ଼ି ଆସିଛି । ଗୋଟିଏ ଗୋଟିଏ ବିରାଟ ପ୍ରକଳ୍ପର ନାମ ଫଳକରେ ମନ୍ତ୍ରୀ(ଆଜିକାର ରାଜା)ଙ୍କ ନାମ ରହୁଛି, ଏପରିକି Chief Engineerଙ୍କ ନାମ ମଧ୍ୟ ରହୁଛି, କିନ୍ତୁ ଅସଂଖ୍ୟ କର୍ମୀ, ଯେଉଁମାନେ ପ୍ରକଳ୍ପଟି ରୂପାୟିତ କଲେ, ସେମାନଙ୍କ ନାମ କେଉଁଠାରେ ରହିନାହିଁ । ଯେକୌଣସି ମନ୍ଦିରର ଶୈଳ୍ପିକ ମୂଲ୍ୟାୟନ ଯେକୌଣସି ଆଧୁନିକ Mega Project ର ବହୁ ଉପରେ ।

ଏକଥା ଅବଶ୍ୟ ସତ୍ୟ ଯେ, କୋଣାର୍କରେ ନିୟୋଜିତ ସମସ୍ତ କର୍ମୀଙ୍କ ଅବଦାନ ସମାନ ନୁହେଁ; ସମସ୍ତଙ୍କ ନାମ ମଧ୍ୟ ଏକା ଧାଡ଼ିରେ ରଖିବା ଉଚିତ୍ ନୁହେଁ ଏବଂ ସମ୍ଭବ ମଧ୍ୟ ନୁହେଁ, ତେବେ ରାଜା ଚାହିଁଥିଲେ ସମସ୍ତ କର୍ମୀଙ୍କ ନାମ ବିଭିନ୍ନ ଶିଳାଲିପିରେ ଉତ୍‌କୀର୍ଣ୍ଣ କରି ଏ ବିଶାଳ ସୃଷ୍ଟିର ଏକ କୋଣରେ ରଖି ପାରି ଥାଆନ୍ତେ ଏବଂ ତାହା ହୋଇଥାଆନ୍ତା ଉତ୍ତରପୁରୁଷମାନଙ୍କ ପାଇଁ ତୀର୍ଥସ୍ଥାନ । ନାଟମଣ୍ଡପରେ ତ ପୁଣି ନାଟ୍ୟାଚାର୍ଯ୍ୟଙ୍କ ନାମ ଲେଖାହେଲା ! ସେ ଯଶ ଅଥବା ଅପଯଶ ହୁଏତ ନରସିଂହଦେବଙ୍କ ପ୍ରାପ୍ୟ ନୁହେଁ, କାରଣ ନାଟମଣ୍ଡପର ନିର୍ମାଣ କାଳ ବିବଦମାନ । ହୁଏତ ରାଜା ମଧ୍ୟ ନିଜେ ଆତ୍ମପ୍ରଚାର ବିମୁଖ ଥିଲେ, ନଚେତ୍ ଆଜି ପ୍ରଶ୍ନ ଉଠନ୍ତା ନାହିଁ କୋଣାର୍କ, ଲାଙ୍ଗୁଳା ନରସିଂହଦେବ ନିର୍ମାଣ କରାଇ ଥିଲେ ଅଥବା ନାହିଁ ଏବଂ ଐତିହାସିକମାନେ epigraphic ପ୍ରମାଣ ଖୋଜି ବୁଲନ୍ତେ ନାହିଁ ।

## ଭାସ୍କର୍ଯ୍ୟର ବିଭାଗୀକରଣ :

କରୁଣାସାଗର ଭାସ୍କର୍ଯ୍ୟଗୁଡ଼ିକ ଦୁଇଟି ବିଭାଗରେ ବିଭକ୍ତ କରିଛନ୍ତି ।[୨୩୭]

(କ) "Sculpture in the round", ଅଭିବ୍ୟକ୍ତିଟିର ଓଡ଼ିଆ ଅନୁବାଦ କଷ୍ଟକର । 'ତ୍ରିମାତ୍ରିକ' (three dimensional) ଠିକ୍ ହେବ । ଗଜସିଂହ, ହସ୍ତୀ, ଅଶ୍ୱ, ପୀଢ଼ ଉପର ଅପ୍ସରା, ଭୈରବ ଇତ୍ୟାଦି ଏ ଶ୍ରେଣୀଭୁକ୍ତ ।

(ଖ) ପ୍ରସ୍ତର ପୃଷ୍ଠରେ ଖୋଦିତ (Surface sculpture) ବିଭିନ୍ନ ଗଭୀରତାର relievo sculpture ଅଭିବ୍ୟକ୍ତିଟି ଇଂରାଜୀ ଅଭିଧାନରେ ନାହିଁ । Relievo ଶବ୍ଦଟି ଅଛି, ଅର୍ଥ relief in sculpture । ଇଂରାଜୀରେ ଆଉ ଗୋଟିଏ ଅଭିବ୍ୟକ୍ତି ଅଛି- bas relief । ଅର୍ଥ shallow

carving ଯାହାର ଅର୍ଥ sculpture on back ground, less than half-full depth । ଏହା ଠିକ୍ ଦ୍ୱିମାତ୍ରିକ ନୁହେଁ । ଡଃ ବେହେରା ଯାହା ବୁଝେଇବାକୁ ଚାହିଁଛନ୍ତି, ସାଦା ସିଧା ଓଡ଼ିଆରେ କହିଲେ, ତ୍ରିମାତ୍ରିକ କିନ୍ତୁ ପିଠି ଛାଡ଼ି ନାହିଁ । ଏହାର ଉଦାହରଣ ମନ୍ଦିର ଗାତ୍ରରେ ସର୍ବତ୍ର, ଏପରିକି ବିରାଟ ପାର୍ଶ୍ୱଦେବତା ମଧ୍ୟ ଏଇ ଶ୍ରେଣୀର ଅନ୍ତର୍ଭୁକ୍ତ ।

ମନମୋହନ ଗାଙ୍ଗୁଲୀ ବିଷୟଟି ଗୋଟିଏ ଭିନ୍ନ ଦୃଷ୍ଟିକୋଣରୁ ଦେଖିଛନ୍ତି ।[୨୩୮] ତାଙ୍କ ମତରେ :

(କ) Constructive - ଗଠନ ଗତ ।

(ଖ) Representative - ସାଦୃଶ୍ୟ ଗତ ।

(ଗ) Ornamental - ଆଲଂକାରିକ ।

ସମଗ୍ର ଦେଉଳଟିର ଗଠନ ପ୍ରକ୍ରିୟା, ଯଥା : ପଞ୍ଚରଥ ମୂଳ, ପାଗ ବିଭାଗ, ବକ୍ରରୈଖିକ ଅଥବା ପୀଢ଼, ଗଣ୍ଡି, ଖପୁରି, କଳସ ଇତ୍ୟାଦିର ସୁକ୍ଷ୍ମ ଗଠନ, ସବୁ କିଛି ମିଶି ଗଠନଗତ ସୌନ୍ଦର୍ଯ୍ୟ ପ୍ରକାଶ କରୁଛି ।

ଦ୍ୱିତୀୟ ବିଭାଗର ଯୋଡ଼ିଏ ଉପବିଭାଗ ଅଛି । (କ) Natural - ପ୍ରାକୃତିକ, (ଖ) Conventional - ପରମ୍ପରାଗତ । ଲତାପତ୍ରର କ୍ରମ ଉର୍ଦ୍ଧ୍ୱଗାମୀ ସୌନ୍ଦର୍ଯ୍ୟ ପ୍ରଥମ ଉପବିଭାଗ ଅନ୍ତର୍ଗତ; ଗଜସିଂହ, ମଗରମୁଖ ଇତ୍ୟାଦି ଦ୍ୱିତୀୟ ଉପବିଭାଗ ଅନ୍ତର୍ଗତ ।

ମନ୍ଦିରର ପ୍ରତି ଇଞ୍ଚ ସ୍ଥାନ ଭାସ୍କର୍ଯ୍ୟରେ ପୂରି ରହିଛି କିନ୍ତୁ କ୍ଷଣେ ହେଲେ ମନେ ହେବ ନାହିଁ, ଅତି ଅଳଙ୍କରଣରେ ଭାରାକ୍ରାନ୍ତ । କେବେହେଲେ ମନେ ହେବ ନାହିଁ, ଭାସ୍କର୍ଯ୍ୟ ହରଣ କରିଛି ସ୍ଥାପତ୍ୟର ଗାମ୍ଭୀର୍ଯ୍ୟ । ହୁଏତ ଏହାର ଗୋଟିଏ କାରଣ, ଏ ମନ୍ଦିରର ବିଶାଳ ଗଠନ ହୁଏତ ଏହାର ଅସଂଖ୍ୟ ଭାଙ୍ଗର ଆଲୋକ ଓ ଅନ୍ଧାରର ଖେଳ, ହୁଏତ ଏପରି କିଛି ଅବ୍ୟକ୍ତ ଶିଳ୍ପ ଚିନ୍ତା ଯାହା ଶବ୍ଦ ଦ୍ୱାରା ଧରା ଯାଇ ପାରିବ ନାହିଁ, ଉଚ୍ଚାଙ୍ଗ ସଙ୍ଗୀତ ଭଳି ମନ ଭିତରେ ରସ ସୃଷ୍ଟି କରି ଚାଲିଥିବ ।

ଶିଳ୍ପଐତିହାସିକ ଚାର୍ଲସ୍ ଫାବ୍ରି ଏହାକୁ Baroque ଶିଳ୍ପ ଧାରା ରୂପେ ନାମିତ କରିଛନ୍ତି[୨୩୯] । ତାଙ୍କ ମନ୍ତବ୍ୟ : "....... in these magnificent work of Art, among the best in India. The artist turns to that full, luscious romanticism that baroque means, rich, ornate, lush a delight in excess, a love of profusion and multiplication...........(Page-141).

ଏ ଯୁଗର ଶିଳ୍ପସମାଲୋଚକ ପାଶ୍ଚାତ୍ୟ ଦେଶରେ ଜାତ ଶିଳ୍ପ ପରିଭାଷାରେ ଏ ଶିଳ୍ପର ମୂଳ ଖୋଜୁଛନ୍ତି । କିନ୍ତୁ ତ୍ରୟୋଦଶ ଶତାବ୍ଦୀର କୋଣାର୍କ ଶିଳ୍ପୀ କ'ଣ Baroque ନାମ ଶୁଣିଥିଲେ ! ବରଂ ଏ ଶିଳ୍ପର ମୂଲ୍ୟାୟନ କରାଯାଇପାରେ ଆଉଜଣେ ଗୁଣଗ୍ରାହୀଙ୍କ ଭାଷାରେ, ଯାହା ରଚିତ ହୋଇଥିଲା, ସମ୍ପୂର୍ଣ୍ଣ ଭିନ୍ନ କାରଣରେ ଭିନ୍ନ ପରିବେଶରେ । ପ୍ରଖ୍ୟାତ ବ୍ୟାଘ୍ର ଶିକାରୀ ଏଡୋୟାର୍ଡ ଜେମ୍ସ କର୍‌ବେଟ୍, ଉଚ୍ଚ ମାଧ୍ୟମିକ ପାସ୍ କରିଥିଲେ ନା ନାହିଁ ସନ୍ଦେହ ଅଛି । ତାଙ୍କର ଅସାମାନ୍ୟ ଶିକାର କାହାଣୀ ଲେଖିବାକୁ ଆରମ୍ଭ କଲେ ପ୍ରାୟ ୭୦ ବର୍ଷ ବୟସରେ ଏବଂ ପ୍ରଥମ ଗ୍ରନ୍ଥ ହୋଇ ଉଠିଲା ବିଶ୍ୱ ବିଖ୍ୟାତ । ଉତ୍ତରପ୍ରଦେଶର ଗଭର୍ଣ୍ଣର Sir Malcolm Hailey ଲେଖିଛନ୍ତି :

".....he possessed, in fact, that supreme art of narrative which owes nothing to conscious artistry."[୨୪୦] କୋଣାର୍କ ଶିଳ୍ପୀର ମଗ୍ନତାରେ ମଧ୍ୟ ସେଇ ସଚେତନ କଳାକାର ଅନୁପସ୍ଥିତ, ତେଣୁ ଏ ସୃଷ୍ଟି ଏତେ ମହତ୍ ।

**ଶରୀର ବିଜ୍ଞାନ :** ଅନେକ ସମାଲୋଚକ କହିଥାଆନ୍ତି, ମନୁଷ୍ୟ ଶରୀରର ଗଠନ ବିଜ୍ଞାନ (physiology) ହିନ୍ଦୁ ଭାସ୍କରଙ୍କୁ ଅଜଣା ଥିଲା । ଏ ଅଭିଯୋଗ ଆଧୁନିକ ଚିତ୍ର, ଭାସ୍କର୍ଯ୍ୟ ସମ୍ବନ୍ଧରେ ମଧ୍ୟ ଉଚ୍ଚାରଣ କରାଯାଇପାରେ । ଅଭିଯୋଗଟି ସତ୍ୟ ନୁହେଁ କିନ୍ତୁ ଶିଳ୍ପୀ ପ୍ରକୃତିର ଅବିକଳ କପି (carbon copy) ଗଢ଼ିବାକୁ ଚାହିଁ ନଥିଲେ । ଦୃଶ୍ୟମାନ ଜଗତ ପଛରେ ଯେଉଁ ଅଦୃଶ୍ୟ ସୌନ୍ଦର୍ଯ୍ୟ ଲହରୀ ସଦା ପ୍ରବହମାନ, ପଥର ବୁକୁରେ ତାହା ହିଁ ଧରି ରଖିବାର ଚେଷ୍ଟା ଏ ଶିଳ୍ପୀମାନଙ୍କର ।

ମନୁଷ୍ୟ ଦେହର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ଅନୁପାତ ହିନ୍ଦୁ ଶିଳ୍ପ ଶାସ୍ତ୍ରରେ ଉଲ୍ଲିଖିତ । ଏ ପ୍ରସଙ୍ଗରେ 'ମନସାରା' ଓ 'ଶୁକ୍ରନୀତି'ର ଉଲ୍ଲେଖ ମିଳୁଛି । ମନମୋହନ ଗାଙ୍ଗୁଲୀ ଓଡ଼ିଶା ମନ୍ଦିରରେ ରଚିତ ବିଭିନ୍ନ ମୂର୍ତ୍ତିର ମାପ ନେଇ ଦେଖିଛନ୍ତି, ଏଠାକାର ଶିଳ୍ପୀ ଶୁକ୍ରନୀତି ଅନୁଯାୟୀ 'ସପ୍ତତାଳ' ମୂର୍ତ୍ତି ଗଢ଼ିଛନ୍ତି । ଶୁକ୍ରନୀତି ଅନୁଯାୟୀ କଳିଯୁଗରେ 'ସପ୍ତତାଳ' ଚାଲିବ । 'ତାଳ' ଶବ୍ଦଟିର ଅର୍ଥ ବ୍ୟାଖ୍ୟା କରାଯାଇଛି ୮୨ ନମ୍ବର ଶ୍ଳୋକରେ । 'ତାଳ' ବୁଢ଼ା ଆଙ୍ଗୁଳିର ମୁଣ୍ଡରୁ ମଧ୍ୟମା ମୁଣ୍ଡ ଯାଏ ବୁଝାଏ । ୧୨ ଆଙ୍ଗୁଳିରେ ଗୋଟେ 'ତାଳ' ହୁଏ ଏବଂ 'ଆଙ୍ଗୁଳି' ମୁଠାର ୧/୪ ଅଂଶ ମଧ୍ୟ ଧରାଯାଇଥାଏ । ଚିବୁକରୁ ଖପୁରି ଯାଏ ମାପ ସମ୍ପୂର୍ଣ୍ଣ ଶରୀରର ମାପର କି ଅନୁପାତ ଆସେ, ତାହା ଉପରେ (1/5th, 1/6th, 1/7th, 1/8th ଏବଂ 1/9th) ପଞ୍ଚତାଳ, ଷଡ଼ତାଳ, ସପ୍ତତାଳ, ଅଷ୍ଟତାଳ ଏବଂ ନବତାଳ ବୋଲି କୁହାଯାଇଥାଏ ।

ଗାଙ୍ଗୁଲୀ ଶୁକ୍ରନୀତିର ସମ୍ପୂର୍ଣ୍ଣ ଶ୍ଳୋକଗୁଡ଼ିକ ଉପସ୍ଥାପନ କରି ଶାସ୍ତ୍ର ଅନୁଯାୟୀ ଦେହ ଗଠନ କିପରି ହେବ, ତାହାର ଗୋଟିଏ ଦୀର୍ଘ ସାରଣୀ ଉପସ୍ଥାପିତ କରିଛନ୍ତି ।[୨୪୧]

## ସାରଣୀ - ୧୨ (କ)

**Tabular Statement- (A), Showing the relative proportions for a Sapta Tala Image**

| Limb of the body | Nava Tala Angulas | Sapta Tala Angulas | Relative proportions in Decimals |
|---|---|---|---|
| Height of man | 108 | 108 | 1 |
| Head (from crown to chin) | 12 | $12 \times \frac{9}{7}$ | 0.142 |
| Forehead | 04 | $04 \times \frac{9}{7}$ | 0.047 |
| Nose | 04 | $04 \times \frac{9}{7}$ | 0.047 |
| Nose to Chin | 04 | $04 \times \frac{9}{7}$ | 0.047 |
| Neck | 04 | $04 \times \frac{9}{7}$ | 0.047 |
| Neck or shoulder to Breast | 12 | $12 \times \frac{9}{7}$ | 0.142 |
| Breast to Navel | 12 | $12 \times \frac{9}{7}$ | 0.142 |
| Navel to Penis | 12 | $12 \times \frac{9}{7}$ | 0.142 |
| Thigh | 24 | $24 \times \frac{9}{7}$ | 0.284 |
| Knee | 04 | $04 \times \frac{9}{7}$ | 0.047 |
| Leg | 24 | $24 \times \frac{9}{7}$ | 0.284 |
| Heel | 04 | $04 \times \frac{9}{7}$ | 0.047 |
| Arm up to the finger ends | 48 | $48 \times \frac{9}{7}$ | 0.568 |
| Arm from shoulder to elbow | 20 | $20 \times \frac{9}{7}$ | 0.238 |
| Arm from armpit to elbow | 13 | $13 \times \frac{9}{7}$ | 0.120 |
| Arm from armpit to the end of middle finger | 28 | $28 \times \frac{9}{7}$ | 0.259 |
| Palm | 07 | $07 \times \frac{9}{7}$ | 0.064 |
| Midddle finger | 05 | $05 \times \frac{9}{7}$ | 0.046 |
| Thumb | 3.5 | $3.5 \times \frac{9}{7}$ | 0.032 |
| Index finger | 03 | $03 \times \frac{9}{7}$ | .0277 |

ସାରଣୀ - ୧୨ (ଖ)

**Tabular Statement- (A), Showing the relative proportions for a Sapta Tala Image**

| Limb of the body | Nava Tala Angulas | Sapta Tala Angulas | Relative proportions in Decimals |
|---|---|---|---|
| Ring finger | 3 | $3 \times \frac{9}{7}$ | 0.277 |
| Little finger | 2 | $2 \times \frac{9}{7}$ | 0.018 |
| Foot | 14 | $14 \times \frac{9}{7}$ | 0.129 |
| Great toe | 2 | $2 \times \frac{9}{7}$ | 0.018 |
| Ankle | $2\frac{1}{2}$ | $\frac{5}{2} \times \frac{9}{7}$ | 0.023 |
| 2nd toe | $2\frac{1}{2}$ | $\frac{5}{2} \times \frac{9}{7}$ | 0.023 |
| 3rd toe | $1\frac{1}{2}$ | $\frac{3}{2} \times \frac{9}{7}$ | 0.013 |
| 4th toe | $1\frac{1}{2}$ | $\frac{3}{2} \times \frac{9}{7}$ | 0.013 |
| Forehead ( length ) | 8 | $8 \times \frac{9}{7}$ | 0.074 |
| Eyebrow ( end to end ) | 8 | $8 \times \frac{9}{7}$ | 0.074 |
| Space between eyebrows | $\frac{1}{2}$ | $\frac{1}{2} \times \frac{9}{7}$ | 0.004 |
| Eye ( length ) | 3 | $3 \times \frac{9}{7}$ | 0.0277 |
| Eye ( width ) | 2 | $2 \times \frac{9}{7}$ | 0.018 |
| Pupil of the eye | 1 | $1 \times \frac{9}{7}$ | 0.009 |
| The root of the nose | 1 | $1 \times \frac{9}{7}$ | 0.009 |
| The tip of the nose | 2 | $2 \times \frac{9}{7}$ | 0.018 |
| Ear ( length ) | 4 | $4 \times \frac{9}{7}$ | 0.037 |
| Ear ( breadth ) | 3 | $3 \times \frac{9}{7}$ | 0.0277 |
| Ear ( thickness ) | $\frac{1}{2}$ | $\frac{1}{2} \times \frac{9}{7}$ | 0.044 |
| The bridge of the nose | 3 | $3 \times \frac{9}{7}$ | 0.0277 |
| Height of nose | $\frac{1}{2}$ | $\frac{3}{2} \times \frac{9}{7}$ | 0.013 |

## ସାରଣୀ - ୧୨ (ଗ)

**Tabular Statement- (A), Showing the relative proportions for a Sapta Tala Image**

| Limb of the body | Nava Tala Angulas | Sapta Tala Angulas | Relative proportions in Decimals |
|---|---|---|---|
| From neck to shoulder | 8 | $08 \times \frac{9}{7}$ | 0.074 |
| Breast between arms | 24 | $24 \times \frac{9}{7}$ | 0.222 |
| Breast between teats | 12 | $12 \times \frac{9}{7}$ | 0.111 |
| Face between ears (curved length) | 16 | $16 \times \frac{9}{7}$ | 0.148 |
| Ear to chin (curved length) | 8 | $08 \times \frac{9}{7}$ | 0.074 |
| Ear to nose | 8 | $08 \times \frac{9}{7}$ | 0.074 |
| Ear to eye | 4 | $04 \times \frac{9}{7}$ | 0.037 |
| Face | 4 | $04 \times \frac{9}{7}$ | 0.037 |
| Lip | $\frac{1}{2}$ | $\frac{1}{2} \times \frac{9}{7}$ | 0.004 |
| Circumference of head | 32 | $32 \times \frac{9}{7}$ | 0.296 |
| Width of head | 10 | $10 \times \frac{9}{7}$ | 0.092 |
| Length of head | 12 | $12 \times \frac{9}{7}$ | 0.111 |
| Circumference of neck | 22 | $22 \times \frac{9}{7}$ | 0.203 |
| Circumference of chest | 54 | $54 \times \frac{9}{7}$ | 0.500 |
| Circumference of chest | 47 | $47 \times \frac{9}{7}$ | 0.435 |
| Thickness of chest near breast | 12 | $12 \times \frac{9}{7}$ | 0.111 |
| Circumference of waist | 44 | $44 \times \frac{9}{7}$ | 0.407 |
| Height of waist | 4 | $04 \times \frac{9}{7}$ | .1039 |
| Width of waist | 6 | $06 \times \frac{9}{7}$ | 0.055 |
| Circumference of hip of female figure | 43 | $43 \times \frac{9}{7}$ | 0.435 |
| Circumference of hip of male figure | 42 | $42 \times \frac{9}{7}$ | 0.388 |

## ସାରଣୀ - ୧୨ (ଘ)

**Tabular Statement- (A), Showing the relative proportions for a Sapta Tala Image**

| Limb of the body | Nava Tala Angulas | Sapta Tala Angulas | Relative proportions in Decimals |
|---|---|---|---|
| circumference of arm near armpit | 18 | $18 \times \frac{9}{7}$ | 0.166 |
| circumference of arm near elbow | 16 | $16 \times \frac{9}{7}$ | 0.148 |
| circumference of head near elbow | 14 | $14 \times \frac{9}{7}$ | 0.129 |
| circumference of arm near wrist | 10 | $10 \times \frac{9}{7}$ | 0.092 |
| Width of plam | 5 | $05 \times \frac{9}{7}$ | 0.046 |
| Width of meta-tarsus | 5 | $05 \times \frac{9}{7}$ | 0.046 |
| circumference of thigh near hip | 32 | $32 \times \frac{9}{7}$ | 0.296 |
| circumference of thigh near knee | 29 | $29 \times \frac{9}{7}$ | 0.268 |
| circumference of leg near knee | 16 | $16 \times \frac{9}{7}$ | 0.148 |
| circumference of ankle | 12 | $12 \times \frac{9}{7}$ | 0.111 |
| circumference of middle finger (near root) | 4 | $04 \times \frac{9}{7}$ | 0.037 |
| circumference of Middle toe (near root) | 5 | $05 \times \frac{9}{7}$ | 0.046 |

ଦେଖାଯାଉଛି ପୁରାତନ ହିନ୍ଦୁ ଶାସ୍ତ୍ର ଶରୀର ତତ୍ତ୍ୱ ଭଲ ରୂପେ ଚର୍ଚ୍ଚା କରିଥିଲା କିନ୍ତୁ ଶିଳ୍ପୀ ଶାସ୍ତ୍ରୋକ୍ତ ମାପ ବ୍ୟବହାର କରି ମଧ୍ୟ ମନୁଷ୍ୟ ଦେହର ଅବିକଳ ନକଲ କରିନାହିଁ । ଉଦାହରଣ : ଜଗମୋହନର ପୀଢ଼ ମଧ୍ୟରେ ନୃତ୍ୟ ବାଦ୍ୟ କରୁଥିବା କିନ୍ନରୀଗଣ ଏବଂ ସ୍ୱୟଂ ସୂର୍ଯ୍ୟଦେବ ।

## ଯୁଦ୍ଧଅଶ୍ୱ :

ସେଇ ଶିଳ୍ପୀ ଯେତେବେଳେ ଅବିକଳ ଆକୃତି ଫୁଟେଇବାକୁ ଚାହେଁ ସେ ଏପରି କିଛି ସୃଷ୍ଟି କରେ ଯାହା ୟୁରୋପୀୟ Art gallery ରେ ମଧ୍ୟ ବିରଳ । ବହୁ ଉଚ୍ଛ୍ୱସିତ ପ୍ରଶଂସା ମଧ୍ୟରୁ ଯୁଦ୍ଧଘୋଡା ଦୁଇଟିର ଆଲୋଚନା ପ୍ରସଙ୍ଗରେ E. B. Havell ଙ୍କ ବକ୍ତବ୍ୟଟି ଉପସ୍ଥାପନ କରିଲେ ଯଥେଷ୍ଟ ହେବ ।

"Had it by chance been labelled 'Roman' or 'Greek', this magnificent work of art would now be the pride of some great metropoliton museum in Europe and America. Here Indian sculptures have shown that they can express with as much fire and passion as the greatest European art the pride and victory and the glory of triumphant warfare : for not even the Homeric grandeur of Elgin marbles surpass the magnificent movement and modelling of the Indian Achilles, and the superbly monumental war horse in its massive strength and vigour is not un-worthy of comparison with varochhio's famous masterpices in Venice! (Indian Sculpture & Painting-PP-146-47).

ଅଥଚ ଖାଲି ଯୁଦ୍ଧଘୋଡ଼ା ଦୁଇଟି ନୁହେଁ, ମନ୍ଦିର ସମ୍ମୁଖର ସପ୍ତାଶ୍ୱ ମଧ୍ୟ ଚାର୍ଲସ୍ ଫାବ୍ରିଙ୍କର ବିରୂପ ମନ୍ତବ୍ୟର ଶିକାର ହୋଇଛି । ତାଙ୍କ ମତରେ, 'The seven horses are as unnatural and ill-drawn as the large horses in front of the Sun Temple, except that those on the temple are ludicrously small in size [242].





ଫଟୋ-୨୪(କ,ଖ) : ଯୁଦ୍ଧଅଶ୍ୱ

ହଙ୍ଗେରୀରେ ଜନ୍ମିତ ଫାବ୍ରି ଜୀବନର ଅର୍ଦ୍ଧାଧିକ ଭାରତରେ କଟେଇଛନ୍ତି ଏବଂ ଜଣେ ପ୍ରଖ୍ୟାତ Indologist ରୂପେ ପରିଚିତ । ଓଡ଼ିଶାର ମନ୍ଦିର ସ୍ଥାପତ୍ୟର ଇତିହାସ ଉନ୍ମୋଚନରେ ଫାବ୍ରିଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ତଥାପି ମନେ ହୁଏ, ହିନ୍ଦୁ ମନ୍ଦିରର ହିନ୍ଦୁ ଦାର୍ଶନିକତା ଫାବ୍ରି ବୁଝି ପାରି ନାହାନ୍ତି ଏବଂ ଶେଷ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଶିଳ୍ପଚିନ୍ତାର ଛାପ ତାଙ୍କ ମନ ଭିତରେ ରହି ଯାଇଛି । ଏଥେନ୍ସର ରଥ ଓ ଘୋଡ଼ା ଅବଶ୍ୟ ଆନୁପାତିକ ହୁଅନ୍ତା; ତେବେ ଏଥେନ୍ସର ମଧ୍ୟଯୁଗୀୟ ରଥ କ'ଣ କେବେ ୨୨୮ ଫୁଟ୍ ଉଚ୍ଚ ହୁଅନ୍ତା ? ବାସ୍ତବତାର ଆଦର୍ଶରେ ସପ୍ତ ଅଶ୍ୱ ଗଢ଼ା ହେଲେ ସେଗୁଡ଼ିକ ଅନ୍ୟୂନ ୫୦ ଫୁଟ ଉଚ୍ଚ ହୁଅନ୍ତା ଏବଂ ସୃଷ୍ଟି ହୁଅନ୍ତା ଏକ କିମ୍ଭୂତ କିମାକାର ବସ୍ତୁ । ଏଡ଼େ ବିଶାଳ ରଥ ଟାଣିବାକୁ କ'ଣ ମାତ୍ର Seven Horse Power ଦରକାର ପଡ଼ନ୍ତା !!

କୋଣାର୍କ ଶିଳ୍ପୀ ଗୋଟିଏ ପ୍ରତୀକାତ୍ମକ ଶିଳ୍ପ ସୃଷ୍ଟି କରିଛି । ଜୀବନ ରଥ ଗଡ଼ି ଚାଲିଛି ସୌର ଶକ୍ତିର ବିଚ୍ଛୁରଣରେ ଏବଂ ସେ ବିଚ୍ଛୁରଣ ଅନେକ ସମୟରେ ଅଦୃଶ୍ୟ । ପ୍ରତିସରିତ ସପ୍ତରଙ୍ଗ ହୁଏତ ଦେଖାଯାଏ ନାହିଁ କିନ୍ତୁ ତାହା ଦୁଇ ପଟେ ଥିବା ଅଦୃଶ୍ୟ ଅଧିପାଟଳ (Ultra - Violet) ଓ ଅବଲୋହିତ (Infra-Red) ରଶ୍ମି ଅଦୃଶ୍ୟ ହୋଇ ମଧ୍ୟ ପ୍ରବଳ ପ୍ରତାପୀ । ଏଠାରେ ଫିତା ମାପରେ ସେ ଶକ୍ତିର ପରିମାପ ହୋଇ ପାରିବ ନାହିଁ ।

ଯୁଦ୍ଧ ଅଶ୍ୱ ଦୁଇଟି ସମ୍ବନ୍ଧରେ ଫାବ୍ରିଙ୍କର ଗୋଟିଏ ଉକ୍ତି ଅସାବଧାନତା ବଶତଃ ଅଥବା ଛାପାଖାନାର ଭୁଲ୍ କହି ହେବନାହିଁ କିନ୍ତୁ ଅଶ୍ୱଦ୍ୱୟ କେବେହେଲେ ମନ୍ଦିର ସମ୍ମୁଖରେ ନଥିଲେ । ବିଶାଳ ଘୋଡ଼ା ଦୁଇଟି ଥିଲେ ଦକ୍ଷିଣରେ ଓ ହସ୍ତୀଦ୍ୱୟ ଉତ୍ତରରେ । ୧୯୮୨-୮୩ର ସଂରକ୍ଷଣ କାର୍ଯ୍ୟରେ ସେଗୁଡ଼ିକ ଉଚ୍ଚପୀଠ ଉପରେ ବସାଗଲା, କିନ୍ତୁ ଭୁଲ୍‌ରେ ଓଲଟା ପଟେ ମୁହଁ କରି [୨୪୩] ।

## ରଣ ହସ୍ତୀ :

ଉତ୍ତର ଦିଗରେ ରଖା ଯାଇଥିବା ଦୁଇଟି ରଣହସ୍ତୀର ଶିଳ୍ପ କର୍ମ ପ୍ରଶଂସାରେ ବହୁ ଶିଳ୍ପ ସମାଲୋଚକ ପଞ୍ଚମୁଖ । ଗୋଟିଏ ତଥ୍ୟ କିନ୍ତୁ ଅନେକଙ୍କୁ ଅଜଣା, ଯାହା ହସ୍ତୀର ଚରିତ୍ରରେ ଗୋଟିଏ ଭିନ୍ନ ମାତ୍ରା ଯୋଗ କରୁଛି ।

ମାଦଳା ପାଞ୍ଜିରେ ପ୍ରଥମ ନରସିଂହଦେବଙ୍କର ୬ ନମ୍ବର ବିଡ଼ାରେ ଲକ୍ଷ୍ନୌର ମୁସଲମାନ ନବାବଙ୍କ ବିରୁଦ୍ଧରେ ଚାରିବର୍ଷ ଯୁଦ୍ଧ କଥା ଲିପିବଦ୍ଧ ଅଛି [୨୪୪] । ଥରେ ଯୁଦ୍ଧ କ୍ଷେତ୍ରରେ ଆହତ ଓ ଅଜ୍ଞାନ ହୋଇ ନରସିଂହଦେବ ତଳେ ପଡ଼ି ଯାଆନ୍ତି । ତାଙ୍କର ପ୍ରିୟ ଦୁଇଟି ଗୁଣ୍ଡୁଣି ହାତୀ ମଧ୍ୟରୁ ସୁଦେହୀ ତାଙ୍କ ଅଚେତ୍ ଦେହ ଶୁଣ୍ଢରେ ଟେକି ନେଇ ନିରାପଦ ସ୍ଥାନକୁ ଚାଲିଗଲା ଏବଂ ରାଜାଙ୍କ ପ୍ରାଣ ରକ୍ଷା ହେଲା । କୃତଜ୍ଞ ମହାରାଜ ସବୁବେଳେ ହାତୀଟିକୁ ପୁତ୍ରବତ୍ ସ୍ନେହ କରୁଥିଲେ ଏବଂ ତାହାର ପରିଚର୍ଯ୍ୟା ପାଇଁ ଦଶଜଣ ସେବକ ନିଯୁକ୍ତ କରିଥିଲେ । ଯେତେବେଳେ ପଦ୍ମକ୍ଷେତ୍ର ଦେଉଳ ତୋଳା ହେଲା, ରାଜା ହାତୀ ଦୁଇଟିକୁ ଗଢ଼ି ଦେଇ ସୁଦେହୀକୁ ଅମର କରିଦେଲେ ।



ଏ ଘଟଣାର ସମର୍ଥନ ମିଳୁଛି ବାୟାଚକଡାର ପତ୍ର ନଂ. xxxix(9) ରେ । 'ଗଙ୍ଗା ମହାପାତ୍ର ହାତୀ ଗୋଟିଏ ଗଢ଼ିବା ଆରମ୍ଭ କରିଥିଲେ । ମହାରାଜଙ୍କର ପସନ୍ଦ ହେଲା ନାହିଁ । ସେ ଚାହିଁଲେ ତାଙ୍କର ଗୁଣ୍ଡୁଣି ହାତୀ ଭଳି ହେବ । ନୂତନ କରି କାର୍ଯ୍ୟ ଆରମ୍ଭ ହେଲା ଏବଂ ସୁଦେହୀ ଅମର ହୋଇଗଲା ।[୨୪୫]

ହାତୀ ଓଡ଼ିଶାର 'ଜାତୀୟ ପଶୁ'ର ମାନ୍ୟତା ପାଇବା ଉଚିତ୍ । ଓଡ଼ିଶା ହସ୍ତୀବହୁଳ ଦେଶ । ମହାଭାରତ ଯୁଦ୍ଧକୁ କଳିଙ୍ଗରୁ ହସ୍ତୀବାହିନୀ ଯାଇଥିବା କଥା 'ମହାଭାରତ'ରେ ଅଛି । ହାତୀର ଯୂଥବଦ୍ଧତା, ରାଜକୀୟ ଚାଲିଚଳଣ ଏବଂ ମଣିଷ ସମାଜର ନାନା ଦୁଃସାଧ୍ୟ କାର୍ଯ୍ୟର ସହାୟ, ହାତୀ । ହାତୀ ନଥିଲେ ବଡ଼ ବଡ଼ ପଥର କୋଣାର୍କ ଦେଉଳ ଉପରକୁ ଉଠିପାରନ୍ତା ନାହିଁ । କୋଣାର୍କ ଶିଳ୍ପୀର ଭାରି ପ୍ରିୟ ବସ୍ତୁ ହାତୀ, ତେଣୁ ତାହାର ସ୍ଥାନ, ସର୍ବନିମ୍ନରେ ଉପନ ଠାରୁ ସର୍ବୋଚ୍ଚ ସ୍ଥାନ ପୀଢ଼ ବନ୍ଧନୀରେ ।



ଫଟୋ-୨୫(କ,ଖ) : ରଣହସ୍ତୀ

# ଶାର୍ଦ୍ଦୂଳ :

ହିନ୍ଦୁ ମନ୍ଦିରରେ, ଶାର୍ଦ୍ଦୂଳ ଗୋଟିଏ ଅପୂର୍ବ ସୃଷ୍ଟି । ଏହାର ବିଭିନ୍ନ ଉପସ୍ଥାପନା ମଧ୍ୟରେ ଗଜସିଂହ ପରିକଳ୍ପନାଟି ବିଶେଷ ରୂପେ ଆଦୃତ ଏବଂ ବେଶ୍ କିଛି ଐତିହାସିକ ତଥା ମାର୍ମିକ ବିତର୍କର ମୂଳ । ଏ ଭାସ୍କର୍ଯ୍ୟରେ ବିରାଟ ସିଂହ ଗୋଟିଏ ତତୋଽଧିକ ବିରାଟ ହାତୀକୁ ତଳେ ଚାପି ଧରିଛି । ସାଧାରଣତଃ ସମ୍ମୁଖର ଗୋଟିଏ ପାଦ ଉତ୍ତୋଳିତ ଥାଏ । ଗଜ ସିଂହ କିନ୍ତୁ ଖାଲି କୋଣାର୍କ ଅଥବା ଓଡ଼ିଶାର ନିଜସ୍ୱ ନୁହେଁ, ଭାରତବର୍ଷର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଏହା ଦେଖିବାକୁ ମିଳେ । କୋଣାର୍କ ଶିଳ୍ପୀର ବିଶେଷତ୍ୱ, ସେ ଏ କର୍ମରେ ମଧ୍ୟ ନିଜସ୍ୱ ଛାପ ରଖିଯାଇଛି, ଯାହା ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରରେ ସହଜଲଭ୍ୟ ନୁହେଁ । ଏ ମୂର୍ତ୍ତିର ବିଭିନ୍ନ ବ୍ୟାଖ୍ୟା ଉପସ୍ଥାପନ କରିଛନ୍ତି କରୁଣାସାଗର ।[୨୪୬] ମନ୍ତବ୍ୟଗୁଡ଼ିକ ଲେଖକର ନିଜସ୍ୱ ।



ଫଟୋ-୨୬ : ଗଜସିଂହ

୧. ସାଂସାରିକ ଶକ୍ତି ଉପରେ ଆଧ୍ୟାତ୍ମିକ ଶକ୍ତିର ବିଜୟ । କେଉଁ କାରଣରୁ ହସ୍ତୀ ସାଂସାରିକ ଶକ୍ତି ଓ ସିଂହ ଆଧ୍ୟାତ୍ମିକ ଶକ୍ତିର ପ୍ରତୀକ ତାହା ବୋଧଗମ୍ୟ ନୁହେଁ ।

୨. ଅଜ୍ଞତା ଉପରେ ଜ୍ଞାନର ବିଜୟ । ଏଠାରେ ପୁଣି ଏକା ପ୍ରଶ୍ନ ଉଠୁଛି । ଧୀ-ଶକ୍ତିରେ (Intellectually) ହାତୀ ସିଂହ ଠାରୁ ହୀନ, ଏହାର କୌଣସି ପ୍ରମାଣ ନାହିଁ ।

୩. ବେଞ୍ଜାମିନ୍ ରୋଲାଣ୍ଡଙ୍କ ମତରେ ସୂର୍ଯ୍ୟ ସିଂହର ପ୍ରତୀକ ଏବଂ ହସ୍ତୀ ବୃଷ୍ଟିର ପ୍ରତୀକ । ଏହା ବୃଷ୍ଟି ଉପରେ ସୂର୍ଯ୍ୟଙ୍କ ବିଜୟ । ଅତ୍ୟନ୍ତ କଷ୍ଟକଳ୍ପିତ ।

୪. ବୌଦ୍ଧ ଚିନ୍ତାଧାରା ଉପରେ ହିନ୍ଦୁ ଚିନ୍ତାଧାରାର ବିଜୟ । ଧର୍ମ କାର୍ଯ୍ୟରେ ହିନ୍ଦୁ କେବେହେଲେ ଯୁଦ୍ଧକୁ ଯାଇନାହିଁ ବରଂ ସର୍ବଧର୍ମର ସମନ୍ୱୟ କରିଛି ହିନ୍ଦୁ । ବୁଦ୍ଧ ହିନ୍ଦୁଙ୍କ ଦଶ ଅବତାର ମଧ୍ୟରୁ ଗୋଟିଏ ଅବତାର ।

୫. କେଶରୀ ବଂଶର ଗଜପତି ରାଜାମାନଙ୍କ ଉପରେ ବିଜୟ । ଏହା ସମ୍ପୂର୍ଣ୍ଣ ଅସମ୍ଭବ କାରଣ ସୋମବଂଶୀ କେଶରୀମାନଙ୍କ ରାଜତ୍ୱ ୯୩୧ ଖ୍ରୀଷ୍ଟାବ୍ଦରୁ ୧୧୧୦ ଖ୍ରୀଷ୍ଟାବ୍ଦ ଏବଂ ଗଜପତି ଶାସନକାଳ ୧୪୩୫ ଠାରୁ ୧୫୪୧ ଖ୍ରୀଷ୍ଟାବ୍ଦ ।

୬. ହାତୀ ମସ୍ତକରେ ଥିବା ମୁକ୍ତା ପାଇଁ ସିଂହର ଆକ୍ରମଣ । ଏହା ସମ୍ପୂର୍ଣ୍ଣ ମନଗଢ଼ା କାହାଣୀ । ହାତୀ ମୁଣ୍ଡରେ ମୁକ୍ତା ନଥାଏ ଏବଂ ସିଂହ ମଧ୍ୟ ମୁକ୍ତାର ସମଝ୍‌ଦାର ନୁହେଁ ।

ଗୋଟିଏ ବ୍ୟାଖ୍ୟା କିଛିଟା ବୋଧଗମ୍ୟ । ଜଙ୍ଗଲ ମଧ୍ୟରେ ହାତୀ ଓ ସିଂହ ଦୁହେଁ ଶକ୍ତିଶାଳୀ ଏବଂ ଚିରନ୍ତନ ଶତ୍ରୁ – ଏହା ପ୍ରମାଣିତ ସତ୍ୟ । ତେବେ ସିଂହ ସବୁଦିନ ବିଜୟ ଲାଭ କରିବ – ଏହା ମଧ୍ୟ ଗ୍ରହଣଯୋଗ୍ୟ ନୁହେଁ, ବିଶେଷ କରି ଯୂଥବଦ୍ଧ ହସ୍ତୀର ଭୟାବହତା ଯେତେବେଳେ ସୁବିଦିତ । ତେବେ ଏହା କାହାର ପ୍ରତୀକ ?

ଖଜୁରାହୋ ମନ୍ଦିରମାଳାରେ ଗୋଟିଏ ସିଂହ ମୂର୍ତ୍ତି ବହୁ ସ୍ଥାନରେ ଖୋଦିତ ହୋଇଛି । ସେ ସିଂହ କିନ୍ତୁ କୌଣସି ଗଜ ଉପରେ ଅଧିକାର ସାବ୍ୟସ୍ତ କରୁ ନାହିଁ । ସେ ସିଂହ ଗୋଟିଏ ଗୋଡ଼ ଗୋଟିଏ ନାରୀ ମସ୍ତକରେ ରଖିଛି ଏବଂ ନାରୀଟି ଉପରକୁ ମୁହଁ କରି ସିଂହର ଜନନେନ୍ଦ୍ରିୟ ଲେହନ କରୁଛି । ଆଉ ଗୋଟିଏ କ୍ଷୁଦ୍ରକାୟା ନାରୀ ସିଂହର ପଶ୍ଚାତ୍ ଭାଗରେ ବସି ପଶ୍ଚାତ୍‌ମୁଖୀ ସିଂହର ମୁଖ ଲେହନ କରୁଛି । ଏ ମୂର୍ତ୍ତି ହୁଏତ ପାଶବିକତା ଉପରେ ନାରୀ ଶକ୍ତିର ବିଜୟ ସୂଚିତ କରୁଛି ।

ଗଜସିଂହର କେତେଗୁଡ଼ିଏ ପରିକଳ୍ପନା ଓ ତାହାର ଓଡ଼ିଆ ନାମ ଗାଙ୍ଗୁଲୀ ଉପସ୍ଥାପନ କରିଛନ୍ତି ।[୨୪୭]

୧. ଉଡ଼ା ସିଂହ, ୨. ଝମ୍ପା ସିଂହ, ୩. ଖେପା ସିଂହ ।

ଏହାଛଡ଼ା ଅଛି 'ଦିପିଚା ସିଂହ' ଯାହା ଘଡ଼ଚକଡ ଓ ଅମଳକୀ ଶିଳା ମଧ୍ୟରେ ଦେଖିବାକୁ ମିଳେ - ଏହି ଦିପିଚା ସିଂହର ମୁଖ ଗୋଟିଏ ହୋଇଥିଲେ ମଧ୍ୟ ପଶ୍ଚାତ୍ ଭାଗ ଦ୍ୱିଧା ବିଭକ୍ତ ।

## ଭୟାଳ :

ଭୟାଳ ଗୋଟିଏ ବିକଟ ପରିକଳ୍ପନା । ବିଭିନ୍ନ ଜନ୍ତୁ, ଏପରିକି ପକ୍ଷୀର ଅଙ୍ଗ ଏବଂ ସମୟେ ସମୟେ ମଣିଷ ମୁଣ୍ଡ ମିଶେଇ କାଳ୍ପନିକ ଜୀବ ସୃଷ୍ଟି କରୁଥିଲେ ଶିଳ୍ପୀ, ହୁଏତ ମନର ବିଶ୍ରାମ ପାଇଁ ଏବଂ ତାହାର ଅର୍ଥ ଖୋଜିବାକୁ ଯାଇ ଐତିହାସିକ ନାଜେହାଲ୍ । ଉପସ୍ଥାପିତ ଚିତ୍ରରେ ସିଂହ ଦେହରେ ହାତୀ ମୁଣ୍ଡ । ସେ ମୁଣ୍ଡ ଥୋଡ଼ରେ ଧରିଛି ଜଣେ ଯୋଦ୍ଧାର ମୂର୍ଚ୍ଛିତ ଦେହ ଏବଂ ପଦତଳେ ଦଳିତ କରୁଛି ଆଉ ଜଣେ ଯୋଦ୍ଧାକୁ । ଏହା (ଫଟୋ ୨୭-କ) କ'ଣ ସୁଦେହୀର ପ୍ରତୀକାତ୍ମକ କଳ୍ପନା ? ଥୋଡ଼ରେ ମହାରାଜଙ୍କ ଅଚେତନ ଶରୀର ଧରି ସିଂହ ବିକ୍ରମରେ ଶତ୍ରୁସୈନ୍ୟ ପଦଦଳିତ କରି ଆଗେଇ ଚାଲିଛି ! ମୂର୍ତ୍ତିଟି ମିଳିବ ଭଗ୍ନ ବିମାନର ଦକ୍ଷିଣପଟେ । ଅନ୍ୟ ଗୋଟିଏ ପ୍ରତୀକ ମିଳିବ ପ୍ରକୃତ ସିଂହ ସହିତ କିନ୍ତୁ ଏ ସିଂହଗୁଡ଼ିକର ସାମଞ୍ଜସ୍ୟ ଅଳ୍ପ । (ଫଟୋ ୨୭-ଖ) ଏମାନଙ୍କ ମୁଣ୍ଡରେ ପତ୍ରଭଳି ଶିଙ୍ଗ ଥାଏ । କାନଗୁଡ଼ିକ ତୀର ପରି, ଉଡୁଥିଲା ଭଳି କେଶର, ଗୋଟିଏ କଥାରେ ଏଗୁଡ଼ିକ ପ୍ରକୃତିର ସିଂହ ନୁହେଁ, ଶିଳ୍ପୀ ମନର ସିଂହ । ପ୍ରଶ୍ନ, ଶିଳ୍ପୀ ହାତୀଟିକୁ ଅବିକଳ ରଖି ସିଂହଟିକୁ ପ୍ରତୀକଧର୍ମୀ କରିଲେ କାହିଁକି ? କ'ଣ ଏହାର ତାତ୍ପର୍ଯ୍ୟ ? ଏ ରସହ୍ୟ ହୁଏତ ଭବିଷ୍ୟତରେ ଉନ୍ମୋଚିତ ହେବ କିନ୍ତୁ ବର୍ତ୍ତମାନ, ଦର୍ଶକ ନିଶ୍ଚୟ ବିମୁଗ୍ଧ ବିସ୍ମୟରେ ଏହା ନିକଟରେ କିଛି ସମୟ ରହିଯିବେ ।



ଫଟୋ-୨୭(କ) : ଭୟାଳ



ଫଟୋ-୨୭(ଖ) : ଭୟାଳ



ଫଟୋ-୨୭(ଗ) : ଭୟାଳ

## ନାଗ ନାଗିନୀ :

ଆଉ ଗୋଟିଏ ପ୍ରତୀକଧର୍ମୀ ଭାସ୍କର୍ଯ୍ୟ, ନାଗ ନାଗିନୀ । ଏହା ଏକକ ହୋଇପାରେ, ଯୁଗ୍ମ ମଧ୍ୟ ହୋଇପାରେ, କିନ୍ତୁ ପ୍ରତି ଉପସ୍ଥାପନରେ ଏହାର ନିମ୍ନାଙ୍ଗ ସର୍ପସମ ଓ ଉର୍ଦ୍ଧ୍ୱାଙ୍ଗ ମନୁଷ୍ୟ ସମ । ମସ୍ତକ ଉପରେ ଉନ୍ମୁକ୍ତ ସର୍ପଫଣା । ଏହା ଯୋଡ଼ ହସ୍ତରେ ଥାଇପାରେ, ଅଭୟ ମୁଦ୍ରାରେ ଥାଇପାରେ, ବୀଣା ହସ୍ତରେ ଥାଇପାରେ ଏବଂ ମିଥୁନ ମୁଦ୍ରାରେ ମଧ୍ୟ ଥାଇପାରେ । ଏକମାତ୍ର ନାଟମଣ୍ଡପ ଓ ଧ୍ୱସ୍ତ ବିଷ୍ଣୁ ମନ୍ଦିର ଛଡ଼ା କୋଣାର୍କ ବେଢ଼ା ମଧ୍ୟରେ ଥିବା ଅନ୍ୟ ଦୁଇଟି ମନ୍ଦିରରେ, ବିଶେଷକରି ବଡ଼ ମନ୍ଦିରରେ, ବହୁଳ ପରିମାଣରେ ଦେଖିବାକୁ ମିଳିବ ସର୍ପମୁଦ୍ରା । ଏହା କ'ଣ ସୂଚିତ କରୁଛି ?



ଫଟୋ-୨୮(କ) : ନାଗଦେବୀ



ଫଟୋ-୨୮(ଖ) : ନାଗ ମିଥୁନ



ଫଟୋ-୨୮(ଗ) : ନାଗ ମିଥୁନ

କରୁଣାସାଗର କହିଛନ୍ତି, ପୁରାତନ କାଳରେ ଓଡ଼ିଶା ମଧ୍ୟରେ ସର୍ପପୂଜାର ବହୁଳ ପ୍ରଚଳନ ଥିଲା । ମହାଭାରତର ଶାନ୍ତି ପର୍ବରେ ସୂର୍ଯ୍ୟଙ୍କ ଏକଚକ୍ର ରଥକୁ ନାଗ-ପଦ୍ମନାଭ ଟାଣୁଥିବା କଥା ବର୍ଣ୍ଣିତ ଅଛି । ବିଷ୍ଣୁପୁରାଣରେ ଅଛି ବାରଟି ସର୍ପ ପର୍ଯ୍ୟାୟକ୍ରମେ, ଋଷି, ଗନ୍ଧର୍ବ ଇତ୍ୟାଦି ସହଯୋଗରେ ସୂର୍ଯ୍ୟରଥ ଟାଣିଥିଲେ । C. F. Oldhm କହିଛନ୍ତି, ପୁରାକାଳରେ ସମଗ୍ର ବିଶ୍ୱରେ ସୂର୍ଯ୍ୟ ଏବଂ ସର୍ପ ଏକତ୍ର ନାମିତ ହେଉଥିଲେ ।[୨୪୮]

ଏ ତଥ୍ୟର କୌଣସି ଗୋଟିଏ ହେଲେ ନାଗ-ଭାସ୍କର୍ଯ୍ୟର ପ୍ରତୀକତା ଉପରେ ଆଲୋକପାତ କରୁନାହିଁ । ଆଦିମ ମଣିଷ ଭୟସଞ୍ଚାରକାରୀ ପ୍ରାକୃତିକ ବିସ୍ମୟଗୁଡ଼ିକୁ ପ୍ରଥମେ ପୂଜା କରିବାକୁ ଶିଖିଲା, ଯଥା – ଅଗ୍ନି ଓ ବାୟୁ । ନଦୀବହୁଳ ଓଡ଼ିଶା ଦେଶରେ ସର୍ପର ପ୍ରାଚୁର୍ଯ୍ୟ ଥିବା ସ୍ୱାଭାବିକ । ହୁଏତ ସେଇ କାରଣରୁ ସର୍ପ ପୂଜାର ପ୍ରଚଳନ ଥିଲା, କିନ୍ତୁ କାହିଁକି ଏ ଅର୍ଦ୍ଧ-ସର୍ପ ଅର୍ଦ୍ଧ-ମନୁଷ୍ୟ ରୂପ ?

ଆଧୁନିକ ଚିକିତ୍ସା ବିଜ୍ଞାନ ସର୍ପ ବିଷରୁ ନାନା ରୋଗ ନିରାମୟକ ଔଷଧ ତିଆରି କରୁଛି । ବିଷରୁ ଅମୃତ ନିଷ୍କାସନର ଇଙ୍ଗିତ ଅଛି ମହାଭାରତରେ । କୌରବ ବାଳକମାନେ ଯେତେବେଳେ ବିଷ ଦେଇ ଅଚେତ୍ ଭୀମକୁ ପାଣିରେ ଭସେଇ ଦେଲେ, ପାତାଳର ନାଗଲୋକରେ ବାଳକ ଭୀମକୁ ଅମୃତ ପାନ କରାଇ ଅତି ବଳବାନ କରି ସ୍ୱରାଜ୍ୟକୁ ଫେରାଇ ଦେଲେ ନାଗରାଜ । (ମହଭାରତ ଆଦି ପର୍ବ) । ଅନନ୍ତଶୟନରେ ଶାୟିତ ବିଷ୍ଣୁ ଶୟନ କରିଛନ୍ତି ବାସୁକୀ କୋଳରେ ଏବଂ ମସ୍ତକ ଉପରେ ଛତା ଧରିଲା ଭଳି ଫଣା ମେଲି ରହିଛି ବାସୁକୀ- ଏହା ଅତି ପରିଚିତ ଚିତ୍ର । ସର୍ପର ମଙ୍ଗଳଦାୟକ ବିଭବ ସହିତ ପରିଚିତ ଥିଲା ପୁରାତନ ମଣିଷ । ତେଣୁ ହୁଏତ ସରୀସୃପରୁ ମନୁଷ୍ୟରେ ରୂପାନ୍ତରିତ କରିଛି ଏହାକୁ କୋଣାର୍କ ଶିଳ୍ପୀ ଏବଂ ତାହାକୁ କରି ତୋଳିଛି ମାନବିକ ଗୁଣସମୃଦ୍ଧ । ଏ ଦିଗଟି ଆହୁରି ଆଲୋଚିତ ହେବା ଉଚିତ୍ ।

## ଡାଳି (Scroll) :

ଶିଳ୍ପ-ଐତିହାସିକମାନଙ୍କ ମଧ୍ୟରେ **scroll** ଶବ୍ଦଟି ଭାରି ପ୍ରିୟ । ଓଡ଼ିଆରେ ଭାଷାନ୍ତରିତ କରିବାକୁ ହେଲେ 'ଲତେଇବା' ପାଖାପାଖି ହେବ କିନ୍ତୁ ସମ୍ପୂର୍ଣ୍ଣ ଅର୍ଥାବହ ହେବନାହିଁ । ପୁରାତନ ଶିଳ୍ପ-ପରିଭାଷା 'ଡାଳି' [୨୪୯] । ବିଷୟଟିରେ ଲତାପତ୍ରର ପ୍ରତିଫଳନ ଥିଲେ ମଧ୍ୟ ପତ୍ର, ପୁଷ୍ପ, ଫଳ, ଲତା ବାହାରେ, ନାନା ଜ୍ୟାମିତିକ ନକ୍ସା, ଏପରିକି ଜୀବ ଜଗତର ପ୍ରତିଫଳନ ମଧ୍ୟ ମିଳିବ । ଉଦାହରଣ : ରେଖ ଦେଉଳର ଗଣ୍ଡି, ଦ୍ୱାରବନ୍ଧର ସପ୍ତ କର୍ମ ଏବଂ ପୀଢ଼ ମୁହଁନ୍ତି । ଯେଉଁଠାରେ ସ୍ତ୍ରୀ ମୂର୍ତ୍ତି ସ୍କ୍ରୋଲ୍ ମଧ୍ୟରେ ଗ୍ରଥିତ ହୋଇଥାଏ ତାହାକୁ କୁହାଯାଏ 'ଡାଳିକନ୍ୟା' । ସାଧାରଣରେ ପ୍ରଚଳିତ କେତୋଟି ନମୁନା ଉପସ୍ଥାପନ କରାଗଲା ରେଖାଚିତ୍ର-୧୩ ଓ ଫଟୋ୨୯ରେ ।



ଫଟୋ-୨୮(ଘ) : ଯୋଡ଼ହସ୍ତରେ ନାଗଦେବୀ



ଫଟୋ-୨୮(ଙ) : ବୀଣା ହସ୍ତରେ ନାଗଦେବୀ

ପତ୍ରଲତା ନଳିଲତା ମଲ୍ଲୀଫଡିକ୍ ଫୁଲଲତା ବଡ଼ଝାଞ୍ଜି ଜ୍ୟାମିତିକ ଡାଳି ଫୁଲଲତା ଫୁଲଲତା ଫୁଲଲତା

↓ ↓ ↓ ↓ ↓ ↓ ↓ ↓ ↓

ରେଖାଚିତ୍ର-୧୩ : ଡାଳିକାମ (ମନମୋହନ ଗାଙ୍ଗୁଲୀଙ୍କ ଦ୍ୱାରା ପ୍ରସ୍ତୁତ ଡାଳିକାମର ସ୍କେଚ୍)



ଫଟୋ-୨୯ : ଡାଳିକାମ

## ନବଗ୍ରହ :

ଧର୍ମପ୍ରାଣ ହିନ୍ଦୁ ମନ୍ଦିର ପ୍ରବେଶଦ୍ୱାର ମୁଣ୍ଡରେ ପ୍ରଥମେ ଦେଖିବେ ନବଗ୍ରହ । ଏମାନେ ଆଦିତ୍ୟ, ସୋମ, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ । ଏମାନଙ୍କୁ ପ୍ରତିଷ୍ଠା କରାଯାଇଛି ସମସ୍ତ ପ୍ରକାର ରିଷ୍ଟରୁ ଦେବାଳୟକୁ ମୁକ୍ତ ରଖିବାକୁ । ଜଗମୋହନର ଚାରି ଦ୍ୱାର ଉପରେ ଏମାନେ ବିରାଜୁ ଥିଲେ । ପୂର୍ବଦ୍ୱାର ଉପର ନବଗ୍ରହ ଏକମାତ୍ର ରହିଯାଇଛି କୋଣାର୍କରେ, ଅପସାରଣର ସମସ୍ତ ଚେଷ୍ଟା ବ୍ୟର୍ଥ କରି ।(ଫଟୋ-୩୧ ଦେଖନ୍ତୁ) । କାରଣ ଏହା ଗୋଟିଏ ପଥରରେ ଗଠିତ । ବର୍ତ୍ତମାନ ଏହା ବେଢ଼ା ବାହାରେ ଗୋଟିଏ ଅଲଗା ଘରେ ପୂଜା ପାଉଛି । ଦକ୍ଷିଣ ଓ ଉତ୍ତର ଦିଗର ନବଗ୍ରହ ଅଲଗା ଅଲଗା ମୁଗୁନି ପଥର ଖଣ୍ଡରେ ଗଢ଼ା ଯାଇଥିଲା, ତେଣୁ ଅପସାରଣ ସହଜ ହେଲା । ସେଥିରୁ ଖଣ୍ଡିଏ (କେତୁ) ଚନ୍ଦ୍ରଭାଗା ମଠ ମଧ୍ୟରେ ନାରାୟଣ ରୂପେ ପୂଜା ପାଉଛି, ଅନ୍ୟାନ୍ୟ କେତେଖଣ୍ଡ ବ୍ରିଟିଶ୍ ଓ କଲିକତା ମ୍ୟୁଜିୟମ୍‌ରେ ଅଛି । ପୁରୀ ମାଉସୀମା ଦ୍ୱାରବନ୍ଧ ଉପର ନବଗ୍ରହ ମଧ୍ୟ କୋଣାର୍କରୁ ଅପସାରିତ ହୋଇଥିବା ଅନୁମାନ କରାଯାଏ ।[୨୫୦]

## ମନ୍ଦିର ବାଢ଼ରେ ଦେବମୂର୍ତ୍ତି :

ମନ୍ଦିର ଦେହରେ ବସାଯାଇଥିବା ଦେବଦେବୀମାନଙ୍କୁ ଚାରି ଭାଗରେ ବିଭକ୍ତ କରାଯାଇପାରେ । ୧. ନବଗ୍ରହ, ୨. ଦିକ୍‌ପାଳ, ୩. ଅଷ୍ଟଶକ୍ତି, ୪. ପାର୍ଶ୍ୱଦେବତା ।

## ଦିକ୍‌ପାଳ ଓ ସେମାନଙ୍କ ଶକ୍ତି :

ବାଢ଼ର ପାଞ୍ଚଭାଗ ମଧ୍ୟରୁ ତଳଜଙ୍ଘା ଓ ଉପରଜଙ୍ଘା, ମନୁଷ୍ୟ, ଅର୍ଦ୍ଧମାନବ, ଭୟାଳ, ଦେବ ଓ ଦେବୀମାନଙ୍କର ଲୀଳା କ୍ଷେତ୍ର । ଦିକ୍‌ପାଳ ଓ ସେମାନଙ୍କ ଶକ୍ତି ମନ୍ଦିରକୁ ଅଷ୍ଟ ଦିଗରୁ ରକ୍ଷା କରି ଥାଆନ୍ତି ।

**ଅଷ୍ଟ ଦିକ୍‌ପାଳ** - ଇନ୍ଦ୍ର, ଅଗ୍ନି, ଯମ, ନୈଋତ, ବରୁଣ, ବାୟୁ, କୁବେର ଓ ଈଶାନ ।

ଏ ଅଷ୍ଟଦିକ୍‌ପାଳଙ୍କ ଅବସ୍ଥିତି ବିମାନ ଓ ମୁଖଶାଳାର ଆଠଟି ଅନର୍ଥ ପାଗରେ ରହିଛି । ଏମାନଙ୍କୁ ବସେଇବା ପାଇଁ କୁଲୁଙ୍ଗୀ ଭଳି ଛୋଟ ଛୋଟ ମନ୍ଦିର ଗଢ଼ା ଯାଇଥାଏ । ସେଗୁଡ଼ିକ ପୀଢ଼ ମୁଣ୍ଡି, କଖରମୁଣ୍ଡି ଓ ବଜ୍ରମୁଣ୍ଡି ନାମରେ ପରିଚିତ । ରେଖାଚିତ୍ର ନଂ.୧୩ ଦେଖନ୍ତୁ ।

ତଳଜଙ୍ଘାରେ ସାଧାରଣତଃ କଖରମୁଣ୍ଡି ଓ ଠିକ୍ ଉପରେ ଉପରଜଙ୍ଘାରେ ବଜ୍ରମୁଣ୍ଡି ଅଥବା ପୀଢ଼ମୁଣ୍ଡି ଗଢ଼ା ଯାଇଥାଏ । ସବୁଗୁଡ଼ିକ ଦିକ୍‌ପାଳ ଓ ସେମାନଙ୍କର ଶକ୍ତି ଅନ୍ତର୍ହିତ । କୁହାଯାଏ, ଏଗୁଡ଼ିକ ସବୁ ଭାଙ୍ଗିଯାଇଛି । ମନ୍ଦିର ଗାତ୍ରର ଅବଶ୍ୟ ବହୁ ମୂର୍ତ୍ତି ଭାଙ୍ଗିଯାଇଛି, ବିଶେଷ ରୂପେ ସବୁଗୁଡ଼ିକରେ ଥିବା ଦିକ୍‌ପାଳ ଓ ସେମାନଙ୍କ ଶକ୍ତି ଭାଙ୍ଗିଲେ କାହିଁକି ? ବରୁଣ ଓ ବାରୁଣୀ ମ୍ୟୁଜିୟମ୍‌ରେ ଅଛନ୍ତି । ଅପୂର୍ବ ସୁନ୍ଦର ଓ



ଫଟୋ-୩୦(କ) : ବେଢ଼ା ବାହାରେ ପୂଜାପାଉଥିବା ନବଗ୍ରହ



ଫଟୋ-୩୦(ଖ) : ଶନି (ବାମ) ରାହୁ (ଡାହାଣ)










ରେଖାଚିତ୍ର-୧୩ : ତିନି ପ୍ରକାର ମୁଣ୍ଡି

ବହନଯୋଗ୍ୟ । ସେଇ କାରଣରୁ କ'ଣ ଲୁଟେରାମାନେ ସେଗୁଡ଼ିକ ତାଡ଼ି ନେଲେ ? ମନ୍ଦିର ପରିକ୍ରମା ସମୟରେ ଏ ଦିଗଟି ପ୍ରତି ବିଶେଷ ରୂପେ ନଜର ଦେବେ ପାଠକମାନେ । କେତେକ ଛୋଟ ଛୋଟ ମୂର୍ତ୍ତି ମଧ୍ୟରେ, ମାନବ ମାନବୀମାନେ ମଧ୍ୟ ସ୍ଥାନ ପାଇଛନ୍ତି ।

## ପାର୍ଶ୍ୱଦେବତା :

ଏମାନଙ୍କ ସ୍ଥିତି ବିମାନର ରହପାଗ ଦେହକୁ ଲାଗି ଏବଂ ଦ୍ୱିତଳ ନିସଦେଉଳ ଉପର ଘରେ । ସବୁକିଛି ବିଶାଳ ତଳଜଙ୍ଘ ଉଚ୍ଚତାରେ । ସେମାନଙ୍କ ସ୍ଥାନ କିନ୍ତୁ ରହପାଗରେ ଖୋଦିତ ହୋଇଥିବା ସ୍ଥାନରେ । ସେ ଖୋଲି କିପରି ଥିଲା ବର୍ତ୍ତମାନ ଜାଣିବାର ଉପାୟ ନାହିଁ । ବିଗ୍ରହଗୁଡ଼ିକ ରଖା ହୋଇଛି ନୂତନ ଗଢ଼ା ପଥର ଖୋଲ ଭିତରେ । କୋଣାର୍କ ପାର୍ଶ୍ୱଦେବତ୍ରୟ ସୂର୍ଯ୍ୟଙ୍କ ବିଭିନ୍ନ ରୂପ । ମନ୍ଦିର ପରିକ୍ରମାରେ ମୂର୍ତ୍ତିତ୍ରୟଙ୍କ ବିଶଦ ଆଲୋଚନା ହେବ । ଏଠାରେ ଗୋଟିଏ ପାର୍ଶ୍ୱଦେବଙ୍କ ଚିତ୍ର ଉପସ୍ଥାପିତ ହେଲା । (ଫଟୋ-୩୧)

ଦେବତାଙ୍କ ପାଦରେ ବୁଟ୍ ଯୋତା କାହିଁକି ? ଦେବଳା ମିତ୍ର କହିଛନ୍ତି, 'ଉଦିଚ୍ୟ ବେଶ' ଉତ୍ତର-ଭାରତରେ ସୂର୍ଯ୍ୟଙ୍କ ଡ୍ରେସ୍ କୋଡ୍ ।[୨୫୧] ଉତ୍ତର-ଭାରତରେ କାହିଁକି ? ଅନ୍ୟ ଦେବତାମାନେ, ଏପରିକି ସାଧାରଣ ଭାରତୀୟ ମଧ୍ୟ ଏପରି ଯୋତା ପିନ୍ଧନ୍ତି ନାହିଁ ।

ଚାର୍ଲସ୍ ଫାବ୍ରି ଲେଖିଛନ୍ତି, "The high jack-boots are unknown to Orissan gods, but are typical of this god, whose Iranianal Turanian origins have long been established; all later Sun-god emages have these western type boots and most of them have floating ribbons behind their head, a characteristic of Iranian art, in evidence in this image too." ।[୨୫୨] କୋଣାର୍କରେ ଆଦି ସୂର୍ଯ୍ୟପୂଜକ ଶାମ୍ବ, ପାରସ୍ୟ ଦେଶରୁ ମଗ ବ୍ରାହ୍ମଣ ଆଣିଥିଲେ ସୂର୍ଯ୍ୟ ପୂଜା ପାଇଁ ଅଥବା ସୂର୍ଯ୍ୟଦେବ ନିଜେ ସେ ଆଦେଶ ଦେଇଥିଲେ । ପ୍ରଚଳିତ ସେ କଥା ପଛରେ (ପୃଷ୍ଠା-୩୮ ଦେଖନ୍ତୁ) କିଛି ସତ୍ୟ ଥିବା ପରି ମନେ ହେଉଛି ।

ମନମୋହନ ଗାଙ୍ଗୁଲୀ ପାର୍ଶ୍ୱଦେବତାମାନଙ୍କ ଗଠନରେ ଶାସ୍ତ୍ରୀୟତା ପ୍ରମାଣ କରିବା ପାଇଁ ଦକ୍ଷିଣ ଓ ପଶ୍ଚିମ ଦିଗର ପାର୍ଶ୍ୱଦେବତା ଦ୍ୱୟଙ୍କୁ ମାପି ଥିଲେ । ମାପଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।[୨୫୩]



ଫଟୋ-୩୧ : ଦକ୍ଷିଣ ପାର୍ଶ୍ୱଦେବ

## ସାରଣୀ ନଂ-୧୩

## ପାର୍ଶ୍ୱଦେବଙ୍କ ଦେହ ମାପ

| ଦେହ ଭାଗ | ଦକ୍ଷିଣ ସୂର୍ଯ୍ୟ | ପଶ୍ଚିମ ସୂର୍ଯ୍ୟ |
|---|---|---|
| ମୁକୁଟ ଉପରୁ ପାଦ | ୮'-୨.୧/୨" | ୯'-୬" |
| ମୁଣ୍ଡ ତାଳୁରୁ ପାଦ | ୭"-୭.୧/୨" | ----- |
| ପାଦ ଠାରୁ ଆଣ୍ଠୁ | ୨' | ୨' |
| ଆଣ୍ଠୁ ଠାରୁ ନାଭି | ୨'-୬.୧/୨" | ୨'-୭" |
| ଆଣ୍ଠୁ ଠାରୁ ନିତମ୍ବ | ୧'-୧୦.୧/୨" | ୨' |
| ନାଭି ଠାରୁ ଛାତି | ୧'-୧.୧/୨" | ୧'-୯.୧/୨" |
| ନାଭି ଠାରୁ କାନ୍ଧ | ୧'-୭.୧/୨" | ----- |
| କାନ୍ଧ ଠାରୁ କହୁଣି | ୧'-୬" | ୧'-୬" |
| ବୁଟ୍ ସହିତ ପାଦର ଲମ୍ବ | ----- | ୧'-୧.୧/୨" |

ଶାସ୍ତ୍ରୀୟ ମାପ ହୁଏତ ମୂର୍ତ୍ତିଗୁଡ଼ିକର ଖୋଦନ କାର୍ଯ୍ୟରେ ସାହାଯ୍ୟ କରିଥିବ, କିନ୍ତୁ ଭାସ୍କର୍ଯ୍ୟ କିପରି ଶିଳ୍ପ ଶୋଭନ ହେବ, କୌଣସି ଶାସ୍ତ୍ରରେ କୁହାଯାଇନାହିଁ, ତାହା ଭାସ୍କରର ମାନସିକ ପ୍ରକ୍ରିୟା । ମୂର୍ତ୍ତିଗୁଡ଼ିକର ଶିଳ୍ପଗତ ମୂଲ୍ୟ ନେଇ କିଛୁ ମତଦ୍ୱୈଧ ଅଛି ।

ଚାର୍ଲସ୍ ଫାବ୍ରି ଲେଖିଛନ୍ତି, "The stiffness of the god is in marked contrast to baroque sinuousness of most of the sculpture on the Sun Temple. Perhaps there was some hieratic reason to depict the Sun-god in this lifeless, stiff posture; for the additional figures show much more life and flexion and some at least of the flying female figures are full of grace."[୨୫୪]

ଦେବଳା ମିତ୍ର ତାଙ୍କ ଜ୍ଞାନର ଦୀପ୍ତିରେ ପ୍ରଥମେ ଲେଖୁଛନ୍ତି, "...... Parsva-devatas, representing Surya, are rather stiff in confirmity with the canonical convention regarding hieratic deities." ଏହା ପରବର୍ତ୍ତୀ ଅନୁଚ୍ଛେଦରେ, ବୋଧହୁଏ ନିଜ ଅଜ୍ଞାତରେ ଲେଖିଛନ୍ତି, "The principal figure, with the face beaming with compassion...." ।[୨୫୫]

ଦେବତାଙ୍କ ନିକଟରୁ ମଣିଷ କ'ଣ ଆଶା କରେ, Compassion-କରୁଣା । ଦେବତା କିନ୍ନର କିନ୍ନରୀଙ୍କ ଭଳି ଲାସ୍ୟମୟ ହେବେ ନାହିଁ । ( ଫଟୋ-୩୨ ) ସେତକ ଜ୍ଞାନ ଅନ୍ତତଃ ଏ ମୂର୍ତ୍ତି ଗଢ଼ିଥିବା ଶିଳ୍ପୀର ଥିଲା । ପାର୍ଶ୍ୱଦେବ ତ୍ରୟଙ୍କ ମଧ୍ୟରୁ ଦକ୍ଷିଣ ଓ ପଶ୍ଚିମର ଦେବ ଦଣ୍ଡାୟମାନ, ଉତ୍ତର ଦେବ ଅଶ୍ୱାରୂଢ଼, ଦକ୍ଷିଣ ସୂର୍ଯ୍ୟଙ୍କ ମସ୍ତକରେ ମୁକୁଟ ନାହିଁ, ପଶ୍ଚିମ ଦେବଙ୍କ ପାଦତଳେ ଅରୁଣ ନିଶ୍ଚିହ୍ନ ହୋଇ ଯାଇଛନ୍ତି । ଉତ୍ତର ଦିଗର ସୂର୍ଯ୍ୟ ଅଶ୍ୱାରୂଢ଼ କାହିଁକି – ସେ କାରଣ ଏ ଯାଏ ଲେଖକ ଖୋଜି ପାଇ ନାହିଁ । ଏହା ପରେ ମନ୍ଦିର ପରିକ୍ରମା ଅବସରରେ ମିଥୁନ ମୂର୍ତ୍ତିର ଉନ୍ମୁକ୍ତ ପ୍ରଦର୍ଶନୀ ମନକୁ ଆଘାତ ଦେଇପାରେ । ମନରେ ପ୍ରଶ୍ନ ଜାଗିପାରେ, ଗୋଟିଏ ଏତେ ଉନ୍ନତ ଜାତି କାହିଁକି ଏତେ ଅସଭ୍ୟ (?) ଚର୍ଚ୍ଚାରେ ମଗ୍ନ ଥିଲା । ବିଷୟଟିର ଆଲୋଚନା ଓ ବ୍ୟାଖ୍ୟାର ପ୍ରୟୋଜନ ଅଛି ।



ଫଟୋ-୩୨ : ସୂର୍ଯ୍ୟଦେବଙ୍କ ଆବକ୍ଷ ଚିତ୍ର

# ମିଥୁନ ମୂର୍ତ୍ତି :

ମିଥୁନ, ପରସ୍ପର ଜଡ଼ିତ ନର-ନାରୀ ମୂର୍ତ୍ତି ହୋଇପାରେ ଏବଂ ପାଦେ ଆଗେଇ ରତିକ୍ରିୟାରତ ନର-ନାରୀ ମଧ୍ୟ ହୋଇପାରେ । ସାଧାରଣ ଭାବେ ଏଗୁଡ଼ିକ ଅଶ୍ଳୀଳ ମୂର୍ତ୍ତି ଭାବେ ଚିହ୍ନିତ ହୋଇଥାଏ ଏବଂ ଏହା ଉପରେ ଶତାଧିକ ବର୍ଷ ଧରି ବହୁ ବାଦ ବିବାଦର ଝଡ଼ ବହିଯାଇଛି ।

ଆଲୋଚନାରେ ପ୍ରବେଶ କରିବା ପୂର୍ବେ ଗୋଟିଏ କଥା କହିବା ପ୍ରୟୋଜନ, ଯାହା ଆଜିକା କୋଣାର୍କ ସମ୍ବନ୍ଧରେ ବିଶେଷ ରୂପେ ପ୍ରଯୁଜ୍ୟ । ମିଥୁନ ମୂର୍ତ୍ତି, ଊଣା ଅଧିକେ ଓଡ଼ିଶାର ସବୁ ମନ୍ଦିରରେ ଅଛି । କିନ୍ତୁ କୋଣାର୍କ, ଦେଶ ବିଦେଶରେ, ବିଶେଷରୂପେ ବିଦେଶରେ **Pornographic album** ରୂପେ ଅଖ୍ୟାତି ଲାଭ କରି ଦଳଦଳ ଯୌନବୁଭୁକ୍ଷୁ ମଣିଷ ଟାଣି ଆଣୁଛି ।

ଯେ କୌଣସି ଲୋକ ଜଗମୋହନ ଆଗରେ ଠିଆହେଲେ ବାଡ଼ ଦେହରେ ଆଖିରେ ପଡ଼ିବ କେତୋଟି ଠିଆ ସିଂହ, ଚାରି ପାଞ୍ଚଟି ବଡ଼ ଆକାରର ମିଥୁନ ମୂର୍ତ୍ତି ଉପରଜଙ୍ଘାରେ ଏବଂ ଅନେକଗୁଡ଼ିଏ କ୍ଷୁଦ୍ର ଆକାରର ମିଥୁନ ମୂର୍ତ୍ତି । ସଂପୂର୍ଣ୍ଣ ଅନର୍ଥ ପାଗ କୋଣ ତଥା ରହପାଗର କେତେକାଂଶ ସାଦା ପଥରରେ ଗଢ଼ି ଦିଆଯାଇଛି । ଏଇ ସବୁ ଅଞ୍ଚଳରେ ପାର୍ଶ୍ୱଦେବତା, ସେମାନଙ୍କର ଶକ୍ତି ଓ ଦୈନନ୍ଦିନ ଜୀବନର ନାନା ଚିତ୍ର ଖୋଦିତ ହୋଇଥାଏ । ସାଦା ପଥରରେ ଗଢ଼ିବା ପୂର୍ବରୁ ୧୯୦୨ ସାଲର ସଂରକ୍ଷଣ ସମୟରେ ଯେଉଁ ଫଟୋ ତୋଳା ହୋଇଥିଲା, ସେଥିରୁ ମଧ୍ୟ ଜଣାପଡୁଛି, ସେସବୁ ଅଞ୍ଚଳର ମୂର୍ତ୍ତି ଆଗରୁ ଲୁଣ୍ଠିତ ହୋଇଛି । ପୂର୍ବପଟ ଛାଡ଼ି ଉତ୍ତର, ଦକ୍ଷିଣ ଯେଉଁ ପଟକୁ ଯିବେ ଏହିପରି ଦୃଶ୍ୟ ହିଁ ଦେଖିବାକୁ ମିଳିବ । (୬୯ ପୃଷ୍ଠାରେ ଫଟୋ-୫ ଓ ୮୦ ପୃଷ୍ଠାରେ ଫଟୋ ୧୧-କ ଦେଖନ୍ତୁ) ବଡ଼ ମନ୍ଦିରର ଅଧିକାଂଶ ଧ୍ୱଂସ ହୋଇଯାଇଛି, କିନ୍ତୁ ରହିଯାଇଛି ଏହି ମିଥୁନ ମୂର୍ତ୍ତିଗୁଡ଼ିକ । ସାଧାରଣ ଦର୍ଶକ ନଜରରେ ପଡ଼ିବ ଗଦା ଗଦା ମିଥୁନ ମୂର୍ତ୍ତି, ଅନ୍ୟ କିଛି ଆକର୍ଷଣ କରିବା ଭଳି ଦୃଶ୍ୟ ବାକି ନାହିଁ ।



ଫଟୋ-୩୩ : ଜଗମୋହନର ବାଡ଼ଚିତ୍ର

ଭାବିବା ସ୍ୱାଭାବିକ, କୋଣାର୍କ ଖାଲି ମିଥୁନ ଓ ମୈଥୁନର ପ୍ରଦର୍ଶନୀ ଅଥଚ ସେମାନେ ସେମାନଙ୍କର ଶାସ୍ତ୍ରନିର୍ଦ୍ଦିଷ୍ଟ ସ୍ଥାନରେ ଅଛନ୍ତି ଓ ଅନ୍ୟମାନେ ସେମାନଙ୍କର ନିର୍ଦ୍ଦିଷ୍ଟ ସ୍ଥାନରୁ ଲୋପ ପାଇଯାଇଛନ୍ତି ।

ଏକଥା ମାନିବାକୁ ପଡ଼ିବ, ଇଂରେଜୀ ଶିକ୍ଷିତ ଭାରତୀୟ ସମାଜ, ଯାହାକୁ ଆଲୋକପ୍ରାପ୍ତ ଶିକ୍ଷିତ ସମାଜ କୁହାଯାଉଛି ଏବଂ ଯେଉଁମାନଙ୍କ ମତାମତ ଭାରତୀୟ ମତାମତ ବୋଲି ଚିହ୍ନିତ ହେଉଛି, ସେମାନଙ୍କ ଧ୍ୟାନ ଧାରଣା ବହୁଳାଂଶେ ପାଶ୍ଚାତ୍ୟ ଧ୍ୟାନ ଧାରଣା ଦ୍ୱାରା ପ୍ରଭାବିତ । ଏକଥା ଅନସ୍ୱୀକାର୍ଯ୍ୟ, ବହୁ ପାଶ୍ଚାତ୍ୟ ମନୀଷୀ ଅକ୍ଳାନ୍ତ ପରିଶ୍ରମ କରି ଭାରତବର୍ଷର ଉଜ୍ଜ୍ୱଳ କଳା, ସଂସ୍କୃତି ଓ ଦର୍ଶନ ସହିତ ବିଶ୍ୱବାସୀଙ୍କୁ ପରିଚିତ କରାଇଛନ୍ତି, କିନ୍ତୁ ସେମାନେ ଆଧୁନିକ ଭାରତୀୟ ମାନସିକତା ଗଠନ କରି ନାହାଁନ୍ତି, କରିଛନ୍ତି କକ୍‌ବର୍ଣ୍ଣଙ୍କ ଭଳି ଅଶିକ୍ଷିତ ଇଂରେଜ ।

୧୮୫୮ ସାଲରେ କୋଣାର୍କ ଦେଉଳରୁ ଶିଉଳି ଛଡ଼େଇବାକୁ ପୁରୀ କଲେକ୍ଟର ମ୍ୟାକ୍‌ଟିଏର କମିଶନରଙ୍କଠାରୁ ମାତ୍ର ୫୦ ଟଙ୍କା ମଞ୍ଜୁରି ମାଗି ଥିଲେ । କମିଶନର କକ୍‌ବର୍ଣ୍ଣ ମଞ୍ଜୁରି ତ ଦେଲେ ନାହିଁ; ଜବାବରେ ଲେଖିଲେ, ଏ ଅସଭ୍ୟ ସ୍ଥାପତ୍ୟକୁ ମାଟିରେ ମିଶେଇ ଦେଲେ ଭଲ ହୁଅନ୍ତା [୨୫୬] । ଏପରିକି ପାର୍ଶୀ ବ୍ରାଉନ୍‌ଙ୍କ ଭଳି ବିଦଗ୍ଧମଣିଷ, ଯିଏ ଭାରତୀୟ ଶିଳ୍ପକୁ ବିଶ୍ୱ ଦରବାରରେ ପରିଚିତ କରାଇବାରେ ବିଶେଷ ଭୂମିକା ଗ୍ରହଣ କରିଥିଲେ, ମିଥୁନ ମୂର୍ତ୍ତିଗୁଡ଼ିକୁ, "Plastic obscenity" ରୂପେ ଚିହ୍ନିତ କରିଛନ୍ତି ।[୨୫୭] ଏଇମାନଙ୍କ ସଂସ୍ପର୍ଶରେ ଆଧୁନିକ ଆଲୋକପ୍ରାପ୍ତ ଭାରତୀୟମାନଙ୍କର ଧ୍ୟାନ ଧାରଣା ଗଢ଼ି ଉଠିଛି, କିନ୍ତୁ ଭାରତୀୟ ସଂସ୍କୃତି ଶହେ କି ଦେଢ଼ଶହ ବର୍ଷ ଠାରୁ ବହୁ ପ୍ରାଚୀନ । ସେ ପ୍ରାଚୀନ ସଭ୍ୟତା ବୁଝିବାକୁ ହେଲେ, କିଛି ସମୟ ପାଇଁ ଆଧୁନିକତାର ପ୍ରଚକ୍ଷୁ ଖୋଲି ରଖିଦେବାକୁ ହେବ । ସେ ବାସ୍ତବତା ଅନୁଭବ କରିବାକୁ ୮୦୦ ବର୍ଷ ପଛକୁ ଯିବାକୁ ପଡ଼ିବ । ଚାର୍ଲସ୍ ଫାବ୍ରି ସୁନ୍ଦର କଥାଟିଏ କହିଛନ୍ତି;

"Mores change and though many women still go about in Orissa without covering their breasts, their number is diminishing and more and more women buy themselves blouses; yet only ten years ago no more than two women out of ten possessed a blouse in a state in which 54 percent of the population is counted as aborgins." [୨୫୮]

ଫାବ୍ରିଙ୍କ ଏ ମନ୍ତବ୍ୟ ଷାଠିଏ ଦଶକ କଥା । ଏ ଲେଖକ ମଧ୍ୟ ପଚାଶ/ଷାଠିଏ ବର୍ଷ ପୂର୍ବେ ଓଡ଼ିଶାର ଆଦିବାସୀ ବହୁଳ ଅଞ୍ଚଳରେ, ସମ୍ପୂର୍ଣ୍ଣ ନଗ୍ନବକ୍ଷ ନାରୀ ଓ କୌପୀନଧାରୀ ପୁରୁଷ ଦେଖିଛି କିନ୍ତୁ କାହାରିଠାରେ ଲଜ୍ଜାର ଛିଟାଏ ହେଲେ ଥିବାର ଦେଖିନାହିଁ । କୋଣାର୍କ ଶିଳ୍ପୀ ଏଇ ମାଟିର ମଣିଷ, ଅଧିକନ୍ତୁ ଆଧ୍ୟାତ୍ମିକ ରସରେ ଜାରିତ । ସେ ଶିଳ୍ପୀ କ'ଣ ପ୍ରକାଶ କରିବାକୁ ଚାହୁଁଥିଲା, ଅନୁଭବ କରିବାକୁ ତାହାର ଚମଡା ତଳେ ପ୍ରବେଶ କରିବାକୁ ପଡ଼ିବ । ଓଡ଼ିଶାର ମିଥୁନ ଶିଳ୍ପ ସମ୍ବନ୍ଧରେ କିଛି ସାଧାରଣ ଟିପ୍‌ପଣୀ ରଖାଯାଇପାରେ ।

୧ । କୌଣସି ଦୁର୍ଗ ଅଥବା ବାସଯୋଗ୍ୟ ଗୃହରେ ମିଥୁନ ମୂର୍ତ୍ତି ଦେଖାଯାଏ ନାହିଁ । ଓଡ଼ିଶାରେ ଅବଶ୍ୟ ପୁରାତନ ବାସଗୃହ ଦେଖାଯାଏନା । ତେବେ ଦୁଇ ତିନୋଟି ଗଡ଼ ଅଛି ଏବଂ ଓଡ଼ିଶା ବାହାରେ ବହୁ ହିନ୍ଦୁ ଦୁର୍ଗ ତଥା ପ୍ରାସାଦ ଅଛି । ସୁଦୂର କାଶ୍ମୀରର ପ୍ରାୟ ବିଧ୍ୱସ୍ତ ମାର୍ତ୍ତଣ୍ଡ ମନ୍ଦିର ଗାତ୍ରରେ ଯେବେ ମିଥୁନର ଅଭାବ ନାହିଁ, ସମ୍ପୂର୍ଣ୍ଣ ସୁରକ୍ଷିତ ବାଘଦୁର୍ଗରେ (ଜମ୍ମୁ) ଗୋଟିଏ ହେଲେ ନାହିଁ କାହିଁକି ?

୨ । ସପ୍ତମ ଶତାବ୍ଦୀଠାରୁ ଛ'ଶହ ବର୍ଷ ଓଡ଼ିଶା ମନ୍ଦିର ଶିଳ୍ପର ସ୍ୱର୍ଣ୍ଣଯୁଗ ଧରାଯାଇଥାଏ । ପ୍ରଥମେ ପ୍ରଥମେ ମନ୍ଦିର ଗାତ୍ରରେ ମିଥୁନ ସଂଖ୍ୟା ଥିଲା କମ୍ ଏବଂ ମନ୍ଦିର ଭିତରେ ମଧ୍ୟ କିଛି ମିଥୁନ ଶିଳ୍ପ ଥିଲା ।

ଶେଷ ଆଡ଼କୁ ମନ୍ଦିର ଗାତ୍ର ଅଧିକରୁ ଅଧିକ ମିଥୁନପୂର୍ଣ୍ଣ ହେଲା କିନ୍ତୁ ମନ୍ଦିର ଭିତର ହେଲା ସମ୍ପୂର୍ଣ୍ଣ ଅଳଙ୍କରଣ ଶୂନ୍ୟ, ଯାହାର ଉତ୍କୃଷ୍ଟ ନିଦର୍ଶନ କୋଣାର୍କ ।

୩ । ମିଥୁନର ଆଧିକ୍ୟ ଥାଏ ଉପର ଜଙ୍ଘା ଅଞ୍ଚଳରେ ।

୪ । ରେଖଦେଉଳଠାରୁ ଜଗମୋହନ ଦେହରେ ମିଥୁନର ଆଧିକ୍ୟ ଥାଏ ।

ଏସବୁ ଟିପ୍‌ପଣୀ କ'ଣ କୌଣସି ବିଶେଷ ଇଙ୍ଗିତ ବହନ କରୁଛି ? ଲେଖକର ବିଶ୍ୱାସ ଏବଂ ସେ ବିଶ୍ୱାସର ସମର୍ଥନ ମିଳିବ ଆଗକୁ, ସେ ଯୁଗର ଶିଳ୍ପୀମାନଙ୍କ ମଧ୍ୟରେ କୌଣସ କୃତ୍ରିମତା ନଥିଲା, ସେ ମଣିଷ ଦେହକୁ ମନ୍ଦିର ରୂପେ ଏବଂ ଦୈହିକ ମିଳନକୁ ସୃଷ୍ଟି କାର୍ଯ୍ୟର ସ୍ୱାଭାବିକ ପ୍ରକ୍ରିୟା ରୂପେ ଚିନ୍ତାକରି ତାହା ପ୍ରକାଶ କରିବାରେ ଲଜ୍ଜା ଅଥବା ପାପ ବୋଧ କରିନାହିଁ । ସେ ପ୍ରକ୍ରିୟାର ଶେଷ ପର୍ଯ୍ୟାୟରେ ଦେହ ମଧ୍ୟ ଗୌଣ; ସେଠାରେ ମାନବ ମାନବୀ ବ୍ରହ୍ମରେ ଲୀନ । ଶିଳ୍ପଶୂନ୍ୟ ମୁଖଶାଳା ଓ ଗର୍ଭଗୃହ ଏହାହିଁ ପ୍ରକାଶ କରୁଛି । ଏ ସହଜ ସତ୍ୟକୁ ଦେଖି ନ'ପାରି ଆଧୁନିକ ସଭ୍ୟ (?) ମଣିଷ ନାନା ତଥ୍ୟ ଦ୍ୱାରା ମିଥୁନର ପ୍ରାସଙ୍ଗିକତା ପ୍ରମାଣ କରିବାର ଚେଷ୍ଟା କରି ଅଧିକରୁ ଅଧିକ ବିବାଦ ସୃଷ୍ଟି କରୁଛି । ସୂର୍ଯ୍ୟାଲୋକ, କ'ଣ ପ୍ରମାଣନିର୍ଭର ? ବାୟୁ କ'ଣ ପ୍ରମାଣନିର୍ଭର ? ବର୍ତ୍ତମାନ ଦେଖାଯାଉ, ଜ୍ଞାନୀମାନେ କିଏ କ'ଣ କହିଛନ୍ତି ?

କରୁଣାସାଗର କହିଛନ୍ତି, ମିଥୁନଗୁଡ଼ିକ କୌଣସି ବିଶେଷ ସ୍ଥାନନିର୍ଭର ନୁହେଁ । ସେମାନଙ୍କ ପ୍ରକାଶ, ପୀଠର ଉପରଜଙ୍ଘାରେ ହୋଇପାରେ, ଚକରଖାଡ଼ି ମଧ୍ୟରେ ହୋଇପାରେ; ଯଦିଓ ସେମାନେ ଠୁଳ ହୋଇଥା'ନ୍ତି ମନ୍ଦିରର ଉପରଜଙ୍ଘା ରେ ଏବଂ ଜଗମୋହନ ଦେହରେ ବିପୁଳ ଭାବେ ।

ବିମାନର ତଳଜଙ୍ଘାରେ ମିଥୁନ ନାହିଁ, ଉପର ଜଙ୍ଘା ଧ୍ୱଂସ ହୋଇଯାଉଛି କିନ୍ତୁ ଭଗ୍ନସ୍ତୂପରୁ ସେ ଅଞ୍ଚଳରେ ମଧ୍ୟ ମିଥୁନ ଥିବାର ପ୍ରମାଣ ମିଳିଛି । ନିସଦେଉଳମାନଙ୍କର ଉପର ଜଙ୍ଘାରେ ମଧ୍ୟ ମିଥୁନ ଅଛି । ଗର୍ଭଗୃହ ମଧ୍ୟରେ ମିଥୁନ ଅଥବା କୌଣସି ଅଳଂକରଣ ନାହିଁ ।(୨୫୯)

ତଥ୍ୟଗୁଡ଼ିକ ସେଇ ସହଜ ସତ୍ୟଗୁଡ଼ିକୁ ସମର୍ଥନ କରୁଛି । ରେଖ ଦେଉଳ ପୁରୁଷର ପ୍ରତୀକ ଏବଂ ଜଗମୋହନ ନାରୀର । ମନୁଷ୍ୟ ଦେହର ପ୍ରାୟ ସର୍ବତ୍ର ଯୌନତାର କୋଷ ଅଛି, ତେବେ ସ୍ତ୍ରୀ ଦେହର ପ୍ରାୟ ସମସ୍ତ ଅଂଶ ସ୍ପର୍ଶକାତର । ଜଙ୍ଘା, ସୃଷ୍ଟି କର୍ମର ମୂଳ ପୀଠ, ତେଣୁ ସେ ଅଞ୍ଚଳରେ **erotica** ର ପ୍ରାବଲ୍ୟ । ବକ୍ଷ ଏବଂ ମୁଖ ମଧ୍ୟ **erotic zone** କିନ୍ତୁ ମନ୍ଦିରର ଉପରସ୍ତରରେ ମିଥୁନ ନାହିଁ । ଏହାର କାରଣ ବୋଧଗମ୍ୟ ହେଉନାହିଁ । କରୁଣାସାଗର ଗୋଟିଏ ତତ୍ତ୍ୱ ଉପସ୍ଥାପନ କରିଛନ୍ତି ।

ମନ୍ଦିର ତିନୋଟି ସ୍ତରରେ ବିଭକ୍ତ – ସତ୍ତ୍ୱ, ରଜ ଓ ତମ । ଏ ତଥ୍ୟର ମୂଳ ଏବଂ ମନ୍ଦିରର କେଉଁ ଅଂଶ ସହିତ କାହାର କି ସମ୍ପର୍କ, କହି ନାହାଁନ୍ତି । ତେବେ ହୋଇପାରେ ବାଢ଼ର ଉପର ଅଂଶ ସତ୍ତ୍ୱ ଅର୍ଥାତ୍ ନୀତିଗତ ଉତ୍କର୍ଷକୁ ବୁଝାଉଛି ।

ପ୍ରଚଳିତ ବିଭିନ୍ନ ମତର ଦୀର୍ଘ ଆଲୋଚନା କରିଛନ୍ତି କରୁଣାସାଗର ।(୨୬୦) ସେଗୁଡ଼ିକ :

୧. ବେଞ୍ଜାମିନ ରୋଲାଣ୍ଡଙ୍କ ମତରେ, "..........Something to do with actual orgistic rites conducted in association with a special cult of the Sun as a universal fructifying force."

୨. ହଜାର ବର୍ଷର ବୌଦ୍ଧ ନିର୍ବାଣ ତତ୍ତ୍ୱ ସହିତ ଜଡିତ ବ୍ରହ୍ମଚର୍ଯ୍ୟ ବିରୋଧରେ ଏହା ସରବ ପ୍ରତିବାଦ ।

୩. H. Goeth ଙ୍କ ମତରେ "very outspoken sexual sculpture" ଦେବଦାସୀମାନଙ୍କ ପାଇଁ ଉଦ୍ଦିଷ୍ଟ ।

୪. P. Rowson କହିଛନ୍ତି, ଦେବଦାସୀ ଅର୍ଥାତ୍ ମନ୍ଦିର-ବେଶ୍ୟାମାନଙ୍କର ବିଜ୍ଞାପନ ।

୫. A. K. Coomarswamy; କୃଷ୍ଣ-ଗୋପୀ, ପୁରୁଷ-ଶକ୍ତି ଏବଂ ଶେଷରେ ମୋକ୍ଷ ତତ୍ତ୍ୱରେ ବିଚରଣ କରିଛନ୍ତି ।

୬. ବୃହଦାରଣ୍ୟକ ଉପନିଷଦରେ ତତ୍ତ୍ୱ କଥା ଉଠିଛି ।

୭. Dr. K. C. Panigrahi, ଲାମାମାନଙ୍କର ଗୋପନ ଯୌନଚର୍ଚ୍ଚା ଠାରୁ ଆରମ୍ଭ କରି ଭକ୍ତର ଭକ୍ତି ପରୀକ୍ଷା କଥା କହିଛନ୍ତି ।

୮. କାମ ଶାସ୍ତ୍ର ଶିକ୍ଷା ।

୯. ସେ ସମୟର ସମାଜରେ ଚାରିତ୍ରିକ ଅବକ୍ଷୟ ।

୧୦. ତାନ୍ତ୍ରିକ ଚର୍ଚ୍ଚା ।

୧୧. ବଜ୍ରାଘାତରୁ ରକ୍ଷା ପାଇଁ ଉଦ୍ଦିଷ୍ଟ ।

୧୨. ରାଜାଙ୍କର ବିଳାସପୂର୍ଣ୍ଣ ଜୀବନର ଖଣ୍ଡଚିତ୍ର ।

ଡକ୍ଟର କରୁଣାସାଗର ବେହେରା ପଣ୍ଡିତ ବ୍ୟକ୍ତି; ଉପରୋକ୍ତ ମତଗୁଡ଼ିକ ଶାଣିତ ଯୁକ୍ତି ଦ୍ୱାରା ଖଣ୍ଡନ କରିଛନ୍ତି, ଯାହାର ଗୋଟିଏ ନମୁନା ଦେଲେ ଯଥେଷ୍ଟ ହେବ । ଯେବେ ଏଗୁଡ଼ିକ ଦେବଦାସୀମାନଙ୍କ ପାଇଁ ଉଦ୍ଦିଷ୍ଟ ଏବଂ ବେଶ୍ୟାପଣର ବିଜ୍ଞାପନ, ତେବେ ନାଟ ମଣ୍ଡପରେ ଏହାର ପ୍ରକାଶ ନାହିଁ କାହିଁକି ? ଏ ପ୍ରସଙ୍ଗରେ ଡକ୍ଟର ବେହେରା ୨୩ଜଣ ବିଦଗ୍ଧ ପଣ୍ଡିତଙ୍କ ମତାମତ ଉପସ୍ଥାପନ କରିଛନ୍ତି କିନ୍ତୁ ଶେଷରେ କୌଣସି ନିଷ୍ପତ୍ତିରେ ଉପନୀତ ହୋଇନାହାଁନ୍ତି । ଅଗାଧ ପାଣ୍ଡିତ୍ୟ, ତାଙ୍କୁ ବଞ୍ଚିତ କରିଛି ଜୀବନର ସହଜ ସତ୍ୟ ହୃଦୟଙ୍ଗମ କରିବାକୁ ।

ଷ୍ଟେଲା କର୍ମରୀଶ୍ ତାନ୍ତ୍ରିକ ଚର୍ଚ୍ଚାଠାରୁ ଆରମ୍ଭ କରି ଅଦ୍ୱୈତ ପୁରୁଷ ଓ ପ୍ରକୃତି ତତ୍ତ୍ୱ, ତଥା କାମ ଚର୍ଚ୍ଚାର ବିଭିନ୍ନ ବିଭବର ଜ୍ଞାନଗର୍ଭକ ଆଲୋଚନା କରିଛନ୍ତି, କିନ୍ତୁ ସେ ମଧ୍ୟ ଶେଷ ଯାଏ କୌଣସି ନିଷ୍ପତ୍ତିରେ ଉପନୀତ ହୋଇ ନାହାନ୍ତି ।(୨୬୧) ଚାର୍ଲସ୍ ଫାବ୍ରି ଗୋଟିଏ ବାକ୍ୟରେ ସହଜ ସତ୍ୟଟି ଉପସ୍ଥାପନ କରିଛନ୍ତି ।(୨୬୨)

"It is a great falacy to judge morals in past ages by present standards. Love and love making were extolled in the 8th to 11th centuries as among the most wonderful gifts of bounteous nature, leading on to satisfaction and bliss."

ଆଉ କେତୋଟି ଉକ୍ତି ଉପସ୍ଥାପନକଲେ ବୋଧହୁଏ ବାହୁଲ୍ୟ ହେବନାହିଁ ।

"The sacred act of procreation is to be valued, as it affords the intenset moment of joy we can experience while we strive for the ultimate and complete absorbtion in to the Deity.

- Mulak Raj Anand(263)

"They seem to sing a wild and rapturous hyman of worldly existence in all its manifold variety- the joys and pleasures of a full life. How well these people must have lived and loved."

- R. J. Meheta [264]

"No where are such figures more blatantly portrayed than here, often representative as they are even of abnormal sexual practices. But the sculptures of the Temple of the Sun should be seen and studied with a mind exhilarated and sharpened by the thin air of solitude - and their isolation from the teeming world of life- a mind submerged in their modelling and formal beauty. For deep within the sculptured stones lies an artless perfection that is full of art, in-expressible yet potent, like the musical notes of Mendelsshn's 'Songs without words' or the hunting undefinable melodies of the 'Nocturnes' of Debussy."

- Percy Brown. [୨୬୫]



ଫଟୋ-୩୪ : ମିଥୁନ ମୂର୍ତ୍ତି

"As I wandered round and gazed at these seven-hundred-year-old figures embracing and contorting in their pleasure, the total effect was strangely moving. It is the very opposite of obscene. The carvings themselves were of great beauty and expressed something rarely found in art – the harmony and serenity in the pleasure men and women can give each other. Here one was right back with the nature cults which had provided some of the early components of Hindu ethics, the idea of a male and female element throughout creation, constantly uniting and expressing their oneness in celestial copulation....... That afternoon at Konarak I felf myself understanding for the first time a little of what the west had lost by cutting off its religious ideas so decisively from the pleasures of the body and by treating the flesh as an object of shame."

- Armund Denis, Taboo - 1966 [୨୬୬]

ଲେଖକ ଏ ଦେଶର ବହୁ ମନ୍ଦିରରେ ମିଥୁନ ମୂର୍ତ୍ତି ଦେଖିଛି । ପଥର ଦେହରେ କାମକଳାର ସର୍ବାଧିକ ପରୀକ୍ଷା ନିରୀକ୍ଷା ବୋଧହୁଏ ଖଜୁରାହୋ ମନ୍ଦିର ଗାତ୍ରରେ ହୋଇଛି । ସର୍ବତ୍ର ମନେ ହୋଇଛି, ଯେପରି କ୍ରିୟାରତ ନର-ନାରୀମାନଙ୍କ ସର୍ବାଙ୍ଗରୁ ଲାଳସା ଝରି ପଡୁଛି, ଯେପରି ଗୋପନ

ପ୍ରୀତିର ଲଜ୍ଜାରେ ଲଜ୍ଜିତ ସେମାନେ, କିନ୍ତୁ କୋଣାର୍କରେ ମନେ ହେବ, ନାୟକ ନାୟିକାମାନେ ଜୀବନର ଆଉ ପାଞ୍ଚଟା କାର୍ଯ୍ୟ ଭଳି କାମକଳାର ଚର୍ଚ୍ଚା ମଧ୍ୟ ସହଜ ଛନ୍ଦରେ କରି ଯାଉଛନ୍ତି । ଏଠାରେ ବହୁ ସ୍ଥାନରେ ମନେ ହେବ, ନାରୀ ତାହାର ସ୍ୱାଭାବିକ ପ୍ରାପ୍ତି ଆଗଭର ହୋଇ ଆହରଣ କରୁଛି, କୌଣସି ତ୍ରସ୍ତ ଗୋପନୀୟତା ନାହିଁ କିମ୍ବା ସମ୍ପୂର୍ଣ୍ଣ ଭୋଗରେ ବିରାଗ ନାହିଁ ।

"ତଦ୍ୱା ଅସ୍ୟୈତତ୍ ଅତିଛନ୍ଦାଃ ଅପହତପାପ୍ମାଭୟଂ ରୂପମ୍ । ତଦ୍ ଯଥା
ପ୍ରିୟୟା ସ୍ତ୍ରିୟା ସଂପରିଷ୍ୱକ୍ତୋ ନ ବାହ୍ୟ କିଞ୍ଚନ ବେଦ ନାନ୍ତରମ୍,
ଏବମେବାୟଂ ପୁରୁଷଃ ପ୍ରାଜ୍ଞେନାତ୍ମନା ସଂପରିଷ୍ୱକ୍ତୋ ନ ବାହ୍ୟଂ
କିଞ୍ଚନ ବେଦ ନାନ୍ତରମ୍ ; ତଦ୍‌ବା ଅସ୍ୟୈତଦାପ୍ତକାମମାତ୍ମକାମମକାମଂ
ରୂପଂ ଶୋକାନ୍ତରମ୍ ।"

– ବୃହଦାରଣ୍ୟକ ଉପନିଷଦ-୪।୩।୨୧

ଆତ୍ମାର ଏଇ ରୂପଟି ଅତିଛନ୍ଦା, ଅର୍ଥାତ୍ କାମନା ରହିତ, ପାପରହିତ । ଏହା ଅନ୍ତରଙ୍ଗ ଅଭୟରୂପା, ଯେପରି ପ୍ରେମିକ ପ୍ରେମିକା ଦ୍ୱାରା ଆଲିଙ୍ଗନାବଦ୍ଧ ହେଲେ ବାହ୍ୟ ଓ ଅନ୍ତରଜ୍ଞାନ ଶୂନ୍ୟ ହୋଇଯାଏ । ଏହା ହିଁ ଆତ୍ମାର ଆପ୍ତକାମ, ଅକାମ ଓ ଶୋକାତୀତ ରୂପ ।

କୋଣାର୍କର ମିଥୁନଗୁଡ଼ିକୁ ସେ ଯୁଗର ପ୍ରଚକ୍ଷୁ ଲଗେଇ ଲାଳସାମୁକ୍ତ ମନ ନେଇ ନିରୀକ୍ଷଣ କଲେ, ଉପରୋକ୍ତ ଶ୍ଳୋକଟି ଆପଣାଛାଏଁ ମନକୁ ଆସିଯିବ ।

## ଶିଳ୍ପ ପରିକ୍ରମା :

କୋଣାର୍କ ବେଢ଼ା ଭିତରେ ଚାରିଟି ମନ୍ଦିର ଐତିହାସିକ ତଥା ଦର୍ଶନାର୍ଥୀମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ । (୮ ନଂ. ରେଖାଚିତ୍ର ଦେଖନ୍ତୁ) ।

୧ । ନରସିଂହ ଦେବଙ୍କର ସୂର୍ଯ୍ୟ ମନ୍ଦିର

୨ । ପୁରାତନ ସୂର୍ଯ୍ୟ ମନ୍ଦିର

୩ । ଇଟା ତିଆରି ବିଷ୍ଣୁ ମନ୍ଦିର

୪ । ନାଟ ମଣ୍ଡପ

ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଭିନ୍ନ ଭିନ୍ନ ବିଷୟ ହେଲେ ମଧ୍ୟ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ମନ୍ଦିରର ଯେଉଁ ଅଂଶଗୁଡ଼ିକ 'ଶିଳ୍ପ ପରିକ୍ରମା' ପର୍ଯ୍ୟାୟଭୁକ୍ତ, ସେଗୁଡ଼ିକ ପୂର୍ବ ପୃଷ୍ଠାମାନଙ୍କରେ ବହୁଳ ଆଲୋଚିତ । ପୁନଃପୌନିକତାର ଦୋଷରେ ଲେଖକ ଅଭିଯୁକ୍ତ ହୋଇପାରେ । କିନ୍ତୁ ପୂର୍ବେ ଯାହା ଆଲୋଚିତ ହୋଇଛି ତାହା ହୋଇ ନଥିଲେ ଆଗକୁ ଯାହା ଆଲୋଚିତ ହେବାକୁ ଯାଉଛି, ତାହା ବୁଝିବା ସହଜ ହୁଅନ୍ତା ନାହିଁ । ଚେଷ୍ଟା କରାଯିବ, ପୁନଃପୌନିକତା ଯେତେଦୂର ସମ୍ଭବ କମ୍ ରଖି ଭାସ୍କର୍ଯ୍ୟ ଆଲୋଚନା କରିବାକୁ ।

ବଡ଼ ମନ୍ଦିରର ପ୍ରଥମ ପୃଷ୍ଠ ସ୍ୱତନ୍ତ୍ର ଆଲୋଚନାର ଦାବି ରଖେ କାରଣ ସେପରି ସୃଷ୍ଟି ଖାଲି ଓଡ଼ିଶାରେ କାହିଁକି, ଭାରତବର୍ଷର କୌଣସି ହିନ୍ଦୁ ମନ୍ଦିରରେ ହୋଇ ନାହିଁ, ଯଦିଓ ତାହାର ବୈଷୟିକ ଉପବିଭାଗଗୁଡ଼ିକ ଆଉ ପାଞ୍ଚଟା ମନ୍ଦିର ସହିତ ସମାନ । ପରିକ୍ରମା ତାହା ଚାରିପଟୁ ଆରମ୍ଭ ହେବ ।

## ୧. ନରସିଂହଦେବଙ୍କର ସୂର୍ଯ୍ୟ ମନ୍ଦିର :

ପୂର୍ବରୁ ଆଲୋଚିତ ହୋଇଛି, ବିମାନ ଓ ଜଗମୋହନ ଗୋଟିଏ ଉଚ୍ଚପୀଠ ଉପରେ ନିର୍ମିତ ହୋଇଥିଲା । ବିମାନ ଧ୍ୱଂସ ହେବା ପରେ ଏବଂ ବହୁ ମୂର୍ତ୍ତି ଲୁଣ୍ଠିତ ହୋଇଯିବା ପରେ ମନେ ହୁଏ, ମନ୍ଦିର ଗାତ୍ରରେ ଯେତେ ଶିଳ୍ପ କର୍ମ ବର୍ତ୍ତମାନ ଅଛି, ପୀଠ ବାଡ଼ ଉପରେ ତାହାଠାରୁ ଅଧିକ ଥିବ ।

କେତେକ ଶିଳ୍ପ – ସମାଲୋଚକ ମନେ କରନ୍ତି, ମନ୍ଦିର ଗାତ୍ରର ଶିଳ୍ପକର୍ମ ତୁଳନାରେ ପୀଠ ଓ ନାଟମଣ୍ଡପର ଶିଳ୍ପକର୍ମ ନିମ୍ନ ଶ୍ରେଣୀର । କାରଣସ୍ୱରୂପ ସେମାନେ କହି ଥାଆନ୍ତି, ୧୨୦୦ ଶିଳ୍ପୀ କେବେହେଲେ ଏକ ସ୍ତରର ହୋଇ ନଥିବେ । ଏହା କହିବା କିନ୍ତୁ ଠିକ୍ ହେବ ନାହିଁ, ପୀଠ

- ଯାହା ଉପରେ ଦର୍ଶନାର୍ଥୀଙ୍କ ନଜର ଆଗେ ପଡ଼ିବ- ତାହା ପାଇଁ ସମସ୍ତ ଅଣକୁଶଳୀ ଶିଳ୍ପୀ ନିୟୋଜିତ ହୋଇଥିଲେ । ବଡ଼ ମନ୍ଦିରରେ ମଧ୍ୟ ବହୁ ନିମ୍ନ ମାନର କାମ ଅଛି ଏବଂ ପୀଠରେ, ବେଶ୍ କିଛି ଶିଳ୍ପ ସୁଶୋଭନ କାର୍ଯ୍ୟ ଅଛି । ଗୋଟିଏ ବିଷୟ ମନେ ହୁଏ, ସମାଲୋଚକମାନେ ବିଚାରକୁ ନେଇ ନାହାନ୍ତି । ବଡ଼ ମନ୍ଦିରର ସ୍ୱାଭାବିକ ଭାବେ ମୂର୍ତ୍ତିଗୁଡ଼ିକ ମଧ୍ୟ ବିଶାଳ । ବଡ଼ canvasରେ ସୂକ୍ଷ୍ମ କାର୍ଯ୍ୟ ଫୁଟେଇବା ସହଜତର, ଯଦିଓ କୁଶଳୀ ହାତ ତାହାର ଛାପ ରଖି ଯିବ ବଡ଼ ଛୋଟ ସବୁ କାର୍ଯ୍ୟରେ; ଉଦାହରଣଃ ପାର୍ଶ୍ୱଦେବତା ଓ ତାଙ୍କ ପାଦ ପାଖରେ ଥିବା ଛୋଟ ମୂର୍ତ୍ତିଗୁଡ଼ିକ ।

ପରିକ୍ରମା ଆରମ୍ଭ କରାଯାଇପାରେ ପୂର୍ବ ଦିଗସ୍ଥ ସୋପାନର ଦକ୍ଷିଣ ପାର୍ଶ୍ୱରୁ । ଏଠାରେ ସପ୍ତ ଅଶ୍ୱରୁ ଚାରିଟି ବସା ଯାଇଥିଲା । ସୋପାନର ଉତ୍ତର ଦିଗରେ ତିନୋଟି । ଜଗମୋହନର ପୂର୍ବ, ଦକ୍ଷିଣ ଓ ଉତ୍ତର ଦିଗରେ ୩୦ ଫୁଟ୍ ଓସାରର ତିନୋଟି ବିଶାଳ ସୋପାନ ଥିଲା, ମଣିଷର ବର୍ବରତା ଓ ପ୍ରକୃତିର ନିଷ୍ଠୁରତା ସୋପାନ ସହିତ ବହୁ କିଛି ଧ୍ୱଂସ କରି ଦେଇଥିଲା । ୧୯୦୦ ମସିହା ପରେ କିଛି କିଛି ଅଂଶ ନବଗଠିତ ହୋଇଛି ।

## ପୀଠ ପରିକ୍ରମା :

ପୀଠ ପରିକ୍ରମା କରିବା ପୂର୍ବରୁ ମନ୍ଦିରର ଭୂମିନକ୍ସା ଏବଂ ପୀଠ ବାଡ଼ର ବିଭିନ୍ନ ନାମର ପରିଚୟ ଆଉଥରେ କରାଇଦେଲେ ଶିଳ୍ପଗୁଡକୁ ବୁଝିବା ସହଜ ହେବ । ପୀଠ ପାର୍ଶ୍ୱଚିତ୍ର ଏଠାରେ ଉପସ୍ଥାପନ କରାଗଲା । ଭୂମିନକ୍ସା ରେଖାଚିତ୍ର-୭ରେ (ପୃ-୧୦୦) ଉପସ୍ଥାପିତ ହୋଇଛି ।

ପ୍ରଥାସିଦ୍ଧ ଗଜସିଂହ ପୂର୍ବ ଦିଗର ସୋପାନ ଆଗରେ ଥିଲା, କିନ୍ତୁ ୧୯୦୦ ଖ୍ରୀଷ୍ଟାବ୍ଦର ସଂରକ୍ଷଣ ସମୟରେ ସେ ଦୁଇଟି ବାଲିରେ ପୋତିହୋଇ ଯାଇଥିବା ନାଟ ମଣ୍ଡପ ଉପରେ ଥିବାର ଦେଖାଗଲା । ୧୯୦୦-୦୬ ସଂରକ୍ଷଣ ସମୟରେ ସେ ଦୁଇଟି ସ୍ୱ-ସ୍ଥାନରେ ନରଖି ଭୁଲ୍‌ରେ ନାଟମଣ୍ଡପ ଆଗରେ ରଖାଗଲା, ଯାହା ସେହିଠାରେ ଏବେ ମଧ୍ୟ ଅଛି । ଏ ଗଜସିଂହ ଆଲୋଚିତ ହେବ ନାଟମଣ୍ଡପ ପରିକ୍ରମା ସମୟରେ ।[୨୬୭]

ସୋପାନର ଦକ୍ଷିଣ ପଟେ ବସାଯାଇଥିବା ସପ୍ତ ଅଶ୍ୱରୁ ଚାରି ଅଶ୍ୱ, ବରଂ କୁହାଯିବ ତାହାର ଅବଶେଷ, ଦେଖନ୍ତୁ ଫଟୋ-୩୫ରେ । ଚାରିଟି ଘୋଡ଼ାରୁ ଦୁଇଟି କୌଣସି କ୍ରମେ ତିଷ୍ଠି ଯାଇଛି, ପଛ ଦୁଇଟିର ଖୁର ଛଡ଼ା କିଛି ନାହିଁ । ଉତ୍ତର ଦିଗର ଅଶ୍ୱତ୍ରୟର ଗଣ୍ଡି ଦେଖିଲେ ଦୁଃଖ ଲାଗିବ । ଏଇ କ'ଣ ସେଇ ସବୁ ଘୋଡ଼ା ଯାହାର ମୁଖମଣ୍ଡଳରେ ଥିଲା ବିଶ୍ୱ ପରିକ୍ରମା କରିପାରିବାର ଦୃଢ଼ତା !

ତଳପୃଷ୍ଠର ବାଡ଼ ବସିଥାଏ ଉପନ ଉପରେ (ରେଖାଚିତ୍ର-୧୪) । ତଳ ପୃଷ୍ଠ ଓ ଉପନ ଆଗେଇ ଆସିଥିଲା ପୂର୍ବ ଦିଗର ପ୍ରଥମ ସୋପାନ ଯାଏ । ବର୍ତ୍ତମାନ ବଞ୍ଚି ରହିଛି ଉପନ ଏବଂ ତଳପୃଷ୍ଠର ଖୁର, କୁମ୍ଭ ଓ କ୍ଷୟପ୍ରାପ୍ତ କେତୋଟି ଡ଼ୋରି ଓ ଚାରିଟି ଅଶ୍ୱର ଅବଶିଷ୍ଟାଂଶ । (ଫଟୋ-୩୫)




**ଫଟୋ-୩୫ : ଦକ୍ଷିଣବାଡ଼ର ଚାରି ଅଶ୍ୱ**

ମନ୍ଦିରବାଡ଼
୯'' ଠାରୁ ୧୨''
ପଦ୍ମ
ଉପର (ଖୁର) ପୃଷ୍ଠ
୨' - ୩''
ଖୁର
ଜାଲି
ଖୁର
ପୀଠ ପୃଷ୍ଠ
୧୦' ଠାରୁ ୧୨'
ପଟ
ବାରଣ୍ଡି
ଜାଲି
୨'-୯''
ପଟ
୩'-୧୦''
ଉପର ଜଙ୍ଘା
ପଟ
ବନ୍ଧନ-୧'
ନୋଳି
ପଟ
ତଳ ପୃଷ୍ଠ
୧୩'-୩''
୨'-୯''
ତଳ ଜଙ୍ଘା
ବସନ୍ତ
କୋଣି
ପଭଗ
ପଟ
୨'-୧୧''
କୁମ୍ଭ
ଖୁର
ପାଦ
ଚକ ପଉନ-୯''ଠାରୁ୧୨''
ଉପନ-୧'

ଚିତ୍ର ସଂଖ୍ୟା-୧୪ : ମନ୍ଦିର ପୀଠ ପାର୍ଶ୍ୱ ଚିତ୍ର

## ଉପନ :

ଉପନରେ ପ୍ରାଧାନ୍ୟ ଥିଲା ହାତୀର ଜୀବନ ପରିକ୍ରମା । ଏମାନଙ୍କ ସଂଖ୍ୟା, ଦେବଳା ମିତ୍ରଙ୍କ ଗଣନାରେ ୧୭୦୦ ।[୨୬୮] ହାତୀର ଆଧିକ୍ୟ ଥିଲେ ମଧ୍ୟ ଅନ୍ୟାନ୍ୟ ଜୀବ ଏବଂ ମଣିଷ ଜୀବନର ନାନା କାର୍ଯ୍ୟ ଭରି ରହିଛି ୫୫୦ ଫୁଟ୍ ଲମ୍ବର ଉପନ ଉପରେ । ଖଣ୍ଡ ଚିତ୍ରର କିଛି ନମୁନା ଉପସ୍ଥାପନ କରାଗଲା ଫଟୋ-୩୬ରେ । ଚକ ସହିତ ବାଡ଼ ତଳେ ତଳେ ଉପନ ଖାଲି ଦେଖି ଦେଖି ଗଲେ ଚଳମାନ ଜୀବନର ଛବି ମିଳିଯିବ । ଉପନକୁ ପାଦପୀଠ ଭାବରେ ଧରାଯାଇଥାଏ । ପାଦ ଗତିର ପ୍ରତୀକ ।



ଫଟୋ-୩୬(କ) : ଉପନ



ଫଟୋ-୩୬(ଖ) : ହସ୍ତୀଯୂଥ



ଫଟୋ-୩୬(ଗ) : ହସ୍ତୀ ଓ ମଣିଷ



ଫଟୋ-୩୬(ଘ) : ତାଲିମ ନେଉଥିବା ହସ୍ତୀ

## ପ୍ରଥମ ପୃଷ୍ଠର ବାଡ଼ :

ଚାରିଘୋଡ଼ା ପଛ ପଟରୁ ଆରମ୍ଭ ହୋଇ ଯିବ, ପ୍ରାୟ ସମ୍ପୂର୍ଣ୍ଣ ପ୍ରଥମ ପୀଠ (ବାରଣ୍ଡିର ବହୁ ଅଂଶ ନିଶ୍ଚିହ୍ନ ହୋଇଯାଇଛି) । ଚାଲିବ ଦକ୍ଷିଣ ଦିଗରୁ ଗତି କରି, ପଶ୍ଚିମ ପଟ ଦେଇ ବୁଲି ଉତ୍ତର ଦିଗ ହୋଇ ଶେଷ ହେବ ଉତ୍ତର ପୂର୍ବରେ ଥିବା ଅଶ୍ୱତ୍ରୟ ନିକଟରେ । ଯେହେତୁ ପାଭାଗ, ବନ୍ଧନ ଓ ବାରଣ୍ଡିର କାର୍ଯ୍ୟ ପୁନଃପୌନିକ, ସେ ତିନୋଟିର ଶିଳ୍ପ ଆଗେ ଶେଷ କରି ତଳ ଓ ଉପରଜଙ୍ଘାକୁ ଯିବା; ଯେଉଁଠାରେ ବୈଚିତ୍ର୍ୟ ବହୁ ଅଧିକ । ଫଟୋ-୩୬ ଦେଖନ୍ତୁ ।

ପାଭାଗର ପାଞ୍ଚ ଉପ-ବିଭାଗଃ ଖୁର, କୁମ୍ଭ, ପଟ, କଣି ଓ ବସନ୍ତ । ଖୁର ପୃଷ୍ଠର ଉପର ଅଂଶରେ ଓଲଟା ପଦ୍ମ ପାଖୁଡ଼ା ଓ ତଳ ମୁହାଣ୍ଟିରେ ଦୁଇ ଧାଡ଼ି ମୋତି ହାର ମଧ୍ୟରେ ବନଲତା । ଖୁର ପୃଷ୍ଠ ଉପରେ କୁମ୍ଭ, ସାଧାରଣ କୁମ୍ଭ ଭଳି, ତେବେ ପରସ୍ତ ପରସ୍ତ ସଜା ହୋଇଛି । କୁମ୍ଭ ଉପରକୁ ପଟ । ଏହା ଉପରେ ନର୍ତ୍ତିଲତା କାମ । ଏହା ଉପରକୁ କଣି - ସାର୍ଥକ ନାମ । ସବା ଉପରେ ବସନ୍ତ - ଦୁଇ ଧାଡ଼ି ମୋତି ହାର ମଧ୍ୟରେ ବନଲତା ।

ଧାଡ଼ି ଧାଡ଼ି ସମାନ୍ତରାଳ ଏକ ପ୍ରକାରର କାର୍ଯ୍ୟ ନୀରସ ଲାଗିପାରେ । ତେଣୁ ମଧ୍ୟେ ମଧ୍ୟେ କିଛି ଉଲମ୍ବ କାର୍ଯ୍ୟ ସଜା ହୋଇଛି । ପାଞ୍ଚ ଫୁଲର ଥୋକା ଭିତରୁ ଗୋଟିଏ ପଟି ପାଭାଗର ଉପରୁ ତଳ ଯାଏ ଲମ୍ବି ଯାଇଛି । କହିବା ବାହୁଲ୍ୟ, ପଟିଟି କାରୁକାର୍ଯ୍ୟପୂର୍ଣ୍ଣ ଏବଂ ଶେଷ ହୋଇଛି ଚୈତ୍ୟ ଭାସ୍କର୍ଯ୍ୟରେ ।

ଡାଳି କାମ **(Scroll)** ବାରମ୍ବାର ଆସିବ, ସେଗୁଡ଼ିକର ନାମ ସହିତ ଗୋଟିଏ ରେଖାଚିତ୍ର ୧୩ ନମ୍ବର ଚିତ୍ରରେ ଦିଆଯାଇଛି । ଆଉ ଥରେ ଦେଖନ୍ତୁ । ତଳପୃଷ୍ଠ ବାଡ଼ର ବନ୍ଧନରେ ତିନି କାମ - ପଟ, ନୋଳି ଓ ପଟ । ପଟ ଉପରେ ନଟିଲତା କାମ ଦିଶୁଛି । ନୋଳି କଣି ଭଳି ଗୋଜିଆ, କିନ୍ତୁ ଗୋଜ ଉପରେ ଧାଡ଼ିଏ ମାଳା ଭଳି କାମ ଅଛି ।

ତଳପୃଷ୍ଠର ସବା ଉପରେ ବାରଣ୍ଡି । ଏଥିରେ ତିନି କାମ ଥିବା କଥା - ପଟ, ଜାଲି ଓ ବସନ୍ତ । ଅଧିକାଂଶ ଭାଙ୍ଗି ଯାଇଛି, ସାଦା ପଥର ଦେଇ ଯୋଡ଼ା ହୋଇଛି, ଯେଉଁଥିରେ ଉପବିଭାଗ ଗୁଡ଼ିକର ମୂଳ ଚରିତ୍ର ଫୁଟୁ ନାହିଁ । ଯେଉଁ କେତେକ ବଞ୍ଚିଯାଇଛି ସେଥିରୁ ଅଛି ହାତୀ, ଘୋଡ଼ା, ଯୁଦ୍ଧାଭିମୁଖୀ ସୈନ୍ୟ ଇତ୍ୟାଦି ଏବଂ ବସନ୍ତରେ ହାତୀ କାମ । ( ଫଟୋ-୩୮ କ,ଖ ଦେଖନ୍ତୁ)



**ଫଟୋ-୩୭ : ପ୍ରଥମପୃଷ୍ଠ ବାଡ଼ (ବଡ଼ ମନ୍ଦିର)**



**ଫଟୋ-୩୮(କ) : ପ୍ରଥମପୃଷ୍ଠର ବାରଣ୍ଡି**



**ଫଟୋ-୩୮(ଖ) : ମୁହାନ୍ତି ଉପର ଦୃଶ୍ୟ**

## ରଥଚକ୍ର :

ରଥଚକ୍ରର ସର୍ବୋତ୍‌କୃଷ୍ଟ ଆକର୍ଷଣଃ ଏହା ବସା ଯାଇଛି ବାଡ଼ ଭାସ୍କର୍ଯ୍ୟ ଉପରେ ଏବଂ ମନେ ହେବ ଉପନ ଉପରେ ଗଡ଼ୁଛି । ଆଧୁନିକ ସ୍ଥପତି ସରଳ ରେଖାରେ ଥିବା ଲମ୍ବ ବଡ଼ ଦେବାଲର ନୀରସତା କାଟିବାକୁ ଆଗକୁ ପଛକୁ କରି କିଛି ଭାଙ୍ଗ ଗଢ଼ି ଥାଆନ୍ତି । କୋଣାର୍କ ସ୍ଥପତି ମନେ ହୁଏ, ଏ କଳାର ଚରମକୁ ଚାଲି ଯାଇଛି । ୯'-୮'' ବ୍ୟାସ ବିଶିଷ୍ଟ ଚକର ବହିର୍ବଳୟର ଓସାର ୯'', ନାଭି ବଳୟକୁ (ଅଖଚୂଳି ଫରୁଆ) ଯୋଡ଼ୁଛି ଆଠଟି ପତଳା ଖାଡ଼ି (ଆଡ଼ ଆର) ଏବଂ ୮ଟି ମୋଟ ଖାଡ଼ି (ଶଳ ଆର) । ଖାଡ଼ିଗୁଡ଼ିକର ପ୍ରତୀକତା ପୂର୍ବରୁ ଆଲୋଚିତ ହୋଇଛି (ପୃଷ୍ଠା-୮୮) । ଖାଡ଼ିଗୁଡ଼ିକ ୩' - ୩'' ଲମ୍ବ । ନାଭି ମଧ୍ୟରେ ଅଖ ଉପର ଗୋଲ ଚକିର ନାମ 'ଅଖ ମୁହାନ୍ତି' । ଅଖ ଭିତର ଦେଇ ଚକକୁ ସ୍ଥାନଚ୍ୟୁତ ନ କରିବା ପାଇଁ ଯେଉଁ କୀଳକ ଦିଆଯାଇଛି, ତାହାର ନାମ 'ଅନିକୀଳ' । ମୋଟ ଖାଡ଼ି ଅର୍ଥାତ୍ ଶଳ ଆର ମଧ୍ୟରେ ଗୋଟିଏ ଠିକିରି କାମ ଅଛି, ଯାହାର ନାମ 'ଆର ଫେଣୀ' ଏବଂ ତାହା ମଝି ବୃତ୍ତର ନାମ 'ଆର ଗଣ୍ଡି' ।[୨୬୯]



ଫଟୋ-୩୯ : କୋଣାର୍କ ଚକ

ଚବିଶଟି ଚକ, ମନେ ହେବ ଛାଞ୍ଚରେ ଗଢ଼ା, କିନ୍ତୁ କାରୁକାର୍ଯ୍ୟରେ ବିଭିନ୍ନତା ଅଛି । ଚକର ବହିର୍ବଳୟଟି ଲତା କାମରେ ଭରି ରହିଛି ଏବଂ ଚକର ଅନ୍ୟାନ୍ୟ ଅଂଶ ଇଞ୍ଚେ ହେଲେ ଭାସ୍କର୍ଯ୍ୟଶୂନ୍ୟ ନୁହେଁ । ଯେହେତୁ ଧର୍ମ ଜୀବନଚକ୍ରର ମଧ୍ୟ ବିନ୍ଦୁ, ଅଖ ମୁହାନ୍ତିରେ ବସାଯାଇଛି ଗଜଲକ୍ଷ୍ମୀ, ହରପାର୍ବତୀ, ନରସିଂହ ଇତ୍ୟାଦି ଦେବଦେବୀଙ୍କ ମୂର୍ତ୍ତି । 'ଆର ଗଣ୍ଡି'ରେ ଅଛନ୍ତି ଈଶାନ, ଈଶାନୀ, ସୂର୍ଯ୍ୟ, ବିଷ୍ଣୁ, ଏପରିକି ମିଥୁନ ମଧ୍ୟ । ଚଳମାନ ଜୀବନ ଚକ୍ରରେ ଭାସ୍କର ଦେବଦେବୀଙ୍କ ସହିତ ମିଥୁନର ସ୍ଥାନ ମଧ୍ୟ ରଖିଛନ୍ତି, କୌଣସି ଅଶ୍ଳୀଳତା ଦେଖି ନାହାନ୍ତି - ଅମୃତ ଯାତ୍ରାର ଅଙ୍ଗ ମାତ୍ର ।

ତଳଜଙ୍ଘା ଓ ଉପରଜଙ୍ଘାରେ ନାନା ରକମର ମୂର୍ତ୍ତି କାମ କରାଯାଇଥାଏ । ଏଠାରେ ମଧ୍ୟ ସେଇ ବହମାନ ଜୀବନର ବିଭିନ୍ନ କାହାଣୀ; ତେବେ ଉପରଜଙ୍ଘାରେ ମୈଥୁନର ଉପସ୍ଥିତି ଅଧିକ । ସମଗ୍ର ବାଡ଼ ଅଞ୍ଚଳରେ ସମଦୂରତ୍ୱ ବଜାୟ ରଖି କେତେକ ଖମ୍ବ ଭଳି କାମ ଉଠି ଯାଇଛି ପାଭାଗଠାରୁ ବାରଣ୍ଡା ଯାଏ, କିନ୍ତୁ ତାହା ଉପରେ ପାଭାଗ, ବନ୍ଧନୀ ଓ ବାରଣ୍ଡୀର କାର୍ଯ୍ୟ ଅକ୍ଷୁଣ୍ଣ ଅଛି । ଏହାଛଡ଼ା ତଳଜଙ୍ଘା ଓ ଉପରଜଙ୍ଘା ମଧ୍ୟରେ ଅଛି, କିଛି



ଫଟୋ-୪୦ : ଅଖ ମୁହନ୍ତି



ଫଟୋ-୪୧(କ) : ଆର ଗଣ୍ଡି



ଫଟୋ-୪୧(ଖ) : ଆର ଗଣ୍ଡି



ଫଟୋ-୪୧(ଗ) : ଅଖ ମୁହନ୍ତି ଓ ଆର ଗଣ୍ଠି



ଫଟୋ-୪୧(ଘ) : ଆର ଗଣ୍ଠି



ଫଟୋ-୪୧(ଚ) : ଅଖ ମୁହନ୍ତି



ଫଟୋ-୪୧(ଛ) : ଆର ଗଣ୍ଠି



ଫଟୋ-୪୧(ଜ) : ଆର ଗଣ୍ଠି



ଫଟୋ-୪୧(ଝ) : ଆର ଗଣ୍ଠି



ଫଟୋ-୪୧(ଟ) : ଆର ଗଣ୍ଠି



ଫଟୋ-୪୧(ଠ) : ଆର ଗଣ୍ଠି



ଫଟୋ-୪୧(ଢ) : ଆର ଗଣ୍ଠି



ଫଟୋ-୪୧(ଢ) : ଆର ଗଣ୍ଠି



ଫଟୋ-୪୨ (କ) : ପୀଠବାଡ଼ର ଦୃଶ୍ୟ



ଫଟୋ-୪୨ (ଖ) : ପୀଠବାଡ଼ର ଦୃଶ୍ୟ

ପଟାଭଳି କାମ ଓ ମୁଣ୍ଡି । (ତିନି ରକମର ମୁଣ୍ଡି, ଚିତ୍ର ନଂ.୧୪ରେ ଉପସ୍ଥାପିତ ହୋଇ ସାରିଛି ।) ତଳଜଙ୍ଘାରେ ଛୋଟବଡ଼ ଅନେକଗୁଡ଼ିଏ କଖର ମୁଣ୍ଡି ଅଛି, କିନ୍ତୁ ତାହା ସହିତ ତାଳ ରଖି ଉପର ମୁଣ୍ଡରେ ପୀଢ଼ ଅଥବା ବଜ୍ରମୁଣ୍ଡି ନାହିଁ । (ଫଟୋ ୩୭ ଦେଖନ୍ତୁ) ।

ମୁଣ୍ଡି ଗୁଡ଼ିକ ସାଧାରଣତଃ ଦେବଦେବୀ ଅଥବା ରାଜା ରାଣୀମାନଙ୍କ ପାଇଁ ରକ୍ଷିତ ଥାଏ । କିନ୍ତୁ ଏଠାରେ ତାହା ହୋଇନାହିଁ । ଅଳସ କନ୍ୟା, ଏପରିକି ମିଥୁନ ମୂର୍ତ୍ତି ମଧ୍ୟ ଅନେକ ମୁଣ୍ଡି ଦଖଲ କରି ଯାଇଛନ୍ତି ।

ଠିଆ ସିଂହ ପୀଠ ବାଡ଼ର ଗୋଟିଏ ବିଶେଷ ସ୍ଥାନ ଦଖଲ କରିଥାଏ । ଏହାର ସ୍ଥାନ ସାଧାରଣତଃ 'ଅନୁରହ' ଅଞ୍ଚଳରେ । ରହପାଗ ଓ ଅନର୍ଥପାଗର ସଂଯୋଗ କୋଣ ଅଥବା ଅନର୍ଥପାଗ ଓ କୋଣପାଗର ସଂଯୋଗ କୋଣକୁ 'ଅନୁରହ' କୁହାଯାଇଥାଏ ।

ନାଗ ନାଗିନୀ କଥା ପୂର୍ବେ ଆଲୋଚିତ ହୋଇଛି । ଏ ପୃଷ୍ଠର ଜଙ୍ଘା ଅଞ୍ଚଳରେ ମଧ୍ୟ ଦେଖାଯିବେ ବହୁ ସ୍ଥାନରେ । ପୀଠ ବାଡ଼ରେ ଯେଉଁସବୁ ଅଞ୍ଚଳ ଚକ ଦଖଲ କରିନାହିଁ ସେପରି ଅଞ୍ଚଳର କିଛି ପୂର୍ଣ୍ଣଚିତ୍ର ଉପସ୍ଥାପନ କରାଗଲା । (ଫଟୋ-୪୨)

ଛଅଖଣ୍ଡ ଚକ ପାର ହୋଇ ଆସିବା ପରେ ପଡ଼ିବ ଦକ୍ଷିଣ ଦିଗର ବିଶାଳ ସୋପାନ । ଜଗମୋହନର ଦକ୍ଷିଣ ଦିଗର ଦ୍ୱାର ଓ



ଫଟୋ-୪୨(ଗ) : ଦକ୍ଷିଣ ସୋପାନ ପରେ ପୀଠବାଡ଼ର ଦୃଶ୍ୟ



ଫଟୋ-୪୨(ଘ) : ଉତ୍ତର-ପଶ୍ଚିମ କୋଣରୁ ପୀଠବାଡ଼ର ଦୃଶ୍ୟ



ଫଟୋ-୪୩ : ମନ୍ଦିରର ଦକ୍ଷିଣପଟର ଦୃଶ୍ୟ

ପୀଢ଼ର କିଛି ଅଂଶ ଏତେ କ୍ଷତିଗ୍ରସ୍ତ ହୋଇଥିଲା ଯେ, ବିଶାଳ ପଥର ଦେବାଲ ଗଢ଼ି ସେ ଅଂଶ ବାନ୍ଧି ଦିଆଯାଇଛି । ଜଗମୋହନ ଓ ଭଗ୍ନ ବିମାନର ଦକ୍ଷିଣ ଦିଗର ଅଧିକାଂଶ ପାଇପ୍ ଜାଲିରେ ବାନ୍ଧି ରଖିଛନ୍ତି ଏ.ଏସ୍.ଆଇ. । ଶୁଣାଯାଏ, ସଂରକ୍ଷଣ ଓ Chemical Treatment ପାଇଁ ଏ ଭାରା **Scafolding** ଗଢ଼ା ଯାଇଛି, କିନ୍ତୁ କୌଣସି କାର୍ଯ୍ୟ ହେଉଥିବାର ଦେଖାଗଲା ନାହିଁ । ଏପରି ପିଞ୍ଜରାବଦ୍ଧ ହୋଇ କୋଣାର୍କ ରହିଛି ବହୁବର୍ଷ ଧରି ।

ଗାର୍ହସ୍ଥ୍ୟ, ସାମାଜିକ ଏବଂ ରାଜନୈତିକ ଦୃଶ୍ୟାବଳୀର ସଂଖ୍ୟା ମଧ୍ୟ ଅଳ୍ପ ନୁହେଁ । ପ୍ରିୟ ବିରହ-କାତର ଅଳସ କନ୍ୟା, ଯୁଦ୍ଧ ପ୍ରତ୍ୟାଗତ ସୈନିକ ସହ ବାଟ ମଧ୍ୟରେ ସ୍ତ୍ରୀ ସହିତ ଦେଖା, ପିଲାଙ୍କ ସହିତ ପୁନର୍ମିଳନ, ବାଳକଟା (ଖଣ୍ଡାଧାରରେ) । ବୃଦ୍ଧାର ବିଦେଶ ଯାତ୍ରା, ରାଜାଙ୍କ ଜଗନ୍ନାଥଙ୍କୁ ମାଲ୍ୟଦାନ, ଅଶ୍ୱପୃଷ୍ଠେ ବୀରରାଜା । ଆଫ୍ରିକାରୁ ଜଣେ ବ୍ୟବସାୟୀ ଜିରାଫ୍ ବିକିବାକୁ ଆସିଛି, ଡିଭାନ୍ ଉପରେ ଏକାକିନୀ ରାଜରାଣୀ, ଏହିପରି ବହୁ ବିଷୟ । ଗୋଟିଏ ସଂରକ୍ଷଣ କାର୍ଯ୍ୟ ଅତି ଦୃଷ୍ଟିକଟୁ, ଦେହର ମଧ୍ୟାଂଶ ସିମେଣ୍ଟ-ବାଲି ବାକ୍ସ ଭିତରେ, ମୁଣ୍ଡ ଓ ଗୋଡ଼ ବାହାରି ରହିଛି (ଫଟୋ-୪୨) । ଅନ୍ୟତ୍ର ମୁଣ୍ଡ ଜାଗାରେ ଚଉରସ ପଥର ଖଣ୍ଡେ ବସାଯାଇଛି । ଏ ବିଶ୍ୱ ଐତିହ୍ୟ ଉପରେ ଚିନ୍ତା ଭାବନା ଶୂନ୍ୟ ଅତ୍ୟାଚାର, କଳାପାହାଡ଼ର ଅତ୍ୟାଚାରଠାରୁ ବଳିଗଲା । **INTACH**ର ବିଳାପ ଅନର୍ଥକ ନୁହେଁ । ଯେତେ ଶୀଘ୍ର ସମ୍ଭବ ଏହାର ଉଚିତ ସଂସ୍କାର କରିବା ପ୍ରୟୋଜନ । **ASI** ଶୁଣିବେକି?



ଫଟୋ-୪୪(ଘ) : ପରିଚାରିକାମାନଙ୍କ ସହ ରାଣୀ



ଫଟୋ-୪୪(ଚ) : ସିଂହାସନରେ ରାଜା



ଫଟୋ-୪୪(ଛ) : ଏକାକିନୀ



ଫଟୋ-୪୪(ଜ) : ରାଜାଙ୍କ ପ୍ରାର୍ଥନା



ଫଟୋ-୪୪(ଝ) : ବୃଦ୍ଧାର ବିଦେଶ ଯାତ୍ରା



ଫଟୋ-୪୪(ଟ) : ଜିରାଫ୍ ବିକ୍ରୟ



ଫଟୋ-୪୪(ଠ) : ଘୋଡ଼ସବାର ରାଜା

ଗୋଟିଏ ପଟ ବିଶେଷ ଉଲ୍ଲେଖ ଦାବି କରେ (ଫଟୋ-୪୫) । ଅର୍ଦ୍ଧାଙ୍ଗିନୀ ସହ ଜଣେ ସମ୍ଭ୍ରାନ୍ତ ମଣିଷ ଠିଆ ହୋଇଛନ୍ତି । ଜଣେ ଗବେଷକ ଏହାଙ୍କୁ ସୂତ୍ରଧର ଦମ୍ପତି ରୂପେ ଚିହ୍ନିତ କରିଛନ୍ତି, କିନ୍ତୁ ନାମୋଲ୍ଲେଖ ନାହିଁ କେଉଁଠାରେ । ଏ ପଟର ବିଶେଷତ୍ୱ, ଉର୍ଦ୍ଧାଙ୍ଗ ପ୍ରାୟ ଅକ୍ଷତ ଅଛି, କିନ୍ତୁ ନିମ୍ନାଙ୍ଗ ପାଣି ପବନରେ ନିଶ୍ଚିହ୍ନ ହୋଇଯାଇଛି । ଏହା ଦୁଇ ଖଣ୍ଡ କନ୍ଦା ପଥରରେ ତିଆରି ହୋଇଥିଲା । ଏ ପଟଟି ପୀଠ ବାଡ଼ର ଦକ୍ଷିଣ-ପଶ୍ଚିମ ଦିଗର ଉପରଜଙ୍ଘାରେ ମିଳିବ । ସାରଣୀ ୫ରେ ୧୨ କିସମର ଖଣ୍ଡୋଲାଇଟ୍ କଥା କୁହାଯାଇଛି । ସବୁ କିସମର କନ୍ଦା ପଥର ପରିବେଶଗତ ସହନଶୀଳତା ସମାନ ନୁହେଁ । ଆଗକୁ ଯଦି ନୂତନ ମନ୍ଦିର ଗଢ଼ା ହୁଏ କିମ୍ବା ସଂରକ୍ଷଣ କାର୍ଯ୍ୟରେ ଶିଳ୍ପାୟିତ ପ୍ରସ୍ତର ବ୍ୟବହୃତ ହୁଏ, ଆଶା କରାଯିବ, ସ୍ଥପତିମାନେ ବିଷୟଟି ନଜରରେ ରଖିବେ ।

କୋଣାର୍କ ପୀଠ ଦେହରେ ମିଥୁନ ଓ ମୈଥୁନ ଫଟୋ ଅସୁମାର । ଏହାକୁ କାମକଳାର ଛିନ୍ନପତ୍ର କୁହାଯାଇପାରେ; ସମ୍ଭବ ଅସମ୍ଭବ ସବୁ ପ୍ରକାରର ମୈଥୁନ ଭରି ରହିଛି । କିନ୍ତୁ ଲକ୍ଷ୍ୟ କଲେ ଦେଖାଯିବ, ଆନନ୍ଦ ଅଛି, ତୃପ୍ତି ଅଛି, କିନ୍ତୁ କୌଣସିଠାରେ ପାଶବିକତା ନାହିଁ । (ଫଟୋ-୪୬) ଏ ପ୍ରବଳ କାମଚର୍ଚ୍ଚାରୁ ଦେବଦେବୀମାନେ ମଧ୍ୟ ବାଦ୍ ଯାଇନାହାନ୍ତି । (ଫଟୋ ୪୬ଠ) । କେତେଗୁଡ଼ିଏ ଫଟୋରେ ଦେବଦେବୀଙ୍କ ମୂର୍ତ୍ତି ପାଖାପାଖି ଗଢ଼ାଯାଇଛି ମୈଥୁନରତ ନରନାରୀ ମୂର୍ତ୍ତି । ଆଶ୍ଚର୍ଯ୍ୟ ଲାଗେ ଭାବିବାକୁ, ଏହା ଫୁଟେଇଲା ବେଳେ ଶିଳ୍ପୀ କେତେ ଗଭୀରଭାବେ ଅନାସକ୍ତ ଥିଲେ । ଏପରିକି ଦେବଦେବୀଙ୍କ ଘନିଷ୍ଠ ମୁହୂର୍ତ୍ତ ମଧ୍ୟ ସଂଯମର ସହିତ ଖୋଦିତ ହୋଇଛି ।



ଫଟୋ-୪୫ : ସ୍ତ୍ରୀ ସହିତ ସୂତ୍ରଧର



ଫଟୋ-୪୬(କ) : ଦୈନନ୍ଦିନ କର୍ମ



ଫଟୋ-୪୬(ଖ) : ଆତ୍ମବିସ୍ମୃତ

## କାମକଳାର ଛିନ୍ନପତ୍ର

(ପୃ : ୧୬୭-୧୭୦)



ଫଟୋ-୪୬(ଗ) : ଓଲଟା ରତି



ଫଟୋ-୪୬(ଘ) : ସମଲିଙ୍ଗୀ ମୈଥୁନ


ଫଟୋ-୪୬(ଚ) : ସହଯୋଗିନୀ


ଫଟୋ-୪୬(ଛ) : ଅଗ୍ରଣୀ ନାରୀ


ଫଟୋ-୪୬(ଜ) : ମୈଥୁନ ସହ କେଶ କର୍ତ୍ତନ


ଫଟୋ-୪୬(ଝ) : ମୁଖ ମୈଥୁନ



ଫଟୋ-୪୬(ଟ) : ପ୍ରେମାବିଷ୍ଟ



ଫଟୋ-୪୬(ଠ) : ମଗ୍ନ



ଫଟୋ-୪୬(ଡ) : କର୍ମ



ଫଟୋ-୪୬(ଢ) : ମୁଖ ମୈଥୁନ



ଫଟୋ-୪୭(କ) : ନଗ୍ନ ମହିଳା



ଫଟୋ-୪୭(ଖ) : ନଗ୍ନ ପୁରୁଷ

ଦୁଇଟି ପଟର ଅର୍ଥ ବୁଝାପଡୁନାହିଁ (ଫଟୋ-୪୭ କ ଓ ଖ) । ପ୍ରଥମ ପଟରେ ଜଣେ ଉଲଗ୍ନ ନାରୀ ଗୋଟିଏ ଲିଙ୍ଗ ସଦୃଶ ବସ୍ତୁ ଉପରେ ଗୋଡ଼ ମେଲେଇ ଠିଆ ହୋଇଛି । ଦେବଳା ମିତ୍ର ଲେଖିଛନ୍ତି, "Here a robeless woman (rarely a man) is seen standing with flames of fire between the legs"(ଫଟୋ-୪୭ କ) । ମିତ୍ରଙ୍କ ନଜରରେ ପଡ଼ି ନାହିଁ କିନ୍ତୁ ଅନ୍ୟତ୍ର ଜଣେ ପୁରୁଷ ମଧ୍ୟ ସେଇ କାର୍ଯ୍ୟରେ ବ୍ୟାପୃତ । ମିତ୍ର ଏହାର ଅର୍ଥ ପାଇନାହାନ୍ତି, କିନ୍ତୁ ଏହା ଅଗ୍ନି ହେବ କାହିଁକି ? ଚୁଲି ଦେଖିବାକୁ ଲିଙ୍ଗ ସଦୃଶ ନୁହେଁ । ଏହା ନିଃସନ୍ଦେହରେ ଲିଙ୍ଗ । ତେବେ ପୁରୁଷ ଗୋଟିଏ ସେପରି ଭାବେ ଲିଙ୍ଗ ଉପରେ ଛିଡ଼ା ହେବ କାହିଁକି ? କୋଣାର୍କର ମିଥୁନଗୁଡ଼ିକୁ କେତେକ ଗବେଷକ ତାନ୍ତ୍ରିକତା ସହିତ ଯୁକ୍ତ କରିବାର ଚେଷ୍ଟା କରିଛନ୍ତି । ତାନ୍ତ୍ରିକତାରେ ଏପରି କ୍ରିୟାର ଅନୁଶାସନ ଅଛି କି ?

ରତିକ୍ରିୟାର ଜଟିଳ ବ୍ୟାଖ୍ୟା ଛାଡ଼ି ବିଷୟଟି ସରଳ ଭାବେ ଦେଖାଯାଇପାରେ, ପଥର ହିଁ ସେ କଥା କହୁଛି । ଫଟୋ-୪୬କ, ପୃଷ୍ଠା-୧୬୭ ଦେଖାଯାଉ । ନାରୀ ପୁରୁଷ ଯୌନ କ୍ରିୟାରତ, ପୁରୁଷଟି ସ୍ତ୍ରୀର ଲୁଗା ଖୋଲୁଛି, କ୍ଷୁଦ୍ର ସନ୍ତାନଟିଏ ମା'ର ଗୋଡ଼ ଧରି ଛିଡ଼ା ହୋଇଛି, କେହି କିଛି ଅସଙ୍ଗତି ଦେଖୁ ନାହାନ୍ତି । ଏପରିକି ଛୋଟ ପିଲାଟି ମୁହଁରେ ମଧ୍ୟ ଗୋପନୀୟ କିଛି ଦେଖୁଥିବାର ପ୍ରତିକ୍ରିୟା ଫୁଟି ଉଠୁ ନାହିଁ । ଏପରି ଆଉ ଗୋଟିଏ ଭାସ୍କର୍ଯ୍ୟ (୪୬-କ) । ଜୀବନର ଆଉ ପାଞ୍ଚଟା କର୍ମ ଭଳି ଏହା ମଧ୍ୟ ଗୋଟିଏ ପ୍ରୟୋଜନୀୟ କାର୍ଯ୍ୟ, ସେଥିରେ ସେ ଯୁଗର ମାନସିକତାରେ ବିକାର ଆସି ନାହିଁ । (ଫଟୋ- ୪୬ଖ ଓ ଛ) ଦେଖନ୍ତୁ । ଦୈହିକ ମିଳନର ଚରମ ମୁହୂର୍ତ୍ତରେ କ୍ରିୟାରତ ନର-ନାରୀ, ବିଶେଷ ରୂପେ ନାରୀ ମୁଖରେ ଅନାବିଳ ସ୍ୱର୍ଗୀୟ ଆନନ୍ଦ ଫୁଟି ଉଠିଛି ଯାହା କାଳର କରାଳ ଗ୍ରାସ ମଧ୍ୟ ହରଣ କରି ପାରିନାହିଁ ।

ଯୁଦ୍ଧ ଅଶ୍ୱ ଓ ରଣ ହସ୍ତୀ ବିଷୟରେ ଅନେକ କିଛି ଲେଖା ସରିଛି । ଦକ୍ଷିଣ ଦିଗର ସୋପାନ ଶ୍ରେଣୀ ଓଲଟା ଦିଗରେ ପ୍ରାୟ ବେଢ଼ାକୁ ଲାଗି ଯୋଡ଼ିଏ ନବନିର୍ମିତ ଉଚ୍ଚ ପୀଠ ଉପରେ ବସା ଯାଇଛି ଅଶ୍ୱଦ୍ୱୟ । ଗବେଷକମାନଙ୍କ ମତ, ପୂର୍ବରୁ ଘୋଡ଼ା ଏବଂ ହାତୀ ବର୍ତ୍ତମାନ ଯେଉଁଠାରେ ଅଛି ସେହିଠାରେ ଥିଲା, ତେବେ ମୁହଁ ଥିଲା ଓଲଟା ଦିଗକୁ । ହାତୀ ଦୁଇଟି ଉତ୍ତର ସୋପାନ ଶ୍ରେଣୀର ଓଲଟା ପଟେ ବେଢ଼ାକୁ ଲାଗି ବସାଯାଇଛି । 'ସୁଦେହୀ' କଥା ୧୩୭ ପୃଷ୍ଠାରେ କୁହାଯାଇଛି, ଏଠାରେ ଆଉ ପରିଚୟ ଦୋହରେଇବାର ପ୍ରୟୋଜନ ନାହିଁ । ଏଇ ହାତୀର ଅନ୍ୟ ଗୋଟିଏ ରୂପ ଦେଖିବାକୁ ମିଳିବ ଭଗ୍ନ ବିମାନ ଗାତ୍ରରେ । ପୀଠ ପରିକ୍ରମା ଶେଷ କରି ପୂର୍ବ ଦିଗର ସୋପାନର ଉତ୍ତର ଦିଗରେ ପହଞ୍ଚିଲା ବେଳକୁ ଅପେକ୍ଷା କରିଥିବ ଗୋଟିଏ ଦୁଃଖଦାୟକ ଦୃଶ୍ୟ । ଏ ପଟେ ସପ୍ତ ଅଶ୍ୱ ମଧ୍ୟରୁ ତିନିଟିର ସ୍ଥାନ ଥିଲା । ଧ୍ୱଂସ ପାଇଯାଇଥିବା ସେ ମୂର୍ତ୍ତିର ଖଣ୍ଡ ଖଣ୍ଡ କେତୋଟି ଅଂଶ ଆଣି ଗୋଟିକ ଉପରେ ଆଉ ଗୋଟିଏ ଥୁଆ ହୋଇଛି । ଦିଶୁଛି ବିକଟ କବନ୍ଧ ଭଳି । (ଫଟୋ- ୪୮)




ଫଟୋ-୪୮ : ଉତ୍ତର ପଟର ଅଶ୍ୱତ୍ରୟ

## ମନ୍ଦିର ପରିକ୍ରମା :

ଏବେ ମୂଳ ମନ୍ଦିର ପରିକ୍ରମା ଆରମ୍ଭ କରାଯାଇପାରେ । ପୂର୍ବଦିଗର ସୋପାନରେ ପାଦ ଥୋଇ ସମ୍ମୁଖରେ ଦେଖି ପାରିବେ ବିଶାଳ ଜଗମୋହନ, ଉପରେ କଳସ ନାହିଁ, ତଳ ଓ ଉପରଜଙ୍ଘାର ଅଧିକାଂଶ ମୂର୍ତ୍ତି ଲୋପ ପାଇଯାଇଛି । ବର୍ତ୍ତମାନ ସେ ସବୁ ଶୂନ୍ୟ ସ୍ଥାନରେ ଦୃଷ୍ଟି କଟୁ ଭାବେ ସାଦା ପଥର ବସାଯାଇଛି । (ଫଟୋ-୪୯ କ ,ଖ)

ଫଟୋ-୪୯(କ) : ପୂର୍ବ ଦିଗରୁ ଜଗମୋହନ

ଫଟୋ-୪୯(ଖ) : ଜଗମୋହନ ବାଡ଼ର ଦକ୍ଷିଣପଟ



ଫଟୋ-୫୦ : ତୃତୀୟ ପୃଷ୍ଠ

ପ୍ରଥମ ପୃଷ୍ଠ ବାରଣ୍ଡା ଉପରେ ୧୨' ଠାରୁ ୧୫' ଭିତରକୁ ୨'-୪'' ଉଚ୍ଚର ଦ୍ୱିତୀୟ ପୃଷ୍ଠ (ଖୁର ପୃଷ୍ଠ) । ଏହାକୁ ଅନେକେ ମନ୍ଦିର ବାଡ଼ର ଅଂଶ ବିଶେଷ ଭାବି ଥାଆନ୍ତି କାରଣ, ଏହା ଉପର ବାରଣ୍ଡା ପାଭାଗ ଯାଏ ମାତ୍ର ୨'' ଠାରୁ ଫୁଟେ ଓସାର । ଖୁରପୃଷ୍ଠର ଉଚ୍ଚତା ଜଗମୋହନ ଏବଂ ବିମାନ ଦୁହିଁଙ୍କ ପାଇଁ ଏକା, କିନ୍ତୁ ବିମାନର ଉଚ୍ଚତା ଜଗମୋହନ ଠାରୁ ଅଧିକ ହୋଇଥିବାରୁ ମୂଳ ପାଞ୍ଚ ଭାଗର ଉଚ୍ଚତାରେ ମଧ୍ୟ ତଫାତ୍ ଅଛି । ଉଦାହରଣ ସ୍ୱରୂପ କୁହାଯାଇପାରେ, ଜଗମୋହନର ପାଭାଗ ୧୦'-୧୧'' ହୋଇଥିବା ସ୍ଥଳେ (ଚିତ୍ର ନଂ. ୧୦ ଓ ୯) ବିମାନର ପାଭାଗ ୧୩'-୬'', ଏ ଅମେଳ 'ଗଇଣ୍ଡାଳ'ରେ (ଜଗମୋହନ ଏବଂ ବିମାନକୁ ଯୋଗ କରୁଥିବା vestibule) ଏଭଳି ମିଶାଯାଇଛି, ହଠାତ୍ ନଜରରେ ପଡ଼ିବ ନାହିଁ ।

ଦ୍ୱିତୀୟ ପୃଷ୍ଠରେ ତିନି କାମ କଥା ସମସ୍ତେ କହି ଥାଆନ୍ତି, କିନ୍ତୁ ପ୍ରକୃତରେ ଏହା ଅଢ଼େଇ କାମ ଧରାଯିବା ଉଚିତ; ଏପରି ଗଠନ କୋଣାର୍କର ଅନ୍ୟତ୍ର ଦେଖାଯାଏ ନାହିଁ । (ଫଟୋ-୫୦ ଦେଖନ୍ତୁ) ପ୍ରକୃତରେ ଏହା ଗୋଟାକ ଉପରେ ଆଉ ଗୋଟେ ଖୁର ଏବଂ ମଝିରେ ଜାଲି କାମ (ଥିବା କଥା, ବର୍ତ୍ତମାନ ପ୍ରାୟ ଦେଖାଯାଏନା), ଉପର ଖୁର ଉପରକୁ କିଛି ଭିତରକୁ ବସନ୍ତ । ଏଥିରେ କିନ୍ତୁ ଅନ୍ୟାନ୍ୟ ବସନ୍ତ ଭଳି ଡାଳି କାମ ନାହିଁ, ଅଛି ଧାଡ଼ି ଧାଡ଼ି ଓଲଟା ପଦ୍ମ ପାଖୁଡ଼ା । ଖୁରଗୁଡ଼ିକ ଉପରେ ତଳମୁହାଁ ପଦ୍ମ ପାଖୁଡ଼ା ଏବଂ ମୁହାନ୍ତି ଉପରେ ମଧ୍ୟ ପଦ୍ମପାଖୁଡ଼ା ଅଛି । ମନେହୁଏ ସ୍ଥପତି, ଦ୍ୱିତୀୟ ପୃଷ୍ଠର ସ୍ୱାତନ୍ତ୍ର୍ୟ ବଜାୟ ରଖିବାର ଯଥାସାଧ୍ୟ  ଚେଷ୍ଟା କରିଛନ୍ତି କିନ୍ତୁ ବିଶାଳ ପ୍ରଥମ ପୃଷ୍ଠ ଓ ତାହା ଉପର ଚଉଡ଼ା ବାରଣ୍ଡା ଏ ସ୍ୱଳ୍ପୋଚ୍ଚ ପୀଠକୁ ତାହା ହେବାକୁ ଦେଇନାହିଁ । ଦ୍ୱିତୀୟ ପୃଷ୍ଠ, ମନ୍ଦିର ବାଡ଼ ସହିତ ପ୍ରାୟ ମିଶି ଯାଇଛି ।

## ସିଂହଦ୍ୱାର :

ପୂର୍ବ ଦିଗର ସୋପାନ ଚଢ଼ି ଉପରକୁ ଉଠିଗଲେ ପ୍ରଥମେ ପଡ଼ିବ ସିଂହଦ୍ୱାର, ଜଗମୋହନର ଚାରିଟି ଦ୍ୱାରର ପୂର୍ବଦ୍ୱାର । (ଫଟୋ- ୫୧ ଓ ୫୨) । ଏଥିରେ ଦର୍ଶନୀୟ, ୬ ଫୁଟ୍ ଓସାର ଦ୍ୱାରବନ୍ଧ ଉପରେ ଆଠଟି କାରୁକାର୍ଯ୍ୟପୂର୍ଣ୍ଣ ପଟି (ବନ୍ଧ) । ବନ୍ଧଗୁଡ଼ିକ ଗୋଟିଏ ସମତଳରେ ନାହିଁ । ଦ୍ୱାର ବନ୍ଧ ଦୁଇପଟେ ପ୍ରଥମ ସାତଟି ବନ୍ଧ ତଳେ ସାତଟି ମୂର୍ତ୍ତି ଥିଲେ । ସେଥିରୁ ବାମପଟ ଚାରି ଓ ପାଞ୍ଚ ନମ୍ବର ବନ୍ଧ ତଳ ମୂର୍ତ୍ତି ଲୋପ ପାଇଛି । ବନ୍ଧପଟିର କାମ ଓ ମୁଣ୍ଡପଟିର କାମ ସବୁ କ୍ଷେତ୍ରରେ ସମାନ ନୁହେଁ ।



୭ ୬ ୫ ୪ ୩ ୨ ୧    ଫଟୋ-୫୧ : ସିଂହଦ୍ୱାର ବନ୍ଧ    ୧ ୨ ୩ ୪ ୫ ୬ ୭




ଫଟୋ-୫୨(କ) : ଦ୍ୱାରବନ୍ଧର ତଳକାର୍ଯ୍ୟ (୭ପଟି)

## ସାରଣୀ ନଂ.୧୪

| ସ୍ତମ୍ଭ ସଂଖ୍ୟା | ପାଦ ଅଞ୍ଚଳ | ଦାଣ୍ଡି କାମ | ମୁଣ୍ଡି କାମ | ମୁଣ୍ଡି ମଧ୍ୟ ବନ୍ଧନ |
|---|---|---|---|---|
| ୧ | ରାକ୍ଷସ | ବନଲତା | ଦାଣ୍ଡି ସମାନ | ଗଜଲକ୍ଷ୍ମୀ |
| ୨ | ନାଗଦେବ | ନାଗବନ୍ଧନ | ଦାଣ୍ଡି ସମାନ | ତପସ୍ୱୀ |
| ୩ | ନାରୀମୂର୍ତ୍ତି | ମିଥୁନ ଓ ଚୈତ୍ୟ | ବାଦ୍ୟରତା କିନ୍ନରୀ | ତପସ୍ୱୀ |
| ୪ | ଯୋଡ଼ି କିନ୍ନର* | ଗେଲାବି # | ବାଦ୍ୟଯନ୍ତ୍ର ସହ | ତପସ୍ୱୀ |
| ୫ | ନାରୀମୂର୍ତ୍ତି* | କୀର୍ତ୍ତିମୁଖ ## | ନୃତ୍ୟ, ବାଦ୍ୟରତ | ତପସ୍ୱୀ |
| ୬ | ପୁରୁଷ ମୂର୍ତ୍ତି | ମିଥୁନ ଓ ଚୈତ୍ୟ | ସଙ୍ଗୀତ ବିଶାରଦ | ତପସ୍ୱୀ |
| ୭ | ପୁରୁଷ ମୂର୍ତ୍ତି | ବଡ଼ଝାଞ୍ଜି ### | ବଡ଼ ଝାଞ୍ଜି | ତପସ୍ୱୀ |
| ୮ | ଗାଭୀ ସହିତ ପୁରୁଷ | ପଦ୍ମ ପାଖୁଡ଼ା | ପଦ୍ମପାଖୁଡ଼ା | ପଦ୍ମପାଖୁଡ଼ା |

* - ବାମ ବନ୍ଧ ତଳେ କାମ କେହି ଖୋଳି ନେଇଛି ।

# - ଲତା ମଧ୍ୟରେ ନରନାରୀ, ବାଳକ, ବାଳିକା । ଏହାକୁ 'ମନୁଷ୍ୟ କୌତୁକ' ମଧ୍ୟ କୁହାଯାଇଥାଏ ।

### - ଊର୍ଦ୍ଧ୍ୱ ମୁଖ ପତ୍ର ଉପରେ ଅମଳକୀ । ପାଦ ଅଞ୍ଚଳର ମୂର୍ତ୍ତିଗୁଡ଼ିକ ଉପରେ ବଜ୍ରମୁଣ୍ଡି । ପଦ୍ମପତ୍ର ବନ୍ଧ ଉପରେ ନବଗ୍ରହ ଶିଳା ବସିଥିଲା ।



ଫଟୋ-୫୨(ଖ) : ଦ୍ୱାରବନ୍ଧର ମସ୍ତକ କାର୍ଯ୍ୟ



ଫଟୋ-୫୨(ଗ) : ଦ୍ୱାରବନ୍ଧର (୮ ପଟି)



ଫଟୋ-୫୨(ଘ) : ଦ୍ୱାରବନ୍ଧର ପୂର୍ଣ୍ଣ କାର୍ଯ୍ୟ

## ନବଗ୍ରହ ଶିଳା :

ସବୁ ଦ୍ୱାରବନ୍ଧ ଉପରେ ଲୁହାକଡ଼ି ଉପରେ ନବଗ୍ରହଙ୍କ ବିଗ୍ରହ ବସା ଯାଇଥିଲା । ସେ କଡି କିନ୍ତୁ ବାହାରୁ ଦିଶୁ ନଥିଲା ।[୨୭୦] ମୂଳ ନବଗ୍ରହ ବିଗ୍ରହର ଚିତ୍ର, ପୂର୍ବେ ତୋଳା ହୋଇଥିବା କିଛି ଚିତ୍ର (ଫଟୋ-୫୩) ଉପସ୍ଥାପିତ ହେଲା । ଏମାନେ, ବାମରୁ ଡାହାଣକୁ – ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଏବଂ କେତୁ ।[୨୭୧] ହିନ୍ଦୁ ମାନସିକତାରେ ମଣିଷ ଜୀବନ ଉପରେ ଗ୍ରହନକ୍ଷତ୍ରର ପ୍ରଭାବ ଅସୀମ । ତେଣୁ ମନ୍ଦିର ପ୍ରବେଶର ସବୁ ଦୁଆର ଉପରେ ଏମାନେ ସ୍ଥାନ ପାଇ ଥାଆନ୍ତି । ପୂର୍ବ ଦିଗର ନବଗ୍ରହ ଶୀଳା ସ୍ଥାନାନ୍ତରିତ କରିବାର ଅପଚେଷ୍ଟା ଓ ଅନ୍ୟଗୁଡ଼ିକର ଲୁଣ୍ଠନର ଇତିହାସ ପୂର୍ବରୁ ବର୍ଣ୍ଣିତ ହୋଇଛି ।

ଜଗମୋହନ ପଞ୍ଚରଥ ଗଠନ । ଚାରି ରହପାଗ ଉପରେ ଚାରିଟି ଦ୍ୱାର ଓ ତାହାର ନିଜସ୍ୱ ଅଳଙ୍କରଣ ଥିବାରୁ ଏବଂ ପଶ୍ଚିମ ଦିଗର ରହପାଗ ଗଇଣ୍ଠାଳ ସହିତ ମିଶି ଯାଇଥିବାରୁ ପାଭାଗ, ବନ୍ଧନ, ବାରଣ୍ଡୀ, ଜଙ୍ଘା ଇତ୍ୟାଦିର କାମ ଏହା ଉପରେ ରହେ ନାହିଁ । ତଳଜଙ୍ଘା ଓ ଉପର ଜଙ୍ଘାର କାମ ଥାଏ ଅନର୍ଥ ଏବଂ କୋଣ ପାଗ ଓ ତାହାର ଉପବିଭାଗମାନଙ୍କ ଉପରେ ।



**ଫଟୋ-୫୩(କ) : ପତିତ ନବଗ୍ରହ ଶୀଳା**



**ଫଟୋ-୫୩(ଖ) : ଅପସାରଣ ଚେଷ୍ଟା ବ୍ୟର୍ଥ ହେବା ପରେ ସଂରକ୍ଷିତ ନବଗ୍ରହ (୧୮୯୩)**



ରେଖାଚିତ୍ର-୧୫ : ଜଗମୋହନର ବାଡ଼

## ମନ୍ଦିରର ବାଡ଼ :

ବାଡ଼ର ପ୍ରଥମ ବିଭାଗ ପାଭାଗ । ଏହାର ପାଞ୍ଚ ଉପ ବିଭାଗ, ଅନ୍ୟଥା ହୋଇନାହିଁ- ଖୁର, କୁମ୍ଭ, ପଟ, କଣି, ବସନ୍ତ । (ରେଖାଚିତ୍ର ୧୫ ଓ ଫଟୋ ୪୯-ଖ, ପୃଷ୍ଠା-୧୭୧ ଦେଖନ୍ତୁ) ଏଥିରେ ସେଇ ଚିରାଚରିତ ଓଲଟା ପଦ୍ମ ପତ୍ର କିନ୍ତୁ ମୁହନ୍ତିରେ କିଛି ବୈଚିତ୍ର୍ୟ ଅଛି । କୁମ୍ଭରେ ମଧ୍ୟ କାମ କିଛି ନାହିଁ । ପଟରେ ବନଲତା, କଣି ବହୁ ସ୍ଥାନରେ ଅଦୃଶ୍ୟ, ବସନ୍ତରେ ବନଲତା ଅଛି । ଜଗମୋହନ ବାଡ଼ ପାର୍ଶ୍ୱଚିତ୍ର ବାମ ପଟେ ଉପସ୍ଥାପିତ ହେଲା ।

ମଧ୍ୟ ବନ୍ଧନରେ ପାଞ୍ଚ କାମ - ଭରାଣି, ନୋଳି, ପଟ, ନୋଳି, ବସନ୍ତ । New light on the Sun Temple ର Glossary of architectural terms ରେ ଭରାଣି ଓ ନୋଳି ଶବ୍ଦଦ୍ୱୟ ନାହିଁ । 'ଭରଣ' ଗୋଟିଏ ଶବ୍ଦ ଅଛି ଯାହାର ଅର୍ଥ tenon ଅର୍ଥାତ୍ ପୁଚ୍ଛ ଭଳି ଗୋଟିଏ ବସ୍ତୁ ଯାହା ଦେବାଲ, କବାଟ ଇତ୍ୟାଦି ଭିତରେ ଥାଇ ବାହାର ଅଂଶକୁ ଶୂନ୍ୟରେ ଝୁଲେଇ ରଖେ, ଯଥା ବିମାନ ଗାତ୍ରରେ ବହୁ ଉଚ୍ଚରେ ଥିବା ଗଜସିଂହ । ଯେଉଁ ପ୍ରଥମ ଉପବିଭାଗକୁ ଭରାଣି କୁହାଯାଇଛି ତାହା ପଟ ଛଡ଼ା ଅନ୍ୟ କିଛି ନୁହେଁ । ନୋଳି, ଯେପରି ପୂର୍ବରୁ କୁହାଯାଇଛି । କଣି ଗୋଜ ଉପରେ ଧାଡ଼ିଏ ମାଳା, ପଟ, ବସନ୍ତ ନାନା ଲତା କାମରେ ସଜା ହୋଇଛି ।

**ବାରଣ୍ଡାରେ ଦଶକାମ** - ଭରାଣି (ପଟ), ଫେଣି, ନୋଳି, ପଟ, ପଟ, ନୋଳି, ପଟ, ପଟ ନୋଳି ଓ ବସନ୍ତ । ଫେଣି ଉପ ବିଭାଗଟି ପ୍ରଥମେ ନଜରକୁ ଆସୁଛି । ଏହା ଗୋଟିଏ ଶାସ୍ତ୍ରୀୟ ନାମ ଯାହାର ଅର୍ଥ ସାପଫଣା ଭଳି ଗୋଟିକ ପରେ ଗୋଟେ ଫଣା ଯାହା ଉପରେ ପଦ୍ମପତ୍ର କାମ ଥିବ । ବହୁ ଉଚ୍ଚରେ ଥିଲେ ମଧ୍ୟ ବିଷୟଟି ବୋଧଗମ୍ୟ ହେଉଛି ।

## ଦିକ୍‌ପାଳ ଅଥବା ଦିକ୍‌ପତି :

ଏମାନଙ୍କ ସ୍ଥାନ ଆଠ ଅନର୍ଥପାଗ ଉପରେ ଗୋଟିଏ ଗୋଟିଏ କଖିରମୁଣ୍ଡି ମଧ୍ୟରେ । ଏମାନେ ଗୋଟିଏ ଗୋଟିଏ ଦିଗର ପ୍ରତିଭୂ । ଯଦିଓ ଏମାନେ ଗୋଟିଏ ଗୋଟିଏ ଦିଗର ପ୍ରତିଭୂ, ମନ୍ଦିର ଗାତ୍ରରେ ସେମାନଙ୍କ ସ୍ଥାନ ଠିକ୍ ସେଇ ଦିଗର cardinal axisରେ ନ ରହିପାରେ । ବିଷୟଟି ନିମ୍ନରେ ଉପସ୍ଥାପିତ ସାରଣୀରୁ ପରିଷ୍କାର ହେବ । ମନ୍ଦିର ଦିଗକୁ ମୁହଁକରି ଦେଖନ୍ତୁ ।


ଫଟୋ-୫୪(କ) : ଅଗ୍ନି


ଫଟୋ-୫୪(ଖ) : ବରୁଣ

## ସାରଣୀ ନଂ -୧୫

# ଦିକ୍‌ପାଳମାନଙ୍କର ସ୍ଥାନ

| ଦିଗପତି | କେଉଁଦିଗର ପ୍ରତିଭୂ | କେଉଁ ଦିଗରୁ ଦେଖାଯାଉଛି | କେଉଁଠାରେ ଅଧିଷ୍ଠାନ* | ବାହନ |
|---|---|---|---|---|
| ଇନ୍ଦ୍ର | ପୂର୍ବ | ପୂର୍ବ | ପୂର୍ବ-ଦକ୍ଷିଣ ଅନର୍ଥ ପାଗ | ହସ୍ତୀ |
| ଅଗ୍ନି | ଦକ୍ଷିଣ-ପୂର୍ବ | ଦକ୍ଷିଣ | ଦକ୍ଷିଣ-ପୂର୍ବ ଅନର୍ଥ ପାଗ | ମେଣ୍ଢା |
| ଯମ | ଦକ୍ଷିଣ | ଦକ୍ଷିଣ | ଦକ୍ଷିଣ-ପଶ୍ଚିମ ଅନର୍ଥ ପାଗ | ମହିଷ |
| ନୈରତ | ଦକ୍ଷିଣ-ପଶ୍ଚିମ | ପଶ୍ଚିମ | ପଶ୍ଚିମ-ଦକ୍ଷିଣ ଅନର୍ଥ ପାଗ | ମନୁଷ୍ୟ ଦେହ |
| ବରୁଣ | ପଶ୍ଚିମ | ପଶ୍ଚିମ | ପଶ୍ଚିମ-ଉତ୍ତର ଅନର୍ଥ ପାଗ | ମଗର |
| ବାୟୁ | ଉତ୍ତର-ପଶ୍ଚିମ | ଉତ୍ତର | ଉତ୍ତର-ପଶ୍ଚିମ ଅନର୍ଥ ପାଗ | ହରିଣ |
| କୁବେର | ଉତ୍ତର | ଉତ୍ତର | ଉତ୍ତର-ପୂର୍ବ ଅନର୍ଥ ପାଗ | ୭ଟି ରତ୍ନକୁମ୍ଭ |
| ଈଶାନ (ମହାଦେବ) | ଉତ୍ତର-ପୂର୍ବ | ପୂର୍ବ | ପୂର୍ବ-ଉତ୍ତର ଅନର୍ଥ ପାଗ | ଷଣ୍ଢ |

*ମନ୍ଦିର ଦିଗକୁ ମୁହଁ କରି ଦେଖନ୍ତୁ ।

ମନ୍ଦିର ପରିକ୍ରମା କରିବା ସମୟରେ ବିଷୟଟି ମନରେ ରଖିଲେ ଚିହ୍ନଟ କରିବାରେ ଅସୁବିଧା ହେବ ନାହିଁ । ଅଗ୍ନିପୁରାଣରେ ଦିକ୍‌ପାଳ ବନ୍ଦନା ପାଇଁ ନିମ୍ନୋକ୍ତ ଶ୍ଳୋକଟି ରଚିତ ହୋଇଥିଲା ।

''କୁତ୍‌ମୋଷ୍ଵା ବାହ୍ୟ ଶକ୍ରାଦୀନଂ ପୂର୍ବାଦୌ ପୂଜୟେତ୍ କ୍ରମାତ୍ ।
ଇନ୍ଦ୍ରାଗଚ୍ଛ ଦେବରାଜ ବଜ୍ରହସ୍ତ ଗଜସ୍ଥିତ ॥
ପୂର୍ବଦ୍ଵାରଞ୍ଚ ମେ ରକ୍ଷ ଦେବୈଃ ସହ ନମୋଽସ୍ତୁତେ ।
ତ୍ରାତାରମିନ୍ଦ୍ରମନ୍ତ୍ରେଣ ଅଂଚୟିତ୍ଵା ଯଜେଦ୍ଧୁଧଃ ॥
ଆଗଚ୍ଛାଗ୍ନେ ଶକ୍ତିଯୁତ ଛାଗସ୍ଥ ବଳସଂଯୁତ ।
ରକ୍ଷାଗ୍ନେୟୋ ଦିଂଶ ଦେବୈଃ ପୂଜାଂ ଗୃହ୍ଣ ନମୋଽସ୍ତୁତେ ॥
ଅଗ୍ନିମୂର୍ଦ୍ଧେତି ମନ୍ତ୍ରେଣ ଯଜେଦ୍ଵା ଅଗ୍ନୟେ ନମଃ ।
ମହିଷସ୍ୟ ସମାଗଚ୍ଛ ଦଣ୍ଡହସ୍ତ ମହାବଳ ॥
ରକ୍ଷତ୍ଵଂ ଦକ୍ଷିଣଦ୍ଵାରଂ ବୈବସ୍ଵ ତ ନମୋଽସ୍ତୁତେ ।
ତ୍ରୈବସ୍ଵତଂ ସଙ୍ଗମନ ମିତ୍ୟନେନ ଯଜେତ୍ଵ ଯମମ୍ ॥
ନୈର୍ରୃତାଗଚ୍ଛ ଖଡ୍‌ଗାଢ଼୍ୟ ବଳବାହନ ସଂଯୁତ ।
ଇଦମଧ୍ୟଂ ମିଦ୍ୟଂ ପାଦ୍ୟଂ ରକ୍ଷତ୍ଵଂ ନୈରତୌ ଦିଶମ୍ ॥
ଏଷ ତେ ନୈର୍ରୃତ ଦୃତି ଯଦେଦ୍‌ର୍ଘ୍ୟଦିଭିଃର୍ଗୁରୁଃ ।
ମକରାରୁଢ଼ ବରୁଣ ପାଶହସ୍ତ ମହାବଳ ॥
ଆଗଚ୍ଛ ପଶ୍ଚିମ ଦ୍ଵାରଂ ରକ୍ଷ ରକ୍ଷ ନମୋଽସ୍ତୁତେ ।
ଉରୈ ହି ରାଜା ବରୁଣଂ ଯଜେଦ୍‌ଧ୍ୟାଦିତ୍ତିର୍ଗୁରୁଃ ॥
ଆଗଚ୍ଛ ବାୟୋ ସବଳ ଧ୍ଵଜହସ୍ତ ସବାହନ ।
ଜାୟମ୍ୟଂ ରକ୍ଷ ଦେବୈସ୍ଵଂ ସମରୁହ୍ନିନ ନମୋଽସ୍ତୁତେ ॥
ବାତ ଇତ୍ୟାଦିଭିଷ୍ଠାର୍ଚ୍ଚେଦୌଂ ନମୋ ବାୟବେଽପି ବା
ଆଗଚ୍ଛ ସୋମ ସବଳ ଗଦାହସ୍ତ ସବାହନ ॥ ''(୨୭୨)

ଉପରଜଙ୍ଘାରେ, ପ୍ରତିଟି ଦିକ୍‌ପାଳ ଉପରେ ଗୋଟିଏ ଗୋଟିଏ ପୀଢ଼ ମୁଣ୍ଡି ମଧ୍ୟରେ ସେମାନଙ୍କର ଶକ୍ତିମାନେ ଅଧିଷ୍ଠିତା ଥିଲେ । ଦୁଃଖର ବିଷୟ ଦିକ୍‌ପାଳ ଓ ସେମାନଙ୍କ ଶକ୍ତି ଗୋଟିଏ ହେଲେ ସ୍ୱସ୍ଥାନରେ ନାହାଁନ୍ତି । ଧ୍ୱଂସସ୍ତୂପରୁ ଖୋଜା ଲୋଡ଼ା କରି କିଛି ସ୍ଥାନ ପାଇଛି ମ୍ୟୁଜିୟମ୍‌ରେ ବାକି ସବୁ ଗଲେ କୁଆଡ଼େ ? ବିପର୍ଯ୍ୟୟ କ'ଣ ବାଛି ବାଛି ଏଇ ମୂର୍ତ୍ତିଗୁଡ଼ିକୁ ଧ୍ୱଂସ କଲା ! ସେମାନେ ହୁଏତ ଏବେ ମଧ୍ୟ ମିଳିପାରନ୍ତି ଆଖ ପାଖ ଗ୍ରାମ ମନ୍ଦିରମାନଙ୍କରେ ଖୋଜା ଲୋଡ଼ା କଲେ । କେତେକ ମୂର୍ତ୍ତି ବିଦେଶ ଚାଲାଣ ହୋଇଯାଇଥିବା ସମ୍ଭବ ।

ପୂର୍ବ ପଟ ବାଡ଼ର ତଳ ଓ ଉପରଜଙ୍ଘାରେ ବଡ଼ ମାପର ମୂର୍ତ୍ତି ମିଳୁଛି ଦୁଇଟି ନାରୀ ସହିତ ରତି କ୍ରୀଡ଼ାରେ ମଗ୍ନ ଗୋଟିଏ ନର । ଗୋଟିଏ ଅପୂର୍ବ ସୁନ୍ଦର ମିଥୁନ ଗୋଟିଏ ଗଜ ସିଂହ, ଗୋଟିଏ ଭୟାଳ, ଯୋଡ଼ିଏ ମିଥୁନ ଏବଂ ଆଉ ଗୋଟିଏ ଗଜ ସିଂହ । ଏହାଛଡ଼ା ଅନୁରଥମାନଙ୍କରେ ସରୁଆ ପଟି ଉପରେ ଅଛି ଅନେକ ଗୁଡ଼ିଏ **miniature** ଭାସ୍କର୍ଯ୍ୟ ଯାହାର ବିଷୟ ମଧ୍ୟ ରତିରଙ୍ଗ । ନଗ୍ନତାକୁ ବାଦ୍ ଦେଇ ଦେଖିଲେ ପ୍ରତିଟି **miniature** ଉତ୍କୃଷ୍ଟ ଶିଳ୍ପ ।

ଜଗମୋହନର ପୂର୍ବ ଦିଗରୁ ଦକ୍ଷିଣ ଦିଗକୁ ମୋଡ଼ ନେଲେ ଅଧିକ ଆଗେଇ ପାରିବେ ନାହିଁ । ପ୍ରାୟ ଅନର୍ଥପାଗ ଠାରୁ ଗଇଣ୍ଡାଳ ଟପି ବିମାନର ଅନର୍ଥ ପାଗ ଯାଏ ଲୁହା ପାଇପରେ ପିଞ୍ଜରା ଭଳି ବାନ୍ଧି ରଖିଛନ୍ତି **ASI** ବହୁ ବର୍ଷ ଧରି । ଖସି ପଡ଼ିଥିବା ପଥର ଖଣ୍ଡ ସେ ପିଞ୍ଜରାରେ ଲାଖି ରହିଥିବା ନଜରକୁ ଆସିପାରେ । ଦକ୍ଷିଣ ବାଡ଼ର ଉପରଜଙ୍ଘାରେ ଦୁଇଟି ମୂର୍ତ୍ତି ମିଳୁଛି । ଅନୁରଥ ମଧ୍ୟରେ ଲୁହା ପାଇପ୍‌କୁ ଅଗ୍ରାହ୍ୟ କରି ମୈଥୁନ ମଗ୍ନ ନରନାରୀ ଓ ମିଳନପିୟାସୀ ନାରୀ, ତଳଜଙ୍ଘା ଓ ଉପରଜଙ୍ଘା ମିଶି ଆଠଟି ଛୋଟ ମୂର୍ତ୍ତି ଅଛି, ସବୁଗୁଡ଼ିକ ମିଥୁନ । ଦେବ ଦେବୀ ଅଥବା ଅନ୍ୟ କୌଣସି ମୂର୍ତ୍ତି ନାହିଁ । ମନ୍ଦିରର ଉତ୍ତରବାଡ଼କୁ ଆସିଲେ ପୁଣି ସେଇ ମିଥୁନ, ମୈଥୁନ, ଭୟାଳ, ଗଜସିଂହ ଇତ୍ୟାଦି ଦେଖାଯିବ । ଦେବଦେବୀ ମନ୍ଦିର ବାଡ଼ରୁ ଲୋପ ପାଇଯାଇଛି । କେତୋଟି ବିଷୟ ଉଲ୍ଲେଖଯୋଗ୍ୟ ।



ଫଟୋ-୫୫ : ଅଗ୍ରଣୀ ନାୟିକା

ଅନେକ ମୂର୍ତ୍ତି ସାଧାରଣ ମଣିଷ ମାପର ଏବଂ ରତି ଚର୍ଚ୍ଚା ହେଉନାହିଁ କୌଣସି ଅଳ୍ପାଲୋକିତ କୋଣରେ । ଅଳସୀ କନ୍ୟା ସ୍ୱାଭାବିକ ଭାବେ ଅପେକ୍ଷାରତ ଥାଏ ପ୍ରେମିକ ଆଗମନ ପାଇଁ । କିନ୍ତୁ ପ୍ରେମିକ ଆଗମନ ପରେ ମଧ୍ୟ ମୈଥୁନରତ ପ୍ରେମିକା, ସେଇପରି ଅଳସ ଭଙ୍ଗୀରେ ସ୍ଥିର । ପ୍ରେମିକର କାନ୍ଧ ଉପରେ ହାତ ରଖି ପ୍ରେମିକାର ନୀରବ ଅଭ୍ୟର୍ଥନା, ମନୋହାରୀ । ବହୁ ମିଥୁନ ମୂର୍ତ୍ତିରେ ନାରୀ, ପୁରୁଷକୁ ଅଧିକାର କରିଯାଇଛି - ବ୍ରୀଡ଼ା ନାହିଁ କି ଆବେଗର ଆଧିକ୍ୟ ନାହିଁ । ଫଟୋ-୫୫ର ମିଥୁନ ଯୋଡ଼ି ଭାସ୍କର୍ଯ୍ୟର ଆଉ ଗୋଟିଏ ଦିଗ ଉନ୍ମୁକ୍ତ କରୁଛି । କଠିନ ପଥର ଉପରେ ଯେପରି ରକ୍ତ ମାଂସର କୋମଳ ଶରୀର ଝଲସି ଉଠୁଛି । ଶିଳ୍ପ ଭାସ୍କର୍ଯ୍ୟ ଦୃଷ୍ଟିରୁ ଏ ମୂର୍ତ୍ତି, ପୀଢ଼ ଉପର ନୃତ୍ୟରତା ରମଣୀ ତଥା ଦେବ ଭାସ୍କରଙ୍କ ସହିତ ସମାସନେ ବସାଯାଇପାରେ । ଉତ୍ତର ବାଡ଼ ମଧ୍ୟରେ ପଡ଼ିବ ଉତ୍ତର ଦ୍ୱାର ଓ ବିଶାଳ ସୋପାନ । (ଫଟୋ-୫୬) ଏ ଆଲୋକ ଚିତ୍ର ଆଲୋଚିତ ହେବ ନାଟମଣ୍ଡପ ପରିକ୍ରମା ସମୟରେ । ଭଗ୍ନ ବିମାନ ଗଣ୍ଡିରେ ଧ୍ୱଂସସ୍ତୂପ ମଧ୍ୟରେ ଅକ୍ଷତ ଥିବା ଗୋଟିଏ ଭୟାଳ ଉଲ୍ଲେଖଯୋଗ୍ୟ; ଦେହ ସିଂହର, ମୁଣ୍ଡ ହସ୍ତୀର, ଶୁଣ୍ଢରେ ଧରିଛି ଗୋଟିଏ ମଣିଷକୁ । ଏ ମୂର୍ତ୍ତିଟି ଆଲୋଚିତ ହୋଇଛି ୧୩୬ ପୃଷ୍ଠାରେ । ମନ୍ଦିର ବାଡ଼ରେ ଆଉ ପାର୍ଶ୍ୱ ଦେବଦେବୀ ନାହାନ୍ତି କିନ୍ତୁ ଯାହା ଅଛି ତାହାର ଶିଳ୍ପଗତ ମୂଲ୍ୟ ମଧ୍ୟ କମ୍ ନୁହେଁ । କେତେକ ନିର୍ବାଚିତ ଚିତ୍ର ଫଟୋମାଳିକା ୫୭ରେ ଉପସ୍ଥାପିତ କରାଗଲା ।



ଫଟୋ-୫୬ : ଉତ୍ତର ଦ୍ୱାରବନ୍ଧ



ଫଟୋ-୫୭(କ) : ଛିଡ଼ା ସିଂହ



ଫଟୋ-୫୭(ଖ) : ସର୍ପଦେବୀ



ଫଟୋ-୫୭(ଗ) : ଗୃହେ ପ୍ରତ୍ୟାଗମନ ସ୍ୱାମୀ ସହ



ଫଟୋ-୫୭(ଘ) : ସୁହାଗିନୀ



ଫଟୋ-୫୭(ଚ) : ଦଶକର୍ମ ବାରଣ୍ଡି



ଫଟୋ-୫୭(ଛ) : ଦୁଇ ନାୟିକା



ଫଟୋ-୫୭(ଟ) : ଜଗମୋହନ ବାଡ଼ର ଉପରଜଙ୍ଘା



ଫଟୋ-୫୭(ଠ) : ନିସ ଦେଉଳର ବାଡ଼



ଫଟୋ-୫୭(ଡ଼) : ଅର୍ଦ୍ଧଭଗ୍ନ ନିସ ଦେଉଳ

## ନିସଦେଉଳ :

ନିସଦେଉଳ ଦ୍ୱିତଳ ହେଲେ ମଧ୍ୟ ଏହା ମୂଳତଃ ପାର୍ଶ୍ୱଦେବତାଙ୍କ ପାଇଁ ଉଦ୍ଦିଷ୍ଟ । ଏହାର ଗଠନଗତ ବର୍ଣ୍ଣନା ଦିଆଯାଇଛି ରେଖାଚିତ୍ର-୭, ୧୦୦ ପୃଷ୍ଠାରେ । ଦ୍ୱିତଳ ନିସଦେଉଳର ଉପର ମହଲା ଉପରୁ ପୀଢ଼ ଲୋପ ପାଇଯାଇଛି, ରହିଯାଇଛି ପାର୍ଶ୍ୱଦେବତାଙ୍କ ସ୍ଥାନ ଓ ଦର୍ଶନାର୍ଥୀମାନଙ୍କର ସମାବେଶର ସ୍ଥାନ । ନିସ ଦେଉଳର ଦୁଇଟି ବାଡ଼ଚିତ୍ର ଉପସ୍ଥାପିତ ହେଲା ଫଟୋ ସଂଖ୍ୟା ୫୭-(ଠ ଓ ଡ)ରେ ।

## ପାର୍ଶ୍ୱଦେବତା :

ଦକ୍ଷିଣ ପାର୍ଶ୍ୱଦେବତାଙ୍କ ଉଚ୍ଚତା ୮'-୨.୧/୨'' ଏବଂ ପଶ୍ଚିମ ପାର୍ଶ୍ୱଦେବତାଙ୍କ ଉଚ୍ଚତା ୯'-୬'' [୨୭୩] । ତେଣୁ ମୁଦ ଉପରୁ ନିସଦେଉଳ ମୁଣ୍ଡ ଅନ୍ତତଃ ୨୦' ଥିଲା; ଅର୍ଥାତ୍ ନିସ ଦେଉଳଗୁଡ଼ିକ ୩୦/୩୨ ଫୁଟ୍ ଉଚ୍ଚ ଥିଲା । ବିଶନ ସ୍ୱରୂପଙ୍କ ମତରେ ପୀଠ ଉପରୁ ନିସଦେଉଳର ଉଚ୍ଚତା ପ୍ରାୟ ୪୫' ଥିଲା ।[୨୭୪] ଏହା ଓଡ଼ିଶାର ଅନେକ ସମ୍ପୂର୍ଣ୍ଣ ମନ୍ଦିର ଉଚ୍ଚତା ଠାରୁ ଅଧିକ । ବର୍ତ୍ତମାନ ପୀଢ଼ ଅଂଶ ନାହିଁ । ଖୋଲି ଅଂଶ ନୂଆ କରି ଗଢ଼ା ଯାଇଛି କିନ୍ତୁ ଅଛି ୧୭'-୩'' ଲମ୍ବ ପୀଢ଼ ଛାତ, ଦୁଇ ପଟରୁ ଉଠି ଆସିଥିବା ପାହାଚ ଓ ବାଡ଼ର କିଛି ଭଗ୍ନ ଅଂଶ । ରେଖାଚିତ୍ର ନଂ.୭ ଦେଖନ୍ତୁ । ଲକ୍ଷଣୀୟ, ଉପର ଘର ତିନି ପଟେ ଯେଉଁ ତିନିଟି ଖୋଲା ଦ୍ୱାର ଅଛି ସେଥିରେ କବାଟ ନାହିଁ କି ସେଠାରୁ ତଳକୁ ପାହାଚ ନାହିଁ । ନିସ ମନ୍ଦିରଗୁଡ଼ିକ ପଞ୍ଚରଥ । ନିସଦେଉଳ ତଳ ଘରେ ଦେବଦେବୀ କିଛି ନାହାନ୍ତି ବର୍ତ୍ତମାନ । ଉତ୍ତର ଦିଗର ନିସଦେଉଳରେ, ମନେହୁଏ କୌଣସି ଦେବଦେବୀ ଆଦୌ ନ ଥିଲେ, କାରଣ ଏହା ଭିତର ଦେଇ ଗର୍ଭ ଗୃହର ପାଣି ନିର୍ଗତ ହେବାର ନାଳ ଅଛି ।

ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଦିଗର ପାର୍ଶ୍ୱଦେବତା ତ୍ରୟ କିଛି କ୍ଷତିଗ୍ରସ୍ତ ହୋଇଥିଲେ ମଧ୍ୟ ସ୍ୱସ୍ଥାନରେ ଅଛନ୍ତି; ଦକ୍ଷିଣ ଓ ପଶ୍ଚିମ ପାର୍ଶ୍ୱଦେବ ଦଣ୍ଡାୟମାନ କିନ୍ତୁ ଉତ୍ତର ପାର୍ଶ୍ୱଦେବ ଅଶ୍ୱାରୂଢ଼ । ତିନିଟି ଯାକ



ଫଟୋ-୫୮ : ଜଗମୋହନର ବିଶାଳ ବାଡ଼

ସୂର୍ଯ୍ୟ ମୂର୍ତ୍ତି ମୁଗୁନି ପଥରରେ ତିଆରି ଏବଂ ମାପରେ ବିଶାଳ ହେଲେ ମଧ୍ୟ ସୂକ୍ଷ୍ମ ଓ କାଳ୍ପନିକ ଭାସ୍କର୍ଯ୍ୟର ନିଖୁଣ ନିଦର୍ଶନ । ମୂର୍ତ୍ତିଗୁଡ଼ିକର ଶାସ୍ତ୍ରୀୟତା ବିଚାର କରିବାକୁ ମନମୋହନ ଗାଙ୍ଗୁଲୀ, ଦକ୍ଷିଣ ଓ ପଶ୍ଚିମ ଦିଗର ମୂର୍ତ୍ତି ଦୁଇଟିର ମାପ ନେଇ ସ୍ଥିର କରିଥିଲେ ଯେ ମୂର୍ତ୍ତିଗୁଡ଼ିକ ଶୁକ୍ର ନୀତି ଅନୁଯାୟୀ ଗଠିତ ହୋଇଛି ।[୨୨୫] ମାପଗୁଡ଼ିକ ସହ ଏହା ଆଲୋଚିତ ହୋଇଛି ୧୪୩ ପୃଷ୍ଠାରେ । ମୂର୍ତ୍ତିଗୁଡ଼ିକର ଶିଳ୍ପଗତ ମୂଲ୍ୟାୟନ ମଧ୍ୟ ହୋଇଛି ସେଠାରେ । ଯେହେତୁ ପାର୍ଶ୍ୱଦେବତା ତ୍ରୟ ଅତି ଗୁରୁତ୍ୱପୂର୍ଣ୍ଣ ଶିଳ୍ପ ଯାହା ଆଗକୁ ଆଲୋଚିତ ହୋଇଛି, ପୁରାତନ ସୂର୍ଯ୍ୟମନ୍ଦିର ପ୍ରସଙ୍ଗରେ, ପୃଷ୍ଠା ୧୪୬ରେ ଉପସ୍ଥାପିତ ମତାମତଗୁଡ଼ିକ ମନ୍ଦିର ପରିକ୍ରମା କରିବା ସମୟରେ ସ୍ମରଣ କଲେ ଦର୍ଶକ ଉପକୃତ ହେବେ ।

## ଦକ୍ଷିଣ ସୂର୍ଯ୍ୟ :

ଦକ୍ଷିଣ ପାର୍ଶ୍ୱଦେବଙ୍କର ଦୁଇଟି ହାତ ଭାଙ୍ଗିଛି । ଏହାଙ୍କ ମୁଣ୍ଡବାଳ କଳସ ଭଳି ବନ୍ଧା ହୋଇଛି, ଦେଖିଲେ ଗୋଟିଏ ପ୍ରକାର ମୁକୁଟ ଭଳି ମନେ ହେବ । ଏପରି ମସ୍ତକାଭରଣ ଅନ୍ୟ ଦୁଇଟିଠାରୁ ଅଲଗା ଏବଂ ବୋଧହୁଏ ସମଗ୍ର ଭାରତବର୍ଷରେ ଏଭଳି ଅନ୍ୟତ୍ର ନାହିଁ । ଅନ୍ୟାନ୍ୟ ଆଭରଣ ଏବଂ ଆବରଣ, ତିନିଟି ମୂର୍ତ୍ତିରେ ପ୍ରାୟ ସମାନ । ଆବରଣ କହିଲେ ସଂକ୍ଷିପ୍ତ କପଡ଼ା ଖଣ୍ଡେ ଯାହା ଆଣ୍ଠୁ ଟପୁ ନାହିଁ । ସେ ସଂକ୍ଷିପ୍ତ ଆବରଣ ଉପରେ ଯେଉଁ ସୂକ୍ଷ୍ମ ତାଳି କାର୍ଯ୍ୟ ହୋଇଛି, ନ ଦେଖିଲେ ବିଶ୍ୱାସ ହେବନାହିଁ । (ଫଟୋ-୬୧) ଆବରଣର କାର୍ପଣ୍ୟ ଆଭରଣର ଆଧିକ୍ୟରେ ଭରଣା ହୋଇଯାଇଛି । ମସ୍ତକାଭରଣ, କର୍ଣ୍ଣାଭରଣ, ବକ୍ଷାଭରଣ, ଉପବୀତ, ବାହୁବନ୍ଧ, କଟିବନ୍ଧନ ଇତ୍ୟାଦିର ସୂକ୍ଷ୍ମ କାର୍ଯ୍ୟ ଦେଖିଲେ ମନେ ହେବ, ଯେପରି ତାରକସି କାମ ହୋଇଛି ପଥର ଦେହରେ । କଟିଦେଶ ଦୁଇ ପଟେ ଦୁଇ ଦୁଇ ଜଣ କରି ଚାରୋଟି ସ୍ତ୍ରୀ ମୂର୍ତ୍ତି ଅଛନ୍ତି । ଏମାନଙ୍କ ପରିଚୟ ନେଇ କେତେକ ମତଭେଦ ବି ଅଛି । (ଫଟୋ-୬୦)



ଫଟୋ-୫୯(କ) : ବିଶାଳ ସୂର୍ଯ୍ୟ



ଫଟୋ-୫୯ (ଖ) : ଦକ୍ଷିଣ ପାର୍ଶ୍ୱଦେବ, ୧ନଂ ମନ୍ଦିରର

ବିଶନ୍ ସ୍ୱରୂପ ଅନୁମାନ କରନ୍ତି; ଦୁଇଜଣ ସୂର୍ଯ୍ୟ ପତ୍ନୀ ଛାୟା ଓ ସଂଜ୍ଞା ଏବଂ ଅନ୍ୟ ଦୁଇଜଣ, କନ୍ୟା ସାବିତ୍ରୀ ଓ ଗାୟତ୍ରୀ ।[୨୭୬] ଦେବଳା ମିତ୍ରଙ୍କ ଅନୁମାନ, ଏମାନେ ଚାରି ସୂର୍ଯ୍ୟପତ୍ନୀ- ରଜନୀ, ନିକ୍ଷୁଭା, ଛାୟା ଓ ଶୁଭ୍ରାକାଶା [୨୭୭] । ଷ୍ଟେଲା କର୍ମରୀଶ୍‌ଙ୍କ ମତ; ଏମାନେ ରଜନୀ, ନିକ୍ଷୁଭା, ଛାୟା ଓ ଶୁଭ୍ରାକାଶା ଏବଂ ତାହା ସହ O.C. Gangooly ଙ୍କ କୋଣାର୍କ ପୃ.୨୪ ଉଲ୍ଲେଖି କରି କହୁଛନ୍ତି ନିକ୍ଷୁଭା ସ୍ଥାନରେ ସୁବର୍ଣ୍ଣା ହୋଇପାରେ ।[୨୭୮]

କରୁଣାସାଗର ମତ୍ସ୍ୟପୁରାଣରୁ ଦୁଇଧାଡ଼ି ଉଦ୍ଧାର କରି କହିଛନ୍ତି; ଏମାନେ,

"ରଜନୀ, ସୁବର୍ଣ୍ଣା, ଛାୟା ଚ

ତଥା ଦେବୀ ଶୁଭ୍ରାକାଶା,

ଚତସ୍ରଶ୍ଚାସ୍ୟ କର୍ତ୍ତବ୍ୟା

ପତ୍ନ୍ୟାଶ୍ଚ ପରିପାର୍ଶ୍ୱୟୋଃ ॥"[୨୭୯]

ଏତେ ପ୍ରକାର ନାମ ବିଭ୍ରାଟର ମୂଳ କାରଣ ବିଭିନ୍ନ ସମୟରେ ବିଭିନ୍ନ ପୁରାଣରେ ଭିନ୍ନ ଭିନ୍ନ ନାମ ଦେଖା ଯାଇଛି ।

ପାଦ ଦୁଇ ପଟେ ରାଜା ନରସିଂହଦେବ ଓ ତାଙ୍କ ଗୁରୁ ଯୋଡ଼ ହସ୍ତେ ପ୍ରାର୍ଥନାରେ ବସିଛନ୍ତି । (ଫଟୋ:୫୯-ଖ ଏବଂ ୬୨) ସେମାନଙ୍କ ପଛରେ ଛିଡ଼ା ହୋଇଛନ୍ତି ଯଥାକ୍ରମେ ଦଣ୍ଡୀ ଓ ପେଟମୋଟା ପିଙ୍ଗଳା । ସେମାନଙ୍କ ପଛକୁ ମଧ୍ୟମ ଉଚ୍ଚତାର ଶସ୍ତ୍ରଧାରୀ ଯୋଦ୍ଧା । ଆହୁରି ପରେ ଆସୁଛନ୍ତି ଉଷା ଓ ପ୍ରତ୍ୟୁଷ, ଯେଉଁମାନେ ତୀରଦ୍ୱାରା ଅନ୍ଧକାର ଛିନ୍ନ କରି ଆଲୋକର ଆବାହନ କରୁଛନ୍ତି ।

ମସ୍ତକ ଉପରେ ତ୍ରି ଖିଲାଣ ଦୁଇପଟେ ନୃତ୍ୟ-ବାଦ୍ୟରତ କିନ୍ନର, କିନ୍ନରୀ, ଭୟାଳ (ଭୟାଳ ଏଠାରେ କାହିଁକି ?) ବ୍ରହ୍ମା ଓ ବିଷ୍ଣୁ ବିରାଜମାନ କରୁଛନ୍ତି ।

ସୂର୍ଯ୍ୟ ପାଦତଳେ ବସିଚନ୍ତି ପାଦହୀନ ସୂର୍ଯ୍ୟ ସାରଥି ଅରୁଣ । ଏହାଙ୍କ ହସ୍ତଧୃତ ରଜ୍ଜୁର ପରିଚାଳନାରେ ମନେ ହୁଏ, ସପ୍ତ ଅଶ୍ୱ ଆକାଶକୁ ଉଡ଼ି ଯାଉଛନ୍ତି । ପୀଠଟି ମଧ୍ୟ ପଞ୍ଚରଥ । (ଫଟୋ-୬୩)

ଏତେ ବିପୁଳ ଓ ମୂଲ୍ୟବାନ ଅଳଙ୍କାର ସହିତ ଖାପ ଖାଉନାହିଁ ସଂକ୍ଷିପ୍ତ କପଡ଼ା ଖଣ୍ଡେ ଓ ପାଦର ଗମ୍‌ବୁଟ, ଯାହା ପିନ୍ଧି ଥାଆନ୍ତି କାୟିକ ଶ୍ରମ କରୁଥିବା ଲୋକେ, ଖଣି-ଖାଦାନ ଓ ଶୀତପ୍ରଧାନ ଦେଶର ଚାଷୀମାନେ । ଯଦିଓ ଏହାକୁ ସୂର୍ଯ୍ୟଦେବଙ୍କ ପାଇଁ ନିର୍ଦ୍ଦିଷ୍ଟ 'ଉଦିଚ୍ୟ ବେଶ' (ଉତ୍ତର-ଦେଶୀୟ) ପୋଷାକ କୁହାଯାଉଛି ।[୨୮୦] ଭାରତବର୍ଷର ଉତ୍ତର ଅଞ୍ଚଳରେ କାହିଁକି; ପୂର୍ବ, ପଶ୍ଚିମ କୌଣସି ଦିଗରେ ଏପରି ବିଚିତ୍ର ପୋଷାକ ଦେଖାଯାଏ ନାହିଁ । ଇଣ୍ଟରନେଟ୍ ଜରିଆରେ କେତେକ ତଥ୍ୟ ମିଳୁଛି "Sakaldwipiya History" ଶିରୋନାମାରେ ।

ସକଳ ଦ୍ୱୀପୀୟମାନଙ୍କୁ ମଗ ବ୍ରାହ୍ମଣ ମଧ୍ୟ କୁହାଯାଏ । ଏମାନେ ମୂଳତଃ ଇରାନୀ ବ୍ରାହ୍ମଣ ଏବଂ ଏମାନଙ୍କ ଭାରତ ପ୍ରବେଶ ମିଳୁଛି ମହାଭାରତ ଯୁଗରୁ । ଏମାନେ ସୂର୍ଯ୍ୟ ପୂଜକ, ଚିକିତ୍ସକ ଓ ଜ୍ୟୋତିର୍ବିଜ୍ଞାନୀ ଥିଲେ । କୃଷ୍ଣ ଏମାନଙ୍କ ସାହାଯ୍ୟ ନେଇଥିଲେ, ପୁତ୍ର ଶାମ୍ବଙ୍କୁ

ଫଟୋ-୬୦ : ଚାରିଜଣ ସୂର୍ଯ୍ୟ ପତ୍ନୀ (ରଜନୀ, ନିକ୍ଷୁଭା, ଛାୟା ଓ ଶୁଭ୍ରାକାଶା)

କୁଷ୍ଠରୋଗ ମୁକ୍ତ କରିବାକୁ । "The Iranian Surya (Sun God) wearing a long coat with sacred gridle and knee-high boots was worshipped by Indian Kings." ଭାରତବର୍ଷର ବହୁ ଅଞ୍ଚଳରେ ଏମାନଙ୍କ ପ୍ରଭାବ ଥିଲା । ଅନ୍ୟ ଗୋଟିଏ ସନ୍ଦର୍ଭରୁ ମିଳୁଛି, ମହାରାଜ କନିଷ୍କ ମଗ ପ୍ରଚଳିତ ବୁଟ୍ ଯୋତା ପିନ୍ଧୁଥିଲେ ।

ଗୁଜରାଟର ମୋଧେରା ମଧ୍ୟ ସୂର୍ଯ୍ୟ ମନ୍ଦିରରେ (୧୦୨୭ ଖ୍ରୀ.ଅ.) ସୂର୍ଯ୍ୟଦେବଙ୍କ ବୁଟ୍ ପରିହିତ (ଫଟୋ-୬୪) । ଜୋରାଷ୍ଟ୍ରିଆନ୍ (ସୂର୍ଯ୍ୟ ପୂଜକ) ମଗମାନଙ୍କ ପ୍ରବେଶ ସେ ଅଞ୍ଚଳରେ ମଧ୍ୟ ଘଟିଥିଲା ।

ଯେହେତୁ କୋଣାର୍କ ସହିତ ଶାମ୍ବ ଓ ମଗବ୍ରାହ୍ମଣଙ୍କ ନାମ ଜଡ଼ିତ ଇରାନୀୟ ସୂର୍ଯ୍ୟ ପରିଧାନ, ମନେ ହୁଏ ଓଡ଼ିଆ ଶିଳ୍ପୀ ହାତରେ ଉପସ୍ଥାପିତ ହୋଇଛି ପାର୍ଶ୍ୱଦେବତ୍ରୟଙ୍କ ଦେହରେ ।

## ପଶ୍ଚିମ ସୂର୍ଯ୍ୟ:

ଏ ପାର୍ଶ୍ୱଦେବତା ଦେଖିବାକୁ ଅବିକଳ ଦକ୍ଷିଣ ପାର୍ଶ୍ୱ ଦେବତାଙ୍କ ଭଳି, କିନ୍ତୁ ଏହାଙ୍କ ମୁଣ୍ଡରେ ଗୋଟିଏ ମୁକୁଟ ଅଛି ଯାହାର କାରୁକାର୍ଯ୍ୟ ନିରୀକ୍ଷଣ କଲେ ଆଖି ରହିଯିବ । ଏହାଙ୍କ ହାତ ଦୁଇଟି ମଧ୍ୟ କହୁଣି ପାଖରୁ ଭାଙ୍ଗିଯାଇଛି, ଆଉ ନିଶ୍ଚିହ୍ନ ହୋଇଛନ୍ତି ପାଦତଳେ ଅରୁଣ । (ଫଟୋ-୫୯(ଖ) ଓ ୬୫)



ଫଟୋ-୬୧ : ଆବରଣ ଓ ଆଭରଣ



ଫଟୋ-୬୨ : ପ୍ରାର୍ଥନାରତ ରାଜା ଓ ପୁରୋହିତ



ଫଟୋ-୬୩ : ଅରୁଣ ଓ ସପ୍ତ ଅଶ୍ୱ

## ଉତ୍ତର ସୂର୍ଯ୍ୟ :

ଏହାଙ୍କ ବେଶ ପୋଷାକ, କିରୀଟି ଇତ୍ୟାଦି ପଶ୍ଚିମ-ପାର୍ଶ୍ୱଦେବଙ୍କ ପରି, କିନ୍ତୁ ଏକମାତ୍ର ଏଇ ପାର୍ଶ୍ୱଦେବ ଅଶ୍ୱପୃଷ୍ଠେ ଅଧିଷ୍ଠିତ । କେତେକ ଗବେଷକ ଏହାକୁ ସୂର୍ଯ୍ୟ ସାରଥି ଅରୁଣ ରୂପେ ଚିହ୍ନିତ କରିଛନ୍ତି । ଏ ପ୍ରସଙ୍ଗରେ କୃପାସିନ୍ଧୁ ଡଃ ବ୍ଲକ୍‌ଙ୍କ ଅଭିମତ ଉପସ୍ଥାପନ କରିଛନ୍ତି ଏବଂ ବିଶନ ସ୍ୱରୂପଙ୍କ ମତ ଦ୍ୱାରା କାଟିଛନ୍ତି ମଧ୍ୟ । ଅରୁଣ ଦ୍ୱାଦଶ ସୂର୍ଯ୍ୟଙ୍କ ମଧ୍ୟରୁ ଅନ୍ୟତମ ହେଲେ ମଧ୍ୟ ପୁରାଣରେ ସର୍ବତ୍ର ସୂର୍ଯ୍ୟଙ୍କ ସାରଥି ରୂପେ କଳ୍ପିତ; ସୁତରାଂ କଦାପି ତାଙ୍କୁ ସୂର୍ଯ୍ୟଙ୍କ ସମାସୀନ କରାଯାଇନଥିବ ।[୨୮୧] ଏହାଛଡ଼ା ମୁଖ୍ୟ ପ୍ରମାଣ, ଅରୁଣ ପଦହୀନ କିନ୍ତୁ ଉତ୍ତର ପାର୍ଶ୍ୱଦେବଙ୍କ ପାଦ ଅଛି । (ଫଟୋ-୬୬ ଦ୍ରଷ୍ଟବ୍ୟ)

କରୁଣାସାଗର କହିଛନ୍ତି, ଏ ମୂର୍ତ୍ତିକୁ ସମ୍ଭବତଃ ଭାସ୍କର ରୂପେ ଚିହ୍ନିତ କରାଯାଇପାରେ କାରଣ, ଅଗ୍ନି ପୁରାଣର ୫୧ ପରିଚ୍ଛେଦ କହୁଛି:

"ଅଥଭାସ୍ୱ-ସମୃଦ୍ଧ କାର୍ଯ୍ୟ ଏକସ୍ତୁ ଭାସ୍କରଃ ।"[୨୮୨]

ଅନ୍ୟ ଦୁଇଟି ମୂର୍ତ୍ତି ଭଳି ତଳେ ରଜ୍ଜୁ ହସ୍ତରେ ଅରୁଣ ଓ ସପ୍ତଅଶ୍ୱ ନାହାନ୍ତି । ସ୍ୱାଭାବିକ ।

ଉତ୍ତର-ପାର୍ଶ୍ୱଦେବ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହୋଇଥିଲେ । ଦକ୍ଷିଣ ହସ୍ତ କାନ୍ଧ ପାଖରୁ ଓ ବାମ ହସ୍ତ କହୁଣି ପାଖରୁ କଟି ଯାଇଛି । ମୁଣ୍ଡଟି ମଧ୍ୟ ଗଳା ପାଖରୁ କଟିଯାଇ ପଡ଼ିଥିଲା ପଥର କୁଢ଼ ଭିତରେ । ପଛେ ସ୍ୱସ୍ଥାନରେ ଯୋଡ଼ା ହୋଇଛି, ଯୋଡ଼ ଚିହ୍ନ ଦିଶୁଛି । ଘୋଡ଼ାର ଗୋଟିଏ ଗୋଡ଼ ଭାଙ୍ଗି ଯାଇଛି, ତଳକୁ ବେଶ୍ କିଛି ନିଶ୍ଚିହ୍ନ ହୋଇଯାଇଛି, ଗୋଟିଏ ସାଦା ପଥର ଠେକ ଦେଇ ରଖା ଯାଇଛି । ଏ ପ୍ରସଙ୍ଗରେ ଗୋଟିଏ କଥା ନ କହି ରହି ପାରୁନାହିଁ ।



ଫଟୋ-୬୪ : ମୋଧେରାର ସୂର୍ଯ୍ୟଦେବ



ଫଟୋ-୬୫ : ପଶ୍ଚିମ ପାର୍ଶ୍ୱଦେବ (୧ନଂ ମନ୍ଦିର)



ଫଟୋ-୬୬ : ଉତ୍ତର ପାର୍ଶ୍ୱଦେବ

ମିଶରର 'ଆବୁସିମ୍ବଲ'କୁ ଅସୱାନ ଜଳାଧାରରୁ ବଞ୍ଚାଇବା ପାଇଁ ଉଚ୍ଚସ୍ଥାନକୁ ଅପସାରଣ କରାଯାଇଥିଲା ୧୯୬୩ ଖ୍ରୀଷ୍ଟାବ୍ଦରେ । ଆବୁସିମ୍ବଲ ଗୋଟିଏ ପାହାଡ଼ରୁ କାଟି ଗଢ଼ା ହୋଇଥିଲା । ସେ ବିରାଟ କୀର୍ତ୍ତିକୁ ୧୦୫୦ ଖଣ୍ଡରେ କାଟି (ପ୍ରତି ଖଣ୍ଡର ଓଜନ ପ୍ରାୟ ୩୩ ଟନ୍) ୬୯୦ ଫୁଟ୍ ଦୂରରେ ୨୦୦ ଫୁଟ୍ ଉଚ୍ଚରେ ନିଖୁଣ ଭାବେ ଯୋଡ଼ି ଦିଆଗଲା । ଯୋଡ଼ଗୁଡ଼ିକ ଇଞ୍ଚର ଏକ ଦଶମାଂଶ (1.5 mm) ମଧ୍ୟରେ ରଖିବାର ଚୁକ୍ତି ହୋଇଥିଲା କିନ୍ତୁ Chief Registrar ତାହା ମଧ୍ୟ ହେବାକୁ ଦେଲେ ନାହିଁ, ମୂଳ ପଥର ସହିତ ରଙ୍ଗ ମିଳେଇ କିଛି କାର୍ଯ୍ୟ କରିଥିଲେ ।[୨୮୩] ଦଶଫୁଟ୍ ଦୂରରୁ ତୋଳା ଯାଇଥିବା ଉତ୍ତର-ସୂର୍ଯ୍ୟଙ୍କ ଚିତ୍ରରୁ (ଫଟୋ-୬୬) ପରିଷ୍କାର ଦିଶୁଛି ଯୋଡ଼ ତ ମିଶି ନାହିଁ, ମଥାଟି ମଧ୍ୟ ଠିକ୍ ରୂପେ ବସାଯାଇ ନାହିଁ । INTACH ଅରଣ୍ୟରୋଦନ କରୁଛି । ASI ଶୁଣି ପାରୁଛନ୍ତି କି ?

ପାର୍ଶ୍ୱଦେବତାତ୍ରୟଙ୍କ ପରିଚୟ ନେଇ ନାନା ବିବାଦ ଅଛି । ଡଃ ବ୍ଲକଙ୍କ ମତରେ, ଦକ୍ଷିଣର ମୂର୍ତ୍ତି ମଧ୍ୟାହ୍ନର ଶିବ, ପଶ୍ଚିମର ମୂର୍ତ୍ତି, ସାୟାହ୍ନର ବ୍ରହ୍ମା ଓ ଉତ୍ତର ଦିଗର ସୂର୍ଯ୍ୟ ସକାଳର ବିଷ୍ଣୁ । ବିଶନ ସ୍ୱରୂପ କହିଛନ୍ତି; ଦକ୍ଷିଣ ସୂର୍ଯ୍ୟ, ପୁଷନ କାରଣ ସିଏ ମସ୍ତକରେ ଜଟା ଧରିଥା'ନ୍ତି । ଅନ୍ୟ ଦୁଇ ମୂର୍ତ୍ତି ବିଷ୍ଣୁ ଓ ହରିତାଶ୍ୱ । ଉପରୋକ୍ତ ମତାମତଗୁଡ଼ିକ ଉପସ୍ଥାପିତ କରି ଏବଂ ନିଜେ କିଛି ଆଲୋଚନା କରି କୃପାସିନ୍ଧୁ ବିଶନ ସ୍ୱରୂପଙ୍କ ମତ ଗ୍ରହଣ କରିଛନ୍ତି ।[୨୮୪] କରୁଣାସାଗର ଉପରୋକ୍ତ ସମସ୍ତ ମତ ଉପସ୍ଥାପନ କରି କହିଛନ୍ତି, "However we cannot be certain whether the three images of Konarak Temple were worshipped as such, for the worship has long ceased in that place." ଏବଂ ଫୁଟ୍‌ନୋଟ୍‌ରେ ଆଉ ଜଣେ ଗବେଷକଙ୍କ ନାମ ଯୋଡ଼ିଛନ୍ତି - A. Chatarjee.[285]

ସାଧାରଣ ବିଷୟକୁ ଅସାଧାରଣ ଦୃଷ୍ଟିକୋଣରୁ ଦେଖିଲେ ଯାହା ହୁଏ, ଏହା ତାହାର ଗୋଟିଏ ଉତ୍କୃଷ୍ଟ ଉଦାହରଣ । ଏହା ପ୍ରତିଷ୍ଠିତ ସତ୍ୟ, କୋଣାର୍କ ମନ୍ଦିର ନିର୍ଭୁଲ୍ ଭାବେ ପୂର୍ବ-ପଶ୍ଚିମ axisରେ ଗଠିତ । ତାହାର ଉତ୍ତର ଓ ଦକ୍ଷିଣ ଦିଗର ମୂର୍ତ୍ତି କାହିଁକି ସକାଳ ଓ ମଧ୍ୟାହ୍ନ ସୂଚିତ କରିବ ତାହା ବୋଧଗମ୍ୟ ନୁହେଁ । ଆଦିତ୍ୟ ହୃଦୟ ନାମକ ପୋଥି - ଯାହା ନାମିତ ହୋଇଛି ଏ ପ୍ରସଙ୍ଗରେ, ଠିକ୍ କାହିଁକି ଓ କେଉଁ ପ୍ରସଙ୍ଗରେ ରଚିତ ହୋଇଥିଲା ତାହାର ଆଲୋଚନା ନ କରି ତାହାର ଉପସ୍ଥାପନା କରିବା ବୋଧହୁଏ ଉଚିତ୍ ହେଲା ନାହିଁ । ଉପରୋକ୍ତ ପଣ୍ଡିତମାନେ ହିଁ ଲକ୍ଷଣ ମିଳେଇ ସୂଚିତ କରିଛନ୍ତି, ମୂର୍ତ୍ତି ତିନୋଟି ସୂର୍ଯ୍ୟ ମୂର୍ତ୍ତି ଏବଂ ପାର୍ଶ୍ୱଦେବତା ଭାବେ ଅଧିଷ୍ଠିତ । ଏହା ହିଁ ଯଥେଷ୍ଟ ହେବ ।

ଏ ମୂର୍ତ୍ତିତ୍ରୟଙ୍କ ଭାସ୍କର୍ଯ୍ୟଗତ ମୂଲ୍ୟ ଅପରିସୀମ । ଦେହ ପେଶୀ ବହୁଳ ନୁହେଁ, ତଥାପି ଶକ୍ତିର ବିଚ୍ଛୁରଣ ଅଛି । ସୂର୍ଯ୍ୟ, ନକ୍ଷତ୍ର ଭଳି ସ୍ଥିର କିନ୍ତୁ ମୁଖମଣ୍ଡଳରୁ ଝରି ପଡୁଛି କାରୁଣ୍ୟ ।

## ରତ୍ନସିଂହାସନ :

ଭଙ୍ଗା ବିମାନ ବାଡ଼ର ଉତ୍ତର-ପଶ୍ଚିମ କୋଣରୁ ପାହାଚ ଗଢ଼ା ହୋଇଛି ଗର୍ଭଗୃହ ଭିତରକୁ । ଏହା ବ୍ରିଟିଶ୍ ସଂରକ୍ଷଣକାରୀମାନଙ୍କର କୀର୍ତ୍ତି । ମୁଖ୍ୟ ଦ୍ୱାର ସବୁ ବନ୍ଦ କରିଦେବା ଯେତେ ଅନିବାର୍ଯ୍ୟ ଥିଲେ ମଧ୍ୟ ସେମାନେ ଚାହିଁ ନଥିଲେ ଗୋଟିଏ ଅପୂର୍ବ କୀର୍ତ୍ତି ଲୋକଲୋଚନ ଅଗୋଚରରେ ରହିଯାଉ । କିନ୍ତୁ ଆଜିକାର ସଂରକ୍ଷଣବାଦୀ ASI, ଖାଲି ଗର୍ଭଗୃହ ନୁହେଁ ପାର୍ଶ୍ୱଦେବତ୍ରୟଙ୍କ ନିକଟକୁ ଉଠିଥିବା ପାହାଚ ମଧ୍ୟ ଲୁହା ବାଡ଼ ପକେଇ ବନ୍ଦ କରି ଦେଇଛନ୍ତି ! ପୂର୍ବେ ଲେଖକ ଗର୍ଭଗୃହ ମଧ୍ୟକୁ କେତେଥର ପ୍ରବେଶ କରିଛି; ଶେଷ ବୋଧହୁଏ ୩୦ ବର୍ଷ ପୂର୍ବେ ।

ଗର୍ଭଗୃହ ମଧ୍ୟରେ ଏକମାତ୍ର ରତ୍ନ ସିଂହାସନ ଛଡ଼ା, କିଛି ନଥାଏ । କେବଳ ଚୂନ-ବାଲି ପଲସ୍ତରା କରାଯାଇଥିବା ଦେବାଲ୍ ଉପରେ ଚଟାଣରୁ ୪'-୧୦''ଉଚ୍ଚରେ ଚାରିକାନ୍ଥ ଦେହରେ ତିନିକାମ ବନ୍ଧନ ବୁଲିଛି । ସେଥିରେ କୌଣସି କାରୁକାର୍ଯ୍ୟ ନାହିଁ । କାନ୍ଥର ପଲସ୍ତରାର ଔଜଲ୍ୟ ଏବେ ମଧ୍ୟ ଅଛି, ପୁରୁଣା ମାର୍ବଲ ଭଳି କିଛିଟା ହଳଦିଆ ପଡ଼ି ଯାଇଥିଲେ ମଧ୍ୟ । ତିନି ପ୍ରସ୍ତ ପଲସ୍ତରା କେତେ ଯତ୍ନ ସହକାରେ ଏବଂ କି କୌଶଳରେ କରାଯାଇଥିଲା, ଇଂଜିନିୟର୍ ମନମୋହନ ଗାଙ୍ଗୁଲୀ ତାହାର ନିଖୁଣ ବର୍ଣ୍ଣନା ଦେଇଛନ୍ତି[୨୮୬] ।

ସିଂହାସନର ଲମ୍ବ, ଓସାର ଓ ଉଚ୍ଚତା, ଯଥାକ୍ରମେ; ୧୧' , ୭'-୬'' ଓ ୪'-୮'' । ସିଂହାସନଟି ମଧ୍ୟ ପଞ୍ଚରଥ ଏବଂ ପାଞ୍ଚ ପ୍ରସ୍ଥ ମୁଗୁନି ପଥରରେ ଗଠିତ । ସିଂହାସନ ଉପରେ କଳା ପଥରର ଗୋଟିଏ ଛୋଟ ବେଦୀ ଅଛି ଯାହା ବିଗ୍ରହ ବସିବା ପାଇଁ ଉଦ୍ଦିଷ୍ଟ । ବେଦୀର ପିଠି ଆଉଜା କିଛି ଭାଙ୍ଗି ଯାଇଛି । ବହୁ ଗବେଷକ ସେ ଛୋଟ ବେଦୀରୁ ଅନୁମାନ କରୁଛନ୍ତି, ବିଶାଳ ମନ୍ଦିର ତୁଳନାରେ ବିଗ୍ରହଟି କ୍ଷୁଦ୍ର ଥିଲା । ମାଦଳା ପାଞ୍ଜିମତେ ପୁରାତନ ସୂର୍ଯ୍ୟ ମନ୍ଦିରରୁ ବିଗ୍ରହ ସ୍ଥାନାନ୍ତରିତ ହୋଇଥିଲେ ଏହା ସମ୍ଭବ ହୋଇପାରେ ।

ସିଂହାସନଟି ପଞ୍ଚରଥ ପୀଠର ତଳେ ଅଛି 'ଉପନ', ତାହା ଉପରକୁ ତ୍ରିକର୍ମ 'ପାଭାଗ', ତାହା ଉପରକୁ ଜଙ୍ଘା ଏବଂ ତାହା ଉପରକୁ ତିନିକର୍ମ 'ବାରଣ୍ଡୀ' । ଉପସ୍ଥାପିତ ଚାରିଟି ଫଟୋ(୬୭-କ,ଖ,ଗ,ଘ)ରେ ରତ୍ନସିଂହାସନ, ପୂଜା ଆୟୋଜନ ଏବଂ ରାଜା ପୂଜା କରୁଥିବାର ଚିତ୍ର ମିଳୁଛି ।

ଉପନରେ ପ୍ରଥାନୁଗ ହାତୀ କାମ । ପାଭାଗର ଉପ ବିଭାଗ ତ୍ରୟ ଖୁର, ନୋଳି ଓ ବସନ୍ତ । ଏଥିରେ ମଧ୍ୟ ପ୍ରଥାନୁଗ ଡାଳି (Scroll) କାମ । ବାରଣ୍ଡୀର ତିନି କାମ - ଖୁର, କୋଣି ଓ ବସନ୍ତ । ଏହା ଉପରେ କାମ ପ୍ରାୟ କିଛି ନାହିଁ । ରତ୍ନ ସିଂହାସନର ଦୃଷ୍ଟିଯୋଗ୍ୟ କାର୍ଯ୍ୟ ଜଙ୍ଘା ଅଞ୍ଚଳରେ । ଦୁଇ କୋଣରେ ଦୁଇଟି ଗଜସିଂହ, ରହପାଗରେ ମହାରାଜ ନରସିଂହଦେବ ଆରାଧନାରେ ମଗ୍ନ, ଅନର୍ଥ ଓ କୋଣପାଗର କିଛି ଅଂଶରେ ପୂଜା ସାମଗ୍ରୀ ହସ୍ତରେ ପୂଜାରିଣୀ ନାରୀ ଦଳ ।

ମଧ୍ୟ ମଣି ନରସିଂହଦେବଙ୍କ ପରିଚିତି ନେଇ ଅଯଥା ବିବାଦ କିଛି ଉଠିଥିଲା । ଡଃ ବ୍ଲକ୍ ଏହାଙ୍କୁ 'ଶାମ୍ବ' କହୁଥିବା ବେଳେ ବିଶନ୍ ସ୍ୱରୂପ 'ବୁଦ୍ଧ' କହୁଛନ୍ତି [୨୮୭] । ସାଧାରଣ ବୁଦ୍ଧି କୁହେ, ବୁଦ୍ଧଦେବ ସୂର୍ଯ୍ୟପୂଜାରେ ବସିବେ ନାହିଁ ଏବଂ ତପସ୍ୱୀ ଶାମ୍ବ ରାଜବେଶରେ ଧନୁ ଧରି ବସିବେ ନାହିଁ । ଯେଉଁ ରାଜା ଏ ବିଶାଳ ମନ୍ଦିର ଗଢ଼ିଥିଲେ, ସ୍ୱାଭାବିକ, ସେ ହିଁ ବିଗ୍ରହ ପ୍ରତିଷ୍ଠା କରିଥିଲେ, ପୀଠର ମୂର୍ତ୍ତି ସେ କାର୍ଯ୍ୟର ସ୍ମାରକୀ ମାତ୍ର ।

## ଜଗମୋହନର ପୀଢ଼ ତ୍ରୟ : (ପୀଢ଼ ପରିକ୍ରମା)

ବିମାନ ଭୂଲୁଣ୍ଠିତ ହୋଇଛି କିନ୍ତୁ ରହିଯାଇଛି ଜଗମୋହନ, ଉନ୍ନତଶିର ହୋଇ । ତାହା ସହିତ ରହି ଯାଇଛି କୋଣାର୍କ ଶିଳ୍ପର ଶୀର୍ଷବିନ୍ଦୁ 'ବାଜନ୍ତରୀ କନ୍ୟାଗଣ' ।

ତିନିଥାକ ପୀଢ଼ ମଧ୍ୟରେ ଦୁଇଟି କାନ୍ତି (ପାରାଘର) । ବହୁ ଦୂରରୁ ମଧ୍ୟ ଦୃଷ୍ଟିଗୋଚର ହେବେ, କାନ୍ତି ଉପରେ ବାଦ୍ୟରତା କନ୍ୟା ଓ ତ୍ରିମୁଖୀ ଭୈରବ ଆନନ୍ଦରେ ନୃତ୍ୟରତ । ମନ ଆନନ୍ଦରେ ନୃତ୍ୟ ବାଦ୍ୟରତ ମନେ ହେଲେ ମଧ୍ୟ ପ୍ରତ୍ୟେକ ଚରିତ୍ରର ଶାସ୍ତ୍ରାନୁମୋଦିତ ସ୍ଥାନ ଅଛି । ଦୁଇଟି ଲେଖା ଭୈରବ ରହପାଗ ଉପରେ, ଅନର୍ଥ ଓ କୋଣପାଗ ଉପରେ ଅଛନ୍ତି ବାଦ୍ୟନୃତ୍ୟରତା କନ୍ୟାଗଣ । ଏକମାତ୍ର ତୂରୀ ବଜାଉଥିବା କନ୍ୟା ନାଚେନା । ଏଠାରେ ମଧ୍ୟ ପ୍ରଥମ ଓ ଦ୍ୱିତୀୟ ପୀଢ଼ର ମୁହାନ୍ତି ଉପରେ ହସ୍ତୀଯୂଥ ସେମାନଙ୍କ ସ୍ଥାନ ଦଖଲ କରି ନେଇଛନ୍ତି । ତୃତୀୟ ପୀଢ଼ ମୁହାନ୍ତିରେ କୌଣସି କାମ ନାହିଁ କାରଣ ତଳୁ ଏତେଦୂର ନଜର ଯାଏନା । ବାଜେଣୀ କନ୍ୟାମାନଙ୍କର ପଛପଟ ଦେବାଲରେ ସେଇ ଚଳମାନ ଜୀବନର ନାନା ଛବି, ତେବେ ସେମାନଙ୍କ ଉପସ୍ଥିତି ଢଙ୍କା ପଡ଼ି ଯାଇଛି ଏକ ଦିଗରେ ଛାୟା ଓ ଅନ୍ୟ ଦିଗରେ ବାଜେଣୀ କନ୍ୟାମାନଙ୍କର ବଳିଷ୍ଠ ଉପସ୍ଥିତି ଯୋଗୁଁ । ପୀଢ଼ ଉପରେ ବାଜେଣି କନ୍ୟା ଓ ଭୈରବମାନଙ୍କର ସ୍ଥାନ ନିମ୍ନରେ ଦିଆଗଲା । (Karunasagar-Konark, P-52,53)



ଫଟୋ-୬୭(କ) : ରତ୍ନସିଂହାସନ



ଫଟୋ-୬୭(ଖ) : ରତ୍ନସିଂହାସନରେ ପୂଜାରିଣୀ ଦଳ



ଫଟୋ-୬୭(ଗ) : ପୂଜାସାମଗ୍ରୀ ସହ ସେବିକା ଦଳ



ଫଟୋ-୬୭(ଘ) : ପ୍ରାର୍ଥନାରତ ରାଜା



ଫଟୋ-୬୭(ସି) : ଦୋପିଚା ସିଂହ



ଫଟୋ-୬୯(ଗ) : ଦେଉଳ ଚାରିଣୀ



ଫଟୋ-୬୯(ଘ) : ପୀଢ଼ ମୁହଣ୍ଡି (ପ୍ରଥମ ଓ ଦ୍ୱିତୀୟ ପୀଢ଼)



ଫଟୋ-୬୭(ଚ) : ପୀଢ଼ ମୁହଣ୍ଡି (ତୃତୀୟ ପୀଢ଼)

## ସାରଣୀ - ୧୬

## ବିଭିନ୍ନ କାନ୍ତିରେ ଅବସ୍ଥାପିତ ବାଦିକାଗଣ

| ବାଦିକାଗଣ | ପ୍ରଥମ କାନ୍ତି | ଦ୍ୱିତୀୟ କାନ୍ତି | ମୋଟ |
|---|---|---|---|
| ଢୋଲ ବାଦିକା | ୯ | ୮ | ୧୭ |
| ମୃଦଙ୍ଗ ବାଦିକ | ୧ | --- | ୧ |
| କରତାଳ ବାଦିକା | ୨ | ୧ | ୩ |
| ବଡ଼ କରତାଳ ବାଦିକା | --- | ୧ | ୧ |
| କୁବୁଜି ବାଦିକା | --- | ୧ | ୧ |
| ବୀଣା ବାଦିକା | ୧ | ୧ | ୨ |
| ତୂରୀ ବାଦିକା | ୧ | ୨ | ୩ |
| ନିଶ୍ଚିହ୍ନ ଢୋଲ ବାଦିକା | ୨ | --- | ୨ |
| ଭୈରବ | ୬ | --- | ୬ |
| **ମୋଟ** | **୨୨** | **୧୪** | **୩୬** |


ଫଟୋ-୭୦(କ) : ଢୋଲ ବାଦିକା


ଫଟୋ-୭୦(ଖ) : ଢୋଲ ବାଦିକା



ଫଟୋ-୭୦(ଗ) : କରତାଳ ବାଦିକା



ଫଟୋ-୭୦(ଘ) : କରତାଳ ବାଦିକା



ଫଟୋ-୭୦(ଚ) : ତୂରୀ ବାଦିକା



ଫଟୋ-୭୦(ଛ) : ତୂରୀ ବାଦିକା



ଫଟୋ-୭୦(ଜ) : କୁବୁଜି ବାଦିକା



ଫଟୋ-୭୦(ଝ) : କୁବୁଜି ବାଦିକା



ଫଟୋ-୭୦(ଟ) : ଭୈରବ



ଫଟୋ-୭୦(ଠ) : ଭୈରବ

ପ୍ରଥମ କାନ୍ତିରେ ଦୁଇ ଜଣ ଢୋଲବାଦିକା ସ୍ଥାନ ଶୂନ୍ୟ ଅଛି କିନ୍ତୁ ଚିହ୍ନ ରହି ଯାଇଛି ।

ସୂର୍ଯ୍ୟଙ୍କ ଆରାଧନାରେ କି ଧରଣର ବାଦ୍ୟଯନ୍ତ୍ରର ବ୍ୟବହାର ହେବ ଏବଂ ଅପ୍ସରା, ଋଷି, ଗନ୍ଧର୍ଭ, ନାଗ, ଯକ୍ଷ, ରାକ୍ଷସ ଇତ୍ୟାଦି କିପରି ଭାବେ ସଂପୃକ୍ତ ହେବେ; ତାହା 'ବିଷ୍ଣୁପୁରାଣ' ଓ 'ସୂର୍ଯ୍ୟ-ଶତକ'ରେ ଉଲ୍ଲିଖିତ ଅଛି ।[୨୮୮] କୋଣାର୍କ ଶିଳ୍ପୀ ଅପ୍ସରା ଚୟନ କରିଛନ୍ତି ଶିଳ୍ପର ପରାକାଷ୍ଠା ଫୁଟେଇବାକୁ । ମୂର୍ତ୍ତିଗୁଡ଼ିକ ପ୍ରମାଣ ମାପରୁ ବଡ଼ କରି ଗଢ଼ା ହୋଇଛି ଯେପରି ବହୁ ଦୂରରୁ ଦେଖାଯିବ । ହୁଏତ ଶାସ୍ତ୍ରରେ ଅଛି ଅପ୍ସରାମାନେ ବାଦ୍ୟ ବଜେଇ ନାଚିବେ । ସ୍ୱଭାବତଃ ସେମାନଙ୍କ ସ୍ଥାନ ମନ୍ଦିର ସମ୍ମୁଖରେ ନାଟମଣ୍ଡପ ମଧ୍ୟରେ । ପୀଢ଼ ଦେଉଳ ଉପରେ ସ୍ଥାନ ଚୟନ ସେମାନଙ୍କୁ ଅନନ୍ତକାଳରେ ସ୍ଥାନ କରି ଦେଇଛି ।

'ସୂର୍ଯ୍ୟଶତକ'ରେ ଉଲ୍ଲିଖିତ ଅଛି ଆରତି ସମୟରେ ଚାରି ପ୍ରକାର ବାଦ୍ୟ ଯନ୍ତ୍ର ବ୍ୟବହୃତ ହେବ- (୧) ଢ଼ୋଲକ, (୨) କରତାଳ, (୩) ବୀଣା, (୪) ବଂଶୀ (ତୂରୀ) । କୋଣାର୍କ ଶିଳ୍ପୀ ମଧ୍ୟ ତାଙ୍କର ବାଜନ୍ତରୀ କନ୍ୟାମାନଙ୍କୁ ସେଇ ଚାରୋଟି ବାଦ୍ୟଯନ୍ତ୍ର ଧରେଇଛନ୍ତି, ସାମାନ୍ୟ ପରିବର୍ତ୍ତନ ସହ । ଯଥା ଢୋଲ ମଧ୍ୟରେ ମୃଦଙ୍ଗ, କାଠି ଓ ହାତ ଢୋଲ, ବଂଶୀ ସହିତ ତୂରୀ, କରତାଳ ସହିତ କୁବୁଜି । ଆନୁପାତିକ ହିସାବରେ ଢ଼ୋଲଜାତୀୟ ବାଦ୍ୟର ସଂଖ୍ୟା ସର୍ବାଧିକ (୩୦ ମଧ୍ୟରେ ୧୭) । ଏହାପରେ ଆସୁଛି କରତାଳ ଓ ତୂରୀ । ଏହାଛଡ଼ା ଭୈରବ ହାତର ଡମ୍ବରୁ ମଧ୍ୟ ଅଛି । ଶିଳ୍ପୀ କ'ଣ ରାଜକୀୟ ସଙ୍ଗୀତଜ୍ଞଙ୍କ ସହିତ ଆଲୋଚନା କରିଥିଲେ ? Rustam J. Mehetaଙ୍କ ଭାଷାରେ :

".......from a distance, one can imagine the Sun God's temple almost in motion, the wheels turning, the stone steeds straining to wing the chariot across the firmament. The air seems to vibrate with a torried mysterious power, the pulsting power of the omnipotent Sun".[289]

ଭାରତୀୟ ଶିଳ୍ପ ଚିନ୍ତାର ନିର୍ଯ୍ୟାସ ଯେପରି ଅଜାଡ଼ି ପଡ଼ିଛି ଏଇ ମୂର୍ତ୍ତିଗୁଡ଼ିକ ଉପରେ । ପାଶ୍ଚାତ୍ୟ ଶିଳ୍ପ ଚିନ୍ତା ଦୁଇଟି ଧାରାରେ ପ୍ରବାହିତ ହୋଇଛି । ମଧ୍ୟ ଯୁଗରେ ଥିଲା ବାସ୍ତବତାନିର୍ଭର । ବାସ୍ତବ ହେଲେ ମଧ୍ୟ ideal । ଜଣେ ସୁଗଠିତ ପୁରୁଷର ଅଙ୍ଗ ପେଶୀବହୁଳ ନ ହୋଇଥିଲେ ମଧ୍ୟ ପେଶୀ-ବହୁଳତାର ସୌନ୍ଦର୍ଯ୍ୟ ଫୁଟେଇବାକୁ ହିଁ ହେବ । ନାରୀ-ସୌନ୍ଦର୍ଯ୍ୟର ଉପାସକ ସାରା ବିଶ୍ୱରେ ସବୁ ସମୟରେ ଥିଲେ । ବାସ୍ତବତାବାଦୀ ଶିଳ୍ପୀ ନାରୀ ବକ୍ଷ ଯେତେ ସୁଦୃଢ଼ କରି ଫୁଟେଇଲେ ମଧ୍ୟ କିଛି ଅବନତ । ଏହା ପର ଯୁଗରେ ଆସିଲା Abstract Art, ଯାହା ଭାବବାଚକ ଏବଂ ସମୟେ ସମୟେ ଦୁର୍ବୋଧ୍ୟ । ଭାରତୀୟ ଶିଳ୍ପ ଚିନ୍ତା ଏହା ଠାରୁ ସମ୍ପୂର୍ଣ୍ଣ ନିଆରା; ବାସ୍ତବତା ମଧ୍ୟରେ ଥାଇ ମଧ୍ୟ abstract । ଏ ଶିଳ୍ପୀର ନାରୀ ବକ୍ଷ, ସାମାନ୍ୟତମ ମଧ୍ୟ ଅବନତ ହୁଏ ନାହିଁ । ସିଂହକଟି ସହିତ ଗୁରୁନିତମ୍ବ ବାସ୍ତବରେ ହୁଏନା । କଦଳୀ ବୃକ୍ଷ ସମ ଜାନୁ ତଥା ହରିଣ ଚକ୍ଷୁ ମଧ୍ୟ ହୁଏନା । କିନ୍ତୁ ଏ ନାରୀ ମଧ୍ୟ ନାରୀ ଛଡ଼ା ଅନ୍ୟ କିଛି ନୁହେଁ । ପାଶ୍ଚାତ୍ୟ ଶିଳ୍ପର ନାରୀଦେହର କୌଣିକ ସୌନ୍ଦର୍ଯ୍ୟ ଏ ନାରୀ ଦେହରେ ନାହିଁ; ଅଛି ଲାବଣ୍ୟ । ଏହା କବି ଶିଳ୍ପୀର କଳ୍ପନାର ନାରୀ- "The eternal she."

ଶାନ୍ତିସ୍ୱରୂପଙ୍କ ଗୋଟିଏ ଉଦ୍ଧୃତି ଦେଇ ଏ ପ୍ରସଙ୍ଗର ସମାପ୍ତି ଟାଣିବା :

"The many striking figures of comely damsels and full-bosomed musicians placed high up on the roof galleries, of drum, flute and cymbal players speak mutely yet eloquently of a life full of fun and frolic - of music, dance and young love. The robust beauty, the softly contoured female figures, seem redolent with exuberant vitality and healthy breath of life, their plastic flesh of stone vibrant with an innate lust for life. Each one is an enchantress, exquisitely graceful, tender and serene."[290]



ଫଟୋ-୭୧ : କରତାଳଧାରିଣୀ ନୃତ୍ୟାଙ୍ଗନା

## (୨) ପୁରାତନ ସୂର୍ଯ୍ୟ ମନ୍ଦିର :

ଏହା ପୂର୍ବରୁ ଏ ମନ୍ଦିରର ନାମ ନେଇ ବହୁ ଆଲୋଚନା ହୋଇଛି । ବର୍ତ୍ତମାନ ଏହାର ଶିଳ୍ପ-ଭାସ୍କର୍ଯ୍ୟ ଆଲୋଚନାରୁ ଦେଖାଯାଉ ବଡ଼ ମନ୍ଦିର ସହିତ ପାର୍ଥକ୍ୟ କିଛି ଅଛି କି ?

ଜଗମୋହନ ଆଗରେ ୩'-୩'' ଉଚ୍ଚ (ପୀଠ ସମ ଉଚ୍ଚ) ଯେଉଁ ଖୋଲା ମଞ୍ଚ ଅଛି ତାହାର ବାଡ଼ ଅଞ୍ଚଳର କାର୍ଯ୍ୟ ତ୍ରୟୋଦଶ ଶତାବ୍ଦୀରେ କାହିଁକି ତାହା ପୂର୍ବବର୍ତ୍ତୀ କୌଣସି ସମୟରେ ହୋଇନାହିଁ । ବାଡ଼ମାନଙ୍କରେ ଯେପରି ପଞ୍ଚ ଭାଗ ଏବଂ ଉପବିଭାଗ ଥାଏ ଏଥିରେ ତାହା ନାହିଁ । ଅଛି କେତେଗୁଡ଼ିଏ ପୂର୍ଣ୍ଣ ଦେହ କଖରା-ମୁଣ୍ଡି ଏବଂ ଗୋଟେ ଛାଡ଼ି ଗୋଟେ, ଶୀର୍ଣ୍ଣ ଦେହ ବଜ୍ରମୁଣ୍ଡି । ମୁଣ୍ଡିଗୁଡ଼ିକ ମଧ୍ୟରେ ସାଧାରଣ ଦୃଶ୍ୟ ନାହିଁ କହିଲେ ଚଳେ । ପ୍ରାୟ ସବୁଥିରେ ଅଛି ମିଥୁନ ଓ ମୈଥୁନ ମୂର୍ତ୍ତି । ପରିବେଶଗତ କ୍ଷୟକ୍ଷତି, ଦେହ ଓ ମୁଖର ସୂକ୍ଷ୍ମ କାର୍ଯ୍ୟ ଲୋପ କରି ଦେଇଛି । ଚିହ୍ନିବାର ଉପାୟ ନାହିଁ; କିନ୍ତୁ ଗୋଟିଏ ବିଷୟ ପରିଷ୍କାର ଜଣା ପଡୁଛି, ୧ନମ୍ବର ମନ୍ଦିରର ମଣିଷମାନଙ୍କ ତୁଳନାରେ ଏଠାକାର ନରନାରୀ ତନୁପାତଳୀ ଓ ଆନୁପାତିକ ନୁହଁନ୍ତି । ଏ ଅନୁଭବ ଏ ମନ୍ଦିରର ସର୍ବତ୍ର ମିଳିବ । ତୁଳନାତ୍ମକ ଭାବେ ମୁଖମଣ୍ଡଳ ଗୋଲ ଓ ହାତ ଗୋଡ଼ ଗୋଲ ଗୋଲ ନଳୀ ଭଳି ।



ଫଟୋ-୭୨(କ) : ୨ ନମ୍ବର ମନ୍ଦିରର ତଳପୃଷ୍ଠ (ସାମନା ଚଟାଣ)



ଫଟୋ-୭୨(ଖ) : ୨ ନମ୍ବର ମନ୍ଦିର ତଳପୃଷ୍ଠ



ଫଟୋ-୭୨(ଗ) : ପୁରାତନ ସୂର୍ଯ୍ୟମନ୍ଦିରର ବାଡ଼



ଫଟୋ-୭୨(ଘ) : ସର୍ପଦେବୀ



ଫଟୋ-୭୨(ଚ) : ଦକ୍ଷିଣ ପାର୍ଶ୍ୱଦେବଙ୍କ ୨ନଂ ମନ୍ଦିର



ଫଟୋ-୭୨(ଛ) : ପଶ୍ଚିମ ସୂର୍ଯ୍ୟଙ୍କ ଖାଲିସ୍ଥାନ



ଫଟୋ-୭୨(ଜ) : ଜଳ ନିଷ୍କାସନର ନାଳ



ଫଟୋ-୭୨(ଝ) : ପୁରାତନ ସୂର୍ଯ୍ୟମନ୍ଦିର ବାଡ଼



ଫଟୋ-୭୨(ଟ) : ଅଳସ କନ୍ୟା



ଫଟୋ-୭୨(ଠ) : ୨ନଂ ମନ୍ଦିରରେ ଡାଳି ଓ ପଦ୍ମକାମ



ଫଟୋ-୭୨(ଡ଼) : ୨ନଂ ମନ୍ଦିରର ଭିତର ପାହାଚ



ଫଟୋ-୭୨(ଠ) : ହରଧନୁ ଭଙ୍ଗ



ଫଟୋ-୭୨(ତ) : ସମ୍ଭ୍ରାନ୍ତ ପୁରୁଷ (୨ନଂ ମନ୍ଦିର)



ଫଟୋ-୭୨(ଥ) : ଅପେକ୍ଷାରତା ନାରୀ (୨ନଂ ମନ୍ଦିର)



ଫଟୋ-୭୨(ଦ) : ନାୟିକା (ପୁରାତନ ସୂର୍ଯ୍ୟ ମନ୍ଦିର)



ଫଟୋ-୭୨(ଟି) : ଅଳସ କନ୍ୟା (୨ନଂ ମନ୍ଦିର)



ଫଟୋ-୭୨(ନ) : ଭିତର ବାଡ଼ରେ ଶିଳ୍ପ କାର୍ଯ୍ୟ (୨ନଂ ମନ୍ଦିର

ଫଟୋ-୭୨(ପ) : ଗର୍ଭଗୃହ ପ୍ରବେଶଦ୍ୱାରର ଶିଳ୍ପକାର୍ଯ୍ୟ (ପୁରାତନ ସୂର୍ଯ୍ୟ ମନ୍ଦିର)



ଫଟୋ-୭୨(ଫ) : ଦକ୍ଷିଣ ପାର୍ଶ୍ୱଦେବଙ୍କ ପାଦରେ ଅରୁଣ ନାହାନ୍ତି



ଫଟୋ-୭୨(ବ) : ଉତ୍ତର ପାର୍ଶ୍ୱଦେବ



ଫଟୋ-୭୨(ଭ) : ମିଥୁନ (ପୁରାତନ ସୂର୍ଯ୍ୟମନ୍ଦିର)



ଫଟୋ-୭୨(ମ) : ଦିକ୍‌ପାଳ (ପୁରାତନ ସୂର୍ଯ୍ୟମନ୍ଦିର)

ବିମାନ ଓ ଜଗମୋହନ ଗୋଟିଏ ପୃଷ୍ଠ ଉପରେ ବସା ଯାଇଛି । ସେ ପୃଷ୍ଠରେ ତିନିକାମ – ଖୁର ପୃଷ୍ଠ, କଣି ଓ ବସନ୍ତ । ଖୁରପୃଷ୍ଠରେ ପଦ୍ମକାମ ଓ ମୁହନ୍ତିରେ ନଟୀ ଲତା ଏବଂ ବସନ୍ତରେ ଯୁଦ୍ଧ ଯାତ୍ରାର ଦୃଶ୍ୟ, ନର୍ତ୍ତକୀ, ରାଜଦରବାର ଇତ୍ୟାଦି । ବାଡ଼ରେ ଅବଶିଷ୍ଟ ଅଛି ପାଭାଗ, ତଳଜଙ୍ଘା ଓ ବନ୍ଧନ, ପାଭାଗର ପାଞ୍ଚ ଉପବିଭାଗ – ଖୁର, କୁମ୍ଭ, ପଟ, କଣି ଓ ବସନ୍ତ । କେତେକ ସ୍ଥାନରେ ଖୁର ଉପର ଭାଗରେ ପଦ୍ମ ପାଖୁଡ଼ା ଆଦୌ କଟାଯାଇ ନାହିଁ ଏବଂ ଏହା ସ୍ୱାଭାବିକ କ୍ଷୟ ନୁହେଁ । ତଳ ମୁହାନ୍ତିର ଡାଳି କାମ ଓ ଓହଳୁଥିବା ଚୈତ୍ୟ ଲକେଟ୍‌ର କାମ ବିଶେଷ କ୍ଷୟ ପାଇନାହିଁ । ଖୁର ଉପରେ ଏବଂ କୁମ୍ଭ ମଝିରେ କେତେକ ପଦ୍ମ ପାଖୁଡ଼ା କାମ ଅଛି । ଏପରି ଗଠନ ୧ନଂ. ମନ୍ଦିରର ସମସାମୟିକ ନୁହେଁ । ବଡ଼ କାମ ମଧ୍ୟରେ ସର୍ପ ଦେବତା, ଅଳସୀ କନ୍ୟା ଓ ପାର୍ଶ୍ୱ ଦେବତାମାନଙ୍କ ଭାସ୍କର୍ଯ୍ୟ ୧ନମ୍ବର ଦେଉଳର ସେହି କାମମାନଙ୍କ ସହିତ ପାର୍ଥକ୍ୟ ବାରି ହୋଇ ପଡୁଛି ।

## ନୂତନ ଓ ପୁରାତନ ମନ୍ଦିରର ତୁଳନାତ୍ମକ ଭାସ୍କର୍ଯ୍ୟ :

ଏ ଦୁଇଟି ମନ୍ଦିରର ଶିଳ୍ପକର୍ମ ଭିନ୍ନ ସମୟର ବୁଝେଇବାକୁ କେତେଗୁଡ଼ିଏ ଫଟୋ ୭୩ ନମ୍ବର ଆଲୋକ ଚିତ୍ରମାଳାରେ ସଜାଗଲା । ବାମ ପଟେ ନୂତନ ମନ୍ଦିର (ଅର୍ଥାତ୍ ୧ନଂ ମନ୍ଦିର) ଓ ଡାହାଣ ପଟେ ପୁରାତନ ମନ୍ଦିର (୨ନଂ ମନ୍ଦିର)ରୁ ଫଟୋଚିତ୍ରଗୁଡ଼ିକ ଅଣାଯାଇଛି ।

## ଦକ୍ଷିଣ-ପାର୍ଶ୍ୱଦେବ :

ପୁରାତନ ମନ୍ଦିରର ମୂର୍ତ୍ତିଟିର ମୁଣ୍ଡ ନାହିଁ, ବୁଝାଯାଉ ନାହିଁ ଏହା 'ପୁଷନ୍' ଅଥବା ନୁହେଁ । ଏହାର ପାଦ ପାଖରେ ସପ୍ତାଶ୍ୱ ନାହିଁ, ନାହାନ୍ତି ଅରୁଣ ମଧ୍ୟ । ବଡ଼ ମନ୍ଦିରର ଦେବ ପୀଠ ଭଳି ପଞ୍ଚରଥ ନୁହେଁ । ଏହାର ପାଦ ପୀଠ ଏବଂ ପଦ୍ମ ପାଖୁଡ଼ା ଗଢ଼ଣ ମଧ୍ୟ ନିଆରା । ପାଦ ପାଖରେ ନାହାନ୍ତି ଆରାଧନାମଗ୍ନ ରାଜା ଓ ପୁରୋହିତ ଏବଂ କଟି ଦୁଇ ପାର୍ଶ୍ୱରେ ନାହାନ୍ତି ସୂର୍ଯ୍ୟପତ୍ନୀ ଚତୁଷ୍ଟୟ । ପରିଧାନର ଲୁଗାରେ ସୂକ୍ଷ୍ମ କାମ ନାହିଁ । ପୁରୁଷ ଓ ନାରୀ ମୂର୍ତ୍ତିଗୁଡ଼ିକର ମୁଖର ଗଠନରେ ଫରକ୍ ଅଛି ।



ଫଟୋ-୭୩(କ) : ଦକ୍ଷିଣ ସୂର୍ଯ୍ୟ (ନୂତନ)



ଫଟୋ-୭୩(ଖ) : ଦକ୍ଷିଣ ସୂର୍ଯ୍ୟ (ପୁରାତନ)



ଫଟୋ-୭୩(ଗ) : ଉତ୍ତର ସୂର୍ଯ୍ୟ (ନୂତନ)



ଫଟୋ-୭୩(ଘ) : ଉତ୍ତର ସୂର୍ଯ୍ୟ (ପୁରାତନ)



ଫଟୋ-୭୩(ଚ) : ପଶ୍ଚିମ ପାର୍ଶ୍ୱଦେବ (ନୂତନ)



ଫଟୋ-୭୩(ଛ) : ପଶ୍ଚିମ ପାର୍ଶ୍ୱଦେବ (ପୁରାତନ)



ଫଟୋ-୭୩(ଜ) : ଅଳସକନ୍ୟା (ନୂତନ)



ଫଟୋ-୭୩(ଝ) : ଅଳସକନ୍ୟା (ପୁରାତନ)

**ଉତ୍ତର-ପାର୍ଶ୍ୱଦେବ :** ପୁରାତନ ମୂର୍ତ୍ତିଟିରେ ଫୁଟୁ ନାହିଁ ବଡ଼ ମନ୍ଦିରର ଉତ୍ତର-ପାର୍ଶ୍ୱଦେବତାଙ୍କ ଓଜସ୍ୱିତା । ଘୋଡାଟି ମନେହୁଏ ଖେଳନା କାଠ ଘୋଡ଼ା । କର୍ଣ୍ଣାଭରଣ ଓ ଉପବୀତର କାର୍ଯ୍ୟରେ ଫରକ୍ ଅଛି । ମୁଖ ଗଠନ ସମାନ ନୁହେଁ ।

**ପଶ୍ଚିମ-ପାର୍ଶ୍ୱଦେବ :** ବହୁପୂର୍ବରୁ ୨ ନଂ ମନ୍ଦିରର ପଶ୍ଚିମ-ପାର୍ଶ୍ୱଦେବଙ୍କୁ ଏଠାରୁ ଅପସାରଣ କରାଯାଇ ବର୍ତ୍ତମାନ ଦିଲ୍ଲୀ ଜାତୀୟ ସଂଗ୍ରହାଳୟରେ ରଖାଯାଇଛି । ତାହାର ଆଲୋକ ଚିତ୍ର ଏଠାରେ ଦିଆଗଲା (୭୩-ଛ) । ନୂତନ ଓ ପୁରାତନ ମୂର୍ତ୍ତି ଦୁଇଟିର ଫରକ ପରିଷ୍କାର ବୁଝାପଡୁଛି । ବଡ଼ ମନ୍ଦିରର ତିନି ପାର୍ଶ୍ୱଦେବଙ୍କ ଚିତ୍ର ଓ ଏ ମନ୍ଦିରର ସେ ତିନି ଚିତ୍ର ପାଖାପାଖି ରଖାଗଲା । ଫରକ୍‌ଗୁଡ଼ିକ ପରିଷ୍କାର ଲକ୍ଷ୍ୟ କରାଯାଇପାରେ ।

**ବାଡ଼ର ଅନ୍ୟାନ୍ୟ କାର୍ଯ୍ୟ :** ଅବଶିଷ୍ଟ ଖୁବ୍ ବେଶୀ କିଛି ନାହିଁ । ଯାହା ଅଛି ତାହାକୁ ୭୨ ନମ୍ବର ଚିତ୍ରମାଳାରେ ସଜେଇ ଦିଆଗଲା ।

**ମନ୍ଦିର ଅଭ୍ୟନ୍ତର :** ତ୍ରୟୋଦଶ ଶତାବ୍ଦୀର କୋଣାର୍କ ମନ୍ଦିର କାହିଁକି ଏକାଦଶ ଶତାବ୍ଦୀର ଲିଙ୍ଗରାଜ ମନ୍ଦିର ଅଭ୍ୟନ୍ତର ସହିତ ମଧ୍ୟ ଏ ମନ୍ଦିରର କୌଣସି ତାଳମେଳ ନାହିଁ । ଗର୍ଭଗୃହ ଓ ଜଗମୋହନ ଭିତର ସମ୍ପୂର୍ଣ୍ଣ ଅଳଂକରଣଶୂନ୍ୟ ହୁଏ । ଏଠାରେ ଖାଲି ଅଳଂକୃତ ନୁହେଁ ବାହାର ଭଳି ଭିତରେ ମଧ୍ୟ ପାଗ ବିଭାଜନ ଅଛି । କଣମାନଙ୍କରେ ପୁଣି ଥାକ ଭଳି ଭାଞ୍ଜ କଟା ଯାଇଛି ଓ ମୂର୍ତ୍ତି ପାଇଁ କୁଲୁଙ୍ଗୀ ଅଛି । ଗର୍ଭ ଗୃହରୁ ଦେବ ଅଥବା ଦେବୀ ବହୁକାଳରୁ ଅପସାରିତ । ମନ୍ଦିର ଭିତରର କେତେକ ଚିତ୍ର ୭୨ନମ୍ବରରେ ରଖାଗଲା ।

## (୩) ଇଟା ତିଆରି ବିଷ୍ଣୁ ମନ୍ଦିର :

ବିମାନ ଓ ଜଗମୋହନ ଦୁହିଁଙ୍କ ଗଣ୍ଡି ଧ୍ୱଂସ ହୋଇଯାଇଛି । ପ୍ରବେଶ ଦ୍ୱାରରେ ଅଛି ଯୋଡ଼ିଏ ଦ୍ୱାରପାଳ ଓ ଗର୍ଭଗୃହ ଦ୍ୱାର ମୁଣ୍ଡରେ ଅଛି ଗୋଟିଏ ଲକ୍ଷ୍ମୀ ମୂର୍ତ୍ତି । ଏହା ବ୍ୟତୀତ ବାହାରେ ଭିତରେ କୌଣସି ମୂର୍ତ୍ତି ନାହିଁ । ୧୯୫୬ର ଖନନ କାର୍ଯ୍ୟ ସମୟରେ ଏ ମନ୍ଦିରଟି ବାହାରିଲା । ସେତେବେଳେ ଦୁଇଟି କନ୍ଧାପଥର ତିଆରି ପାର୍ଶ୍ୱଦେବତା ଥିଲେ- ବରାହ ଅବତାର ଓ ବାମନ ଅବତାର । ତାହା ଅପସାରିତ ହୋଇଛି କୋଣାର୍କ ମ୍ୟୁଜିୟମ୍‌କୁ ।[୨୧୧] ସେଥିରୁ ଅନୁମାନ କରାଯାଏ, ଏହା ଗୋଟିଏ ବିଷ୍ଣୁ ମନ୍ଦିର ଥିଲା ।



ଫଟୋ-୭୪ : ଜରାଜୀର୍ଣ୍ଣ ଇଟାତିଆରି ବିଷ୍ଣୁ ମନ୍ଦିର

ପୂର୍ବେ ବାଲି ତଳୁ ମିଳିଥିବା ବିଷ୍ଣୁ ମୂର୍ତ୍ତି ଏଇ ମନ୍ଦିରର ମୂଳ ବିଗ୍ରହ ବୋଲି କୁହାଯାଉଛି । ମୂର୍ତ୍ତିଟି ଦିଲ୍ଲୀର National Museum ରେ ଅଛି ।[୨୯୨] ମନ୍ଦିରଟିର କୌଣସି ସଂରକ୍ଷଣ ହେଲା ଭଳି ମନେ ହେଉନାହିଁ । ବହୁ ପରସ୍ତ ଶିଉଳି ଜମି ଗଲାଣି ଏବଂ ଇଟାଗୁଡ଼ିକ କ୍ଷୟ ହେବାରେ ଲାଗିଛି । କିଛି ସମୟ ଛିଡ଼ା ହେଲେ ହୃଦୟ ଅଧିକ ଭାରାକ୍ରାନ୍ତ ହେବ । (ଫଟୋ-୭୪)

## (୪) ନାଟମଣ୍ଡପ :

ନାଟମଣ୍ଡପର ପୂର୍ବ ଦିଗର ବିଶାଳ ସୋପାନଶ୍ରେଣୀ ଯେଉଁଠାରୁ ଆରମ୍ଭ ହୋଇଛି, ସେଠାରେ ଦେଖାହେବ ପୂର୍ବରୁ ଆଲୋଚିତ ଗଜସିଂହ ସହିତ । (ଫଟୋ-୭୫)

ପରିକ୍ରମା କିନ୍ତୁ ଆରମ୍ଭ ହେବ ମଣ୍ଡପର ଦକ୍ଷିଣ ଦିଗରୁ କାରଣ ପ୍ରଥମ ପୃଷ୍ଠର କାର୍ଯ୍ୟଗୁଡ଼ିକ ସେଇ ଦିଗରେ ସର୍ବାଧିକ ପରିସ୍ଫୁଟ । ପୂର୍ବେ ଆଲୋଚିତ ହୋଇଛି, ଏ ମନ୍ଦିରର ପୀଠ ମଧ୍ୟ ୧ ନମ୍ବର ମନ୍ଦିରର ପୀଠର ପ୍ରାୟ ସମ ଉଚ୍ଚ ଏବଂ ଏହା ମଧ୍ୟ ଗୋଟିଏ ପଞ୍ଚରଥ ପରିକଳ୍ପନା । କିନ୍ତୁ ପାଗଗୁଡ଼ିକ ପରିଷ୍କାର ଫୁଟୁ ନାହିଁ । ନାଟମଣ୍ଡପର ଭୂମି ନକ୍ସା (ରେଖାଚିତ୍ର-୧୨, ପୃଷ୍ଠା-୧୨୦) ଆଉ ଥରେ ଦେଖିନିଅନ୍ତୁ । ପ୍ରଥା ଅନୁଯାୟୀ ପୀଠ ଦେହରେ ଅଛି ପାଞ୍ଚ ବିଭାଗ - ପାଭାଗ, ତଳଜଙ୍ଘା, ବନ୍ଧନ, ଉପରଜଙ୍ଘା ଓ ବାରଣ୍ଡା । କିନ୍ତୁ ଉପବିଭାଗଗୁଡ଼ିକ କୋଣପାଗରେ ଯେତେ ସ୍ପଷ୍ଟ ଅନ୍ୟତ୍ର ତାହା ନୁହେଁ । ଏହାର କାରଣ ସମାନ୍ତରାଳ ଉପବିଭାଗଗୁଡ଼ିକ ନିରବଚ୍ଛିନ୍ନ ଭାବେ ବାଡ଼ର ଚତୁର୍ଦ୍ଦିଗରେ ବୁଲିନାହିଁ । ରେଖାଚିତ୍ର-୧୬ ସହିତ ଫଟୋ (୭୬-କ, ପୃଷ୍ଠା-୧୧୨,୧୧୩) ଦେଖିଲେ ବକ୍ତବ୍ୟ ପରିଷ୍କାର ହେବ ।



ଫଟୋ-୭୫ : ଗଜସିଂହ

ବଡ଼ ମନ୍ଦିର ପୃଷ୍ଠର ଉପନକୁ କୌଣସିକ୍ରମେ ପ୍ରଥମ ପୃଷ୍ଠର ମାନ୍ୟତା ଦିଆଯାଇ ପାରିବ ନାହିଁ କାରଣ ତାହା ଉପରେ ଖୁର, କୁମ୍ଭ ଇତ୍ୟାଦି ଉପବିଭାଗ ନାହିଁ । ଏଠାରେ କିନ୍ତୁ ଉପନ ଉପରେ ତିନିଟି ଉପବିଭାଗ ଅଛି- ଖୁର, ନୋଳି ଓ ବସନ୍ତ । ଏହାକୁ ପ୍ରଥମ ପୃଷ୍ଠ ରୂପେ ଚିହ୍ନିତ କଲେ ମଧ୍ୟ ଏହା ଉପରେ କାରୁକାର୍ଯ୍ୟ ପ୍ରାୟ ନାହିଁ । ଫଟୋ- ୭୬(ଖ) ଦେଖନ୍ତୁ ।

ପୂର୍ବ ଦିଗର ସୋପାନ ଦୁଇପଟେ ଦୁଇଟି ବାଡ଼ ଅଛି ଯାହା ପ୍ରଥମ ଓ ଦ୍ୱିତୀୟ ପୃଷ୍ଠର ସଂପ୍ରସାରିତ ଅଂଶ । ଏହା ଉପରେ ମଧ୍ୟ ନିୟମିତ ବିଭାଗ ତଥା ଉପବିଭାଗ ଅଛି କିନ୍ତୁ ମନେ ହେବ ଶିଳ୍ପୀ ଯେପରି ଏଗୁଡ଼ିକ ଅଳଂକୃତ କରିବାକୁ ସଂପୂର୍ଣ୍ଣ ଭୁଲି ଯାଇଛନ୍ତି । ଫଟୋ-୭୬(ଗ) ଦେଖିଲେ ବକ୍ତବ୍ୟ ପରିଷ୍କାର ହେବ । ନାଟମଣ୍ଡପ ଯେବେ ବଡ଼ ମନ୍ଦିର ସହିତ ଗଢ଼ା ହୋଇଥାଆନ୍ତା; ଏପରି ବିଚ୍ୟୁତି ଅକଳ୍ପନୀୟ । ପାଭାଗ, ବନ୍ଧନ ଓ ବାରଣ୍ଡାର ଉପବିଭାଗ ଉପରେ ପରିଚିତ ଡାଳି କାମ ଅଛି, ନୂତନତ୍ୱ କିଛି ନାହିଁ । ଏକମାତ୍ର ବନ୍ଧନକୁ ଛାଡ଼ିଦେଲେ ଅନ୍ୟାନ୍ୟ ଉପବିଭାଗଗୁଡ଼ିକର ବିସ୍ତାରରେ ବିଘ୍ନ ଘଟାଉଛନ୍ତି ନୃତ୍ୟ-ବାଦ୍ୟରତ କନ୍ୟାଗଣ ।

ରେଖାଚିତ୍ର-୧୬ : ନାଟମଣ୍ଡପ ପୀଠ





ଫଟୋ-୭୬(କ) : ଦକ୍ଷିଣ ପଶ୍ଚିମ କୋଣ ନାଟମଣ୍ଡପ ତଳପୃଷ୍ଠ



ଫଟୋ-୭୬(ଖ) : ପ୍ରଥମ ପୃଷ୍ଠ

ଦକ୍ଷିଣ, ପଶ୍ଚିମ ଓ ଉତ୍ତର ପୃଷ୍ଠର ଚିତ୍ର ଉପସ୍ଥାପିତ ହେଲା। (ଫଟୋ- ୭୭ କ,ଖ,ଗ)। ଏ ଚିତ୍ରଗୁଡ଼ିକରେ ମିଳୁଛି ଅସଂଖ୍ୟ ନୃତ୍ୟରତା ନାରୀ ଓ କିଛି ପୁରୁଷ। ମନେହେବ ଯେପରି ନୃତ୍ୟଶାସ୍ତ୍ରର ପୃଷ୍ଠା ପରେ ପୃଷ୍ଠା ଖୋଲି ଯାଉଛି ପ୍ରସ୍ତର ପୃଷ୍ଠାରେ । ସମସ୍ତେ ନୃତ୍ୟରେ ମତ୍ତ; ଏପରିକି ଏ ବିଶ୍ୱବ୍ୟାପୀ ନୃତ୍ୟର ତାଳେ ତାଳେ ନାଚି ଉଠୁଛନ୍ତି ବଂଶୀଧାରୀ କୃଷ୍ଣ, ପେଟମୋଟ ନାଗରିକ ଓ ଜଟାଧାରୀ ସନ୍ନ୍ୟାସୀ । ପାଭାଗ ଲାଇନ୍‌ରେ ଅଛି କିଛି କଖର ମୁଣ୍ଡି, ବନ୍ଧନର ତଳେ ଓ ଉପରେ କିଛି ବଜ୍ରମୁଣ୍ଡି । ଏହା ମଧ୍ୟରେ ଅଛନ୍ତି ବିଳାସିନୀ ନାରୀ, ଅଶ୍ୱାରୂଢ଼ ରାଜା, ହସ୍ତୀ ପୃଷ୍ଠରେ ରାଜା । ଶିକାର ଦୃଶ୍ୟ । ସିଂହ ସହିତ ମୁହାଁମୁହିଁ, ଏକାକିନୀ ନାରୀ, ଏଇପରି ଅନେକ କିଛି । ଏଗୁଡ଼ିକୁ ନାଟମଣ୍ଡପରେ ବିଚ୍ୟୁତି କୁହାଯିବ । ନମୁନାଗୁଡ଼ିକ ଉପସ୍ଥାପିତ ହେଲା ଫଟୋ-୭୮ ମାଳାରେ । କିନ୍ତୁ ଏ ନୃତ୍ୟରତ ଓ ଅନ୍ୟ କାର୍ଯ୍ୟରେ ରତ ନରନାରୀ ଦେହରେ ନାହିଁ ସେଇ ଅପାର୍ଥିବ ଲାବଣ୍ୟ, ଯାହା ବଡ଼ଦେଉଳର ପ୍ରତିଟି କାର୍ଯ୍ୟରେ ଅନୁଭୂତ ହୋଇଛି ।

କୁହାଯାଇଥାଏ ଏ ନାଟମଣ୍ଡପରେ ଆଦୌ ମିଥୁନ ମୂର୍ତ୍ତି ନାହିଁ । ଯାହା ବଡ଼ ମନ୍ଦିରରେ ଅକଳ୍ପନୀୟ । କଥାଟି କିନ୍ତୁ ସଂପୂର୍ଣ୍ଣ ସତ୍ୟ ନୁହେଁ । ଉତ୍ତର ଦିଗର ପୃଷ୍ଠ ବାଡ଼ରେ ଏପରି ଗୋଟିଏ ଦୃଶ୍ୟ ଅଛି, ଯାହା ଉପସ୍ଥାପନ କରାଗଲା ଫଟୋ-୭୮(ଡ଼) ପୃଷ୍ଠା-୨୧୮ରେ ।

ସୋପାନ ଦେଇ ଦ୍ୱିତୀୟ ପୃଷ୍ଠ ଉପରକୁ ଉଠିଲେ ମିଳିବ ୧୧ଫୁଟ୍ ଓସାର ବାରଣ୍ଡା, ମଣ୍ଡପ ପରିକ୍ରମା କରିବାକୁ । ଏହା ଉପରେ ଅଛି ମାତ୍ର ୪ ଫୁଟ୍ ୫ ଇଞ୍ଚ ଉଚ୍ଚ ତୃତୀୟ ପୃଷ୍ଠ ଯେଉଁଥିରେ ଅଛି ମାତ୍ର ତିନିଟି ବିଭାଗ- ପାଭାଗ, ଜଙ୍ଘ ଓ ବାରଣ୍ଡି । ଏହା ମଧ୍ୟ ନିରବଚ୍ଛିନ୍ନ ନୁହେଁ । କିନ୍ତୁ ଭାସ୍କର୍ଯ୍ୟଗୁଡ଼ିକ ଅନବଦ୍ୟ । ମନେହେବ ଯେପରି ଦଳେ ପୋଖତ୍ ଶିଳ୍ପୀ ଆସି ଏ କାମ ଶେଷକରି ଅନ୍ୟତ୍ର ଚାଲିଗଲେ । ଫଟୋ-୮୦ ଦେଖନ୍ତୁ । ଫଟୋ-୭୯,୮୦,୮୧ ଓ ୮୨ରେ ଆହୁରି ମଧ୍ୟ ମିଳିବ ନାଟମଣ୍ଡପର ଖଣ୍ଡିତ ବାଡ଼ ଓ ଉତ୍ତର ଦିଗର ନିଦା ବାଡ଼ ଏବଂ ତାହା ଉପରେ ବହୁ ଶିଳ୍ପକର୍ମ ।

ମଣ୍ଡପ ବାଡ଼ ପାର ହୋଇ ଭିତରକୁ ପ୍ରବେଶ କଲେ ମିଳିବେ ସେଇ ପ୍ରସିଦ୍ଧ ଚାରି ଖମ୍ବ ଯାହା ପୂର୍ବରୁ ବିଶେଷ ରୂପେ ଆଲୋଚିତ ହୋଇଛି। ଚିତ୍ରମାଳା ୮୪ ଦେଖନ୍ତୁ । ମଣ୍ଡପର ବାଡ଼, ଖମ୍ବ ଏପରିକି ତୃତୀୟ ପୃଷ୍ଠବାଡ଼ରୁ କେତେକ ନର୍ତ୍ତକୀ ଓ ବାଦିକାମାନଙ୍କର ଚିତ୍ର ଉପସ୍ଥାପନ କରାଗଲା ଚିତ୍ରମାଳା-୮୬ରେ । ତଳବାଡ଼ର ନର୍ତ୍ତକୀ ଓ



ଫଟୋ-୭୬(ଗ) : ପୂର୍ବ ସୋପାନର କରବାଡ଼ (ନାଟମଣ୍ଡପ)



ଫଟୋ-୭୭(କ) : ନୃତ୍ୟବାଦ୍ୟରତ ନର୍ତ୍ତକ ନର୍ତ୍ତକୀ (ନାଟମଣ୍ଡପ ତଳପୃଷ୍ଠ, ଦକ୍ଷିଣ)



ଫଟୋ-୭୭(ଖ) : ନାଟମଣ୍ଡପ ତଳପୃଷ୍ଠ, ପଶ୍ଚିମ



ଫଟୋ-୭୭(ଗ) : ନାଟମଣ୍ଡପ ତଳପୃଷ୍ଠ, ଉତ୍ତର



ଫଟୋ-୭୮(କ) : ଅଶ୍ୱପୃଷ୍ଠରେ ରାଜା



ଫଟୋ-୭୮(ଖ) : ହସ୍ତୀପୃଷ୍ଠରେ ରାଜା



ଫଟୋ-୭୮(ଗ) : ସିଂହସହ ଯୁଦ୍ଧ



ଫଟୋ-୭୮(ଘ) : କୁବୁଜିଧାରୀ ନର୍ତ୍ତକୀ



ଫଟୋ-୭୮(ଚ) : ନର୍ତ୍ତକୀ



ଫଟୋ-୭୮(ଛ) : ନର୍ତ୍ତକୀ



ଫଟୋ-୭୮(ଜ) : ନର୍ତ୍ତକୀ



ଫଟୋ-୭୬(ଙ) : ଯୋଗୀ



ଫଟୋ-୭୮(ଟ) : ଅଳସ କନ୍ୟା



ଫଟୋ-୭୮(ଠ) : ବଂଶୀଧାରୀ କୃଷ୍ଣ



ଫଟୋ-୭୮(ଡ) : ନାଟମଣ୍ଡପରେ ଥିବା ଏକମାତ୍ର ଅପ୍ରାକୃତିକ ମୈଥୁନ ମୂର୍ତ୍ତି (ତଳପୃଷ୍ଠ ଉତ୍ତରଦିଗ)



ଫଟୋ-୭୯ : ଦକ୍ଷିଣ ଦିଗର ସୋପାନ, ପୃଷ୍ଠ ଓ ମଣ୍ଡପ



ଫଟୋ-୮୦ : ନାଟମଣ୍ଡପର ତୃତୀୟ ପୃଷ୍ଠ



ଫଟୋ-୮୧ : ମଣ୍ଡପ ବାଡ଼ (ଦକ୍ଷିଣ-ପଶ୍ଚିମ କୋଣ)



ଫଟୋ-୮୨ : ଉତ୍ତର ଦିଗର ନିଦା ବାଡ଼ (ଉତ୍ତର-ପୂର୍ବ)



ଫଟୋ-୮୩ : ବାଡ଼ ଦେହରେ ସଂଯୁକ୍ତ ଖମ୍ବ



ଫଟୋ-୮୪ : ମଣ୍ଡପବାଡ଼

ବାଦିକାମାନଙ୍କଠାରୁ ଏମାନଙ୍କର ଚେହେରା, ପରିଧାନ ଓ ନୃତ୍ୟଭଙ୍ଗୀରେ କିଛି ଫରକ ଦିଶୁଛି । କେତେକ ବୈଷ୍ଣବ ବେଶଧାରୀ ମଧ୍ୟ ଦେଖାଯାଉଛନ୍ତି । ମନେହୁଏ ବିଭିନ୍ନ ସଂପ୍ରଦାୟର ନର୍ତ୍ତକୀ, ବାଦିକା ଏଠାକୁ ଆସୁଥିଲେ ସେମାନଙ୍କର କଳା ପ୍ରଦର୍ଶନ କରିବାକୁ , ତାହାରି ସ୍ମାରକୀ ଏସବୁ ଚିତ୍ର ।

ସର୍ବାଙ୍ଗୀନ ଶିଳ୍ପ ପରିକଳ୍ପନାରେ ନାଟମଣ୍ଡପ ମଧ୍ୟ ଅନବଦ୍ୟ କିନ୍ତୁ ମନୁଷ୍ୟ ଅବୟବ ଗଠନରେ ଅପରିଣତ ହସ୍ତର କାର୍ଯ୍ୟ ବହୁସ୍ଥାନରେ ଫୁଟି ବାହାରୁଛି । ମନେ ପକାନ୍ତୁ ନାଟ୍ୟାଚାର୍ଯ୍ୟଙ୍କ ମୂର୍ତ୍ତି କଥା (ଫଟୋ-୨(କ) ପୃଷ୍ଠା-୩୦ ଦେଖନ୍ତୁ) । ଦେହଗଠନରେ କୌଣସି ଲାଳିତ୍ୟ ନାହିଁ । ଗୋଟିଏ ବୃଦ୍ଧ ନାଟ୍ୟାଚାର୍ଯ୍ୟ ଦେହରେ ଅବଶ୍ୟ ଯୌବନର ଲାଳିତ୍ୟ ଆଶା କରାଯାଏ ନା, କିନ୍ତୁ ବର୍ଷ ବର୍ଷ ନାଟ୍ୟ ସାଧନାସିଦ୍ଧ ଦେହ ସହିତ ବୟସର ଗାମ୍ଭୀର୍ଯ୍ୟ ମିଶି ଅନ୍ୟ ଗୋଟିଏ ମାତ୍ରା ଯୋଗ କରି ପାରିଥାଆନ୍ତା । ତୁଳନାତ୍ମକ ଭାବେ ସୂତ୍ରଧର ଦମ୍ପତିଙ୍କୁ ଦେଖନ୍ତୁ । (ଫଟୋ-୪୫, ପୃଷ୍ଠା-୧୬୬)

ଭିତର ଖମ୍ବଗୁଡ଼ିକ ପରୀକ୍ଷା କଲେ ପ୍ରଥମେ ନଜର ପଡ଼ିବ ଖୁର ଏବଂ କୁମ୍ଭ ଆଦୌ ଗଢ଼ା ହୋଇ ନାହିଁ । ସାଧା ପଥର ବକ୍ଷରେ ନିହାଣମୁନ ଆଦୌ ଦାଗ କାଟି ନାହିଁ । ବାୟାଚକଡ଼ାରୁ ଜଣାପଡୁଛି, ସେ ଯୁଗରେ ମଧ୍ୟ ଏ ଯୁଗ ଭଳି ବିଭିନ୍ନ ବିଭିନ୍ନ ବିଷୟରେ କୁଶଳୀଶିଳ୍ପୀମାନଙ୍କୁ ବିଭିନ୍ନ କାର୍ଯ୍ୟ ବଣ୍ଟା ହେଉଥିଲା । ସବା ତଳର କାମ ସବା ଶେଷରେ କରିବା ଯୁକ୍ତିଯୁକ୍ତ କାରଣ ଉପର ଭାସ୍କର୍ଯ୍ୟ କାଟିବା ସମୟରେ ଭଙ୍ଗା ଟୁକୁଡ଼ା ପଥର ପଡ଼ି ତଳ ଶିଳ୍ପକାର୍ଯ୍ୟର କ୍ଷତି ଘଟାଇ ପାରେ । ଦେଶରେ ଏପରି କିଛି ରାଜନୈତିକ ବା ପ୍ରାକୃତିକ ବିପର୍ଯ୍ୟୟ ଘଟିଥିଲା କି, ଯାହା ଫଳରେ ଶେଷ କାର୍ଯ୍ୟ ବନ୍ଦ ହୋଇଯାଏ ? କୌଣସି ଗବେଷକ ଯଦି ଏହି ଖିଅ ଧରି ଅଗ୍ରସର ହୁଅନ୍ତି, ତେବେ ହୁଏତ ଦିନେ ଜଣାପଡ଼ିବ, ନାଟମଣ୍ଡପ ଠିକ୍ କେଉଁ ସମୟରେ ଗଢ଼ା ହୋଇଥିଲା । କିନ୍ତୁ ଯେତିକି ଦିଶୁଛି ସେଥିରୁ ସ୍ପଷ୍ଟ ବାରି ହେଉଛି, ବଡ଼ ମନ୍ଦିର ଓ ନାଟମଣ୍ଡପ ଏକା ସମୟର କାର୍ଯ୍ୟ ନୁହେଁ ।




ଫଟୋ-୮୫(କ) : ଚତୁଷ୍କୋଣ ଖମ୍ବ-୧



ଫଟୋ-୮୫(ଖ) : ଚତୁଷ୍କୋଣ ଖମ୍ବ-୨



ଫଟୋ-୮୫(ଗ) : ଚତୁଷ୍କୋଣ ଖମ୍ବ-୩



ଫଟୋ-୮୫(ଘ) : ଚତୁଷ୍କୋଣ ଖମ୍ବ-୪



ଫଟୋ-୮୬(କ) : ପ୍ରଣାମ ମୁଦ୍ରାରେ



ଫଟୋ-୮୬(ଖ) : ଅଞ୍ଜଳି ମୁଦ୍ରାରେ ନର୍ତ୍ତକୀ



ଫଟୋ-୮୬(ଗ) : କରତାଳ ବାଦିକା



ଫଟୋ-୮୬(ଘ) : ଢୋଲ ବାଦିକା



ଫଟୋ-୮୭(କ) : ଜଗମୋହନ ଦ୍ୱାରବନ୍ଧ ଉପର ଲିଣ୍ଟେଲ୍‌ର ଖଣ୍ଡଚିତ୍ର



ଫଟୋ-୮୭(ଖ) : ଗଛତଳେ ପଡ଼ିଥିବା ଲିଣ୍ଟେଲ୍‌ର ଉପରିଭାଗ ଯାହା ନାଟମଣ୍ଡପରୁ କଢ଼ାଯାଇଥିବା ବିଶ୍ୱାସ କରାଯାଏ



ଫଟୋ-୮୮(କ) : ନାଟମଣ୍ଡପ ଚନ୍ଦ୍ରାତପ (ବେଢ଼ାର ଉତ୍ତର-ପୂର୍ବ କୋଣରେ)



ଫଟୋ-୮୮(ଖ) : ୫ଫୁଟ୍ ବ୍ୟାସର ଅକ୍ଷତ ଚନ୍ଦ୍ରାତପ

ମଣ୍ଡପ ବାଡ଼ର ଖୋଲା ଅଂଶ ଉପରେ ଥିବା ଲିଣ୍ଟେଲ୍ ବର୍ତ୍ତମାନ ପଡ଼ିରହିଛି ବେଢ଼ା ଭିତର ଉତ୍ତର-ପୂର୍ବ ଦିଗର ବଟଗଛ ମୂଳେ । (ରେଖାଚିତ୍ର-୮ରେ ୧୦ ଚିହ୍ନିତ ସ୍ଥାନ, ପୃଷ୍ଠା-୧୦୬) ବଡ଼ ମନ୍ଦିରର ଦ୍ୱାର ବନ୍ଧ ଉପର ପଟିରେ ଯେପରି କାର୍ଯ୍ୟ ସବୁ ଅଛି, ଏଥିରେ ମଧ୍ୟ ସେହିପରି ଅଛି । କାର୍ଯ୍ୟ ଦୁଇଟିର ଫଟୋ ଚିତ୍ର ୮୭-'କ' ଓ 'ଖ'ରେ ଉପସ୍ଥାପନ କରାଗଲା (ପୃଷ୍ଠା-୨୨୪) । ୮୭(କ) ବଡ଼ମନ୍ଦିରର କାର୍ଯ୍ୟ ଏବଂ ୮୭(ଖ) ନାଟମନ୍ଦିରର ଲିଣ୍ଟେଲ୍ । ଦୁଇଟିଯାକ କାର୍ଯ୍ୟ ଶାସ୍ତ୍ରାନୁମୋଦିତ ଏବଂ ଅତି ସୁନ୍ଦର । କିନ୍ତୁ ମଧ୍ୟସ୍ଥ ପଟ ଉପରେ ଥିବା ମୂର୍ତ୍ତିମାନଙ୍କ ଅବୟବ, ପୋଷାକ ଏବଂ ସହଚରମାନଙ୍କରେ (ଯଥା ସବା ତଳ ଲକ୍ଷ୍ମୀ ପଟ) ଫରକ ଅଛି । କିନ୍ତୁ କରୁଣାସାଗରଙ୍କ ମତ, ଏହା ଜଗମୋହନର ଉତ୍ତର କିମ୍ବା ଦକ୍ଷିଣ ଦ୍ୱାରବନ୍ଧ ଉପର କାର୍ଯ୍ୟ ।[୨୯୩] ଚାରିଟି କାରଣରୁ ଏ ମତ ଗ୍ରହଣୀୟ ମନେ ହେଉ ନାହିଁ । ଉତ୍ତର ଦିଗର ଉପର ଦ୍ୱାରବନ୍ଧର କିଛି ଅଂଶ ଏବେ ମଧ୍ୟ ଅଛି । ଫଟୋ-୫୬, ପୃଷ୍ଠା-୧୮୧ ଦେଖନ୍ତୁ । (୧) ବଟ ଗଛ ମୂଳେ ଯାହା ପଡ଼ିଛି ତାହା ଖଣ୍ଡିତ ଅଂଶଠାରୁ ଟିକିଏ ବଡ଼ ହେବ । (୨) ଦକ୍ଷିଣ ଦିଗର ଦ୍ୱାରର ଦୁଇପଟ ବନ୍ଧ ତସ୍କରମାନେ ନେଇଗଲେ ଏବଂ ମୁଣ୍ଡଟି ସମୁଦ୍ର ଦିଗକୁ ନ ବୋହି ଓଲଟା ଆଣି ବଟ ଗଛ ମୂଳେ ଛାଡ଼ି ଗଲେ, ଏହା ବିଶ୍ୱାସଯୋଗ୍ୟ ନୁହେଁ । (୩) ଦକ୍ଷିଣ ଦ୍ୱାର ନୂଆ ପଥରରେ ସିଲ୍ କରାଯିବାର ବହୁ ପୂର୍ବରୁ ଯେଉଁ ଫଟୋ ତୋଳା ହୋଇଥିଲା (ଫଟୋ: ୧୧-କ, ପୃଷ୍ଠା-୮୦) ସେଥିରେ ଦ୍ୱାରବନ୍ଧର ଦାଣ୍ଡି ଓ ମୁଣ୍ଡି କିଛି ନାହିଁ । (୪)ଅନ୍ୟ କାରଣ ଛାଡ଼ି ଦେଲେ ମଧ୍ୟ ଜଗମୋହନ ପୂର୍ବଦ୍ୱାର ବନ୍ଧ ଯେତେ କ୍ଷୟ ହୋଇଛି (ଫଟୋ:୫୧-ଖ, ପୃଷ୍ଠା-୧୭୫) (ମୁଗୁନି ପଥର-ଅଳ୍ପ ହେଲେ ମଧ୍ୟ) ସେ ତୁଳନାରେ ଏ ଦ୍ୱାର ବନ୍ଧ ଅନେକ ନିଖୁଣ ଅଛି । ତଥାପି କରୁଣାସାଗରଙ୍କ ଭଳି ଜଣେ ପଣ୍ଡିତ ବ୍ୟକ୍ତିଙ୍କ ମତାମତ ଅଗ୍ରାହ୍ୟ କରିବା ପୂର୍ବରୁ ଗଛ ମୂଳେ ପଡ଼ିଥିବା ଲିଣ୍ଟେଲ୍ ଓ ଜଗମୋହନ ପୂର୍ବ-ଉତ୍ତର ଦ୍ୱାର ଉପରେ ଥିବା ପୂର୍ଣ୍ଣ ଓ ଖଣ୍ଡିତ ଲିଣ୍ଟେଲ୍‌ର ସଂପୂର୍ଣ୍ଣ ମାପ କରି ଯୋଡ଼ ମିଳେଇ ପରୀକ୍ଷା କରିବା ପ୍ରୟୋଜନ ।

ଫଟୋ-୮୮ (କ,ଖ) ଗୋଟିଏ ସିଲିଂର ଚିତ୍ର ଯାହା ନାଟ ମଣ୍ଡପ ଉପରେ ଥିବା ଅନୁମାନ କରାଯାଉଛି । ପ୍ରତ୍ନତାତ୍ତ୍ୱିକ ଦେବଳା ମିତ୍ର ଅନୁମାନ କରନ୍ତି, ଏହା ଗୋଟିଏ ପୀଢ଼ ମଣ୍ଡପ ଥିଲା ଏବଂ ବାଲି ଖୋଳିବା ସମୟରେ ପାଖରେ ପଡ଼ିଥିବା ଚନ୍ଦ୍ରାତପ, ଭିତର ସିଲିଂ ଥିଲା । ପଥରର ଚନ୍ଦ୍ରାତପଟି ବର୍ତ୍ତମାନ ବେଢ଼ାର ଉତ୍ତର-ପୂର୍ବ ପଟେ ଲୁହା କଡ଼ିମାନଙ୍କ ନିକଟରେ ପଡ଼ି ରହିଛି । ଏହା ଦେଖିବାକୁ କୋଣାର୍କ ମ୍ୟୁଜିୟମ୍‌ରେ ରକ୍ଷିତ ଗୋଟିଏ ବିଶାଳ ବିକଶିତ ପଦ୍ମଫୁଲ ଭଳି । ମନମୋହନ ଗାଙ୍ଗୁଲୀ ୧୯୦୦-୦୫ ଖ୍ରୀଷ୍ଟାବ୍ଦ ଖନନ ସମୟରେ ପୀଢ଼ ଅଂଶର ଭଗ୍ନ ଖଣ୍ଡ ଧ୍ୱଂସସ୍ତୂପ ଭିତରେ ପଡ଼ିଥିବା କଥା ସ୍ମରଣ କରିଛନ୍ତି । **(P-472)** ଏହା ଗୋଟିଏ ୫ ଫୁଟ୍ ବ୍ୟାସର ଗୋଲ ବୃତ୍ତ, ଯାହାର ମଧ୍ୟବୃତ୍ତରେ ବସିଛନ୍ତି ସ୍ୱୟଂ ସୂର୍ଯ୍ୟଦେବ । ଦ୍ୱିତୀୟ ବୃତ୍ତରେ ଅଛି ଆଠଟି ପଦ୍ମପାଖୁଡ଼ା ଓ ତୃତୀୟ ବୃତ୍ତରେ ଷୋଳଟି ପଦ୍ମପାଖୁଡ଼ା ଉପରେ ନୃତ୍ୟବାଦ୍ୟରତା ଷୋଳଟି ନର୍ତ୍ତକୀ । ଏଠାରେ ମଧ୍ୟ ଅବୟବ ଗଠନରେ ଲାଳିତ୍ୟ ଫୁଟୁ ନାହିଁ ।

ଗୋଟିଏ ପ୍ରଶ୍ନ ବୋଧହୁଏ କାହାରି ମନକୁ ଛୁଇଁ ନାହିଁ । ପ୍ରାୟ ପାଞ୍ଚ ଫୁଟ୍ ବ୍ୟାସର ମୋଟ ପଥର କାର୍ଯ୍ୟ ଉଡ଼ି ଆସି କଡ଼ରେ ପଡ଼ିନଥିବ । ଯେବେ ପ୍ରାକୃତିକ ଦୁର୍ଯୋଗରେ ମନ୍ଦିର ଭୁଶୁଡ଼ି ପଡ଼ିଲା, ତେବେ ସିଲିଂଟି ମଧ୍ୟ ଖଣ୍ଡ ଖଣ୍ଡ ହୋଇ ମଣ୍ଡପର କିଛି ଭିତରେ ଓ କିଛି ବାହାରେ ପଡ଼ି ଥାଆନ୍ତା । ସ୍ୱାଭାବିକ ଭାବେ ମୁହଁମାଡ଼ି ପଡ଼ିଥିଲେ ମଝିରେ ପଦ୍ମଫୁଲ ଉପରେ ସୂର୍ଯ୍ୟଦେବ ଫୁଲ ସହିତ ନିଶ୍ଚିହ୍ନ ହୁଅନ୍ତେ ଏବଂ ପ୍ରାନ୍ତଦେଶୀୟ ପାଖୁଡ଼ାଗୁଡ଼ିକର ଉଚ୍ଚ ଅଂଶଗୁଡ଼ିକ ଅକ୍ଷତ ରୁହନ୍ତା ନାହିଁ । ନବଗ୍ରହ ଶୀଳା ଯେଉଁ ଭାବେ ସ୍ଥାନାନ୍ତରିତ ହେଉଥିଲା । ମନେହୁଏ କିଉରିଓ ଶିକାରୀ ଏ ଅପୂର୍ବ ସୁନ୍ଦର ଶିଳ୍ପ କର୍ମଟି ସେହିପରି ଅପସାରଣ କରିବାର ବ୍ୟର୍ଥ ଚେଷ୍ଟା କରିଥିଲେ । ଏ ଦିଗରେ ଆହୁରି ଗବେଷଣା ହେବା ପ୍ରୟୋଜନ ।

ସାମଗ୍ରିକ ଭାବେ ନାଟମଣ୍ଡପର ଭାସ୍କର୍ଯ୍ୟକୁ ବିଚାର କଲେ ଏହା ପରିଷ୍କାର ଜଣାପଡୁଛି ଯେ ଏ ମଣ୍ଡପ ମୂଳ ମନ୍ଦିର ଗଢ଼ା ହେବାର ବହୁ ପରେ ଗଢ଼ାହୋଇଛି, ଯେଉଁଥିରେ ମୂଳ ମନ୍ଦିରର ତ୍ରୁଟିଶୂନ୍ୟ ପରିକଳ୍ପନାର ସମ୍ପୂର୍ଣ୍ଣ ଅଭାବ ।

■■■

## ପ୍ରସିଦ୍ଧିର ବିଡ଼ମ୍ବନା :

କୌଣସି ଘଟଣା ପ୍ରସିଦ୍ଧି ଲାଭ କଲେ ପ୍ରଶଂସକ ଓ ସମାଲୋଚକମାନଙ୍କ ଆଲୋଚନା ପରିସରକୁ ଆସିଯାଏ । ବିଷୟଟିର ଗୁଣ ଅଧିକ ଥିଲେ ପ୍ରଶଂସାର ଆଧିକ୍ୟରେ ସମାଲୋଚନା ବୁଡ଼ିଯାଏ ଏବଂ କ୍ରମେ ପ୍ରଶଂସା ପଲ୍ଲବାୟିତ ହୋଇ କିମ୍ବଦନ୍ତୀର ରୂପ ନିଏ । ବିଷୟଟିର ନକାରାତ୍ମକ ଦିଗଟି ଅଧିକ ହେଲେ, ସମାଲୋଚନାର ଝଡ଼ରେ ସତ୍ୟ ବୁଡିଯାଏ ଏବଂ କ୍ରମେ ତାହା ମଧ୍ୟ ପଲ୍ଲବାୟିତ ହୋଇ କିମ୍ବଦନ୍ତୀର ରୂପ ନିଏ । ଦୁଇଟିଯାକ ଆଧିକ୍ୟରେ ପ୍ରକୃତ ସତ୍ୟ ଲୁଚିଯାଏ ଏବଂ ବଳି ପଡ଼େ ଇତିହାସ । ଏହା ଖ୍ୟାତିର ବିଡ଼ମ୍ବନା । ତେବେ କିମ୍ବଦନ୍ତୀ ସମ୍ପୂର୍ଣ୍ଣ ମୂଲ୍ୟହୀନ – ଏପରି କୁହାଯାଇ ପାରିବ ନାହିଁ । ଦୃଶ୍ୟମାନ ଜଗତର ସତ୍ୟ ଓ ସାହିତ୍ୟର ସତ୍ୟ ଏକ ନୁହେଁ । ମଣିଷ ଜୀବନ ଖାଲି ଦିନ, ମାସ, ବର୍ଷର ସମଷ୍ଟି ନୁହେଁ । ତା'ର ସେ ଚଲା ବାଟରେ ଏପରି ସବୁ ଅଧୁରା ବିଭବ ଗଢ଼ି ଉଠିଥାଏ, ଯାହାକୁ ଇତିହାସର ଶୁଷ୍କ ଭାଷାରେ ଲେଖିହେବ ନାହିଁ, ଲେଖିହେବ କାବ୍ୟ କବିତାରେ । ଜାତିର ଜୀବନରେ ଏହାର ମଧ୍ୟ ସ୍ଥାନ ଅଛି ।

## ରାଜା-ରାଣୀ ଗଳ୍ପ :

**ନୀଳକଣ୍ଠ ଦାସ ଓ ଗୋଦାବରୀଶ ମହାପାତ୍ର:** କୋଣାର୍କ ସମ୍ବନ୍ଧିତ କିମ୍ବଦନ୍ତୀ ଆରମ୍ଭ ହୋଇଛି ତାହାର ସୃଷ୍ଟିକର୍ତ୍ତା ନରସିଂହଦେବଙ୍କ ଜୀବନରୁ । ସେ ଯୁଗରେ ରାଜା ମହାରାଜାମାନଙ୍କର ଏକାଧିକ ରାଣୀ ରହୁଥିଲେ । ଇତିହାସ କିମ୍ବଦନ୍ତୀ ମିଶି ଚାରିଜଣ ସ୍ତ୍ରୀଙ୍କ କଥା କହୁଛି ।

ନରସିଂହଦେବଙ୍କ ପ୍ରଥମ ପତ୍ନୀଙ୍କ କଥା ଆସୁଛି ବାୟାଚକଡ଼ାରୁ । ଜ୍ୱାଇଁଙ୍କ ମନ୍ଦିର ତୋଳାରେ ସାହାଯ୍ୟ କରିବାକୁ ପାଣ୍ଡ୍ୟା ରାଜା ଦଳେ ଶିଳ୍ପୀ ପଠାଇଥିଲେ । ସେମାନଙ୍କ ସହିତ କିପରି ବ୍ୟବହାର କରାଗଲା ତାହା ପୂର୍ବରୁ ଆଲୋଚିତ ହୋଇଛି ।  ଏ ରାଣୀଙ୍କୁ ବାୟାଚକଡ଼ାର ବିଭିନ୍ନ ପୃଷ୍ଠାରେ ମହାଦେବୀ ନାମରେ ସମ୍ବୋଧିତ କରାଯାଇଛି ଏବଂ ଦ୍ୱିତୀୟା ରାଣୀ, ମାଲଓ୍ୱା କନ୍ୟା ସୀତା ଦେବୀଙ୍କୁ ପରମ ବୈଷ୍ଣବୀ ରୂପେ (XXXV-2)। ତୃତୀୟା ରାଣୀଙ୍କ ସମ୍ବନ୍ଧରେ ଦୁଇ ରକମ ବୟାନ ଆସୁଛି, ଯେଉଁଥିରୁ ସମ୍ଭାବ୍ୟ ଚତୁର୍ଥ ରାଣୀଙ୍କ କଥା ମଧ୍ୟ ଉଠୁଛି ।

ପଣ୍ଡିତ ନୀଳକଣ୍ଠ ଦାସ 'ମାୟାଦେବୀ' କାବ୍ୟରେ ଗୋଟିଏ ପ୍ରେମ କାହାଣୀ ଉପସ୍ଥାପନ କରିଛନ୍ତି । ଧଂକସଗଡ଼ର ତସ୍କର ଟଙ୍କ ଦମନ ଉପଲକ୍ଷେ ଶିଶୁପାଳଗଡ଼ର ବିପଦଗ୍ରସ୍ତ ସାମନ୍ତଙ୍କ କନ୍ୟା ସହିତ ଯୁବରାଜ ନରସିଂହଦେବଙ୍କ ପରିଚୟ ଓ ପରିଣୟ ହେଲା । ତେଣେ ନରସିଂହଦେବଙ୍କ ପିତା ଅନଙ୍ଗଭୀମଦେବ ବିଶ୍ୱନାଥ କବିରାଜଙ୍କ ଦୌତ୍ୟରେ କାଶ୍ମୀର ଅଧିପତିଙ୍କ କନ୍ୟା ସହିତ ପୁତ୍ରର ବିବାହ ସ୍ଥିର କରି ସାରିଥିଲେ । ପିତା ପୁତ୍ର କେହି ପ୍ରଥମେ ପରସ୍ପର କରିଥିବା କାର୍ଯ୍ୟ ଜାଣି ନଥିଲେ । ପରେ ଜାଣି ପାରି ଦୁହେଁ ଦୁଃଖିତ ହେଲେ କିନ୍ତୁ ଦେଇଥିବା ବଚନରୁ ପଛେଇଲେ ନାହିଁ । ନରସିଂହଦେବ ଅଶ୍ରୁଭରା ନୟନରେ ଶିଶୁପାଳଗଡ଼ ଜେମାଙ୍କ ନିକଟରେ ପହଞ୍ଚିଗଲେ । ଜେମା କିନ୍ତୁ ବିଷୟଟି ସହଜ କରିଦେଲେ । ସେ କହିଲେ, ଆସନ୍ତୁ ଜମ୍ମୁ-ଜେମା ରାଣୀ ହୋଇ, ମୁଁ ହେବି ତାଙ୍କ ସେବିକା । କାଶ୍ମୀର କନ୍ୟା ସହିତ ବିବାହ ହୋଇଗଲା ଏବଂ ବୁଦ୍ଧିମତୀ ସେ ଜେମା ମଧ୍ୟ ଜାଣିଗଲେ ନରସିଂହଦେବଙ୍କର ପ୍ରଥମ ପ୍ରେମ କଥା । କିନ୍ତୁ ଉଦାର ସେ ଜେମା ମଧ୍ୟ ପଛେଇବା ପାତ୍ରୀ ନୁହଁନ୍ତି । ସେ କହିଲେ ମୁଁ ଯାଇ ପାଛୋଟି ଆଣିବି ଶିଶୁପାଳଗଡ଼ ଜେମାଙ୍କୁ । ଏହା ପରେ ସଦ୍ୟ ବିବାହିତ ନରସିଂହଦେବଙ୍କୁ ଶତ୍ରୁ ଦମନ କରିବାପାଇଁ ପୁଣି ଯୁଦ୍ଧକୁ ଯିବାକୁ ପଡ଼ିଲା । ଯୋଦ୍ଧା ନରସିଂହଙ୍କୁ କାଶ୍ମୀରବାଳା ବନ୍ଦାପନା କରି ବିଦାୟ ଦେଲେ । ଯିବା ଆଗରୁ ନରସିଂହଦେବ ଶିଶୁପାଳଗଡ଼ ଜେମାଙ୍କଠାରୁ ବିଦାୟ ନେଇଗଲେ ଏବଂ କଥା ଦେଲେ ପୁଣି ଫେରି ଆସିବେ । କାଶ୍ମୀର ଜେମା ଦେଇଥିବା କଥା ରଖିବାକୁ ଶିଶୁପାଳଗଡ଼କୁ ବିଜେ କଲେ । ଦୁଇ ରାଣୀଙ୍କର ଆବେଗପୂର୍ଣ୍ଣ ମିଳନ ହେଲା । ଗୋଟିଏ ଆବେଗଘନ ମୁହୂର୍ତ୍ତରେ କାଶ୍ମୀରତନୟାଙ୍କ ବାହୁବନ୍ଧନରେ ପ୍ରଥମାପତ୍ନୀ ଆଖି ମୁଦି ପଡ଼ିଗଲେ, ଆଉ ଉଠିଲେ ନାହିଁ । ତାଙ୍କୁ ଦାହ କରାଗଲା ନାହିଁ । ସଖୀମାନେ କହିଲେ, ଏହା ହିଁ ହେବ, ସେ ସ୍ୱପ୍ନରେ ଦେଖିଥିଲେ ଏବଂ ଆଦେଶ କରିଥିଲେ ସିନ୍ଦୁକରେ ଭରି ଭସେଇ ଦେବାପାଇଁ । ସେ ମୃତ୍ୟୁ ପରେ ମଧ୍ୟ ଅପେକ୍ଷା କରିବେ, ନରସିଂହଦେବ କଥା ରଖିବେ । ତାହା ହିଁ କରାଗଲା ଏବଂ କୋହ ଚାପି କାଶ୍ମୀରତନୟା ନିଜେ ସେ କାର୍ଯ୍ୟ ସମାପନ କଲେ । ନରସିଂହଦେବ ଫେରିଆସି ସବୁ ଶୁଣିଲେ ଏବଂ ଲୋକମୁଖିରୁ

ଜାଣିଲେ ସିନ୍ଦୁକ ଭାସୁଛି ମୈତ୍ରବନ ଜଳରେ । ରାଣୀଙ୍କ ସହ ଦୁହେଁ ସେଠାରେ ପହଞ୍ଚିଲେ । ଦେଖି ମନେହେଲା ଯେପରି ପ୍ରଥମା, ନିଦରେ ଶୋଇ ରହିଛନ୍ତି, ନରସିଂହଦେବ ହାତ ଧରିଲେ । ହଠାତ୍ କ'ଣ ହେଲା ପ୍ରଥମା ଶୂନ୍ୟରେ ମିଳେଇ ଗଲେ । ପଡ଼ିରହିଲା ଶୂନ୍ୟ ଆଧାର । ଗଢ଼ା ହେଲା କୋଣାର୍କ ।

ସେ ସମୟର ପ୍ରଥାରେ (ଊନବିଂଶ ଶତାବ୍ଦୀର ଶେଷ ଭାଗରେ) ୭୪ ପୃଷ୍ଠାର ଦୀର୍ଘ କାବ୍ୟଟି ରଚିତ ହୋଇଥିଲା ପୁରାତନୀ ଭାଷାରେ, ଯାହା ସହିତ ଆଜିକାର ପାଠକ ବିଶେଷ ପରିଚିତ ନୁହଁନ୍ତି । ସେଥିରେ ପୁଣି କେତେକ ଅଂଶ ବିଭିନ୍ନ ରାଗରେ ବନ୍ଧା ଯଥାଃ 'ଗୋପୀଭାଷା' ବୃତ୍ତ, 'ଶଙ୍କରାଭରଣ', 'ଆଷାଢ଼ଶୁକ୍ଳ-ବାଣୀ' କିନ୍ତୁ ଧୈର୍ଯ୍ୟର ସହିତ ପାଠକଲେ ମିଳିବ ଗୋଟିଏ ବର୍ଣ୍ଣାଢ୍ୟ ସମୟର ବିବରଣ; ଶେଷ ଅଂଶର କାରୁଣ୍ୟ ମନକୁ ଛୁଇଁଯିବ । ଶେଷରୁ କେତୋଟି ପଦ ନିମ୍ନରେ ଉଦ୍ଧାର କରାଗଲା । (ନୀଳକଣ୍ଠଙ୍କ ଗ୍ରନ୍ଥାବଳୀ-ମାୟାଦେବୀ)

ପାଦ ନ ଲାଗଇ ସତେ ବା ମହୀରେ
କେତେରଂଗେ ବାଳା ଯାଉଛି ଖେଳି
ଶିଶୁପାଳ-ଗଡ଼େ ଜମ୍ବୁ ରାଜଜେମା
ଆସିବେ ପରା ସେ ମାୟା ସଙ୍ଗୋଳି । (ପୃ-୩୯୦)

× × ×

ଚତୁରଙ୍ଗ-ସେନା ଶବଦ ଶୁଭିଲା
ପାଛୋଟିଲେ ମାୟାଗଡ଼-ଦୁଆରେ;
ଜମ୍ବୁଜେମା ଗଲେ ସେ ଗଡ଼ ଭିତରେ
ବିଧୁ ମୁଖେ ଫୁଟେ ବିଷାଦ ଭାଳେ । (ପୃ-୩୯୦)

× × ×

ପ୍ରସାରିଲେ ମାୟା କମ୍ର-କର-ଲତା
ଆଲିଙ୍ଗି ଧଇଲେ ଜମ୍ବୁ-ନନ୍ଦିନୀ,
ପଲକେ ଚମକି ଥରିଗଲେ ବାଳା
ଖସିଗଲା ଦୃଢ଼ ବାହୁ ବନ୍ଧନୀ । (ପୃ-୩୯୩)

× × ×

ଆହାରେ ଦଇବ କି କଲୁ ତୁ ସତେ !
ଶିଶୁପାଳେ ଉଠେ କ୍ରନ୍ଦନ ରୋଳ
ଅବନୀ ଆଦରି ପଡ଼ିଛନ୍ତି ମାୟା
ପରାଣ ଯାଇଛି ଛାଡ଼ି ଶରୀର । (ପୃ-୩୯୩)

× × ×

ଯାଇ ନରସିଂହ ଛୁଇଁଲେ ଶରୀର
ଶୁଣିଛି, ଉଠିଲା ଜୀବନେ ବାଳା;
ଅନ୍ଧାର ଦିଶିଲା ମଧ୍ୟାହ୍ନ ସେ ପୁରେ
କେହି ନ ଜାଣିଲେ, କି ତହିଁ ହେଲା ।

ଜମ୍ମୁ-ବାଳା, ପୁଣି                    ନରସିଂହ ରାଣ
ରହିଲେ ସେଦିନ ସିନ୍ଦୁକ-ପାଶେ
ଅରୁଣ ସରବେ                    ଦେଖିଲେ ସେ'ପୁରେ
ନଦୀ-ଧାରେ ଖାଲି ସିନ୍ଦୁକ ଭାସେ । (ପୃ-୪୦୪)

× × ×

ଶିବେଇ ସାମଂତ୍ରା                    ହକରା ଲଭିଲେ,
କୁଶଳ ସ୍ଥପତି ଆସିଲେ ଖରେ;
ମାୟାଦେବୀ-ପୁରେ                    ମୂଳ କରି ଶୁଭ,
ତୋଳିଲେ କୋଣାର୍କ ତଟିନୀ ଜଳେ । (ପୃ-୪୦୪)

କାବ୍ୟଟିରେ କୌଣସିଠାରେ ଦୁଇଜଣ ରାଣୀଙ୍କ ପ୍ରକୃତ ନାମର ଉଲ୍ଲେଖ ନାହିଁ । ପୃଷ୍ଠା ୩୫୯ର ପାଦଟୀକାରେ କୁହାଯାଇଛି, ''ନରସିଂହଦେବ ବଣରେ ଯାହାଙ୍କ ପ୍ରୀତିରେ ପଡ଼ିଥିଲେ, ତାହାଙ୍କୁ ଅନଙ୍ଗଭୀମଦେବ କଥା ଛଳରେ 'ମାୟାଦେବୀ' ବୋଲି କହି ପକାଇଲେ । (ନୀଳକଣ୍ଠ ଗ୍ରନ୍ଥାବଳୀ- ମାୟାଦେବୀ- ପୃ. ୩୩୩-୪୦୭)

ଏ ଗଳ୍ପର ଅନ୍ୟ ମୋଡ଼ ଦେଇ ଗୋଦାବରୀଶ ମହାପାତ୍ର, 'ନିଆଁଖୁଣ୍ଟା'ର ୧୯୬୫ ସେପ୍ଟେମ୍ବର ସଂଖ୍ୟାରେ ଲେଖିଲେ :

''ପୁଣ୍ୟଭୂମି ଭାରତରେ କାଶ୍ମୀର ଏ ଭୂସ୍ୱର୍ଗ ଭୂଷଣ
ଉତ୍କଳର ମହାରାଣୀ 'ମାୟାଦେବୀ' ପୁଣ୍ୟ ଜନ୍ମସ୍ଥାନ
ଯା ପୁଣ୍ୟ ସ୍ମୃତିରେ ରାଜେ ଏ ରାଇଜେ କୋଣାର୍କ ମହିମା
'ଲାଦାଖ୍' ସେପାଖୁ କୁମାରିକା ଭାରତର ସୀମା ।'' ଇତ୍ୟାଦି ।

(ଗୋଦାବରୀଶ ରଚନାବଳୀ- ୫ମ ଖଣ୍ଡ-୨୬୦ ପୃଷ୍ଠା)

ପାଦଟୀକାରେ ଗୋଦାବରୀଶ ମହାପାତ୍ର ଲେଖିଛନ୍ତି, ଏ ବିବାହର କଥାବାର୍ତ୍ତା କରିବା ପାଇଁ 'ସାହିତ୍ୟ ଦର୍ପଣ'ର ବିଶ୍ୱନାଥ କବିରାଜ କାଶ୍ମୀର ଯାଇଥିଲେ । ଗୋଦାବରୀଶଙ୍କ କାବ୍ୟ ଅନୁସାରେ ମାୟାଦେବୀ କାଶ୍ମୀର କନ୍ୟା, କିନ୍ତୁ ନୀଳକଣ୍ଠଙ୍କ ଅନୁସାରେ ଶିଶୁପାଳଗଡ଼ କନ୍ୟା, କାଶ୍ମୀର କନ୍ୟା ଅନ୍ୟ ଜଣେ । ସେଥିରୁ ଚାରି ରାଣୀ କଥା ଉଠୁଛି ।

କରୁଣାସାଗର କିନ୍ତୁ ଉପାଖ୍ୟାନଟି ସମ୍ପୂର୍ଣ୍ଣ ନାକଚ୍ କରି ଦେଇଛନ୍ତି । ତାଙ୍କ ମତ, ବିଶ୍ୱନାଥ କବିରାଜ ଆଦୌ ନରସିଂହଙ୍କ ପିତା ଅନଙ୍ଗଭୀମଙ୍କର ସମସାମୟିକ ନୁହନ୍ତି । ତାଙ୍କ ମତରେ ମାଳଓ୍ୱା ରାଜକନ୍ୟା ସୀତାଦେବୀ ଏକମାତ୍ର epigraphic ପ୍ରମାଣସିଦ୍ଧ ନରସିଂହ ରାଣୀ[୨୯୪] ଏବଂ ବାୟାଚକଡ଼ାର ବିଶ୍ୱସନୀୟତା ସନ୍ଦେହର ଉର୍ଦ୍ଧ୍ୱରେ ନୁହେଁ ।

ଇତିହାସ ଯାହା କହୁ ପଛେ, ତାଜମହଲ ଗଢ଼ାହେବାର ବହୁ ପୂର୍ବେ ପଣ୍ଡିତ ନୀଳକଣ୍ଠ ଏବଂ ଗୋଦାବରୀଶ ମହାପାତ୍ର ଗଢ଼ିଥିଲେ 'ପ୍ରେମର କୋଣାର୍କ', ଯେଉଁଥିରେ ବାଧା ଦେଇଛନ୍ତି ରସହୀନ ଐତିହାସିକ କରୁଣାସାଗର ! କରୁଣାସାଗରଙ୍କ କଥା ଛାଡ଼ିଦେଲେ ମଧ୍ୟ ସୂର୍ଯ୍ୟ ମନ୍ଦିରକୁ ସମାଧିର ମାନ୍ୟତା ଦେବା କାବ୍ୟିକ ଛନ୍ଦପତନ ।

## ଜାଉଖିଆ ଗଳ୍ପ :

କୋଣାର୍କ ମନ୍ଦିରର ମୂଳ ପୀଠ ଗଢ଼ିବାରେ ଅସମର୍ଥ ଶିବେଇ ସାମନ୍ତରା, ଗଭୀର ଚିନ୍ତାମଗ୍ନ ହୋଇ କୌଣସି ଏକ ବୃଦ୍ଧାର କୁଟୀର ଦ୍ୱାରରେ ବସିଥିଲେ । ସେ ଥିଲେ କ୍ଷୁଧାର୍ତ୍ତ । ବୃଦ୍ଧା ତାଙ୍କୁ ଡାକି ନେଇ ଜାଉ ପରଷିଥିଲେ । ଅନ୍ୟମନସ୍କ ସ୍ଥପତି ଗରମ ଜାଉ ମଝିରେ ହାତ ପୂରେଇ କଷ୍ଟ ପାଇଲେ ଏବଂ ବୁଢ଼ୀଟି ହସି ହସି କହିଲେ, ''ପୁଅ, ତୁ ତ ଶିବେଇ ସାଁତରା ଗଣ୍ଡ ପୋତିଲା ଭଳି ଜାଉ ଖାଉଛୁ ।'' ସମାଧାନଟି ବିଦ୍ୟୁତ୍ ଭଳି ମନକୁ ଛୁଇଁଗଲା ସ୍ଥପତିଙ୍କ । ସେ ଏହା ପରେ ଗଣ୍ଡ ମଝିରେ ପଥର ନ ପକାଇ କୂଳରୁ ପଥର ପକେଇ ପକେଇ ଗଲେ ଓ ସମସ୍ୟାର ସମାଧାନ ହୋଇଗଲା ।

ଗଳ୍ପଟିର ମୂଳ ବକ୍ତବ୍ୟ: ଅନେକ ସମୟରେ ଗମ୍ଭୀର ସମସ୍ୟାର ସହଜ ସମାଧାନ ଥାଏ ହାତ ପାହାନ୍ତାରେ, ଯାହା ବିଶେଷଜ୍ଞଙ୍କ ବିଶେଷ ଦୃଷ୍ଟିଭଙ୍ଗୀକୁ ଏଡ଼େଇ ଯାଇଥାଏ ।

କୃପାସିନ୍ଧୁଙ୍କ ବୟାନ ଅନୁଯାୟୀ, ଶିବେଇ ସାଁତରା ତାଙ୍କ ସମସ୍ୟାର ସମାଧାନପାଇଁ ଲିଆଖିଆ ମୁହାଣରେ ରାମଚଣ୍ଡୀଙ୍କ ନିକଟରେ ଅଧିଆ ପଡ଼ିଥିଲେ, ତେଣୁ ଦେବୀ ବୁଢ଼ୀ ବେଶରେ ଆସି ତାଙ୍କ ସମସ୍ୟାର ସମାଧାନ କରିଦେଲେ । (ପୃ.୧୧୬)

କୃପାସିନ୍ଧୁ ପୃଷ୍ଠା ୩୪ରେ ଆଉ ଗୋଟିଏ କିମ୍ବଦନ୍ତୀ ଉଦ୍ଧାର କରି କହିଛନ୍ତି, କଳାପାହାଡ଼ ଯେତେବେଳେ ରାମଚଣ୍ଡୀଙ୍କ ମନ୍ଦିର ଅପବିତ୍ର କରିବାକୁ ବସିଲା (କୃପାସିନ୍ଧୁଙ୍କ ମତରେ ପୁରାତନ ସୂର୍ଯ୍ୟ ମନ୍ଦିରଟି ରାମଚଣ୍ଡୀ ମନ୍ଦିର) ଦେବୀ ସେତେବେଳେ କଳସ ଧରି ସେଠାରୁ ଖସି ଯାଇ ଲିଆଖିଆ ମୁହାଣରେ କଳସ ସହ ଭାସିବାକୁ ଲାଗିଲେ । ଏ କିମ୍ବଦନ୍ତୀ ସତ ହେଲେ, କଳାପାହାଡ଼ ଆସିବା ପରେ ଲିଆଖିଆ ମୁହାଣରେ ରାମଚଣ୍ଡୀ ମନ୍ଦିର ହେଲା । ତେବେ ଏ ଘଟଣାର ବହୁ ପୂର୍ବେ ଶିବେଇ ସାଁତରା କିପରି ଲିଆଖିଆ ମୁହାଣରେ ଦେବୀଙ୍କ ନିକଟରେ 'ଧାରଣା' ଦେଇଥିଲେ ? ପୁଣି କାବ୍ୟ ଚିନ୍ତାରେ ଐତିହାସିକ ବ୍ୟାଘାତ ! ଏ କିମ୍ବଦନ୍ତୀର ଐତିହାସିକ ମୂଲ୍ୟ ଯାହା ଥାଉ, ଜାଉଖିଆ ଗଳ୍ପଟିରେ ଉତ୍କୃଷ୍ଟ କାବ୍ୟ ସମ୍ଭାବନା ଅଛି । ପରିତାପର ବିଷୟ, ସେ ସମୟର ଚାରଣ କବି, ଏ ଦେବୀଙ୍କ ପରବର୍ତ୍ତୀ କାର୍ଯ୍ୟ ପାଇଁ ଢ଼ଗ ଗଢ଼ିଥିଲେ ମଧ୍ୟ ଜାଉଖିଆ ଗଳ୍ପନେଇ କୌଣସି ରସସିକ୍ତ ପଦ ବାନ୍ଧି ନାହାନ୍ତି !! ଚାରଣ କବି କିନ୍ତୁ ପରବର୍ତ୍ତୀ ସମୟରେ ଏ ଅକୃତକାର୍ଯ୍ୟତା, ସୁଧେମୂଳେ ଅସୁଲ କରି ଦେଇଛନ୍ତି ।

ଏ ଗଳ୍ପର ଅନ୍ୟ ଗୋଟିଏ ପାଠାନ୍ତର ଦେଇଛନ୍ତି କରୁଣାସାଗର, ଯେଉଁଥିରେ ବୁଢ଼ୀ ନୁହଁ; ଜଣେ ବୁଢ଼ା, ବୁଦ୍ଧି ଶିଖେଇଥିଲେ ଶିବେଇ ସାଁତରାଙ୍କୁ । (Konark-V-I-P.93) । ଆହୁରି ରସଭଙ୍ଗ କରିଛନ୍ତି ଐତିହାସିକ କରୁଣାସାଗର ୧୧୫ ପୃଷ୍ଠାରେ ଉପସ୍ଥାପିତ Reference-2 ରେ । ଚନ୍ଦ୍ରଗୁପ୍ତ ପ୍ରଥମେ ନନ୍ଦରାଜାଙ୍କ ସହିତ ପାରି ଉଠୁ ନଥିଲେ କାରଣ ସେ ସିଧା ସଳଖ ନନ୍ଦଦୁର୍ଗ ଆକ୍ରମଣ କରୁଥିଲେ । ଦିନେ ବାଟ ଚାଲୁ ଚାଲୁ ଶୁଣିଲେ, ଜଣେ ରମଣୀ ତାହାର ଟିକି ପିଲାକୁ ଶାସନ କରି କହୁଛି, 'ତୁ ଚନ୍ଦ୍ରଗୁପ୍ତ ଭଳି ମଝିରୁ ଖାଉଛୁ' । ଚନ୍ଦ୍ରଗୁପ୍ତଙ୍କର ଚେତା ପଶିଲା, ସେ ନନ୍ଦ ସାମ୍ରାଜ୍ୟର ଦୂର ଦୂର ସ୍ଥାନରୁ ଆକ୍ରମଣ କରି ଶେଷରେ ବିଜୟ ହାସଲ କଲେ । (ପରିଶିଷ୍ଟ ପର୍ବ-VIII, 290-6)

## କଳାପାହାଡ଼ର ତୃଷ୍ଣା :

''ଭଲା ରାମଚଣ୍ଡୀ ଭଲା ରେ !
କଳାପାହାଡ଼କୁ ଦୁଆରେ ବସେଇ
ଭଲା ପାଣି ଆଣି ଗଲାରେ ।''

ନାମହୀନ ଚାରଣ କବି ଆଉ ଗୋଟିଏ ଅନବଦ୍ୟ କବିତା ରଖି ଯାଇଛନ୍ତି ।

''ଅଇଲା କଳାପାହାଡ଼
ଭାଙ୍ଗିଲା ଲୁହାର ବାଡ଼
ପିଇଲା ମହାନଦୀ ପାଣି
ସୁବର୍ଣ୍ଣ ଥାଳିରେ ହେଡ଼ା ପରଷିଲେ
ମୁକୁନ୍ଦ ଦେବଙ୍କ ରାଣୀ ।''

ପରବର୍ତ୍ତୀ ସମୟରେ କେହି ଜଣେ 'ହେଡା' ପରିବର୍ତ୍ତେ 'ହୀରା' ବସେଇ ଦେଇଥିଲେ ।

କବିତା ଦୁଇଟିକୁ 'ଅନବଦ୍ୟ' କହିଥିବାରୁ କିଛି ସୁଧୀ-ପାଠକ ନିଶ୍ଚୟ ନାସିକା କୁଞ୍ଚନ କରିବେ, କିନ୍ତୁ ଗୋଟିଏ ବିଷୟ ମନେ ରଖିବାକୁ ହେବ; କୌଣସି ଲିଖିତ ଦଲିଲ ନାହିଁ, କଥାରେ କାରୁକାର୍ଯ୍ୟ ନାହିଁ, କିନ୍ତୁ ସହଜ ଛନ୍ଦ, ସରଳ ଶବ୍ଦ ଚୟନ ଓ ସର୍ବୋପରି ନିଷ୍ଠୁର ସତ୍ୟ କଥନ ଯୋଗୁଁ ଶହ ଶହ ବର୍ଷ ଧରି ଜନମାନସରେ ସ୍ଥାୟୀ ହୋଇ ଯାଇଛି କବିତାର କଥାବସ୍ତୁ, କିନ୍ତୁ ଓଡ଼ିଶା ପାଇଁ ଶ୍ଳାଘାର ବସ୍ତୁ ନୁହେଁ ।

ଯେଉଁ ଚଣ୍ଡୀଦେବୀଙ୍କର ଅକାଳବୋଧନ କରି ପ୍ରଭୁ ରାମଚନ୍ଦ୍ର ରାବଣ ବଧ କରିଥିଲେ, ତାଙ୍କ ପାଖରେ କଳାପାହାଡ଼ ତୁଚ୍ଛ ମଣିଷ, ସେ କାହିଁକି ଲୁଚି ପଳେଇବେ ? ହୁଏତ କଳାପାହାଡ଼ର ବିଭୀଷିକା, ମଣିଷ ମନରେ ଏପରି ଗଭୀର ରେଖାପାତ କରିଥିଲା, ଗୋଟିଏ ପଳାୟନପନ୍ଥୀ ମନୋବୃତ୍ତି ଆସି ଯାଇଥିଲା ସମାଜରେ ।

ସେହିପରି ବୀର ମୁକୁନ୍ଦଦେବଙ୍କ ରାଣୀ 'ହେଡ଼ା' ଅର୍ଥାତ୍ ଗୋମାଂସ ପରଷି ଥାଆନ୍ତୁ ଅଥବା ହୀରା ପରଷି ଥାଆନ୍ତୁ, କାର୍ଯ୍ୟଟି ଜଣେ ପରାଜିତ ସାମ୍ରାଜ୍ଞୀଙ୍କ ପକ୍ଷେ ଗର୍ବର ବିଷୟ ନୁହେଁ । ସେ ଯୁଗରେ ପରାଜିତ ହିନ୍ଦୁରାଜାଙ୍କ ପୁରବାସୀ ରମଣୀମାନଙ୍କର ଅଗ୍ନିରେ ଝାସ ଦେବାର ପ୍ରଥା ଥିଲା ଏବଂ କଟକ ସତୀଚଉରା ହୁଏତ ସେବେ ବି ଥିଲା ।

ଏସବୁ କବିତାର ଐତିହାସିକ ମୂଲ୍ୟ ନଗଣ୍ୟ କିନ୍ତୁ ଗୋଟିଏ ଉଜ୍ଜ୍ୱଳ ସମୟ ପରେ ସମାଜ, ଅବକ୍ଷୟର କେଉଁ ଅତଳକୁ ଚାଲିଯାଇଥିଲା ତାହାର ଏକ ନିଷ୍ଠୁର କରୁଣ ଆଲେଖ୍ୟ ଏ ଶ୍ଳେଷାତ୍ମକ କବିତାଦ୍ୱୟ; ଚାରଣ କବି ତ ସମସାମୟିକ ଜନମାନସର ଦର୍ପଣ !

ଆହୁରି ଗୋଟିଏ ବିଷୟ ଲକ୍ଷଣୀୟ । ଇତିହାସ କହୁନାହିଁ କେଉଁ ସମୟରେ 'ହେଡା' ଶବ୍ଦଟି ବ୍ୟବହୃତ ହୋଇଥିଲା ଏବଂ କେଉଁ ସମୟରେ ତାହା ପରିବର୍ତ୍ତନ କରି 'ରତ୍ନ' ଶବ୍ଦଟି ବସେଇବାର ଚେଷ୍ଟା ହେଲା । ହୁଏତ ସମୟ ଆସିଥିଲା ଯେତେବେଳେ ଅବକ୍ଷୟର ପଙ୍କିଳତାରୁ ଟିକେ ଉପରକୁ ସମାଜ ଉଠିଥିଲା, ଯଦିଓ ଜଣେ ସାମ୍ରାଜ୍ଞୀଙ୍କ ପକ୍ଷେ ଜଣେ ବିଧର୍ମୀ ଅତ୍ୟାଚାରୀ ସେନାନାୟକକୁ ହୀରା ଉପହାର ଦେବା ମଧ୍ୟ କିଛି ଶ୍ଳାଘାର ବସ୍ତୁ ନୁହେଁ ।

ଓଡ଼ିଶାର ଶେଷ ସ୍ୱାଧୀନ ନରପତି ମୁକୁନ୍ଦଦେବଙ୍କର ମୃତ୍ୟୁ ଘଟେ ୧୫୬୮ ଖ୍ରୀଷ୍ଟାବ୍ଦରେ । ତାହା ପରେ କିଞ୍ଚିତାଧିକ ତିନିଶହ ବର୍ଷ ମଧ୍ୟରେ କୋଣାର୍କ ବାଲି ତଳେ ପୋତି ହୋଇଯାଏ ଏବଂ ଅରଣ୍ୟ ଗ୍ରାସକରେ ଗୋଟିଏ ଉଜ୍ଜ୍ୱଳ ସଭ୍ୟତା । ଏ ଦୀର୍ଘ ସମୟର ଘଟଣା ପ୍ରବାହ କୌଣସି ଚାରଣ କବି ଧରି ରଖିଥିଲେ ଅବା ନାହିଁ, ତାହା ଗବେଷଣା ସାପେକ୍ଷ ।

୧୯୦୦ ଖ୍ରୀଷ୍ଟାବ୍ଦର ଖନନ କାର୍ଯ୍ୟ ପରେ ପୁରାତାତ୍ତ୍ୱିକ, ଐତିହାସିକ, କବି, ସାହିତ୍ୟିକ ଓ ଭାବୁକମାନଙ୍କର ଦୃଷ୍ଟି ନୂଆ କରି ଆକର୍ଷିତ ହୁଏ କୋଣାର୍କ ପ୍ରତି । ପରବର୍ତ୍ତୀ ଶହେ ବର୍ଷରେ ଅଧିକାଂଶ କାବ୍ୟ କବିତା ରଚିତ ହେଲା ସେଇ ପୁରାତନ କିମ୍ବଦନ୍ତୀର ଖିଅଧରି, ଯାହାର ସିଂହଭାଗ 'ଧର୍ମପଦ' କାହାଣୀ । କେହି ନାଟକ ସୃଷ୍ଟି କରିଲେ ନାହିଁ ଅବିସ୍ମରଣୀୟ ନରସିଂହ ଦେବଙ୍କୁ ମୁଖ୍ୟ ଚରିତ୍ର କରି । କେହି ଲେଖିଲେ ନାହିଁ ବାରଶହ ଶିଳ୍ପୀ ଓ ପଛରେ ଛାଡ଼ି ଆସିଥିବା ବନିତାମାନଙ୍କର ବିରହ କାହାଣୀ । କେହି ଲେଖିଲେ ନାହିଁ ଅସଂଖ୍ୟ ମିଥୁନ ମେଳରେ ବାଧ୍ୟତାମୂଳକ ବ୍ରହ୍ମଚର୍ଯ୍ୟର ଅସହନୀୟ କଷଣ କଥା, ଏପରିକି କେହି ଲେଖିଲେ ନାହିଁ ଗୁଣ୍ଡୁଣି ହାତୀ ସୁଦେହୀର କର୍ତ୍ତବ୍ୟ ନିଷ୍ଠା ନେଇ ଶିଶୁ ମନଲୋଭା ଗଳ୍ପଟିଏ । ପ୍ରାୟ ସମସ୍ତେ (ସାମାନ୍ୟ କିଛି ବ୍ୟତିକ୍ରମ ବ୍ୟତୀତ) ସେଇ ପରିଚିତ କିମ୍ବଦନ୍ତୀମାନଙ୍କର ଖିଅ ଧରି କାବ୍ୟ ସୃଷ୍ଟି କରିଛନ୍ତି ।

ଏହା ମଧ୍ୟରେ ନୀଳକଣ୍ଠ ଦାଶ ଓ ଗୋଦାବରୀଶ ମହାପାତ୍ର ରାଣୀମାନଙ୍କୁ ନେଇ ଗୋଟିଏ ପ୍ରେମର କୋଣାର୍କ ଗଢ଼ିଥିଲେ, କିନ୍ତୁ ଗୋପବନ୍ଧୁ ଦାସଙ୍କ 'ଧର୍ମପଦ' ଭଳି ଜମିଲା ନାହିଁ । କାରଣ ଏହା ନୁହେଁ ନୀଳକଣ୍ଠ ଓ ଗୋଦାବରୀଶଙ୍କ ଲେଖାର କାବ୍ୟମୂଲ୍ୟ ନିକୃଷ୍ଟ, 'ଧର୍ମପଦ'ର ଖ୍ୟାତି ଆସିଲା ଗୋଟିଏ ଭିନ୍ନ ପରିବେଶରେ, ଗୋଟିଏ ଯୁଗ ସନ୍ଧିକ୍ଷଣରେ । ଏହାର ଆଲୋଚନା ଏହାପରେ କରାଯିବ ।

## ଧର୍ମପଦ :

ଯେଉଁ ଧର୍ମପଦ କାହାଣୀ ପାଇଁ କୋଣାର୍କର ପ୍ରସିଦ୍ଧି, ତାହାର ଗୋଟିଏ anti-climax ଅଛି, ଯାହା ସତ୍ୟର ପ୍ରୟୋଜନରେ ଏଠାରେ ପରିବେଷିତ ହେଉଛି । Dr. K. Sunderam ତାଙ୍କର 'The Simachalam Temple' ପୁସ୍ତକର ପୃଷ୍ଠା ୫୯-୬୦ରେ ଠିକ୍ ଧର୍ମପଦ କାହାଣୀ ଭଳି ଗୋଟିଏ କାହାଣୀ ପରିବେଷଣ କରିଛନ୍ତି । ସ୍ୱାଭାବିକ ଭାବେ ନାମଗୁଡ଼ିକ ଭିନ୍ନ । ପାଠକମାନଙ୍କର ମନେଥିବ, ବିଧ୍ୱସ୍ତ ସୀମାଚଳମ୍ ମନ୍ଦିରଟି ନରସିଂହଦେବ ନୂଆ କରି ଗଢ଼ି ଦେଇଥିଲେ । ତେଣୁ ଇତିହାସ ଦୃଷ୍ଟିରୁ ସେ ମନ୍ଦିରଟି କୋଣାର୍କଠାରୁ ପୁରାତନ । ସେ ଗଳ୍ପରେ ମଧ୍ୟ ବାଳକଟି ବରକୋଳି ବଦଳରେ 'ନେରେଡୁ' ନାମକ କୋଳି ଧରି ବାପା ପାଖକୁ ଯାଇଥିଲା । (କରୁଣାସାଗର - Konark- Vol-I-P.95)

ଇଦାନିଂ ସୀମାଚଳମ୍ କାହାଣୀର ପରିଶିଷ୍ଟ ଏବଂ କର୍ଣ୍ଣାଟକର ଆଉ ଗୋଟିଏ କାହାଣୀ ନଜରକୁ ଆସିଛି । ସୀମାଚଳମ୍ ମନ୍ଦିରରେ ପିତାପୁତ୍ରଙ୍କ ମିଳନ ହେବା ପରେ ପୁତ୍ର ସେ ଆଶ୍ଚର୍ଯ୍ୟ ସୃଷ୍ଟି ମା' ନିକଟକୁ ନେଇ ଯିବାକୁ ଚାହୁଁଛି । ମନ୍ତ୍ର ବଳରେ ସେ ପୂର୍ବସ୍ୟ ମନ୍ଦିରଟି ସଚଳ କରି ବୁଲେଇ ଦେଲା । ଆଉ ଅଗ୍ରସର ହେବା ପୂର୍ବେ କ୍ରୋଧିତ ପିତା ରଥର ଅଶ୍ୱ ଏବଂ ପୁତ୍ରକୁ ଖଣ୍ଡା ଚୋଟରେ ହତ୍ୟାକଲେ । ସେହି ଦିନରୁ ମନ୍ଦିରଟି ପଶ୍ଚିମାସ୍ୟ ।

ସୀମାଚଳମ୍ ଏକାଦଶ ଶତାବ୍ଦୀର ମନ୍ଦିର । ଏହାର ପ୍ରାୟ ଏକ ଶତାବ୍ଦୀ ପରେ (୧୧୧୬ ଖ୍ରୀଷ୍ଟାବ୍ଦ) ସୀମାଚଳମ୍‌ଠାରୁ ବହୁ ଦୂରରେ ମହୀଶୂରର ହୋୟଶାଳା ସାମ୍ରାଜ୍ୟର ହଳେବିଡ୍‌ଠାରେ ଗୋଟିଏ ମନ୍ଦିର ତିଆରି ହେଉଥିଲା । ଜକନଚାରୀ ନାମକ ଜଣେ ଶିଳ୍ପୀ ମନ୍ଦିର ଗଢୁ ଗଢୁ ନିଜେ ବୃଦ୍ଧ ହୋଇ ଗଲେଣି- ଭୋକ, ଶୋଷ ଏବଂ ଦେଶ କଥା ମଧ୍ୟ ଭୁଲି ଗଲେଣି । ରାଜା ଅଧୈର୍ଯ୍ୟ ହୋଇ ଉଠିଲେଣି । ବିଗ୍ରହ କାର୍ଯ୍ୟ ଶେଷ ହେଉଛି, କାହାରି ପ୍ରବେଶାଧିକାର ନାହିଁ । ଦ୍ୱାରରେ ଦେଖାଦେଲେ ଜଣେ ଯୁବକ । ସେ ଶିଳ୍ପୀଙ୍କୁ କହୁଛନ୍ତି ଯେଉଁ ପଥରରେ ବିଗ୍ରହ ତିଆରି ହେଉଛି ସେଥିରେ ଖୁଣ ଅଛି । ପ୍ରଗଳ୍‌ଭ ଯୁବକର କଥା ଶୁଣି ଶିଳ୍ପୀ ଚିତ୍କାର କରି ଉଠିଛନ୍ତି ଏବଂ ଲୋକ ଜମା ହେଉଛନ୍ତି । ଅବିଚଳିତ ଯୁବକ କିନ୍ତୁ କିଛି ଚନ୍ଦନ ନେଇ ବିଗ୍ରହ ଦେହରେ ଲେପିଦେଲେ । କିଛି ସମୟ ପରେ ସମସ୍ତ ପ୍ରଲେପ ଶୁଖିଗଲା କିନ୍ତୁ ନାଭି ନିକଟରେ କିଛି ଅଂଶ ଓଦା

ରହିଲା । ସେ ଅଂଶ ଭାଙ୍ଗି ଦେଖାଗଲା ତା' ମଧ୍ୟରେ ଏକ ବେଙ୍ଗ ଅଛି । ବିଧ୍ୱସ୍ତ ବୃଦ୍ଧଶିଳ୍ପୀ ଗୋଟିଏ ତରବାରୀଦ୍ୱାରା ନିଜ ହସ୍ତଚ୍ଛେଦନ କରିବାକୁ ଉଦ୍ୟତ ହେବାରୁ ତାଙ୍କୁ ନିବୃତ୍ତ କରୁଛି ଜଣେ ଯୁବକ । ଏହାପରେ ଜଣାଗଲା ଯୁବକ କୌଣସି ଏକ କ୍ରୀଡ଼ପୁର ଗ୍ରାମର କୃଷ୍ଣଦେବଙ୍କ ପୁତ୍ର । ମାତୃ ଜଠରରେ ଥିବା ସମୟରେ ପିତା ଚାଲିଆସିଥିଲେ ମନ୍ଦିର ଗଢ଼ିବାକୁ । ସେଇ କୃଷ୍ଣଦେବ ଆଜିକାର ଜନକଚାରୀ । ପିତା ପୁତ୍ର ମିଳନ ପରେ ଜନକଚାରୀ ଗ୍ରାମକୁ ଫେରିଗଲେ ଏବଂ ସେଠାରେ ମଧ୍ୟ ଗୋଟିଏ ବିଶାଳ ମନ୍ଦିର ଗଢ଼ିଲେ । ( The Dharmapada Tradition Revisited- Dr. K.C. Dash ) ।

ଏପରି ଗଳ୍ପ ହୁଏତ ଅନ୍ୟତ୍ର ଥାଇ ପାରେ କାରଣ ବିସ୍ମୟ ବାଳକ ଅଥବା ପ୍ରତିଭାଦୀପ୍ତ ଯୁବକ ସବୁ ଯୁଗରେ ସବୁଦେଶରେ ଜନ୍ମ ହୋଇଥା'ନ୍ତି, ଏହା କହିବା ଅସଙ୍ଗତ ହେବ, ଶତବର୍ଷ ଓ ଶତଶତ ଯୋଜନ ଦୂରରେ କେହି ଗଳ୍ପଟିର ନକଲ କରିଲେ । ବର୍ତ୍ତମାନ ଦେଖାଯାଉ ଓଡ଼ିଶାର କାହାଣୀଟି କିପରି ?

ନୂତନ ପିଢ଼ିର ଉଚ୍ଚଶିକ୍ଷିତ ଓଡ଼ିଆ ପିଲା କ୍ରମେ ଜାତୀୟ ଐତିହ୍ୟ ଭୁଲି ଯାଉଛନ୍ତି । ତେଣୁ ପୁନରାବୃତ୍ତିର ଅଭିଯୋଗ ସତ୍ତ୍ୱେ କାହାଣୀଟି ଦୋହରାଉଛି ।

ଶିଳ୍ପୀ ବିଶୁ ମହାରଣା, ସନ୍ତାନସମ୍ଭବା ସ୍ତ୍ରୀକୁ ଘରେ ଛାଡ଼ି କୋଣାର୍କ ଗଢ଼ିବାକୁ ଚାଲି ଆସିଲେ ଚନ୍ଦ୍ରଭାଗା ତୀରକୁ । ଆସିଲେ ଯେ ଘରକୁ ଆଉ ଫେରି ନାହାନ୍ତି ବର୍ଷ ବର୍ଷ ଧରି । ବାର ବର୍ଷ ବିତିଗଲା । କୋଣାର୍କ ଶେଷ ହୋଇ ମଧ୍ୟ ଶେଷ ହେଉ ନାହିଁ, ଚୂଳି ମରାଯାଇ ପାରୁନାହିଁ । ରାଜ ଆଦେଶ ହୋଇଛି, ଆଉ ଦୁଇ ଦିନ ମଧ୍ୟରେ ଶେଷ ନ ହେଲେ ୧୨୦୦ ଶିଳ୍ପୀଙ୍କ ମୁଣ୍ଡକାଟ ହେବ ।

ଏଣେ ବିଶୁ ମହାରଣାଙ୍କ ସ୍ତ୍ରୀ ଯଥା ସମୟରେ ଏକ ପୁତ୍ର ସନ୍ତାନ ଜନ୍ମଦେଲେ । ପିଲାଟି କ୍ରମେ ବଢ଼ିବାକୁ ଲାଗିଲା । ପିଲାଟିର ଧୀଶକ୍ତି ଥିଲା ଅଦ୍ଭୁତ, ସେ ଥିଲା ବିସ୍ମୟ ବାଳକ । କିନ୍ତୁ ଈର୍ଷାନ୍ୱିତ ସହପାଠୀଙ୍କ 'ଅଣବାବୁଆ' ସମ୍ବୋଧନରେ ଅପମାନିତ ହୋଇ ଜିଜ୍ଞାସୁ ମନ ତା'ର ମା'ଙ୍କଠାରୁ ପିତାଙ୍କ ବୃତ୍ତାନ୍ତ ଶୁଣିଛି । ତେଣୁ ବାର ବର୍ଷର ସେହି ବାଳକଟି ବାହାରି ପଡ଼ିଛି ପିତୃସନ୍ଧାନରେ । ସାଙ୍ଗରେ ନେଇଛି ପରିଚୟର ସନ୍ତକ ସ୍ୱରୂପ ବାରି ବରକୋଳି ଓ ବାପାଙ୍କର ପୋଷା ବଳିଆ କୁକୁର । ସେହି ବାଳକଟି ଥିଲା ଧର୍ମପଦ ।

ପିତା ପୁତ୍ରଙ୍କର ମିଳନ ଘଟିଚି ଏକ ଦୁଃଖଦ ସନ୍ଧ୍ୟାରେ, ଯେତେବେଳେ ମରଣର ଏକ ଅନାଗତ ଆତଙ୍କରେ ଶିଳ୍ପୀକୁଳ ମ୍ରିୟମାଣ । ନବନିର୍ମିତ ମନ୍ଦିରର ଚୂଳି ମାରିବା ଥିଲା ଶିଳ୍ପୀକୁଳର ସମସ୍ୟା । ବାଳକଟି କିନ୍ତୁ ଶିଳ୍ପବିଦ୍ୟାରେ ଏତେ ବ୍ୟୁତ୍ପତ୍ତି ଲାଭ କରିଥିଲା ଯେ ରାତାରାତି ସେ ଚୂଳି ମାରି ଦେଲା । ଏହା ପରେ ଜନ୍ମ ନେଲା ଆଉ ଗୋଟିଏ ସମସ୍ୟା । ଶିଳ୍ପୀକୁଳର ଭୟ, ରାଜା ଜାଣି ପାରିଲେ ଭାବିବେ; ଯାହା ଗୋଟିଏ ୧୨ ବର୍ଷର ବାଳକ କରିପାରିଲା, ତାହା କାହିଁକି ବାରଶହ ବଢ଼େଇ (ଶିଳ୍ପୀ) କରି ପାରିଲେ ନାହିଁ ? ତେଣୁ ତାଙ୍କର ମୁଣ୍ଡ କାଟ ହେବ । ସେ ଚିନ୍ତାରୁ ଜାତ ହେଲା ଅମର ବାକ୍ୟ ଗୋଟିଏ :

**''ବାରଶହ ବଢ଼େଇର ଦାୟ, ନା ପୁଅର ଦାୟ''**, ଏକମାତ୍ର ପୁତ୍ରକୁ ତ୍ୟାଗ କରିବାକୁ ପଡ଼ିବ । ଏଠାରେ କିମ୍ବଦନ୍ତୀ ଦୁଇଭାଗ ହୋଇଯାଇଛି । ଗୋଟିଏ ଭାଗରେ ବିଶୁ ମହାରଣା ମନ୍ଦିର ଉପରୁ ପୁତ୍ରକୁ ମୃତ୍ୟୁମୁଖକୁ ଠେଲି ଦେଇଛନ୍ତି । ଅନ୍ୟ ଭାଷ୍ୟରେ, ଧର୍ମପଦ ନିଜେ ମନ୍ଦିର ଉପରୁ ସମୁଦ୍ରକୁ ଝାସ ଦେଇଛି । **ଗୋପବନ୍ଧୁ** କିମ୍ବଦନ୍ତୀର ଦ୍ୱିତୀୟ ଭାଷ୍ୟଟି ବାଛି ନେଇଛନ୍ତି ।

**ଗୋପବନ୍ଧୁ ଦାଶଙ୍କର ଧର୍ମପଦ**: ଗୋପବନ୍ଧୁଙ୍କ ଧର୍ମପଦ ରଚିତ ହୁଏ ଏକ ଯୁଗ ପରିବର୍ତ୍ତନର ସନ୍ଧିକ୍ଷଣରେ । ସେ ପରିବର୍ତ୍ତନରେ କବିତାଟିର ଭୂମିକା ଅଳ୍ପ ନୁହେଁ । ସ୍ୱାଧୀନତା ଯୁଦ୍ଧରେ ଝାସଦେଇ ସେତେବେଳେ ଗୋପବନ୍ଧୁଙ୍କର କାରାବାସ ଚାଲିଥାଏ ହଜାରିବାଗ୍ ଜେଲ୍‌ରେ ୧୯୨୨ ଠାରୁ ୧୯୨୪ ଦୁଇବର୍ଷ । ଦେଶ ପାଇଁ ସମର୍ପିତ ପ୍ରାଣ ଗୋପବନ୍ଧୁଙ୍କର ପ୍ରତିଟି କ୍ଷଣ ମଗ୍ନ ଥାଏ ସ୍ୱଦେଶ ଚିନ୍ତାରେ । ଦେଶ ଓ ଦଶ ପାଇଁ ଚିନ୍ତାର ପ୍ରତିଫଳନ ସେ ଦେଖିବାକୁ ପାଇଛନ୍ତି, 'ବାରଶ' ବଢ଼େଇର ଦାୟ, ନା ପୁଅର ଦାୟ' କିମ୍ବଦନ୍ତୀରେ । ସେ ସମୟର ସ୍ୱଦେଶୀ ଆନ୍ଦୋଳନର ପରିବେଶରେ ଗୋପବନ୍ଧୁଙ୍କ ରଚନା 'ଧର୍ମପଦ' ଉଦ୍‌ବୁଦ୍ଧ କଲା ଓଡ଼ିଶାବାସୀଙ୍କୁ ସ୍ୱଦେଶୀ ଆନ୍ଦୋଳନରେ ଝାସ ଦେବା ପାଇଁ । ଜେଲ୍‌ରୁ ମୁକ୍ତି ପରେ ୧୯୨୫ ସାଲରେ ଏହି ପୁସ୍ତକ ପ୍ରକାଶ ପାଏ ଏବଂ ଓଡ଼ିଆଙ୍କ ଚିନ୍ତା ଓ ଚେତନାରେ ବିରାଟ ଆଲୋଡ଼ନ ସୃଷ୍ଟିହୁଏ । ସେ ଆଲୋଡ଼ନ ଖାଲି ଦେଶ ପ୍ରେମର ଉନ୍ମାଦନାରୁ ନୁହେଁ, ଏହାର ମର୍ମସ୍ପର୍ଶୀ ମାନବିକ ଆବେଦନ ହୁଏତ ଅଧିକ ଥିଲା । ସେଇ ଦିଗଟି ଏଠାରେ ଆଲୋଚନା କରାଯିବ ।

ଭୂମିକାରେ ଗୋପବନ୍ଧୁ କହିଛନ୍ତି, ବାଲ୍ୟକାଳରୁ କବି ହେବାର ବାସନା ଥିବା ସତ୍ତ୍ୱେ ଜୀବନର ଘଟଣା ପ୍ରବାହରେ କାବ୍ୟ ଚର୍ଚ୍ଚା ପାଇଁ ସମୟ ପାଇ ନଥିଲେ । ଦୀର୍ଘ କାରାବାସ ସେ ସୁଯୋଗ ଆଣିଦିଏ । ନିୟମିତ ଚର୍ଚ୍ଚାରେ ଯେଉଁ ପାଲିସ୍ ଆସେ ଲେଖାରେ, ତାହା ଏ କବିତାରେ ନାହିଁ, ଗଠନ ଓ ଶବ୍ଦ ଚୟନରେ ତ୍ରୁଟି ରହିଯାଇଛି । ତଥାପି ମାନବିକ ଆବେଗ ସମୃଦ୍ଧ କବିତାଟିରେ ଏପରି କିଛି ଅଛି, ଯାହା ଗୋପବନ୍ଧୁଙ୍କୁ କ୍ଷଣିକ ସମୟ ପାଇଁ ହେଲେ ମଧ୍ୟ **ବିଶ୍ୱକବି ରବୀନ୍ଦ୍ରନାଥଙ୍କ** ସମପର୍ଯ୍ୟାୟକୁ ନେଇ ଯାଇଛି । ରବୀନ୍ଦ୍ରନାଥଙ୍କ 'ଦେବତାର ଗ୍ରାସ' ନାମକ କବିତାଟିର ଉଲ୍ଲେଖ ପ୍ରାସଙ୍ଗିକ ହେବ ।

କୌଣସି ଏକ ଅଖ୍ୟାତ ପଲ୍ଲୀରୁ ଦଳେ ନରନାରୀ ନୌକାଯୋଗେ ତୀର୍ଥସ୍ନାନ ପାଇଁ ସାଗର ସଙ୍ଗମକୁ ବାହାରିଛନ୍ତି । ସେମାନଙ୍କ ମଧ୍ୟରେ ଅଛି ଗୋଟିଏ ବିଧବା ନାରୀ, ଯାହାର ଗୋଟିଏ ମାତ୍ର ପୁତ୍ର ଛଡ଼ା କେହି ନାହିଁ । ବାଳକଟି କିନ୍ତୁ ଜନ୍ମରୁ ମାଉସୀ ପାଖରେ ମଣିଷ ହୋଇଛି ଏବଂ ସବୁବେଳେ ମା'କୁ ଛାଡ଼ି ମାଉସୀ ପାଖରେ ଥାଏ । ଯାତ୍ରାଦିନ ଦେଖାଗଲା ବାଳକଟି ଆଗରୁ ଆସି ନୌକା ଉପରେ ବସି ରହିଛି । ଖବର ପାଇ ମାଉସୀ ଛୁଟି ଆସିଲା ଏବଂ ଦୂର ଜଳଯାତ୍ରାର ବିପଦ ଆଶଙ୍କା କରି ମା' ମାଉସୀ ଦିହେଁ ବାଳକଟିକୁ ବୁଝେଇବାକୁ ଲାଗିଲେ ଯାତ୍ରାରୁ ନିବର୍ତ୍ତିବା ପାଇଁ । ପିଲାଟି କିନ୍ତୁ ତା' ଜିଦ୍‌ରେ ଅଟଳ, ସେ ମଧ୍ୟ ସାଗର ତୀର୍ଥକୁ ଯିବ । ରାଗି ଯାଇ ହଠାତ୍ ମା' କହିପକାଇଲା, ତେବେ ଚାଲ୍ ତୋତେ ସାଗର ଜଳରେ ଦେଇ ଆସେ । ସେକଥା କହିବା ସାଥେ ସାଥେ ଅନୁତାପରେ ଜର୍ଜରିତା ମା' ପୁତ୍ରକୁ କୋଳକୁ ଟାଣି ନେଇ 'ନାରାୟଣ', 'ନାରାୟଣ' ସ୍ମରିବାକୁ ଲାଗିଲେ । ଦଳର ଅଧିପତି ମୈତ୍ର ମହାଶୟ ମାଉସୀକୁ ପ୍ରବୋଧନା ଦେଇ କହିଲେ- ବର୍ତ୍ତମାନ ଶୀତ କାଳ, ଶାନ୍ତ ନଦୀ ନଦ, ବାଟର ବିପଦ କିଛି ନାହିଁ । ତୀର୍ଥ ଯାତ୍ରା ପରେ ତୋ ପୁଅ ତୋତେ ଫେରେଇ ଦେବି । ଫେରିବା ସମୟରେ କିନ୍ତୁ ଝଡ଼ ଉଠିଲା, ନୌକା ଟଳମଳ । ନାଉରୀ ଡାକି କହୁଛି, କେହି ଜଣେ ଦେବତାଙ୍କୁ କିଛି ମାନସିକ କରି ଫେରାଇ ନେଉଛି, ତେଣୁ ଅସମୟରେ ଏତେ ଝଡ଼ । ଯାହାର ଯାହା ଥିଲା ଜଳକୁ ସମର୍ପଣ କରିଦେଲେ, କିନ୍ତୁ ଝଡ଼ ଥମୁ ନାହିଁ । ଝଲକେ ଝଲକେ ପାଣି ଉଠୁଛି ନୌକା ଉପରକୁ । ହଠାତ୍ ଭୟ ସନ୍ତ୍ରସ୍ତ ମୈତ୍ର ମହାଶୟ କହିଛନ୍ତି, 'ଏଇ ସେ ନାରୀ, ଦେବତାଙ୍କୁ ସଂପି ଦେଇ ଆପଣା ପୁତ୍ରକୁ ଫେରେଇ ନେଉଛି ।' ଶୁଣିବା ମାତ୍ରେ ନାଉରୀମାନେ ଟାଣି ଘୋଷାରି ପିଲାଟିକୁ ଫୁଟନ୍ତ ତରଙ୍ଗ ମଧ୍ୟକୁ ନିକ୍ଷେପ କରିଦେଲେ । ମୈତ୍ର ମହାଶୟଙ୍କ ମନରେ ହଠାତ୍ ବିଦ୍ୟୁତ୍ ଆଘାତ୍ ଭଳି ମନେ ପଡ଼ିଗଲା, କଥା ଦେଇ ଥିଲେ ବାଳକଟିକୁ ନିର୍ବିଘ୍ନରେ ଫେରେଇ ଆଣିବେ ।

ଫିରାୟେ ଆନିବ ତୋରେ - କହି ଊର୍ଦ୍ଧ୍ୱଶ୍ୱାସେ
ବ୍ରାହ୍ମଣ ମୁହୂର୍ତ୍ତ-ମାଝେ ଝାଁପ ଦିଲ ଜଲେ ।
ଆର ଉଠିଲ ନା, ସୂର୍ଯ୍ୟ ଗେଲ ଅସ୍ତାଚଲେ ।

'ଧର୍ମପଦ'ର କେତୋଟି ଧାଡ଼ି ଚିରଦିନ ଅମର ହୋଇ ରହିବ :

''ମାନବ ଜୀବନ ନୁହଁଇ କେବଳ
ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜିଏଁ ନର କର୍ମ ଏକା ତାର
ଜୀବନର ମାନ ଦଣ୍ଡ ।''

× × ×

''ବାରଶ ବଢ଼େଇ ମୋର ଜାତିଭାଇ
ସହି ନିନ୍ଦା ଅପମାନ,
ମଲେ ଯେବେ ଏଥି କି ସୁଖ ମୋହର
କରି ମନ୍ଦିର ନିର୍ମାଣ ।''

× × ×

''ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀ ପୟରେ,
ପୁରୁ ତବ ଇଚ୍ଛା ଏ ନର ପରାଣେ
ଜୟ ଜଗଦୀଶ ହରେ ।''

× × ×

''ଗାଇ ଏହିପରି କହି ହରି ହରି
ଡେ଼ଇଁଲା ସେ ନଦୀ ଜଳେ
ନ ରହିଲା ତାର ଚିହ୍ନ କି ଆକାର
ଗଲା ମହାସିନ୍ଧୁ ଜଳେ ।''

(ଗୋପବନ୍ଧୁ ଗ୍ରନ୍ଥାବଳୀ-ପୃ-୧୪୫-୧୮୫)

**କବି ମାୟାଧର ମାନସିଂହ** କୋଣାର୍କ ଉପରେ ପାଞ୍ଚଟି କବିତା ଲେଖିଛନ୍ତି ।

୧ । କୋଣାର୍କର ଲାସ୍ୟଲୀଳା ନୃତ୍ୟ

୩ । ଶିଳ୍ପୀ-ବନ୍ଦନା

୪ । ମୁମୂର୍ଷୁ କୋଣାର୍କ

୫ । କୋଣାର୍କ

ପ୍ରଥମ ଓ ଦ୍ୱିତୀୟ କବିତା ବସ୍ତୁତଃ ଗୋଟିଏ ବିଷୟର ଭିନ୍ନ ଦିଗ । ଜ୍ୟୋତ୍ସ୍ନାସ୍ନାତ ରାତିରେ ପାଷାଣ ମୂର୍ତ୍ତିଗୁଡ଼ିକ ଜୀବନ୍ତ ହୋଇ ଉଠୁଛନ୍ତି, କଥୋପକଥନରେ, ପ୍ରିୟ ମିଳନରେ ଏବଂ ନୃତ୍ୟର ଛନ୍ଦେ ଛନ୍ଦେ ଭରିଯାଉଛି ନଭସ୍ଥଳ ।

**'ଶିଳ୍ପୀ-ବନ୍ଦନା'**- ବାରଶତ ନାମହୀନ ଶିଳ୍ପୀର କଥା, ଯିଏ ସାମାନ୍ୟ କିଛି ଉପଢୌକନ ଛଡ଼ା ଅନ୍ୟ କିଛି ପାଇଲା ନାହିଁ । ନିଜକୁ ସମ୍ପୂର୍ଣ୍ଣ ଢ଼ାଳିଦେଇ ଯାହା ପାଇଲାଃ

''ସେହି ତବ ଶ୍ରେଷ୍ଠଗାଥା, ସ୍ୱପ୍ନର ଏ ମହାରୂପାୟନ ।''

**'ମୁମୂର୍ଷୁ କୋଣାର୍କ'**ରେ କବି ମନ୍ଦିରକୁ ଉର୍ବଶୀ ରୂପରେ କଳ୍ପନା କରିଛନ୍ତି ।

'' ହେ ଉର୍ବଶୀ ବାରଶତ କବି କଳ୍ପନାର ।''

ସେ ଅମର୍ତ୍ତ୍ୟ ସୃଜନା ସୁଖ ସ୍ୱପ୍ନସମ ଶୂନ୍ୟରେ ମିଶି ମିଶି ଯାଉଛି ।

''ସବୁ ଏ ଯିବ ମିଶି ଶୂନ୍ୟେ ଶୂନ୍ୟେ ସୁଖସ୍ୱପ୍ନ ସମ,
ତବ-ନାମ-ମାତ୍ର-ଶେଷ ହେବ ଦିନେ ଅଭାଗ୍ୟ ଏ ମାଟି,
ଶୂନ୍ୟବେଳା ହେବ ଶୂନ୍ୟତମ ।''

ଭାରାକ୍ରାନ୍ତ ମନରେ ବିଦାୟ ଦେବାକୁ ଯାଇ କବି 'ମୁମୂର୍ଷୁ କୋଣାର୍କ'ରେ ଗାଇଛନ୍ତି ଃ

''**ଯାଅ ତେବେ, ମନସ୍ୱିନୀ,** ବିଶ୍ୱଜନ ରୂପାୟିତ ସ୍ୱପ୍ନ,
ଏଇ କ୍ଷୁଦ୍ର ଅନ୍ତରର ପରମ ମାନସୀ ।
ଆଣିପାରେ ଭାବନାରେ, କେବେ କି ଗୋ, ମୋ ତପସାଧନେ,
ଧରାଦେବ, ହେ ଉର୍ବଶି, କୃଚ୍ଛ୍ର ବ୍ରତ ଜନ୍ମ ଜନ୍ମାନ୍ତରେ ?
କିବା କ୍ଳେଶ, ଯଦି ତାହା ପାରେ ସମ୍ଭବାଇ
ତମପରି ପରମ ସୃଜନେ ।''

**କୋଣାର୍କ** କବିତାଟି ବସ୍ତୁତଃ ମୁମୂର୍ଷୁ କୋଣାର୍କର ଅନ୍ୟ ପିଠି । ଏଥିରେ ମଧ୍ୟ ବିଗତ ଯୌବନା କୋଣାର୍କ ପାଇଁ ବିଳାପ ।

ମାନସିଂ ରୋମାଣ୍ଟିକ୍ କବି । ତାଙ୍କର ସୃଷ୍ଟିକୁ ଛୁଇଁ ପାରୁ ନାହିଁ ଏ ଅକ୍ଷମ ଟିପ୍ପଣୀ ତେବେ କୋଟି କୋଟି ମଣିଷର ଆକୃତି, ଆଜି କୋଣାର୍କ ସୁଖ ସ୍ୱପ୍ନ ସମ ଶୂନ୍ୟରେ ବିଲୀନ ହୋଇଯାଉଛି । ବାରଶହ ଶିଳ୍ପୀଙ୍କ ଦାୟାଦ କ'ଣ ପୁଣି ସେ ସୃଷ୍ଟି ସମ୍ଭବ କରି ପାରିବେ ?

ତିରିଶ ଓ ଚାଳିଶ ଦଶକର ଆଉ ଜଣେ ପ୍ରତିଭାଧର କବି **ସଚ୍ଚିଦାନନ୍ଦ ରାଉତରାୟ** ଯାହାଙ୍କର ଲେଖନୀ ପରବର୍ତ୍ତୀ ପାଞ୍ଚ ଦଶକ ସକ୍ରିୟ ଥିଲା । ସଚ୍ଚିରାଉତରାଙ୍କ 'କୋଣାର୍କ' ଦୃଶ୍ୟତଃ ବାମପନ୍ଥୀ ଚିନ୍ତା ଧାରାରେ ରଞ୍ଜିତ, ତେବେ କାବ୍ୟଗୁଣରେ ଅନବଦ୍ୟ । ଆଜିକାର ବହୁ ପ୍ରତିଷ୍ଠିତ କବି, ଲୋକମାନସରୁ ଉଭେଇ ଯିବା ପରେ ମଧ୍ୟ 'କୋଣାର୍କ' ରହିଯିବ ଭାସ୍ୱର । ଯେଉଁ, 'କୋଟି କଂକାଳ ଭଗ୍ନ ବୁକୁର ସ୍ତୂପ' କବି ଦେଖିଥିଲେ କୋଣାର୍କ ଦେଉଳରେ, ତାହା ଇତିହାସର ସତ୍ୟ ନ ହୋଇପାରେ; ଧର୍ମପଦ ଓ ତାହାର ମନ୍ଦିର ଶୀର୍ଷରୁ ଜଳକୁ ଲମ୍ଫଦେବା ମଧ୍ୟ ଇତିହାସର ସତ୍ୟ ନ ହୋଇପାରେ, କିନ୍ତୁ କାବ୍ୟର ସତ୍ୟ ଏକ ସ୍ୱୟଂସମ୍ପୂର୍ଣ୍ଣ ଜଗତ । ନିମ୍ନରେ ଉଦ୍ଧୃତ ପଦ ଦୁଇଟି ବହୁ ଯୁଗ ରହିଯିବ ଜନ ମାନସରେ ଅମ୍ଳାନ ହୋଇ ଏବଂ ବାରେ ବାରେ ଉଦ୍ଧୃତ ହେଉଥିବ ।

''ତୁମେ ଦେଖିଅଛ ଶିଳାରେ ତାର ତ
ରମ୍ୟ କଳାର ରୂପ,
ମୁଁ ଦେଖିଛି ତହିଁ କୋଟି କଂକାଳ
ଭଗ୍ନ ବୁକୁର ସ୍ତୂପ ।''

× × ×

''ରମ୍ୟ କଳାର ଲୀଳା !
କିଛି ତ କହିନି ମଣିଷର କଥା,
କହିବାର ଯାହା ଥିଲା ।''

କବିଙ୍କର, **''ଭଙ୍ଗା ମନ୍ଦିର''** କିନ୍ତୁ ଭିନ୍ନ ଆଙ୍ଗିକରେ ଲେଖା । ଏ କବିତା ଯେତେ ନା ଭଙ୍ଗା ମନ୍ଦିର ପାଇଁ ରୋଦନ, ତାହାଠାରୁ ଅଧିକ, ଛାଡ଼ି ଆସିଥିବା ଶାନ୍ତ, କୋମଳ ଛାୟାଘନ ଜୀବନ ପ୍ରତି ଆକୂତି ।

''ଏଇ ପଥୁରୀ ପାର୍ବତୀ ଦିନେ ଜୀବନ୍ତ ଥିଲା ।
ଆଉ ଏଇ ନାଗକନ୍ୟାଗଣ
ଦିନେ ଜୀବନର ଲୋମଶ ଉଚ୍ଛ୍ୱାସରେ
ଖେଳି ବୁଲୁଥିଲେ,
କେଉଁ ନିରୋଳା ପୋଖରୀ ତୁଠରେ,
କେଉଁ ନିର୍ଜନ ନଈକୂଳର ବକୁଳ ତଳେ
ଶିଳ୍ପୀର ତରୁଣ ମନରେ ଡେଣା ମେଲାଇ ।।''

× × ×

ମୌସୁମୀର ଚଞ୍ଚଳ ଆଭିଜାତ୍ୟ,
ବଣତୁଳସୀର ଆଦିମ ବନ୍ୟ ନୃତ୍ୟ
ବହିଆଣେ ସେ ସମ୍ବାଦ
ଝରାଫୁଲର ସାମ୍ରାଜ୍ୟରୁ ।
ଝାଉଁବନର ସ୍ନିଗ୍ଧ ଶ୍ୟାମଳ ଛତା ତଳେ
ଫୁଟେ କରୁଣ ସେଇ କଥା
କେତେ ଯୁଗର ?''

**ରବି ସିଂ**, ଏ ଯୁଗର ବିଦ୍ରୋହୀ କବି । 'ଲାଲ ପାଗୋଡ଼ାର ପ୍ରେତ', କବିତାଟି ନାମକରଣରୁ ହିଁ ଗାଢ଼ରଙ୍ଗରେ ରଞ୍ଜିତ ପୋଷ୍ଟର ଭଳି ଚିତ୍କାର କରି କହୁଛି, 'ବ୍ଲାକ୍ ପାଗୋଡ଼ା' ରକ୍ତେ ରଞ୍ଜିତ 'ଲାଲ ପାଗୋଡ଼ା' । କାହାର ସେ ରକ୍ତ- ଧର୍ମପଦର, ଯାହାର ପ୍ରକୃତ ହତ୍ୟାକାରୀ ବାରଶହ ଈର୍ଷାନ୍ୱିତ ବଢ଼େଇ ?

''ଯେଦିନ ଦିଶିଲା
ନୀଳନଭ ତଳେ
ବାରଶ ବିଧିର ଏଇ କୋଣାରକ
ହୃଦୟେ ଜଳିଲା ନେତ,
କ୍ରୋଧର ଅନଳ
ମାନବତା ସେବେ ଆଖିରେ ମାତିଲା
ବର୍ଷାର ପରଳ
ହୋଇଲା କକ୍ଷଚ୍ୟୁତ
ଶିଶୁ ଧରମାର,
ଉର୍ଦ୍ଧ୍ୱେ ଉଠିଲା
ବାରଶ' ଯମର
ଉଦ୍ଧତ-କରବାଳ ।
ଅନ୍ତିମ ହାହାକାରେ....
ସୂର୍ଯ୍ୟଟେ ଖସି
ବିଲୀନ ହୋଇଲା
ମରଣ-ଅନ୍ଧକାରେ....''

ଏଣେ କବି ସଚ୍ଚିରାଉତରା, ସେଇ ବାରଶ ବଢ଼େଇର 'କଙ୍କାଳ' ଓ 'ଭଗ୍ନ ବୁକୁର ସ୍ତୂପ' ଦେଖୁଛନ୍ତି ଏ ମନ୍ଦିରରେ ।

ତୁମେ ଦେଇଅଛ ଶିଳାରେ ତାର ତ
ରମ୍ୟ କଳାର ରୂପ
ମୁଁ ଦେଖିଛି ତହିଁ କୋଟି କଙ୍କାଳ
ଭଗ୍ନବୁକୁର ସ୍ତୂପ ।
ତୁମେ ଦେଖିଅଛ ଫୁଟିଛି କିପରି
କଳାର କାଉଁରି ଲାଗି
ରାତ୍ରିର କଳା ଯବନିକା ପରେ
ସ୍ୱର୍ଣ୍ଣ ଉଷାର ଛବି ।

× × ×

ତୁମେ ଚାଖିଅଛ ରସର ଝର୍ଣ୍ଣା
ଚାରୁ ମନ୍ଦିର ତଳେ
ଗଣ୍ଡୂଷ ଭରି ପିଇଛି ପୀୟୁଷ
ନିଭାଇ ତୃଷ୍ଣା-ଜଳେ ।

× × ×

ମୁଁ ଦେଖିଛି ସେଇ ଶିଳାର କବରେ
କେତେ କାରିଗର ଛାତି
ତିଳେ ତିଳେ ହାୟ ଲଭିଲା ସମାଧି
ସହିଲା କଷଣ ତାତି ।

× × ×

ଯକ୍ଷ ବଧୂର କବରୀରେ କିଏ
ଶତ ରାତ୍ରିର ଜ୍ୱାଳା
ଅନୁଭବେ ନିରନ୍ତର
ଜାଣିବାକୁ କିଏ ଲୋଡ଼ିଚି କି କେବେ
ଇତିହାସ ମଣିଷର

× × ×

ରମ୍ୟକଳାର ଲୀଳା
କିଛି ତ କହିନି ମଣିଷର କଥା
କହିବାର ଯାହା ଥିଲା ।

ପ୍ରତିଭାଧର ଲେଖକ **ମନୋଜ ଦାସ**ଙ୍କ ବିଭିନ୍ନ ସମୟରେ ଲିଖିତ ୪୪ଟି କବିତାର ଗୋଟିଏ ସଂଗ୍ରହ **'କବିତା ଉତ୍କଳ'** ନାମରେ ପ୍ରକାଶ ପାଏ ୨୦୦୩ ମସିହାରେ । କୋଣାର୍କ ଉପରେ ଚାରିଟି କବିତା ଏଥିରେ ସ୍ଥାନ ପାଇଛି । ବିଭିନ୍ନ ସମୟରେ ଲିଖିତ କବିତାଗୁଡ଼ିକ ସମ୍ବନ୍ଧରେ କବି ନିଜେ କିଛି ବକ୍ତବ୍ୟ ରଖିଛନ୍ତି । ସେଥିରୁ କେତେକ କେବଳ ଏ କାବ୍ୟ ସଂଗ୍ରହ ପ୍ରତି ନୁହେଁ, ସାମଗ୍ରିକ ଭାବେ ସମସ୍ତ ଆଧୁନିକ କବିତା ପ୍ରତି ପ୍ରଯୁଜ୍ୟ, ବିଶେଷକରି ଯେତେବେଳେ ତାହା କୌଣସି କିମ୍ବଦନ୍ତୀ ଉପରେ ନିର୍ଭର କରିଥାଏ । କବି କହିଛନ୍ତି କୌଣସି ଗୋଟିଏ ମୁହୂର୍ତ୍ତର ଅନୁଭୂତି, ଯାହା ହଠାତ୍ ସେ କିମ୍ବଦନ୍ତୀ ଅଥବା ଚରିତ୍ରର ତାତ୍ପର୍ଯ୍ୟ ହୃଦ୍‌ବୋଧ କରାଇ ଦେଉଛି । ସ୍ୱାଭାବିକ, ବିଭିନ୍ନ କବିଙ୍କ ଅନୁଭୂତିର କ୍ଷଣଟି ଭିନ୍ନ ଭିନ୍ନ ହୋଇପାରେ ଏବଂ ତାହାର ପ୍ରକ୍ଷେପ ମଧ୍ୟ । ଏଇ ଯେଉଁ ଅତି ନିଜସ୍ୱ (personal) ଅନୁଭବ ତାହାକୁ ପ୍ରକାଶ କରିବାକୁ ଯାଇ କେତେକ କବି ଏପରି ସବୁ ରୂପକଳ୍ପ ବ୍ୟବହାର କରି ଥାଆନ୍ତି, ଯାହା କବିଙ୍କ ନିଜସ୍ୱ ଅନୁଭବର ଗଣ୍ଡି ଟପି ପାଠକର ଅନୁଭବରେ ପ୍ରବିଷ୍ଟ ହୋଇପାରେନା, ତେଣୁ ଦୁର୍ବୋଧ୍ୟତାର ଅଭିଯୋଗ ଆସେ । ସୁଖର କଥା ମନୋଜ ଦାସଙ୍କ କବିତା ଚତୁଷ୍ଟୟରେ ଏପରି ହୋଇନାହିଁ, କବିଙ୍କ ଟିପ୍ପଣୀ କବିତାକୁ ବୁଝିବା ସହଜ କରିଦେଇଛି । କବିତା ଚାରିଟି :

୧ । ଧର୍ମପଦ : ନିର୍ଭୁଲ୍ ଠିକଣା ।

୨ । ବୃନ୍ତହୀନ ଫୁଲର ସ୍ଥପତି : ଶିବେଇ ସାନ୍ତରା ।

୩ । କୋଣାର୍କ - ସଂଧାନ ।

୪ । କଳା ପାହାଡ଼ର ତୃଷ୍ଣା : ରାମଚଣ୍ଡୀ ।

**ଧର୍ମପଦ** କିମ୍ବଦନ୍ତୀନିର୍ଭର କାହାଣୀ ଓଡ଼ିଶାର ଆବାଳ ବୃଦ୍ଧବନିତା ସମସ୍ତେ ଅବଗତ । ତାହାର ଦୁଇଟି ପାଠ କଥା ମଧ୍ୟ ପୂର୍ବରୁ ଆଲୋଚିତ ହୋଇଛି । ଗୋଟିକରେ, ଧର୍ମପଦ ନିଜେ ମନ୍ଦିର ଚୂଡ଼ାରୁ ଜଳକୁ ଝାସ ଦେଉଛି । ଏଠାରେ ମନୋଜ ଦାସ ସେଇ ପାଠଟି ଗ୍ରହଣ କରିଛନ୍ତି (ଧର୍ମପଦ ନିଜେ ଜଳରେ ଝାସ ଦେଲେ) ଏବଂ ସେଥିରେ ଗୋଟିଏ ନୂତନ ମାତ୍ରା ଯୋଗ କରିଛନ୍ତି ତାଙ୍କ ନିଜସ୍ୱ ଅନୁଭବର ଆଲୋକରେ ।

''ମନେହୁଏ ଏ ସମୁଦ୍ର ତଥା ତା'ର ବିପୁଳ ପ୍ରଶାନ୍ତି,
ମୋ ତନୁ-ମନର ଏକ ସ୍ନିଗ୍ଧ ପରିବ୍ୟାପ୍ତି,

ଏତେବେଳେ ମନେ ହୁଏ ଏ ନକ୍ଷତ୍ରଗଣ,

ମୋ ପ୍ରାଣର ନାନାବିଧ ଅଜସ୍ର ସ୍ପନ୍ଦନ ।

× × ×

ଏତେବେଳେ ମନେହୁଏ ତାହା ସହ ହୋଇ ଏକୀଭୂତ

ଏ ମନ୍ଦିର ଗର୍ଭଗୃହେ ସଂଗୋପନେ ହେବି ଆବିର୍ଭୂତ ।

ମନ୍ଦିରକୁ ଘେରି,

ଉଦ୍ଦାମ ଉତ୍ତାଳ ଏହି ଅସଂଖ୍ୟ ଲହରୀ

ମୃଦୁ ମୃଦୁ ହିଲ୍ଲୋଳରେ କହୁଛନ୍ତି ସେମାନଙ୍କୁ ଜଣା,

ସୂର୍ଯ୍ୟାଲୋକେ ମୋର ଯାହା ନିର୍ଭୁଲ ଠିକଣା ।

ମୋର ପରିଚୟ ନୁହେଁ ଧର୍ମପଦ, ମହାରଣା ସୁତ,

ମୁଁ ଏକ ଓଁକାର ଧ୍ୱନି, ଅଜାତ ଅଶ୍ରୁତ ।''

ବିଶ୍ୱନିୟନ୍ତାଙ୍କ ବିଭୂତିରୁ ଜାତ ଗୋଟିଏ ବିଶେଷ ଚରିତ୍ର, ତାହା ଉପରେ ଆରୋପିତ କାର୍ଯ୍ୟ ଶେଷକରି ସେଇ ବିଶ୍ୱନିୟନ୍ତାଙ୍କ ଦେହରେ ମିଶିଯାଇ ଅମର ହୋଇ-ଯିବାର କଳ୍ପନାଟି ଅନବଦ୍ୟ ।

**'ବୃନ୍ତହୀନ ଫୁଲର ସ୍ୱପତିଃ ଶିବେଇ ସାନ୍ତରା'** କବିତାଟି ଜାଉଖିଆ କିମ୍ବଦନ୍ତୀନିର୍ଭର । କବି ବର୍ଣ୍ଣମୟ ଶବ୍ଦ ଚୟନରେ କିମ୍ବଦନ୍ତୀଟି ଜୀବନ୍ତ କରି ତୋଳିଛନ୍ତି ।

''ବୃଦ୍ଧା ! ଅକାତରେ ମତେ କି କଲ, କି କଲ,

ମୋ ଚୈତ୍ୟ-ସାଗରେ ଯାହା ବୃନ୍ତହୀନ ଫୁଲ,

ତାକୁ ତୁମେ ଅଚାନକେ ବୃନ୍ତ-ବନ୍ଦୀ କଲ !

ଜଳିଗଲା ତୁମ ବାକ୍ୟ-ବଜ୍ରର ଆଘାତେ,

ମୋ ଆଶ୍ରୟ-ଇନ୍ଦ୍ରଧନୁ ଗୋଟିଏ ମୁହୂର୍ତ୍ତେ'' । ଇତ୍ୟାଦି

**'କୋଣାର୍କ-ସଂଧାନେ'** କବିଙ୍କର ନିଜସ୍ୱ ଓ ବିଶିଷ୍ଟ ଦୃଷ୍ଟିଭଙ୍ଗୀର ଆଉ ଗୋଟିଏ ଅପୂର୍ବ ଉପସ୍ଥାପନା । ପ୍ରଭାତର ଉପହାର ଦୂର୍ବା ଶୀର୍ଷର ସୂର୍ଯ୍ୟଦୀପ୍ତ ଶିଶିର ବିନ୍ଦୁ, କିନ୍ତୁ ସେଇ ସୂର୍ଯ୍ୟର ସର୍ବନାଶୀ ପ୍ରେମ ତାହାକୁ ଅଚିରେ ଶେଷ କରିଦିଏ ଏବଂ ରଖିଯାଏ ମହାକାଳରେ ଗୋଟିଏ ଅଲିଭା ମୁହୂର୍ତ୍ତ । ବିଧ୍ୱସ୍ତ କୋଣାର୍କ ଦେଖି କବିଙ୍କ ମନେ ହୋଇଛି ନରସିଂହଦେବଙ୍କ ସୂର୍ଯ୍ୟପ୍ରେମ ଶିଶିରର ସୂର୍ଯ୍ୟପ୍ରେମ ସମ ଗୋଟିଏ ଦ୍ୟୁତିମାନ ମୁହୂର୍ତ୍ତ ମାତ୍ର ।

''ହେ ରାଜନ୍, ବୁଝିଥିଲି ସୂର୍ଯ୍ୟର ଏ ଧର୍ମ

ନିଃଶେଷିବ ସିଏ ତାକୁ, ଯିଏ ତାକୁ କରିଥିବ ପ୍ରେମ ।

× × ×

କିନ୍ତୁ ରାଜା ! ସୂର୍ଯ୍ୟ ପ୍ରେମେ ମୁଗ୍ଧ, ବିଗଳିତ

ସୂର୍ଯ୍ୟାଲୋକେ ନିମଜ୍ଜିତ କୋଣାର୍କର ସତ୍ତା ପୁଲକିତ ।''

**'କଳାପାହାଡ଼ର ତୃଷ୍ଣା : 'ରାମଚଣ୍ଡୀ'**, ଗଳ୍ପଟି ସମସ୍ତଙ୍କୁ ଜଣା । ହିନ୍ଦୁ ଯୁବକ ମୁସଲମାନ ନରପତିଙ୍କ ସେନାପତି ଥିଲେ, ନବାବ କନ୍ୟାର ପ୍ରେମରେ ପଡ଼ି, ସେ ସ୍ୱଧର୍ମ ଛାଡ଼ି ମୁସଲମାନ ହୋଇଗଲେ । ନବାବ କନ୍ୟାର ଶ୍ଳେଷଭରା ଉକ୍ତି ପୁଣି ଫେରାଇଲା ତାହାକୁ ସ୍ୱଧର୍ମ ପ୍ରତି, କିନ୍ତୁ ସେ ଦ୍ୱାର ଆଉ ଖୋଲିଲା ନାହିଁ । କ୍ଷତାକ୍ତ ହୃଦୟ ନେଇ ଧ୍ୱଂସର ପ୍ରବାହ ବୁହାଇ ଦେଲା କଳାପାହାଡ । କିନ୍ତୁ ଦୁଇ ଦିଗରୁ ପ୍ରତ୍ୟାଖ୍ୟାନଜନିତ ଆତ୍ମଦାହର ତୃଷ୍ଣା ତାହାର ମେଣ୍ଟିଲା ନାହିଁ । ମନୋଜ ଦାସଙ୍କ କଳ୍ପନାରେ ଦୁରନ୍ତ ବାଳକ ସମ କଳାପାହାଡ଼ ମାତୃରୂପିଣୀ ରାମଚଣ୍ଡୀଙ୍କ କରୁଣା ଧାରା ଖୋଜୁଥିଲା ।

''ଏ ତୃଷ୍ଣା ଭୀଷଣ,

ଏ ତୃଷ୍ଣାର ହାହାକାରେ ଅଟ୍ଟହାସ୍ୟ କରେ ପୁଣି

ସାଗର ସଫେଣ,

ଚତୁର୍ଦ୍ଦିଗେ ବାଲିରାଶି ଉତ୍ତପ୍ତ ପ୍ରଖର,

କାହିଁ କେତେ ଦୂରେ ଏକ ଶୀତଳ ନିର୍ଝର,

ସ୍ୱପ୍ନ ଦେଖେଁ ତାର-

ହେ ଅଜଣା ନାରୀ, ମାତା, କେବେ ଦେବ ଆଣି,

ପ୍ରତୀକ୍ଷା ମୋ ଶେଷ କରି, କେତେ ବିନ୍ଦୁ ପାଣି !''

ଗୋଟିଏ ଦାନବ ପ୍ରାୟ ନିର୍ମମ ମଣିଷର ଗୋପନ ହୃଦୟର ନିଃସହାୟତା, କଳାପାହାଡ଼କୁ ଭିନ୍ନ ମାତ୍ରାରେ ଚିତ୍ରିତ କରିଛି ।

ବୋଧହୁଏ, "The devil is not as black as it is painted."

**ଶୈଳଜ ରବି,** ଓଡ଼ିଶାର ଜଣେ ଅଗ୍ରଗଣ୍ୟ କବି । ସାମ୍ୟବାଦୀ ଚିନ୍ତାଧାରାର ପୁଷ୍ଟ ଏ କବି ମଝିରେ ମଝିରେ ଏପରି ସବୁ କବିତା ଲେଖନ୍ତି ଯାହା ସହିତ ସାମ୍ୟବାଦ, ବ୍ରହ୍ମବାଦ କିମ୍ବା କୌଣସି 'ବାଦ'ର ସମ୍ପର୍କ ନଥାଏ । **'ତୁମ ପରି କୋଣାର୍କ'** ବି ସେହିପରି କବିତାଟିଏ ।

''କୋଣାର୍କ କହିଲେ କ'ଣ

ବୁଝାଯାଏ ଖାଲି

ଶୃଙ୍ଗାର ଓ ରତି

କାମନା, ଅଭୀପ୍ସା !

× × ×

ଯେଉଁଠି ଇନ୍ଦ୍ରିୟ ଦେଇ

ସବୁ ବୁଝି ହୁଏ

ହେଲେ, ସବୁକିଛି

ନିର୍ବେଦ, ନିଶ୍ଚଳ

× × ×

ଝାଉଁବଣ, ସମୁଦ୍ର ଗର୍ଜନ

ଜହ୍ନରାତି, ମହାରତି

କୁଟୀକମ କେଉଁ ବିନ୍ଧାଣିର

ସବୁ ହାୟ ଶିଳାୟିତ

ଅହଲ୍ୟା ପଥର !

× × ×

ଝଡ଼ିପଡ଼େ ନୀରବରେ

ଖଣ୍ଡ ଖଣ୍ଡ

ଓଠ, ଆଖି, ଆଙ୍ଗୁଠି, ଜଘନ

ଶିଶ୍ନ ଆଉ ସ୍ତନ ।

× × ×

ମୋ ପାଇଁକି

କୋଣାର୍କ ବି ତୁମ ପରି
ଅର୍ଦ୍ଧେକ ସେ ନିବୁଜ ମୁଖଶାଳା
ଅର୍ଦ୍ଧେକ କଳ୍ପନା ।

**ଅଶ୍ୱିନୀ କୁମାର ଘୋଷ**ଙ୍କର **'କୋଣାର୍କ'** ନାଟକ ପ୍ରକାଶ ପାଏ ୧୯୫୦ ସାଲରେ । ପ୍ରାୟ ସେଇ ସମୟରେ କୋଣାର୍କ ଉପରେ ଗୋଟିଏ ହିନ୍ଦୀ ନାଟକ ଲେଖନ୍ତି **ଜଗଦୀଶ ଚନ୍ଦ୍ର ମାଥୁର । 'କୋଣାର୍କ ଦେଉଳ'** ନାମକ ବଙ୍ଗଳା ନାଟକ ଗୋଟିଏ ଲେଖିଥିଲେ **ଚିତ୍ତରଞ୍ଜନ ମାଇତି,** ଶେଷୋକ୍ତ ନାଟକ ଦୁଇଟି ମଞ୍ଚସ୍ଥ ହୋଇଥିଲା ଅଥବା ନାହିଁ ଜଣା ନାହିଁ କିନ୍ତୁ ଅଶ୍ୱିନୀ ଘୋଷଙ୍କ ନାଟକ, ଅନ୍ନପୂର୍ଣ୍ଣା ଏ-ଗ୍ରୁପ୍ ଦ୍ୱାରା ମଞ୍ଚସ୍ଥ ହୋଇ ଚାଲେ ଦୀର୍ଘ ଦୁଇ ବର୍ଷ । ଅଶ୍ୱିନୀ କୁମାର **'କଳାପାହାଡ଼'** ନାମକ ଆହୁରି ଗୋଟିଏ ନାଟକ ରଚନା କରିଥିଲେ । ତାହା ମଞ୍ଚସ୍ଥ ହୋଇଥିଲା ଅଥବା ନାହିଁ ତାହା ଜଣା ନାହିଁ ।

'ସୂର୍ଯ୍ୟ ପ୍ରାଙ୍ଗଣ' ନାମକ ଗୋଟିଏ ଉପନ୍ୟାସ, ମୂଳ ବଙ୍ଗଳାରେ ଲେଖିଥିଲେ ବିଶ୍ୱନାଥ ରାୟ, ତାହାର ଓଡ଼ିଆ ଅନୁବାଦ କରନ୍ତି କେହି ଜଣେ **ଶ୍ରୀବାସ କର** ୧୯୮୮ରେ । ଗଳ୍ପଟିର ସାର ନିମ୍ନରେ ରଖାଗଲା ।

ରାଜା ନରସିଂହଦେବ, ବଙ୍ଗବିଜୟ ସମୟରେ ସେଠାକାର କୌଣସି ଏକ ମନ୍ଦିରରୁ ସୂର୍ଯ୍ୟପୂଜା ଆମଦାନି କରି ନିଜ ରଥ ଅନୁକରଣରେ ମନ୍ଦିରଟିଏ ଗଢ଼ିଲେ । ଏ ଗପରେ ମଧ୍ୟ 'ଚୂଳିମରା' ଗପ ଅଛି, ତେବେ ଏଠାରେ ସେ ବାଳକର ବୟସ ୭ (ହୁଏତ ଆଉ କେହି ପୁଣି ଏ ଗଳ୍ପ ଲେଖିଲେ ସେ ବାଳକ ଭୂମିଷ୍ଠ ହେବା ସାଥେ ସାଥ ଯାଇ ଚୂଳି ମାରିଦେବ !) । ଏଠାରେ ସେ ବାଳକର ନାମ ବିଶ୍ୱନାଥ, ଧର୍ମପଦ ନୁହେଁ । ଏଠାରେ କୌଣସି ଏକ ବଙ୍ଗୀୟ ନୃତ୍ୟଶିଳ୍ପୀ ନବୀନାକ୍ଷ, କୋଣାର୍କର ପ୍ରଧାନ ଶିଳ୍ପୀ ଥିଲେ । କୋଣାର୍କ ତାଉଆରେ ରାୟ ମହାଶୟଙ୍କର ସ୍ୱଦେଶପ୍ରୀତିର ରୋଟି ସେକି ନେବା, କ୍ଷମା କରାଯାଇପାରେ; ଏହା ପରେ ସେ ଯେଉଁ କର୍ମଟି କରିଲେ, ସେଥିପାଇଁ । ନବୀନାକ୍ଷ ମନ୍ଦିର ନର୍ତ୍ତକୀ ସହିତ ନିଷିଦ୍ଧ ପ୍ରେମରେ ଆବଦ୍ଧ ହୁଅନ୍ତି । ଫଳାଫଳ ଭୟାନକ ହେବ ଜାଣି ସୁଦ୍ଧା ପ୍ରେମ ବାଧା ମାନେନା । ଶେଷ ଦୃଶ୍ୟ : କୁହୁଡ଼ିଘେରା ଜହ୍ନ ରାତିରେ ଶିଳ୍ପୀ ଗୋଟିଏ ମୂର୍ତ୍ତି ଗଢ଼ିବାରେ ମଗ୍ନ, ଝାଉଁ ବନ ମଧ୍ୟରୁ ଧୀର ପାଦରେ ବାହାରି ଆସିଲେ ନର୍ତ୍ତକୀ । ଶିଳ୍ପୀଙ୍କର ନୀରବ ଇଙ୍ଗିତରେ ନର୍ତ୍ତକୀ ଗୋଟିଏ ଗୋଟିଏ କରି ବସନ ତ୍ୟାଗ କରୁଛନ୍ତି ଓ ଶିଳ୍ପୀର ନିହଣର ବେଗ ବଢ଼ି ବଢ଼ି ଯାଉଛି । ମୂର୍ତ୍ତି ଗଢ଼ା ଶେଷ ପ୍ରାୟ । ନର୍ତ୍ତକୀ ଚିରଦିନ ପାଇଁ ହଜିଗଲେ ଝାଉଁବନ ମଧ୍ୟରେ, ହୁଏତ ସାଗର ଜଳରେ ।

ଲେଖକ ଓ ଅନୁବାଦକ କେହି ଖ୍ୟାତିମାନ୍ ଲେଖକ ନୁହଁନ୍ତି । କିନ୍ତୁ ସେମାନେ ଗୋଟିଏ ବଡ଼ କାମ କରିଛନ୍ତି । କୋଣାର୍କ ସାହିତ୍ୟକୁ 'ଧରମା, ରାମଚଣ୍ଡୀ, କଳାପାହାଡ଼' କିମ୍ବଦନ୍ତୀ ମୁକ୍ତ କରି ଗୋଟିଏ ନୂଆଚିତ୍ର ଆଙ୍କିଛନ୍ତି ।

ବ୍ରିଟିଶ୍ ଅମଳରୁ ସଂରକ୍ଷଣ କାର୍ଯ୍ୟର ଶତବର୍ଷ ପୂର୍ତ୍ତି ଉପଲକ୍ଷେ ଓଡ଼ିଶା ସାହିତ୍ୟ ଏକାଡ଼େମୀ, "Poems at Konark" ନାମକ ଗୋଟିଏ କବିତା ସଂକଳନ ପ୍ରକାଶ କରିଛନ୍ତି ୨୦୦୧ ସାଲରେ । ସେ ପୁସ୍ତକର ଉତ୍ସର୍ଗପତ୍ରରେ ଲେଖା ହେଲା :

"Dedicated to the glowing memory of Dharma for whom tears trickle down the cheeks af all mothers."

ମନେହେବା ସ୍ୱାଭାବିକ, ସଂକଳକମାନେ କେଉଁ ବିଶେଷ ଦିଗକୁ ଏ ଉପଲକ୍ଷେ ସ୍ମରଣ କରିବାକୁ ଚାହୁଁଛନ୍ତି । କିନ୍ତୁ ସେପରି କିଛି ହେଲା ନାହିଁ । ଚଉଦଟି ଭାଷାରେ ରଚିତ ୩୭ଟି କବିତାର ସଂଗ୍ରହ ଏ ପୁସ୍ତକ । ବହୁ କବିତା ଏଥିରେ ସ୍ଥାନ ପାଇଛି, ଯାହା ପୂର୍ବେ ପ୍ରକାଶିତ; ଏ ବିଶେଷ ଉପଲକ୍ଷେ ରଚିତ ନୁହେଁ; ଏପରିକି ଅନେକ କବିତା କୋଣାର୍କ ଅଥବା ତାହା ସହିତ ଯୁକ୍ତ କିମ୍ବଦନ୍ତୀ ନିର୍ଭର ନୁହେଁ । ତଥାପି ଏ ସଂକଳନ ସ୍ମରଣୀୟ ଏଇଥିପାଇଁ; ଭାରତର ବିଭିନ୍ନ ଭାଷାଭାଷୀ, ଓଡ଼ିଶା ତଥା ବିଶ୍ୱର ବିସ୍ମୟ ଏ ଦେଉଳକୁ କିଭାବେ ଦେଖିଛନ୍ତି, ତାହା ସହିତ ଆମମାନଙ୍କ ପରିଚୟ କରାଇଦେବାରେ ।

**ସମୀର ତନ୍ତୀ**ଙ୍କ 'ପ୍ରିୟ ପର୍ଯ୍ୟଟକ' ପ୍ରଥମେ ଉଲ୍ଲେଖ କରିବାର କାରଣ, କବି ବର୍ତ୍ତମାନ ଆସାମର ସ୍ଥାୟୀ ବାସିନ୍ଦା ହେଲେ ମଧ୍ୟ ଦୁଇ ପ୍ରଜନ୍ମ ପୂର୍ବେ ଥିଲେ ଓଡ଼ିଶାର ମଣିଷ । କବିତାଟି ବିଲୀୟମାନ କୀର୍ତ୍ତିଟି ପାଇଁ ଗୋଟିଏ ଦୀର୍ଘଶ୍ୱାସ ।

''ମୁଁ ବାହାରି ଆସିଲି ଏକୁଟିଆ
କଳଙ୍କିତ ରାତି,
ପ୍ରାର୍ଥନାର ଶୂନ୍ୟ ହାତ ।
ନୃତ୍ୟଶାଳାଟି ଶୂନ୍ୟ
ଓଡିଶୀର ମୁଦ୍ରା ଭୁଲି
ଆତ୍ମହତ୍ୟା କଲେ ଦେବଦାସୀମାନେ
ଚନ୍ଦ୍ରଭାଗା କାନ୍ଦୁଛି
କୂଳରେ ବୋହିଯାଉଛି ଚନ୍ଦ୍ରଭାଗାର ରକ୍ତ....।''

**ନୀଳମଣି ଫୁକନ୍** ଆସାମର ଖ୍ୟାତନାମା କବି । ତାଙ୍କର **'କବିତା'** ର ତିନିଟି ଧାଡ଼ି ଏହିପରି :

''ଗୋଟିଏ ମହାବୃତ୍ତର କେନ୍ଦ୍ରରେ ଠିଆ ହୋଇ ଯେପରି
ନିରୀକ୍ଷଣ କରୁଅଛି ।
ନିଆଁ ପାଣି ବାୟୁ ଗ୍ରହ ଓ ନକ୍ଷତ୍ର ।''

**– ଅନୁବାଦ, ଭାମତୀ ଦେବୀ**

ଇମ୍ଫାଲରେ ଜନ୍ମିତ **ୟୁଲେମ୍ବମ୍ ଇବୋମଚା**ଙ୍କ ''ମତମ ଅମସୁଂ କୀମ୍'' କବିତାରେ ଗୋଟିଏ ନୂତନ ଅନୁଭବର ସ୍ପର୍ଶ ମିଳୁଛି ।

''ଘୂରୁଛି ଅବିରାମ ସମୟର ଚକ
× × ×
ସମୟର ପଦଚିହ୍ନ ଏବେ ବି ଅଜଣା ଆମକୁ
ଯାହା ଧରି ରଖେ କୋଣାର୍କ ମନ୍ଦିର
× × ×
ଉତ୍ତୋଳିତ ବାହୁରେ କାମନାର ଢେଉ
ଅଂଗେ ଅଂଗେ ଲାସ୍ୟ
ମୁହଁରେ ଉଚ୍ଛୁଳା କାମନାର ଅମୃତ
× × ×
କାମନାର ଶେଷହୀନ ଉଚ୍ଛ୍ୱାସ !
ଓ ସମୟର ଶେଷହୀନ ଗତି

**- ଅନୁବାଦ, ସୁନୀଲ୍ କୁମାର ହୁଇଦ୍ରୋମ୍ବା**

କବି **ଆଶୁତୋଷ ପରିଡ଼ା**ଙ୍କ **'କୋଣାର୍କର ଘୋଡ଼ା'** ଫସିଲ୍ ପାଲଟି ଯାଇଥିବା ଅତୀତର ଦୀର୍ଘଶ୍ୱାସ ମଧ୍ୟରେ ଉନ୍ମୁକ୍ତ ବାୟୁର ହିଲ୍ଲୋଳ, ଶକ୍ତିର ବିଚ୍ଛୁରଣ :

''ସିଏ କ'ଣ ଫିଟି ଆସିଥିଲା
ସୂର୍ଯ୍ୟଙ୍କ ଅସ୍ତାବଳ୍‌ରୁ

× × ×

କେତେ ଶତାବ୍ଦୀ ବିତିଗଲାଣି,
ସେ ରହିଛି ନିଜ ଦୃପ୍ତ ବିଶାଳତାରେ

× × ×

ଏକ ଉଗ୍ର ଅବୟବ ଲମ୍ବି ଆସିଛି ଆଗକୁ
ନିଆଁର ଶିଖା ପରି

× × ×

ତା' ନାକରୁ ବାହାରିଆସୁଛି ତପ୍ତ ନିଃଶ୍ୱାସ
ବାଜୁଛି ଭଙ୍ଗା ମନ୍ଦିରର ଛାତିରେ

× × ×

ଗଭୀର ରାତିରେ
ପଥରର କାନମାନେ ଶୁଣି ପାରନ୍ତି ତା'ର ହ୍ରେଷା

× × ×

ଗୋଟେ ପାଗଳ ଘୋଡ଼ା ଧାଇଁବୁଲେ
ସୂର୍ଯ୍ୟ ମନ୍ଦିରର ଚାରିପାଖରେ,

× × ×

ପଥର ଘୋଡ଼ାକୁ କହେ
ଟାଣିବାକୁ ସୂର୍ଯ୍ୟଙ୍କ ରଥକୁ ।

× × ×

କୋଣାର୍କର ବିଶାଳ ଚକସବୁ
ଘୂରିବାକୁ ଆରମ୍ଭ କରନ୍ତି ନିଜ ନିଜ ସ୍ଥାନରେ

× × ×

ଘୁଞ୍ଚେ ନାହିଁ ବାଲିଭର୍ତ୍ତି ପଥରର ରଥ
ନିଜ ଓଜନରେ ଚାପି ହୋଇଯାଏ
ଏକ ବିଷଣ୍ଣ ଅତୀତ ।

× × ×

ଡାକେ ସମସ୍ତଙ୍କୁ
ସବାର ହେବାପାଇଁ ତା' ପିଠିରେ
ଯାଇ ପହଞ୍ଚିବାକୁ ଆଲୋକର କେନ୍ଦ୍ରରେ
ମହାକାଳର ସୀମାରେ ।



ଫଟୋ-୮୯

## ଶିଳାପଦ୍ମ:

ସାମାନ୍ୟ କିଛି ବ୍ୟତିକ୍ରମ ଛାଡ଼ିଦେଲେ, କୋଣାର୍କ ସମ୍ବନ୍ଧିତ ଅଧିକାଂଶ କାବ୍ୟ କବିତା ବନ୍ଧା ରହିଛି ପରିଚିତ କେତୋଟି କିମ୍ବଦନ୍ତୀର ନିଗଡ଼ରେ। ମାତ୍ର **ପ୍ରତିଭା ରାୟଙ୍କ 'ଶିଳାପଦ୍ମ'** ଏହାର ଗୋଟିଏ ଉଜ୍ଜ୍ୱଳ ବ୍ୟତିକ୍ରମ ।

ଆମେରିକାରୁ ଗୋଟିଏ ଯୁବକ ଆସି ପଡ଼ିଛି କୋଣାର୍କ ଚତ୍ୱରରେ । ଯଦିଓ ତାହାର ଚାଲିଚଳଣରେ ଅତି ଉନ୍ମୁକ୍ତ ଆମେରିକାନ୍ ସମାଜର ଛାପ ପରିଷ୍କାର, ସେ କିନ୍ତୁ ଆଉ ପାଞ୍ଚଟା ଆମେରିକାନ୍ ଟୁରିଷ୍ଟଠାରୁ ନିଆରା । ସେ ଜଣେ ସ୍ଥପତି ଏବଂ ଏଠାକୁ ଆସିଛି କୋଣାର୍କ ସ୍ଥାପତ୍ୟ ଉପରେ ଗବେଷଣା କରିବାକୁ । କିଛି ଦିନ ବାଦେ ଅନେକ ଦିନର ବାନ୍ଧବୀ ଲିଲିଆନ୍ ଆସି ପହଞ୍ଚନ୍ତି; ଉଦ୍ଦେଶ୍ୟ ଅତିବ୍ୟବହାରରେ ସ୍ତିମିତ ଯୌନପୁଲକ କୋଣାର୍କ ଇରୋଟିକା ସହଯୋଗରେ ତେଜି ତୋଳିବ । ସେମାନଙ୍କ ସମାଜରେ ଦୈହିକ ମିଳନରେ ରକ୍ଷଣଶୀଳତା ନଥାଏ ଏବଂ ଚାର୍ଲସର ଶଯ୍ୟାସଂଗିନୀ ହେବା ଅଭ୍ୟାସରେ ପଡ଼ିଯାଇଛି । କିନ୍ତୁ କିଛି ଦିନ ମଧ୍ୟରେ ଲିଲିଆନ୍ ପାଖରେ କୋଣାର୍କ ପୁରାତନ ହୋଇଯାଏ, କାରଣ ସେ ମୈଥୁନ ଓ ନିଶା ବାହାରେ ଅନ୍ୟ କିଛି ଦେଖିବାକୁ ଅକ୍ଷମ ଥିଲା । ସ୍ଥପତି ଚାର୍ଲସ୍ କିନ୍ତୁ ସେତେବେଳକୁ କୋଣାର୍କ ଶିଳ୍ପରେ ମଜ୍ଜିଗଲାଣି ଏବଂ ହୁଏତ ପ୍ରାଚୀପ୍ରଭାରେ । ଲିଲିଆନ୍ ଆଉ ଗୋଟିଏ ସାଥୀ ଯୋଗାଡ଼ କରି ଚାଲିଯାଏ ଗୋଆ ଏବଂ ସେଠାରେ ଅତି ଉଚ୍ଛୃଙ୍ଖଳ ଜୀବନଯାତ୍ରା ତାକୁ ମୃତ୍ୟୁମୁଖକୁ ଟାଣିଆଣେ ।

ପ୍ରାଚୀପ୍ରଭା ଉଚ୍ଚ ଶିକ୍ଷିତା ଏବଂ ସେତେବେଳେ କୋଣାର୍କ ଉପରେ ଗବେଷଣାରତା । ଓଡ଼ିଆ ଝିଅଟିର ଚାଲିଚଳଣରେ କୌଣସି ଜଡ଼ତା ନଥିଲା । କିନ୍ତୁ ସବୁବେଳେ ଯେପରି ତାକୁ ଘେରି ରହିଥିଲା ଗୋଟିଏ ଅଲଙ୍ଘନୀୟ ଦୂରତ୍ୱ। ସେ ରହୁଥାଏ ତା'ର ଜଣେ ମଉସାଙ୍କ ଘରେ, ଯିଏ ଅବସରପ୍ରାପ୍ତ ଶିକ୍ଷକ ଏବଂ ଦରଦୀ ମଣିଷ । କିଛିଦିନ ପରେ ଚାର୍ଲସ୍ ଦୀନବନ୍ଧୁବାବୁଙ୍କ ଘରେ 'ପେଇଙ୍ଗ୍ ଗେଷ୍ଟ' ହୋଇ ରୁହେ ଏବଂ କ୍ରମେ ବୃଦ୍ଧ ଦମ୍ପତିଙ୍କର ପୁତ୍ରସମ ହୋଇଯାଏ । ଦୀନବନ୍ଧୁବାବୁଙ୍କ ପୁତ୍ର ଦୀନେଶ ସେତେବେଳେ ଆମେରିକାରେ ।

ଏହା ମଧ୍ୟରେ ଆଉ କେତୋଟି ଚରିତ୍ର ଗଳ୍ପରେ ପ୍ରବେଶ କରିସାରିଥିଲେ । ବିଷ୍ଣୁ ମହାରଣା, କୁଶଭଦ୍ରା ବୁଢ଼ୀ, ଚିତ୍ରା ଓ ଧର୍ମାନନ୍ଦ । ଧର୍ମାନନ୍ଦ ୧୨ ବର୍ଷର ବାଳକ, କିନ୍ତୁ ପେଟପାଇଁ ମିଥୁନ ମୂର୍ତ୍ତିର ଫଟ ବିକେ । ଚିତ୍ରା, ଯାହାର ଭଲ ନାଁ ଚିତ୍ରୋତ୍ପଳା, ଗରିବ ଏବଂ ପରିବାରର ବଡ଼ ଝିଅ । ସିଏ ଫୁଲ ବିକେ, ନିଜ ବାହାଘରର ଅର୍ଥ ଯୋଗାଡ଼ କରିବାକୁ । କୁଶଭଦ୍ରା ଯାହାକୁ ସମସ୍ତେ ଚିହ୍ନନ୍ତି କୁଶୀ ବୁଢ଼ୀ ରୂପେ ଏବଂ ବିଷ୍ଣୁ ମହାରଣା- ଏମାନଙ୍କ ବୟସର ଗଛ ପଥର ନାହିଁ । କୁଶୀ ବୁଢ଼ୀ କଣ୍ଢେଇ ବିକେ, ସମସ୍ତଙ୍କୁ ସ୍ନେହ କରେ ଏବଂ କୋଣାର୍କର ପୂର୍ବ ଇତିହାସ ଗାଇ ଚାଲେ । ତାହାର ପୂର୍ବପୁରୁଷମାନେ କୁଆଡ଼େ କୋଣାର୍କ ଶିଳ୍ପୀ ଥିଲେ । ବିଷ୍ଣୁ ମହାରଣା ମଧ୍ୟ ଅତି ବୃଦ୍ଧ ଏବଂ କୋଣାର୍କର ପୁରାତନ ଇତିହାସ ବଖାଣିବାକୁ ଭଲପାଏ । ବିଷ୍ଣୁ ମହାରଣା ଓ କୁଶୀ ବୁଢ଼ୀ ଦୁହେଁ ଦାବି କରନ୍ତି, ସେମାନେ ଜାତିସ୍ମର କିନ୍ତୁ ସେ ସ୍ମରଣ କେତେଟା ପୂର୍ବ ଜନ୍ମମାନଙ୍କରୁ ସଙ୍ଗ ନେଇଛି କେତେଟା ପୂର୍ବଜ ଓ ତାଙ୍କ ପୂର୍ବଜମାନଙ୍କ ସ୍ମୃତିରୁ ଏବଂ କେତେଟା ନିଛକ କିମ୍ବଦନ୍ତୀରୁ, ଗବେଷଣାର ବିଷୟ । କିନ୍ତୁ ସେମାନଙ୍କ କଥକତାରେ ଏପରି କିଛି ଥିଲା, ଯାହା ଆମେରିକାନ୍ ଓ ଭାରତୀୟ ଗବେଷକ ଦୁଇଜଣଙ୍କୁ ନିକଟକୁ ଟାଣି ଆଣୁଥିଲା । କିଛିଦିନ ପରେ କୁଶୀ ବୁଢ଼ୀ ମରେ ଏବଂ ତା'ର ଟିଣ ବାକ୍ସରୁ ଉଦ୍ଧାର ହୁଏ ଗୋଟିଏ ପୁରାତନ ତାଳପତ୍ର ପୋଥି; ଲେଖିଯାଇଥିଲେ ବୁଢ଼ୀର ପୂର୍ବଜମାନେ । ପ୍ରତିଦିନ ସେ ପୋଥିରୁ କିଛି କିଛି ପାଠ ଉଦ୍ଧାର କରେ ବୃଦ୍ଧ ବିଷ୍ଣୁ ମହାରଣା, ମନଯୋଗୀ ଛାତ୍ର ଭଳି ଶୁଣନ୍ତି ଚାର୍ଲସ୍ ଓ ପ୍ରାଚୀ । ସେ ବର୍ଣ୍ଣନାରୁ ମନେହୁଏ, ସତେ ଯେପରି ଘଟଣାଗୁଡ଼ିକ ଆଖି ଆଗରେ ଘଟି ଚାଲିଛି । ସମୟ ଗଡ଼ି ଅନ୍ଧାର ହୁଏ ଏବଂ ଚାର୍ଲସ୍ ଓ ପ୍ରାଚୀ ଅନୁଭବ କରନ୍ତି କେତେକ ଅଶରୀରୀ ଘୂରିବୁଲୁଛନ୍ତି । ପଠନ ଓ ଦୃଷ୍ଟିବିଭ୍ରମ ମିଶି ଜୀବନ୍ତ ହୋଇ ଉଠନ୍ତି । ପ୍ରଜାବତ୍ସଳ, ଯୋଦ୍ଧା, ଭକ୍ତ ବୀର ନରସିଂହଦେବ, ଯାହାଙ୍କର ଜୀବନର ଦୁଇଟି ଲକ୍ଷ୍ୟ – ଆକ୍ରମଣକାରୀମାନଙ୍କୁ ଦୃଢ଼ ହସ୍ତରେ ଦମନ କରି ଦେଶବାସୀଙ୍କ ସୁରକ୍ଷା ଓ କୋଣାର୍କ ବେଳାରେ ସୂର୍ଯ୍ୟଦେବଙ୍କର ବିଶାଳ ମନ୍ଦିର ନିର୍ମାଣ, ଯାହାର ଯୋଡ଼ି ସମଗ୍ର ବିଶ୍ୱରେ ହେବ ନାହିଁ । ଆସି ଯାଉଛି ଶିଳ୍ପୀମାନଙ୍କର ଏକାଗ୍ରତା, ନିଷ୍ଠା ଓ ତ୍ୟାଗ । ଆହୁରି ଆସି ଯାଉଛି ବିରହିଣୀ ବଧୂର ବୁକୁଫଟା ହାହାକାର ଓ ଗ୍ରାମ୍ୟ ଜୀବନରେ ବଧୂ ନିର୍ଯ୍ୟାତନାର କାହାଣୀ । ଆସୁଛି ଓଡ଼ିଶାରୁ ଅନ୍ୟ ଦେଶକୁ ନୌଯାତ୍ରା ଓ ବିପଦର କାହାଣୀ । ନାଟ୍ୟାଚାର୍ଯ୍ୟ ଏବଂ ତାଙ୍କ କନ୍ୟାର କରୁଣ କାହାଣୀ । ପତିବ୍ରତା ସ୍ତ୍ରୀ ଜଣେ ଗ୍ରାମ୍ୟ କୁସଂସ୍କାର ଯୋଗୁଁ ଗୃହରୁ ବିତାଡିତା ହୋଇ ନାନା ପରିସ୍ଥିତି ମଧ୍ୟରେ ଗତିକରି ଶେଷରେ ସ୍ୱାମୀ ଦର୍ଶନ ଓ ମୃତ୍ୟୁ ଲଭିବାର କାହାଣୀ ।

ଏହା ମଧ୍ୟରେ ଚାର୍ଲସ୍ ଓ ପ୍ରାଚୀ ମଧ୍ୟରେ ଗୋଟିଏ ଅବ୍ୟକ୍ତ ପ୍ରେମ ଗଢ଼ି ଉଠିଛି, ଯାହା ସଚେତନ ମନରେ ପ୍ରାଚୀ ସ୍ୱୀକାର କରିବାକୁ ଅକ୍ଷମ ।

କ୍ରମେ ଫୁଟି ଉଠିଛି ଗୋଟିଏ ପୁରାତନ କାହାଣୀ । ପ୍ରାଚୀର ବିବାହ ହୁଏ ଯେତେବେଳେ ବୟସ ତା'ର ପନ୍ଦର । ସ୍ୱାମୀ ୨୯ ବର୍ଷର ପୂର୍ଣ୍ଣ ଯୁବକ କିନ୍ତୁ ପ୍ରଥମ ରାତିରେ ହିଁ ବାଳିକାବଧୂକୁ ଦେଖି ମନରେ ବିକାର ଆସେ । ଜଗନ୍ନାଥ ସେ ରାତିରେ ଘର ବାହାରେ ଶୁଏ ଏବଂ ପରଦିନରୁ ନିରୁଦ୍ଦିଷ୍ଟ ହୋଇଯାଏ । ପ୍ରାଚୀ କିନ୍ତୁ ହିନ୍ଦୁନାରୀର ସଂସ୍କାର ମନରୁ କାଢ଼ି ପାରେ ନାହିଁ । ଯଦିଓ ଏ ମାନସିକତା ଏ ଯୁଗରେ ବିଶ୍ୱାସଯୋଗ୍ୟ ହେଉ ନାହିଁ । ଲେଖିକା ନିମ୍ନଲିଖିତ ଯୋଡ଼ିଏ ବାକ୍ୟରେ ଏପରି ଗୋଟିଏ ପ୍ଲାଟୋନିକ୍ ପ୍ରେମର ଯୁକ୍ତିଯୁକ୍ତତା ପ୍ରତିଷ୍ଠା କରିବାର ଚେଷ୍ଟା କରିଛନ୍ତି ।

ଚାର୍ଲସ୍- ଏ ଦେଶର ଗୋଟିଏ ଝିଅକୁ ମନର କଥା କହିବାକୁ ଚାହିଁଥିଲି, ମାତ୍ର ସେ ବହୁ ପୂର୍ବରୁ ଚୁକ୍ତିବଦ୍ଧ ହୋଇଛି ।

ପ୍ରାଚୀ- ଜୀବନରେ ସମସ୍ତେ ସବୁ ପ୍ରତିଜ୍ଞା ରକ୍ଷା କରିପାରନ୍ତି ନାହିଁ, କିନ୍ତୁ କେତେକ ପ୍ରତିଜ୍ଞା ଭଙ୍ଗ କରି ହୁଏନା ।

ପରିଚିତ ପ୍ଲଟ୍- ଦେଶୀ, ବିଦେଶୀ ମୂଲ୍ୟବୋଧ ମିଶେଇ ଚଟକ୍‌ଦାର ଗଳ୍ପ ପରିବେଷଣ ଯାହାର ବିଶ୍ୱାସଯୋଗ୍ୟତା ଦାନା ବାନ୍ଧିଲା ନାହିଁ । ତଥାପି, ଧରମା, କଳାପାହାଡ଼, ଛକରୁ ବାହାରି ଆସି ନୂତନ କିଛି ପରିବେଷଣ କରିବାର ଚେଷ୍ଟା ଅଭିନନ୍ଦନଯୋଗ୍ୟ ।

ଶେଷରେ ଚାର୍ଲସ ଦେଶକୁ ଫେରିଯାଇଛି ଓ ଭଜି ଭଜି ଯାଇଛି, ''ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ ।'' ଏ ଲେଖକ କିନ୍ତୁ ଗଳ୍ପର ଅନ୍ୟ ଗୋଟିଏ ଚରିତ୍ରର କେତୋଟି ବାକ୍ୟ ଉଦ୍ଧାର କରି ପ୍ରସଙ୍ଗ ଶେଷ କରିବ ।

ଅତିବୃଦ୍ଧ ବିଷ୍ଣୁ ମହାରଣା ଭାବବିହ୍ୱଳ କଣ୍ଠରେ କହିଛି, **''କୋଣାର୍କ କ୍ଷୟ ହୋଇଯାଉଛି କାଳର କରାଳ ହସ୍ତରେ, କିଏ ତାକୁ ରକ୍ଷା କରିବ ? କିଏ ଗଢ଼ିବ ନୂତନ କୋଣାର୍କ ?''** (ପୃ-୧୩୬)

ଏହା ଖାଲି ଗୋଟିଏ କଳ୍ପିତ କାହାଣୀର ଅଳୀକ ଚରିତ୍ରର ଆକୁତି ନୁହେଁ, ଏହା ଆଜି ବିଶ୍ୱର ବହୁ ଗୁଣୀ-ଜ୍ଞାନୀ ଐତିହ୍ୟପ୍ରେମୀ ମଣିଷର ଆକୁତି, ଯାହା ଆଲୋଚିତ ହେବ ପରବର୍ତ୍ତୀ ପରିଚ୍ଛେଦରେ ।

■■■

## ସଂରକ୍ଷଣ :

ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ମନ୍ଦିରଟି ସମ୍ପୂର୍ଣ୍ଣ ପରିତ୍ୟକ୍ତ ହୁଏ । କିଛି ପଥର ଓ ଭାସ୍କର୍ଯ୍ୟ ଲୁଣ୍ଠିତ ହେବା ସତ୍ତ୍ୱେ କ୍ରମେ ଜଙ୍ଗଲ ଗ୍ରାସ କରେ ଏ କୀର୍ତ୍ତିକୁ, ବାଲି ପୋତି ପକାଏ ଛୋଟ ଛୋଟ ମନ୍ଦିରଗୁଡ଼ିକୁ, ଭଗ୍ନ ବିମାନ ଓ ଜଗମୋହନର ବେଶ୍ କିଛି ଅଂଶ ଚାଲିଯାଏ ବାଲିତଳେ ।

## ୧୮୦୬ ଠାରୁ ୨୦୧୦ ପର୍ଯ୍ୟନ୍ତ କ୍ରମିକ ଘଟଣାବଳୀ :

**୧୮୦୬**- ଅର୍ଥାତ୍ ପ୍ରାୟ ଦୁଇ ଶହ ବର୍ଷ ପରେ ପୁନରୁଦ୍ଧାରର ପ୍ରସ୍ତାବ ଆସେ ମେରାଇନ୍ ବୋର୍ଡ଼ରୁ । ପ୍ରସ୍ତାବଟି ପଛରେ କୌଣସି ପ୍ରତ୍ନତାତ୍ତ୍ୱିକ ମହତ୍ ଇଚ୍ଛା ନ ଥିଲା । ବହୁକାଳରୁ ପୁରୀ ଓ କୋଣାର୍କ ମନ୍ଦିର, White Pagoda ଏବଂ Black Pagoda ନାମରେ ସମୁଦ୍ରଗାମୀ ଜାହାଜମାନଙ୍କୁ ଦିଗ୍‌ଦର୍ଶନ ଦେଉଥିଲା ।[୨୯୫] କିନ୍ତୁ ସରକାର ଏ ପ୍ରସ୍ତାବରେ ରାଜି ହେଲେ ନାହିଁ ।[୨୯୬] ପ୍ରସ୍ତାବଟି କାର୍ଯ୍ୟକାରୀ ହୋଇଥିଲେ ବୋଧହୁଏ ବିମାନର ବେଶ୍ କିଛି ଅଂଶ ସଂରକ୍ଷିତ ହୋଇପାରିଥା'ନ୍ତା । ଏପରି ଅନୁମାନ କରିବାର କାରଣ, ଏହାର ୩୧ ବର୍ଷ ପରେ ଜେମ୍‌ସ ଫର୍ଗୁସନ ବିମାନ ଗଣ୍ଡିର ୧୪୦ ଫୁଟ୍ ଠାରୁ ୧୫୦ ଫୁଟ୍ ଖାଡ଼ା ଥିବାର ଦେଖିଥିଲେ ଏବଂ ତାହାର ଗୋଟିଏ ଚିତ୍ର ମଧ୍ୟ କରାଇଥିଲେ ।[୨୯୭] ଚିତ୍ରଟି ଫଟୋ-୧୨ରେ ଉପସ୍ଥାପିତ ହୋଇଛି ।

**୧୮୩୮ ଠାରୁ ୧୯୫୩** ଯାଏ କୋଣାର୍କ ମନ୍ଦିର ସଂରକ୍ଷଣର ଗୋଟିଏ ଧାରାବାହିକ ବିବରଣୀ ମିଳୁଛି ଦେବଳା ମିତ୍ରଙ୍କ ଠାରୁ ।[୨୯୮] ଦେବଳା ମିତ୍ର ଷାଠିଏ ଦଶକରେ ଭାରତୀୟ ପୁରାତତ୍ତ୍ୱ ସଂରକ୍ଷଣ (ASI) ସଂସ୍ଥାର ଡାଇରେକ୍ଟର୍ ଜେନେରାଲ୍ ଥିଲେ । ୧୯୦୦ ଠାରୁ ୧୯୧୦ ଯାଏ କାର୍ଯ୍ୟର ବିବରଣୀ ଉକ୍ତ କାର୍ଯ୍ୟରେ ନିଯୁକ୍ତ ବିଶନ୍ ସ୍ୱରୂପଙ୍କ ପୁସ୍ତକରୁ ମଧ୍ୟ ମିଳୁଛି । ତେଣୁ ତଥ୍ୟଗୁଡ଼ିକ ନିର୍ଭରଯୋଗ୍ୟ ହେବ ବୋଲି ଆଶା କରାଯାଏ ।

**୧୮୩୮**- Asiatic Society of Bengal ର ଡେପୁଟି ଗଭର୍ଣ୍ଣର ଲେଖାଲେଖି କରିବା ପରେ ଖୋର୍ଦ୍ଧା ରାଜାଙ୍କ ଦ୍ୱାରା କୋଣାର୍କରୁ ମୂର୍ତ୍ତି ଅପସାରଣ ବନ୍ଦ ହୁଏ କିନ୍ତୁ, ସରକାର ଏସିଆଟିକ୍ ସୋସାଇଟି ପ୍ରଦତ୍ତ ସଂରକ୍ଷଣ ପ୍ରସ୍ତାବ କାର୍ଯ୍ୟକାରୀ କଲେ ନାହିଁ ।

**୧୮୬୭**- ନବଗ୍ରହ ଶିଳା କଲିକତା ମ୍ୟୁଜିୟମ୍‌କୁ ସ୍ଥାନାନ୍ତରିତ କରିବାର ପ୍ରଥମ ପ୍ରଚେଷ୍ଟା ବିଫଳ ହୁଏ ।

ପ୍ରଚେଷ୍ଟାଟି ଫଳବତୀ ହୋଇଥିଲେ କିମ୍ବା ଆହୁରି ଭଲ ହୁଅନ୍ତା ପରବର୍ତ୍ତୀ ଯୁଗର ମନ୍ଦିର ସଂରକ୍ଷଣ କାର୍ଯ୍ୟସୂଚୀରେ ଯେବେ ସରକାର ନବଗ୍ରହ ଶିଳାଟି ତାହାର ସ୍ୱସ୍ଥାନରେ ଖଞ୍ଜି ଦେଇଥାଆନ୍ତେ, ତେବେ ଆଉ ଆଜି ଅନବଦ୍ୟ ଶିଳ୍ପଗୁଡ଼ିକ ଚନ୍ଦନ, ସିନ୍ଦୂର ତୈଳ ଚର୍ଚ୍ଚିତ ହୋଇ ନାଲି କଳାକନାର ଘାଗରା ପିନ୍ଧି ଧର୍ମବ୍ୟବସାୟର ସହାୟକ ହୁଅନ୍ତା ନାହିଁ ।

**୧୮୮୧**- ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଆସ୍‌ଲେ ଇଡେନ୍‌ଙ୍କ ଚେଷ୍ଟାରେ କିଛି ପ୍ରାଥମିକ ସଂରକ୍ଷଣ କାର୍ଯ୍ୟ ଆରମ୍ଭ ହୁଏ । ୧୮୮୨-୮୩ ମଧ୍ୟରେ କିଛି ଜଙ୍ଗଲ ଅପସାରଣ ପରେ ବିଶାଳ ହାତୀ, ଘୋଡ଼ା ଓ ଗଜ ସିଂହଗୁଡ଼ିକ ଉଦ୍ଧାର କରାହୁଏ । ହାତୀ ଓ ଘୋଡ଼ା ଚାରିଟି ପଥର ବେଦୀ ଗଢ଼ି ତାହା ଉପରେ ଭୁଲ୍ ଦିଗକୁ ମୁଖ କରି ରଖାଯାଏ ଏବଂ ଗଜସିଂହ ଦ୍ୱୟଙ୍କୁ ରଖାଯାଏ ଗୋଟିଏ ବାଲିକୁଦ ଉପରେ । ପରବର୍ତ୍ତୀ ସମୟରେ (୧୯୦୫-୦୬) ସେ ବାଲିକୁଦ ତଳୁ ନାଟମଣ୍ଡପଟି ବାହାରି ପଡ଼େ ଏବଂ ଗଜ ସିଂହ ଦୁଇଟି ତାହା ସମ୍ମୁଖରେ ସ୍ଥାପନ କରାଯାଏ ।

**୧୮୯୨**- ଏଗାର ବର୍ଷ ପରେ ପୁଣି ତତ୍‌କାଳୀନ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଚାର୍ଲସ୍ ଇଲିୟଟ୍ ବିଷୟଟି ପ୍ରତି ମନଯୋଗ ଦିଅନ୍ତି । ସଂରକ୍ଷଣ ପାଇଁ କ'ଣ କରାଯିବ, ତାହାର ଗୋଟିଏ ବିଶଦ୍ ବିବରଣୀ ଦେବା ପାଇଁ ଜଣେ ବିଜ୍ଞ ବ୍ୟକ୍ତିଙ୍କୁ ନିୟୋଗ କରିବା କଥା ଇଲିୟଟ୍ ଚାହିଁଥିଲେ । ଏହା ହେଲା କି ନାହିଁ ଜଣା ନାହିଁ, କିନ୍ତୁ ଇଲିୟଟ୍ ଚାହିଁଥିଲେ ଖଣ୍ଡିତ ନବଗ୍ରହଶୀଳା ତଥା ବିକ୍ଷିପ୍ତ ଭାସ୍କର୍ଯ୍ୟଗୁଡ଼ିକ ଏକତ୍ରିତ କରି ଭାରତୀୟ ମ୍ୟୁଜିୟମ୍‌କୁ ଅପସାରିତ କରିବାକୁ । ସ୍ଥାନୀୟ ଲୋକମାନଙ୍କର ବିରୋଧ ଫଳରେ ନବଗ୍ରହଶୀଳା ଅପସାରଣ କରିବାର ଦ୍ୱିତୀୟ ପ୍ରଚେଷ୍ଟା ୧୮୯୩ ସାଲରେ ପରିତ୍ୟକ୍ତ ହୁଏ । ତେବେ ତେରଟି ବିକ୍ଷିପ୍ତ ଭାସ୍କର୍ଯ୍ୟ ସଂଗ୍ରହ କରି କଲିକତା ମ୍ୟୁଜିୟମ୍‌କୁ ପଠାଯାଏ ।

ଏହା ମଧ୍ୟରେ ସରକାରଙ୍କ ଇଚ୍ଛାନୁଯାୟୀ PWD ର ଜଣେ ସୁପରିଣ୍ଟେଣ୍ଡିଂ ଇଂଜିନିୟର ମନ୍ଦିର ପରିଦର୍ଶନ କରି ମତ ଦିଅନ୍ତି :

୧. ଜଗମୋହନ ଭିତରୁ ପଥରରେ ଗଢ଼ି ଠେକା ଦିଆଯାଉ ।

୨. ନିୟମିତ ଜଙ୍ଗଲ ସଫେଇର ବନ୍ଦୋବସ୍ତ କରାଯାଉ ।

୩. ପଶ୍ଚିମ ପଟର ପଥର କୁଢ଼ କାଢ଼ିବାର ଚେଷ୍ଟା ସୁଦ୍ଧା କରା ନ ଯାଉ କାରଣ ତଦ୍ଦ୍ୱାରା ଜୀର୍ଣ୍ଣ ଜଗମୋହନ ଭୁଶୁଡ଼ି ପଡ଼ିପାରେ ।

ଦେଖାଯାଉଛି, ପୁରାତନ ମନ୍ଦିରର ଗଠନ ପ୍ରକ୍ରିୟା ଓ ତାହାର ସଂରକ୍ଷଣ ସମ୍ବନ୍ଧରେ ତତ୍‌କାଳୀନ ଇଂଜିନିୟରମାନଙ୍କର କୌଣସି ଜ୍ଞାନ ହିଁ ନଥିଲା । ସେ ଯାହା ହେଉ ସରକାର ସୌଧଟିର ରକ୍ଷଣାବେକ୍ଷଣ PWD ହାତରେ ସମର୍ପଣ କରନ୍ତି ଏବଂ ପୁରୀ କଲେକ୍ଟରଙ୍କୁ ସଜାଗ ରହିବାକୁ କୁହନ୍ତି, ଆଉ ଯେପରି ପୂରାକୀର୍ତ୍ତି ଚୋରି ନହୁଏ ।

ଏହିପରି ଦୋଦୁଲ୍ୟମାନ ତଥା ଉଦାସୀନ କାର୍ଯ୍ୟାବଳୀରେ ଶହେବର୍ଷ କଟିଗଲା ।

**୧୯୦୦, ଡିସେମ୍ବର** - ପ୍ରଥମ ଦୃଢ଼ ତଥା କ୍ଷିପ୍ର ପଦକ୍ଷେପ ନେଲେ **ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଜନ୍ ଉଡ୍‌ବର୍ଣ୍ଣ** । ବର୍ଷକ ମଧ୍ୟରେ ବଙ୍ଗଳାର ଆର୍କୋଲଜିକାଲ୍ ସର୍ଭେୟର୍ T. Block ଗୋଟିଏ ବିସ୍ତୃତ ପ୍ରସ୍ତାବ ଉପସ୍ଥାପନ କରନ୍ତି ୧୯୦୧ ଫେବ୍ରୁଆରି ମାସରେ ଏବଂ କାର୍ଯ୍ୟ ଆରମ୍ଭ ହୋଇଯାଏ ୧୯୦୧ ଏପ୍ରିଲ୍ ମାସରୁ ।

ବାଲି କାଢ଼ିବା ବେଳେ ପ୍ରଥମ ଦେଖାଯାଏ ଗୋଟିଏ ଚକ ଏବଂ କ୍ରମେ କ୍ରମେ ବାଲି ତଳୁ ବାହାରି ଆସେ ଛୋଟ ବଡ଼ ମନ୍ଦିର ସବୁ । ସାଥେ ସାଥେ ଚାଲିଥାଏ ଭଗ୍ନ ଅଂଶର ମରାମତି, ଯେଉଁଠାରେ ସମ୍ଭବ, ତଳେ ପଡ଼ିଥିବା ମୂର୍ତ୍ତିଗୁଡ଼ିକର ପୁନଃସଂଯୋଜନ କରାଯାଉଥାଏ ।

ବାଲି କାଢ଼ିବା ପରେ ଜଗମୋହନର ଭିତରଟି କି ଅବସ୍ଥାରେ ଥିଲା, ତାହାର ଗୋଟିଏ ଫଟୋ ଚିତ୍ର ଦିଆଗଲା ଫଟୋ-୯୦ରେ । କେତେକ ବିଶେଷଜ୍ଞ ଏହାକୁ ଆଲୋକ ଚିତ୍ର ବୋଲି ମାନିବାକୁ ରାଜି ନୁହନ୍ତି । ସେମାନଙ୍କ ମତରେ, ଏହା ମନରୁ ଗଢ଼ା ତୈଳଚିତ୍ରଟିଏ । ସଂଶୟ ଅମୂଳକ



ଫଟୋ-୯୦ : ବାଲିତଳୁ କୋଣାର୍କର ପୁନରୁଦ୍ଧାର (ଫଟୋ : ଏ.ସ୍.ଆଇ.-୧୯୦୧)

ନୁହେଁ । ଉତ୍ତର ଓ ଦକ୍ଷିଣ ଦିଗରେ କେବେହେଲେ ଏତେ ବଡ଼ କଣା ହୋଇ ନଥିଲା । ଗଜସିଂହ ପଡ଼ି ବଡ଼ କ୍ଷତ ସୃଷ୍ଟି ହୁଏ ଜଗମୋହନର ପଶ୍ଚିମ ପଟେ, ତାହା ମଧ୍ୟ 'ଗଇଣ୍ଡାଳ' ଅଞ୍ଚଳରେ । ଆଲୋକଚିତ୍ର ୧୦ ଦ୍ରଷ୍ଟବ୍ୟ ।

ଆର୍କେଓଲଜିକାଲ୍ ସର୍ଭେ ଅଫ୍ ଇଣ୍ଡିଆର (ASI) ସହଯୋଗିତାରେ କାର୍ଯ୍ୟଟି କରନ୍ତି ପବ୍ଲିକ୍ ୱାର୍କସ୍ ଡିଭିଜନ୍ (PWD) ଦଶବର୍ଷ ଧରି । ଏଇ ସମୟ ମଧ୍ୟରେ ଜଗମୋହନର ଦୁଆର ସବୁ ପଥର ଗଢ଼ି ବନ୍ଦ କରି ଦିଆଯାଇ ଭିତରେ ବାଲି ଭର୍ତ୍ତି କରାଯାଏ । ବାଲି କିପରି ଭର୍ତ୍ତି କରାଗଲା ତାହାର ଗୋଟିଏ ବିଶଦ୍ ବିବରଣୀ ଦେଇଛନ୍ତି ବିଶନ୍ ସ୍ୱରୂପ Konarka The Black Pagoda of Orissa ପୁସ୍ତକରେ । ବିଶନ୍ ସ୍ୱରୂପ ଥିଲେ ସଂରକ୍ଷଣ କାର୍ଯ୍ୟରେ ନିଯୁକ୍ତ ଜଣେ Executive Engineer ।

"Stones from the inner portion of the roof were dropping every now and then. The damage done to the walls caused unequal pressure to be brought on to individual stones which consquently began to get crushed. The building could not in fact, be left to itself without a collapse in not very distant future." (Bishan Swarup-P.101) ଏପରି ପରିସ୍ଥିତିରେ ଜରୁରୀ ପଦକ୍ଷେପର ପ୍ରୟୋଜନ ଥିଲା ।

ପ୍ରଥମେ ଚିନ୍ତା କରାଯାଇଥିଲା ଭିତରଟାକୁ ପଥର ଦ୍ୱାରା ୪୦ ଫୁଟ୍ ଯାଏ ଭରି ଦେଇ ମଝିରେ ଗୋଟିଏ ଖମ୍ବ ତୋଳି ଛାତକୁ ଆଶ୍ରା ଦେବା କଥା । ଯୋଜନାଟି ପରିତ୍ୟକ୍ତ ହୁଏ, କାରଣ ପରେ ଦେଖାଗଲା ଏ ମନ୍ଦିରର ଗଠନ ପ୍ରଣାଳୀ ଯାହା ସେଥିରେ ଖମ୍ବଟି ସହାୟ ନ ହୋଇ "horizontal arch pattern" ର ବିପରୀତ କାର୍ଯ୍ୟ କରିବ ଏବଂ ପତନ ତ୍ୱରାନ୍ୱିତ ହେବ । ଏହାପରେ ବାଲି ଭରିଦେଇ ସିଲ୍ କରିଦେବା କଥା ଚିନ୍ତା କରାଗଲା କିନ୍ତୁ ସେ ବିପୁଳ ବାଲୁକାରାଶିର ପାର୍ଶ୍ୱଚାପ ନେଇ ଚିନ୍ତିତ ଥିଲେ ଇଂଜିନିୟର୍‌ମାନେ । ତେଣୁ ଭିତରେ ଦେବାଲକୁ ଲଗାଇ ୧୫ ଫୁଟ୍ ମୋଟ ଦେବାଲ ଉଠାଗଲା ଚାରିପଟେ । ଦକ୍ଷିଣ-ପଶ୍ଚିମ ଦିଗର ଛାତର ଭିତର କୋଣ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲା । ସିଲ୍ କରିବା ପୂର୍ବେ ମରାମତି ଜରୁରୀ ଥିଲା । ବିପଦପୂର୍ଣ୍ଣ ଥିଲେ ମଧ୍ୟ, ସାହସୀ କର୍ମୀମାନେ କାର୍ଯ୍ୟଟି ସୁସମ୍ପନ୍ନ କରିଥିଲେ । ଉତ୍ତର ଦ୍ୱାରଟି ଅପେକ୍ଷାକୃତ ଭଲ ଅବସ୍ଥାରେ ଥିବାରୁ ପ୍ରଥମେ ଅନ୍ୟ ଦୁଇଟି ଦୁଆର ବନ୍ଦ କରି ଦେଇ ବାଲି ଭର୍ତ୍ତି କରାଗଲା ଯେତେଦୂର ସମ୍ଭବ ଏବଂ ପରେ ଉତ୍ତର ଦ୍ୱାର ମଧ୍ୟ ବନ୍ଦ କରି ଦିଆଗଲା । (ବିଶନ୍ ସ୍ୱରୂପ ଦୁଇଟି ଦୁଆର କଥା- ସମ୍ଭବତଃ ପୂର୍ବ ଓ ଦକ୍ଷିଣ ଦୁଆର କଥା କହିଛନ୍ତି । ଗର୍ଭଗୃହକୁ ସଂଯୋଗ ଦ୍ୱାରଟି କେବେ ବନ୍ଦ ହେଲା କହି ନାହାନ୍ତି ।) ପୂର୍ବ ଓ ଦକ୍ଷିଣ ଦ୍ୱାର ବନ୍ଦ କରିଦେବା ପରେ ଅନ୍ଧକାର ହୋଇଗଲା ଏବଂ କାର୍ଯ୍ୟ କରିବାକୁ ପଡ଼ିଲା ଲ୍ୟାମ୍ପ ଜାଳି । (ଫଟୋ-୧୫) ଉତ୍ତର ଦ୍ୱାର ମଧ୍ୟ ବନ୍ଦ ହୋଇଯିବା ପରେ ପୀଢ଼ ଅଂଶର ପଶ୍ଚିମ ଦିଗରେ ହୋଇଥିବା ବଡ଼ କଣା ଭିତର ଦେଇ ବାଲି ପୋତା ହେଲା । କଣାଟି ହୋଇଥିଲା ବିମାନର ଭଗ୍ନ ଅଂଶ ଗଡ଼ି । (ଫଟୋ-୧୦) କାର୍ଯ୍ୟଟି ବିପଦପୂର୍ଣ୍ଣ ଥିଲା କାରଣ ପଥର ଖସିବା ସେ ଯାଏ ବନ୍ଦ ହୋଇ ନଥିଲା । ବିଶନ୍ ସ୍ୱରୂପ୍ ସ୍ମୃତି ରୋମନ୍ଥନ କରି ଲେଖିଛନ୍ତି, "I remember how once soon after my coming out through the hole a big stone fell, which would have killed me on the spot had I not been fortunate enough to be out of the way in time." (Swarup-P.101) ବାଲି ସେ ଯାଏ ଭରିବା ପରେ ସେ କଣାଟା ମଧ୍ୟ ବନ୍ଦ କରି ଦିଆଗଲା, ତଥାପି ଆହୁରି ବାଲି ଭରିବା ବାକି ରହିଲା । ଏହାପରେ ଉପରୁ ୩ ଇଞ୍ଚର ବ୍ୟାସର ଗୋଟିଏ କଣା କରାଗଲା diamond drill ସାହାଯ୍ୟରେ । ଯାହା ୨୫ ଫୁଟ୍ ଦୀର୍ଘ ଥିଲା । ସେ ବାଟେ ବାଲି ଭର୍ତ୍ତି କରାଗଲା । ମୂଳ ଗଠନରେ ୧' x ୧' ଦୁଇଟି ଫୋକର ରଖାଯାଇଥିଲା ପୀଢ଼ ଅଞ୍ଚଳରେ, ହୁଏତ ବାୟୁ ଯାତାୟତ କରିବା ପାଇଁ । ଏପରି ରନ୍ଧ୍ର ପୁରୀ ବଡ଼ ଦେଉଳରେ ମଧ୍ୟ ଅଛି । ସେ ରନ୍ଧ୍ର ବାଟେ ଉପରୁ ପଡୁଥିବା ବାଲିକୁ ବାଉଁଶ ଦ୍ୱାରା ଯେତେଦୂର ସମ୍ଭବ ଖେଳା ହେଲା ।

ଦକ୍ଷିଣ ଦ୍ୱାର ବନ୍ଦ କରିଦେବା ପରେ ମଧ୍ୟ ଆହୁରି କାମ ବାକି ଥିଲା କାରଣ ମନ୍ଦିରର ଦକ୍ଷିଣ ଦିଗଟି ଅତ୍ୟନ୍ତ କ୍ଷତିଗ୍ରସ୍ତ ଥିଲା । ସେ ଦିଗରେ ଗୋଟିଏ ବିଶାଳ ପଥର ଦେବାଲ ବାନ୍ଧି ଦିଆଗଲା । ସ୍ୱରୂପ କହିଛନ୍ତି, "This of course gave a flat and inartistic look to the work, but it could not be helped as that portion of the building was in a very dangerous condition." ( Bishan Swarup-P-102).

ସଂରକ୍ଷଣ କାର୍ଯ୍ୟରେ ନିଯୁକ୍ତ ଜଣେ ନିର୍ବାହୀ ଯନ୍ତ୍ରୀଙ୍କ ବିବରଣୀ ଅଧିକ ଯୁକ୍ତିଯୁକ୍ତ ମନେହୁଏ । ମାତ୍ର କେତେକ ବିବରଣୀ ନିର୍ଭରଯୋଗ୍ୟ ନୁହେଁ । ବିଶନ୍ ସ୍ୱରୂପ ଯେତେବେଳେ ପଶ୍ଚିମ ଦିଗର କଣାଭିତର ଦେଇ ନିୟମିତ ଯାତାୟାତ କରୁଥିଲେ, ତେବେ ସେ ଲେଖିପାରନ୍ତେ ନାହିଁ ଗଜସିଂହ ଉପରୁ ପଡ଼ି ଉତ୍ତର ଦିଗକୁ ଗଡ଼ିଗଲା (ସ୍ୱରୂପ-୧୮୫) । ଆଲୋକଚିତ୍ର ନମ୍ବର-୧୦ (ପୃଷ୍ଠା-୭୭) ଦେଖିଲେ ବିଷୟଟି ବୁଝାପଡ଼ିବ । ତଥାପି ଶହେ ବର୍ଷ ତଳର କଥାଗୁଡ଼ିକର ବିଶେଷ ତାତ୍ପର୍ଯ୍ୟ ଅଛି ।

୧ । ବିମାନର ଗଣ୍ଡି ଭାଙ୍ଗି ପଡ଼ି ଜଗମୋହନର ବିଶେଷ କ୍ଷତି ହେଲା, ଏ ସିଦ୍ଧାନ୍ତ ଅଚଳ । ଦକ୍ଷିଣ ଦିଗର ବିଶାଳ କ୍ଷତ, ଯାହା ଏବେ ମଧ୍ୟ ଉତ୍ତ୍ୟକ୍ତ କରୁଛି ASI କୁ, ଘଟିଥିବା ସମ୍ଭବ ଏକମାତ୍ର ମନୁଷ୍ୟ ଦ୍ୱାରା ଯେଉଁ ମନୁଷ୍ୟ ସାଧାରଣ ଶିଳ୍ପ-ଚୋର ନୁହନ୍ତି । ମନେହୁଏ, କଳାପାହାଡ଼ ଓ ବାଖର ଖାନ୍‌ମାନେ ଖାଲି କଳସ ଗଡ଼େଇ ସନ୍ତୁଷ୍ଟ ହୋଇ ନଥିଲେ ।

୨ । ବିଶନ୍ ସ୍ୱରୂପଙ୍କ ସମୟରେ ବାଲୁକାରାଶିର ପାର୍ଶ୍ୱଚାପର ଯେଉଁ ଭୟ ଥିଲା ତାହା ଶହେ ବର୍ଷରେ ଆହୁରି ବଢ଼ିଛି କାରଣ ଇତ୍ୟବସରରେ ବାଲି ୧୬ ଫୁଟ୍ ଦବି ଗଲାଣି ଏବଂ ଭିତରୁ ପଥର କ୍ଷୟ ବଢ଼ିଗଲାଣି ।

୩ । ବାହାରୁ ବିଶେଷରୂପେ ଦକ୍ଷିଣ ଦିଗରୁ ଲୁହା ପାଇପ୍ ଠେକା ଦେଇ ଏ ମନ୍ଦିରର ପତନ ଆଉ ବେଶୀ ଦିନ ରୋକି ପାରିବେ ନାହିଁ ASI । ଯଥାର୍ଥ ସଂରକ୍ଷଣ କରିବାକୁ ହେଲେ ଆବୁସିମ୍ବଲ ଅଥବା ବୋରୋବେଦୁର ଧାରାରେ ମନ୍ଦିରର ପ୍ରତିଟି ଖଣ୍ଡ ପଥର କାଢ଼ି ଆଣି ସମ୍ପୂର୍ଣ୍ଣ ଉପଚାର ପରେ ପୁଣି ଯୋଡ଼ି ଦେବାକୁ ପଡ଼ିବ ।

ଏ ବିଶାଳ ସଂରକ୍ଷଣ କାର୍ଯ୍ୟ ଉଡ୍‌ବର୍ଣ୍ଣ ଆରମ୍ଭ କରିଥିଲେ ମଧ୍ୟ ୧୯୦୩ ବେଳକୁ ସେ ଆଉ ଏ ଅଞ୍ଚଳର ଲେଫ୍‌ଟନାଣ୍ଟ୍ ଗଭର୍ଣ୍ଣର ନ ଥିଲେ । ପୂର୍ବଦ୍ୱାରର ସିଲ୍‌କରା ପଥର ଦେବାଲ୍‌ରେ ଶିଳାଲେଖ ଗ୍ରଥିତ ହେଲା, "To preserve this superb specimen of old Indian Architecture the interior was filled in by order of the Hon'ble J.A. Bourdilon C.S.I. Lieutenant Governor of Bengal. A.D.1903." ଘଟଣାଟିର ତାତ୍ପର୍ଯ୍ୟ, ଗୋଟିଏ ଚାଲୁଥିବା ଯୋଜନାର କୌଣସି ଗୋଟିଏ ବିଶେଷ କାର୍ଯ୍ୟ ପାଇଁ ଯେଉଁଠି ଖୋଦ୍ ରାଜ୍ୟମୁଖ୍ୟଙ୍କ ଆଦେଶ ପ୍ରୟୋଜନ ହୋଇଥିଲା, କର୍ମକର୍ତ୍ତାମାନେ କାର୍ଯ୍ୟଟିକୁ କେତେ ଗୁରୁତ୍ୱ ଦେଇଥିଲେ ବୁଝାପଡୁଛି ।

ଜଗମୋହନର ଜରୁରୀ ମରାମତି ଶେଷ ହୁଏ ୧୯୦୫ ସୁଦ୍ଧା, ଆହୁରି କାମ ବାକି ଥାଏ । ଏଇ ସମୟରେ ନାଟମଣ୍ଡପଟି ବାହାରି ପଡ଼େ ବିରାଟ ବାଲୁକାସ୍ତୂପ ତଳୁ ଏବଂ କୁଦ ଉପରେ ପୂର୍ବେ ରଖାହୋଇଥିବା ଗଜସିଂହଙ୍କୁ ଓହ୍ଲାଇ ଆଣି ମଣ୍ଡପ ସମ୍ମୁଖରେ ରଖାହୁଏ ।

ବାଲି କାଢ଼ିବା ପରେ ପୁରାତନ ସୂର୍ଯ୍ୟ ମନ୍ଦିରର ପଶ୍ଚିମ ପାର୍ଶ୍ୱଦେବତାଙ୍କ ମୂର୍ତ୍ତି ମିଳେ ନାଟମଣ୍ଡପ ମଧ୍ୟରୁ । ବିଷୟଟି ଆଲୋଚିତ ହୋଇଛି ୭୪ ପୃଷ୍ଠାରେ । ଫଟୋ ନଂ-୧୮ ମୂର୍ତ୍ତିଟି ବର୍ତ୍ତମାନ ଦିଲ୍ଲୀ National Museum ରେ ସଂରକ୍ଷିତ ।

**୧୯୦୫**ର ଶେଷ ଭାଗରେ, କୁଢ଼ ହୋଇ ଜମା ହୋଇଥିବା ବଡ଼ଦେଉଳ ଗଣ୍ଡିର ଭଗ୍ନାଂଶ ଅପସାରିତ ହେଲା । କୁଢ଼ ତଳୁ ମିଳିଲା, ପାର୍ଶ୍ୱଦେବତା ତ୍ରୟ ଏବଂ ଅନେକଗୁଡ଼ିଏ ମୁଗୁନି ମୂର୍ତ୍ତି ଯାହା ପୂର୍ବେ ଦେଉଳ ବାଡ଼ର ମୁଣ୍ଡିମାନଙ୍କୁ ଅଳଂକୃତ କରୁଥିଲା । ଗର୍ଭଗୃହ ଭିତରେ ମିଳିଲା ପ୍ରାୟ ଅକ୍ଷତ ଶରୀର ରତ୍ନବେଦୀ କିନ୍ତୁ ବିଗ୍ରହ ଅନ୍ତର୍ହିତ ହୋଇଥିଲେ ।

**୧୯୦୬** ବେଳକୁ ମନ୍ଦିରର ଦକ୍ଷିଣ ଦିଗରେ ପ୍ରଚୁର ପରିମାଣରେ କାଜୁ ଓ ପୋଲାଙ୍ଗ ଗଛ ରୋପିତ ହୁଏ ସାମୁଦ୍ରିକ ପବନ ରୋଧ କରିବାକୁ ।

**୧୯୦୯** ସାଲରେ ବେଢ଼ାର ଦକ୍ଷିଣ ପାର୍ଶ୍ୱ କୋଣରେ ଖନନ କାର୍ଯ୍ୟ ଆରମ୍ଭ ହୁଏ ଏବଂ କ୍ରମେ ବାହାରି ଆସେ ପୁରାତନ ସୂର୍ଯ୍ୟ ମନ୍ଦିର ଓ ତାହା ପଛକୁ ଇଟା ନିର୍ମିତ ବିଷ୍ଣୁ ମନ୍ଦିର ।

**୧୯୧୦** ବେଳକୁ ପ୍ରଥମ ବ୍ୟାପକ ସଂରକ୍ଷଣ କାର୍ଯ୍ୟ ଶେଷ ହୁଏ । ସେ ସମୟର ହିସାବରେ ବ୍ୟୟ ହୋଇଥିଲା ପ୍ରାୟ ଲକ୍ଷେ ଟଙ୍କା । ଦୀର୍ଘ ଦଶବର୍ଷ ଧରି ଏ ଯେଉଁ ସଂରକ୍ଷଣ କାର୍ଯ୍ୟ ହେଲା, ତାହାରି ଫଳରେ କୋଣାର୍କ ଏତେଦିନ ତିଷ୍ଠି ଅଛି । ଏଥିପାଇଁ ଏ ଦେଶବାସୀ ସାର୍ ଜନ ଉଡ୍‌ବର୍ଣ୍ଣ ଏବଂ ବ୍ରିଟିଶ ସରକାରଙ୍କ ନିକଟରେ ଚିରଦିନ ଋଣୀ ରହିବେ ।

ଏହାପରେ ମନେ ହୁଏ ସଂରକ୍ଷଣ କାର୍ଯ୍ୟରେ ଶିଥିଳତା ଆସିଯାଇଥିଲା, ଯଦିଓ ସରକାର ଏ ସୃଷ୍ଟିର ଗୁରୁତ୍ୱ ବୁଝିଥିଲେ ଏବଂ ବିଭିନ୍ନ ସମୟରେ ଉଚ୍ଚସ୍ତରୀୟ କେତେକ ପଦକ୍ଷେପ ନେଇଥିଲେ ।

ଏହାପର ଉପସ୍ଥାପିତ ତଥ୍ୟସବୁ ଅଧିକାଂଶ ଇଣ୍ଟରନେଟ୍ ଓ ବିଭିନ୍ନ ସୂତ୍ରରୁ ସଂକଳିତ ।

**୧୯୧୭**- ଅର୍ଥାତ୍ ବିଶାଳ ସଂରକ୍ଷଣ କାର୍ଯ୍ୟ ସମାପ୍ତ ହେବାର ସାତବର୍ଷ ପରେ ବ୍ରିଟିଶ ସରକାର ପୁଣି ପରିବେଶଜନିତ କ୍ଷୟରୋଧ କରିବାକୁ ଗୋଟିଏ ବିଶେଷଜ୍ଞ ସମିତି (Committee) ନିୟୋଗ କରିଥିଲେ । ଏ ସମିତି କ'ଣ ସୁପାରିଶ କଲେ ତାହା (Internet)ରେ ଉପଲବ୍ଧ ନୁହେଁ ।

**୧୯୩୮**- ପ୍ରଥମ ଥର ପାଇଁ ମହମମିଶା କିରାସିନି ପ୍ରଲେପ ଚେଷ୍ଟା କରାହୁଏ ପଥରର କ୍ଷୟରୋଧ କରିବାକୁ କିନ୍ତୁ ଫଳପ୍ରଦ ହୁଏ ନାହିଁ ।

**୧୯୩୯** - ଭାରତୀୟ ସର୍ବେକ୍ଷଣ ସଂସ୍ଥା (ASI) ଉପରେ କୋଣାର୍କର ସଂରକ୍ଷଣ ଦାୟିତ୍ୱ ନ୍ୟସ୍ତ ହୁଏ ।

**୧୯୫୦** - ମନେହୁଏ ASI ନିୟୋଜିତ ହେବା ସତ୍ତ୍ୱେ କ୍ଷୟରୋଧ ହେଉ ନଥିଲା, ହୁଏତ ବିଶେଷଜ୍ଞମାନଙ୍କ ଆଖିରେ ଏହାର ମୂଳ କାରଣ ଧରା ପଡୁ ନଥିଲା । ଭାରତ ସରକାର, **ସାଂସଦ ମାନ୍ୟବର ୰ ବିଶ୍ୱନାଥ ଦାସ**ଙ୍କ ଅଧ୍ୟକ୍ଷତାରେ ଗୋଟିଏ ବିଶେଷଜ୍ଞ ସମିତି ନିୟୋଗ କଲେ । ଏ ସମିତିର ଗୋଟିଏ ସବିଶେଷ କାର୍ଯ୍ୟ ବିବରଣୀ ASI ର ପ୍ରାକ୍ତନ D.G. ଦେବଳା ମିତ୍ର ତାଙ୍କର ସୁଲିଖିତ ପୁସ୍ତକରେ ଉପସ୍ଥାପନ କରିଛନ୍ତି (Konarak- P.24) ।

ଏ ସମିତିରେ ଥିଲେ ପୁରାକୀର୍ତ୍ତି, ଇଂଜିନିୟରିଂ, ଶିଳ୍ପ, ଭୂତତ୍ତ୍ୱ ଏବଂ ରସାୟନ ବିଶେଷଜ୍ଞଗଣ । ସେମାନଙ୍କର ମୁଖ୍ୟ ସୁପାରିଶ ଥିଲାଃ

୧. ସିଲ୍ କରାଯାଇଥିବା ଜଗମୋହନ ଭିତରେ ଜମୁଥିବା ଆର୍ଦ୍ରତାର ପରିମାପ ।

୨. ସୌଧଟିକୁ ବାହାରୁ ସମ୍ପୂର୍ଣ୍ଣ 'Watertight' କରିବା ।

୩. ବେଢ଼ା ଭିତରୁ ଜଳ ନିଷ୍କାସନର କାର୍ଯ୍ୟ ।

୪. ଭଗ୍ନ ବେଢ଼ାର ମରାମତି କରି ମୂଳ ଉଚ୍ଚତାକୁ ଉଠେଇବା ।

୫. ପ୍ରସ୍ତର ଦେହରେ ରାସାୟନିକ ପ୍ରଲେପ ଦେବା ।

୬. ଦକ୍ଷିଣ ଦିଗରେ ଆହୁରି ଅଧିକ କାଜୁ ଗଛ ଲଗେଇବା ।

ଦେବଳା ମିତ୍ର ଲେଖିଛନ୍ତି, "The Committee met for the second time in 1953 and since then recommendations have been persistently followed up by the Survey." (୨୧୯)

ବାକ୍ୟଟି ମନେହୁଏ ଲେଖା ହୋଇଥିବ ବିଭାଗୀୟ କର୍ମକର୍ତ୍ତାମାନଙ୍କୁ ଉତ୍ସାହିତ କରିବାକୁ କିନ୍ତୁ କଥାଟି ଯେବେ ସତ୍ୟ ହୋଇଥାଆନ୍ତା, ଅର୍ଥାତ୍ persistently followed up, ପରବର୍ତ୍ତୀ ୧୦ଟି ବିଶେଷଜ୍ଞ କମିଟି ବସିବାର ପ୍ରୟୋଜନ ହୁଅନ୍ତା ନାହିଁ । ୰ବିଶ୍ୱନାଥ ଦାସ କମିଟିର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସୁପାରିଶ୍ ୧ ଏବଂ ୩ ଏବେ ମଧ୍ୟ କାର୍ଯ୍ୟକାରୀ ହୋଇନାହିଁ । ଏହାପର ଘଟଣା ପ୍ରବାହର ଗୋଟିଏ ଧାରାବାହିକ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା । ଅଧିକାଂଶ ତଥ୍ୟ ଇଣ୍ଟରନେଟ୍‌ରୁ ପ୍ରାପ୍ତ ଯାହା ଏ.ଏସ୍.ଆଇ. ଯୋଗେଇ ଥିଲା ନେଟ୍‌କୁ । ସାମାନ୍ୟ କେତୋଟି ବିଭିନ୍ନ ସୂତ୍ରରୁ ପ୍ରାପ୍ତ ।

**୧୯୭୭**- କାର୍ଣ୍ଣିସ୍‌ରୁ ଆଉ ଗୋଟିଏ ବଡ଼ ପଥର ଖସିଲା ଯାହାକୁ epoxy morter ଦ୍ୱାରା ଯୋଡ଼ି ୧୯୮୮ ଯାଏ ବସାଯାଇ ପାରିଲା ନାହିଁ ।

**୧୯୭୮**- ଡିସେମ୍ବର ୭, କୋଣାର୍କଠାରେ ଆଉ ଗୋଟିଏ ବିଶେଷଜ୍ଞ କମିଟି ବସିଲା ।

**୧୯୭୯**- ସେତେବେଳକୁ ଅବକ୍ଷୟ ଏତେ ମାତ୍ରାରେ ବଢ଼ି ଉଠିଥିଲା ଯେ, UNESCO ଜଣେ ବିଶେଷଜ୍ଞ Prof. Limaire ଙ୍କୁ ପଠାଇଲେ । ସେ ମହାଶୟ ଦିଲ୍ଲୀରେ ଆଲୋଚନା କରି ଫେରିଗଲେ ।

**୧୯୮୦**- ଉଦ୍‌ବିଗ୍ନ ଭାରତ ସରକାର ଗୋଟିଏ Inter-disciplinary committee ବସେଇଲେ ଏବଂ UNESCOକୁ ବିଶେଷଜ୍ଞ ପଠାଇବାପାଇଁ ଅନୁରୋଧ କଲେ ।

**୧୯୮୦-୮୧**- ଅଧ୍ୟାପକ ଲେମାୟାରେ ପୁଣି ଆସିଲେ । ତାଙ୍କ ସହିତ ଥିଲେ ରୋମ୍ Material laboratoryର Mrs Tabasso ଏବଂ ସେମାନେ ଡିସେମ୍ବର ୨୦ ଠାରୁ ୨୯ଯାଏ କୋଣାର୍କରେ ଅବସ୍ଥାନ କରିଥିଲେ । ସେମାନଙ୍କ ସହିତ ଥିଲେ ଏ.ଏସ୍.ଆଇ.ର DG Dr. Thappar ଏବଂ ଡେରାଡୁନ୍ Monuments Laboratoryର ମୁଖ୍ୟ Dr. Tandon । ଲେମାୟାରେଙ୍କ ପ୍ରଦତ୍ତ ରିପୋର୍ଟ, ଏକମାତ୍ର ରିପୋର୍ଟ, ଯାହାର ସଂପୂର୍ଣ୍ଣ ବୟାନ ଇଣ୍ଟରନେଟ୍‌କୁ ଦିଆଗଲା । ଏହାର ଗୋଟିଏ କାରଣ ହୋଇପାରେ, ଅଧ୍ୟାପକ ମହୋଦୟ ଏ.ଏସ୍.ଆଇ.ର ଭୂୟସୀ ପ୍ରଶଂସା କରିଛନ୍ତି ଏବଂ ରିପୋର୍ଟ ଏ.ଏସ୍.ଆଇ.କୁ ସୁହାଉଛି । ଏମାନେ ଅବଶ୍ୟ ପ୍ରସ୍ତରକ୍ଷୟ ଉପରେ ଗୋଟିଏ ପାଣ୍ଡିତ୍ୟପୂର୍ଣ୍ଣ ସନ୍ଦର୍ଭ ଉପସ୍ଥାପନ କରିଛନ୍ତି କିନ୍ତୁ ସନ୍ଦେହ କରିବାର ଅବକାଶ ଅଛି, ଏମାନେ କେତେ ସମୟ ଅନ୍ୟ ପଣ୍ଡିତମାନଙ୍କ ସହିତ ଆଲୋଚନାରେ ବ୍ୟସ୍ତ ରହିଲେ, କେତେ ସମୟ ପ୍ରକୃତ କୋଣାର୍କ ନିରୀକ୍ଷଣରେ ସମୟ ଦେଲେ । ଏମାନେ କୋଣାର୍କ ରଥକୁ ୧୨ଟା ଘୋଡ଼ା ଟାଣୁଥିବାର ଦେଖିଲେ ଏବଂ ଜଗମୋହନ ସମ୍ବନ୍ଧରେ ଲେଖିଲେ, "....nothing remains of the assembly hall except the base and columns." ଲେମାୟାରେ ବୋଧହୁଏ ନାଟମଣ୍ଡପ ଓ ଜଗମୋହନକୁ ଗୋଳେଇ ପକେଇଛନ୍ତି । ସେମାନଙ୍କର ମୁଖ୍ୟ ସୁପାରିଶଗୁଡ଼ିକର ସାରାଂଶ :

୧. ମନ୍ଦିରରେ ବ୍ୟବହୃତ ଖଣ୍ଡୋଲାଇଟ୍ ପଥରମାନଙ୍କରୁ କେତେକ ବହୁ ପରିମାଣରେ ସଛିଦ୍ର ଏବଂ କେତେକ ଏତେଟା ଛିଦ୍ରଯୁକ୍ତ ନୁହେଁ । ତେଣୁ କ୍ଷୟ କ୍ଷତି ଭିନ୍ନ ଭିନ୍ନ ମାତ୍ରାରେ ଘଟିଛି ।

୨. କ୍ଷୟ ଘଟିଯିବା ପରେ ଯାହା ଅଛି ତାହାର ଅବକ୍ଷୟ ଆଉ ଦ୍ରୁତ ହେବ ନାହିଁ ।

୩. ବିଭିନ୍ନ କିସମର ପଥର ବ୍ୟବହାର ହୋଇଥିବାରୁ ପ୍ରସ୍ତର ଦେହର (ତଥା ଅଳଂକରଣର) ଅବକ୍ଷୟ ବିଭିନ୍ନ ପରିମାଣର ହୋଇଛି; ଏହା ସହିତ ସେମାନଙ୍କର ଅବସ୍ଥାନଗତ ବିଭିନ୍ନତା ସମ୍ପର୍କହୀନ ମନେହୁଏ । (ଅର୍ଥାତ୍ ସମୁଦ୍ର ଦିଗକୁ ମୁହଁକରି ଥିବା ପଟ ଅଧିକ କ୍ଷୟ ହୋଇଥିବା ମନେ ହୁଏନା ।)

୪. କୀଟାଣୁ ଆକ୍ରମଣ (biological factor)ମନ୍ଦିରର ବିପୁଳ ଅଂଶର କ୍ଷତି ଘଟାଇଛି । ଉଦ୍ଭିଦ ଓ ଶିଉଳି ବିଶେଷ ବଂଶବୃଦ୍ଧି

କରିଥାଏ ଅନ୍ଧାରିଆ ଖୋଲ ଓ କୋଣ ଅଞ୍ଚଳରେ ଯେଉଁଠାରେ ଆର୍ଦ୍ରତା ଅଧିକ । ଯେଉଁ ଅଞ୍ଚଳମାନଙ୍କରେ biocide (zinc flousilicate) ପହଞ୍ଚି ପାରି ନାହିଁ ସେ ଅଞ୍ଚଳରେ ଏହାର ଆଧିକ୍ୟ ଦେଖାଯାଉଛି । (No. 15 of Report)

୫. ଲବଣାକ୍ତ ସାମୁଦ୍ରିକ ପବନ ସହିତ ଅବକ୍ଷୟର ବିଶେଷ ସମ୍ପର୍କ ଦେଖି ପାରି ନାହାନ୍ତି ଲେମାୟାରେ। ସେ ବରଂ ଅଧିକ ଛିଦ୍ରଯୁକ୍ତ ପଥରକୁ ଦ୍ରୁତ ଅବକ୍ଷୟ ପାଇଁ ଦାୟୀ କରିଛନ୍ତି । ସାଥେ ସାଥେ ଏହା ମଧ୍ୟ କହିଛନ୍ତି, ଦକ୍ଷିଣ ଦିଗର ଉପର ଅଂଶ ଯେଉଁଠାରେ ସାମୁଦ୍ରିକ ପବନର ଆଧିକ୍ୟ ଅନୁଭୂତ ହୁଏ, ସେଠାରେ କ୍ଷତିର ପରିମାଣ ଅଧିକ ଘଟିଛି।

୬. ପୀଢ଼ମାନଙ୍କର କାଛି ଅଞ୍ଚଳର ଛାତରେ (ପାରାଘର) ପ୍ରସ୍ତର ଅପସାରଣର ଚିହ୍ନ ଦିଶିଲାଣି, ଭବିଷ୍ୟତରେ ବିପଦର କାରଣ ଘଟିପାରେ।

୭. ଜଗମୋହନ ଭିତରେ ଭରିଥିବା ବିପୁଳ ପରିମାଣର ବାଲି ବିଶେଷ କ୍ଷତି ଘଟାଉ ନାହିଁ। ବର୍ଷା ପରେ ଏ.ଏସ୍.ଆଇ. କରିଥିବା ହାଇଗ୍ରୋମେଟ୍ରିକ୍ ମେଜର୍‌ମେଣ୍ଟ ବାଲୁକା ସ୍ତରରେ ଆର୍ଦ୍ରତାର ଆଧିକ୍ୟ ସୂଚିତ କରୁନାହିଁ । (ରିପୋର୍ଟ ନମ୍ବର ୨୪ ଓ ୨୯)

୮. ମନ୍ଦିରର ଯେଉଁସବୁ ଅଂଶ ଲୋପପାଇଯାଇଛି (ବିମାନର ଗଣ୍ଡି, ଜଗମୋହନର କଳସ) ସେ ସବୁର ପୁନର୍ଗଠନ, ସେମାନଙ୍କ ମତରେ, "rash to follow up" କିନ୍ତୁ ଯେଉଁସବୁ ଲୁପ୍ତ ଭାସ୍କର୍ଯ୍ୟର ଶୈଳ୍ପିକ ପୁନରୁଦ୍ଧାର ପାଇଁ ସିମେଣ୍ଟ ବାଲି ବ୍ୟବହୃତ ହୋଇଛି, ତାହା ମଧ୍ୟ ଉଚିତ ନ ଥିବା କୁହାଯାଇଛି । ସାଦା ପଥର ଯୋଡ଼େଇ କଥା ସଠିକ୍ କିଛି କୁହାଯାଇନାହିଁ ।

୯. ବାଲିକୁଦମାନଙ୍କ ମଧ୍ୟରେ ଏବେ ମଧ୍ୟ ଲୁପ୍ତଥିବା ଭାସ୍କର୍ଯ୍ୟର ପୁନରୁଦ୍ଧାର କରି ସ୍ୱସ୍ଥାନରେ ଖଞ୍ଜି ଦେବାର ଯୋଜନା ହେବା ଉଚିତ ।

ଲେମାୟାରେ ରିପୋର୍ଟର ବାଲୁକା ନିଷ୍କାସନ ସମ୍ବନ୍ଧୀୟ ମତାମତ ସେମାନଙ୍କର ୧୫ ନମ୍ବର ରିପୋର୍ଟର ବିରୁଦ୍ଧାଚରଣ କରୁଛି ଏବଂ ବିବାଦୀୟ ହେବାକୁ ମଧ୍ୟ ବାଧ୍ୟ । ବାଲି ବହୁ ସମୟ ପାଣି ଧରି ରଖିପାରେ ନା- ଏହା ଜାଣିବାକୁ ହାଇଗ୍ରୋମିଟର ଦରକାର ହୁଏନା ? ଜଗମୋହନ ଭିତରୁ ଜଳ ନିଷ୍କାସନ ନାଳ ଏବେ ମଧ୍ୟ ଅବସ୍ଥିତ । ଏଠାରେ ବିଚାର୍ଯ୍ୟ, ଗୋଟିଏ ନିବୁଜ ଅନ୍ଧାର ଘର ଭିତରେ ବାୟୁର ଉଷ୍ମ ଆର୍ଦ୍ରତା ଯାହା ରହିବାକୁ ବାଧ୍ୟ । ସେମାନଙ୍କର ନିଜର ମତ,"...In the dampest areas (i.e in the hallows and angles that receive less light) moss grows in profusion." ଜଗମୋହନର ସିଲ୍ କରା ଅଭ୍ୟନ୍ତର ଏଥିପାଇଁ ଆଦର୍ଶ ସ୍ଥାନ ଯେଉଁଠାରେ ବାୟୋଲଜିକାଲ୍ ଆକ୍ରମଣକୁ ସାହାଯ୍ୟ କରିବାକୁ ଶତବର୍ଷରୁ ଅଧିକ ଜମି ରହିଛି ବିପୁଳ ପରିମାଣର ଲବଣାକ୍ତ ବାଲି ଓ ଥରେ ହେଲେ ପ୍ରଲେପ ପାଇ ନାହିଁ ଆକ୍ରମଣ ନିରୋଧକ, "Zinc fluosilicate" । ୮୨ ବର୍ଷ ପୂର୍ବେ ଡକ୍ଟର ପ୍ରାଣକୃଷ୍ଣ ପରିଜା କୋଣାର୍କର ଶୈବାଳଯୁକ୍ତ ପଥର ଖଣ୍ଡେ ପରୀକ୍ଷା କରି ଦେଖିଥିଲେ, ସେଥିରେ ୩୫୭ସ୍ତର ଶୈବାଳ ଜମା ହୋଇଥିଲା। (ପୃଷ୍ଠା-୭୨ ଦେଖନ୍ତୁ) ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକମାନେ କହିବେ କି, ଜଗମୋହନ ଅଭ୍ୟନ୍ତରରେ କେତେ ସ୍ତର ଶୈବାଳ ଜମା ହୋଇଛି ଏବଂ ତଦ୍ଦ୍ୱାରା ପ୍ରସ୍ତର କ୍ଷୟ କେତେ ଘଟିଛି ଏବଂ ତଥାପି ମନ୍ଦିର ନିରାପଦ ଅଛି ?

ବୋରବୋଦୁର ସଂରକ୍ଷଣର ଉପଦେଷ୍ଟା କମିଟିର ସଦସ୍ୟ ଲେମାୟାରେ ଖଣ୍ଡିତ ଭାସ୍କର୍ଯ୍ୟକୁ ସାଦାପଥର ଦେଇ ଭରିବା ବିଷୟରେ ପରିଷ୍କାର ଅଭିମତ ରଖିଲେ ନାହିଁ । ତଥ୍ୟ ମିଳୁଛି ବୋରୋବୋଦୁର ସଂରକ୍ଷଣ କାଳରେ ଶିଳ୍ପୀ ନିୟୋଗ କରି ଭାସ୍କର୍ଯ୍ୟମାନଙ୍କର ନଷ୍ଟ ହୋଇଯାଇଥିବା ଅଂଶଗୁଡ଼ିକୁ ପୁଣି ମୂଳ ଭଳି ଗଢ଼ି ଦିଆଯାଇଥିଲା ।

ଲେମାୟାରେ କିନ୍ତୁ ଗୋଟିଏ ବିଷୟ କହିଛନ୍ତି, ଯାହା 'ନିଉଲାଇଟ୍ ଅନ୍ ସନ୍‌ଟେମ୍ପଲ୍' ଗ୍ରନ୍ଥରେ ମଧ୍ୟ ଡକ୍ଟର ଏଲିସ୍ ବୋନର୍ ଜୋର୍ ଦେଇଛନ୍ତି; ନିକଟବର୍ତ୍ତୀ ବାଲୁକାସ୍ତୂପ ସବୁ ଖୋଲି ତାହା ଭିତରୁ ଆହୁରି ଭାସ୍କର୍ଯ୍ୟ ପୁନରୁଦ୍ଧାର କରି ସେଗୁଡ଼ିକୁ ସ୍ୱସ୍ଥାନରେ ଖଞ୍ଜାଯାଉ । ଏହା ଉପରେ ଏଯାଏ କୌଣସି ପଦକ୍ଷେପ ନିଆଯାଇ ନାହିଁ।

**୧୯୮୨** - ଲେମାୟାରେଙ୍କ କୋଣାର୍କ ପରିଦର୍ଶନର ପରବର୍ଷ ଜଗମୋହନ ଗାତ୍ରରେ ଗୋଟିଏ ଫାଟ ଧରାପଡ଼ିଲା, ଯାହା ଉପରେ କାଚ ପ୍ଲେଟ୍ ଲଗେଇ ଫାଟର ଅପସରଣ ଲକ୍ଷ୍ୟ କରାଯାଇଛି । (ଫଟୋ-୯୧ ଦେଖନ୍ତୁ) ଅଥଚ ଲେମାୟାରେ ସାର୍ଟିଫିକେଟ ଦେଇଗଲେ ମନ୍ଦିର ଭିତରେ ଜମାଥିବା ବାଲୁକାରାଶିରୁ ଦେବାଲ୍ ଉପରେ କୌଣସି ପ୍ରଭାବ ନାହିଁ । ଯେବେ ଦୂର ଅତୀତର ପ୍ରଥମ ପ୍ରଥମ ନିଅଁ ଦବି ବହୁବର୍ଷ ସ୍ଥିତିଶୀଳ ଅଛି ଦେବାଲ୍‌ର ଫାଟ ଆସିଲା କେଉଁଠାରୁ ? ଦେବାଲର ପ୍ରସ୍ତରସ୍ତର ଅବକ୍ଷୟ, କର୍‌ବେଲ୍‌ଡ଼ ରିଙ୍ଗ ସଂକୁଚିତ ହେଉଥିବାରୁ ମନେ ହୁଏ, ବାଲି କାଢ଼ି ଭିତରୁ ସଂରକ୍ଷଣ କାର୍ଯ୍ୟ ଜରୁରୀ ।

**୧୯୮୪**- ୟୁନେସ୍କୋ କୋଣାର୍କକୁ ୱାଲର୍ଡ଼ ହେରିଟେଜ୍ ସାଇଟ୍‌ର ମାନ୍ୟତା ଦେଲେ।

**୧୯୮୫**- ୧୯୮୨ରେ ଧରାପଡ଼ିଥିବା ଫାଟ ବଢୁଥିବାର ଦେଖାଗଲା ଏବଂ ବିଭିନ୍ନ ସ୍ଥାନରେ କିଛି ମରାମତି କରାଗଲା।

**୧୯୮୭**- ୟୁନେସ୍କୋ ଆଉ ଦୁଇଜଣ ବିଶେଷଜ୍ଞ ପଠାଇଲେ ବି.ଏନ୍. ଫିଲ୍‌ଡେନ୍ ଓ ପି. ବେକ୍‌ମ୍ୟାନ୍ । ଏମାନେ ଦେଇଥିବା ପରାମର୍ଶ ଇଣ୍ଟରନେଟ୍‌କୁ ଛଡ଼ାହେଲା ନାହିଁ । କିନ୍ତୁ ରିପୋର୍ଟର ବିଶେଷ ବିବରଣୀ ମିଳୁଛି ସଂବାଦପତ୍ରରୁ ଏବଂ INTACHର ରାଜ୍ୟମୁଖ୍ୟଙ୍କ ଲେଖାରୁ । ସୁପାରିଶ୍‌ଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା।[୩୦୦]



**ଫଟୋ-୯୧ : ଜଗମୋହନ ଗାତ୍ରରେ ଫାଟ**

୧. ମୂଳଦୁଆ ପ୍ରଥମେ କିଛି ଦବିଲା ପରେ ସ୍ଥିତାବସ୍ଥାରେ ଅଛି, ଯେଉଁ ସ୍ଥିତାବସ୍ଥାରେ ଆଜିଯାଏ କୌଣସି ପରିବର୍ତ୍ତନ ଘଟିନାହିଁ । (ସାଢ଼େ ସାତଶହ ବର୍ଷର ବ୍ୟବଧାନ)

୨. ଜଗମୋହନ କାନ୍ଥ ଉପରେ ବାହ୍ୟ ଚାପ ମାତ୍ରାଧିକ ନୁହେଁ । ଜଗମୋହନ ଭିତରୁ ବାଲି କାଢ଼ିନେଲେ ମଧ୍ୟ ଏହା ନିରାପଦ ରହିବ ।

୩. ଜଗମୋହନ ଭିତରେ ଗଢ଼ାଯାଇଥିବା ପଥର କାନ୍ଥ ଓ ବାଲିର କୌଣସି ଆବଶ୍ୟକତା ନାହିଁ । ବାଲି ଅଗ୍ରଦେଶ ଯାଏ ଯାଇ ନାହିଁ । ଅମଳାରୁ ପ୍ରାୟ ୧୨ ଫୁଟ୍ ତଳକୁ ଖାଲି ଅଛି । ତଥାପି ଜଗମୋହନର ଶୀର୍ଷ, ଗତ ୧୦୦ ବର୍ଷ ମଧ୍ୟରେ ଅକ୍ଷତ ଅଛି ।

୪. ଖଣ୍ଡୋଲାଇଟ୍ ପ୍ରସ୍ତରରେ ଗଠିତ ଭାସ୍କର୍ଯ୍ୟଗୁଡ଼ିକର ଅବକ୍ଷୟ ନିଶ୍ଚୟ ଘଟିଛି, କିନ୍ତୁ ଏହା ସଙ୍କଟଜନକ ପରିସ୍ଥିତିକୁ ଆସିନାହିଁ । କ୍ଲୋରାଇଟ୍ ପ୍ରସ୍ତର ମୂର୍ତ୍ତିଗୁଡ଼ିକ ଅକ୍ଷତ ଅଛି, ଖାଲି ହାତ ଓ ଆଙ୍ଗୁଳିଗୁଡ଼ିକ ଭାଙ୍ଗି ଯାଇଛି ।

୫. ମନ୍ଦିରର ଦୁର୍ବଳତା ଓ ଅବକ୍ଷୟର ପ୍ରଧାନ କାରଣ ଶୁଷ୍କପଥର ଯୋଡ଼େଇ । ଯେବେ ଚୂନ କିମ୍ବା ଅନ୍ୟ କୌଣସି ତରଳ ପଦାର୍ଥ ଦେଇ ଖିଞ୍ଜା ଯାଇଥାଆନ୍ତା, ଖାଲି ସ୍ଥାନ ରହି ନଥାନ୍ତା ତେବେ ଲୁଣି ପବନ, ମଇଳା ଆଦି ପ୍ରବେଶ କରି କ୍ଷତି ଘଟାଇ ନଥାନ୍ତା ।

୬. ଭାସ୍କର ରଚିତ ପ୍ରସ୍ତରମାନଙ୍କ ସ୍ଥାନରେ ସାଦା ପଥର ଲାଗିଥିବା ବିଷୟରେ କମିଟି କହିଲେ ବିଶ୍ୱଦରବାରରେ କୋଣାର୍କର ପରିଚିତି ଦୃଷ୍ଟିରୁ ସାଦା ପଥରମାନଙ୍କରେ କାରୁକାର୍ଯ୍ୟ ରଚନା କରାଯାଇ ପାରିବ କି ନାହିଁ, ନିଶ୍ଚୟ ବିଚାରଯୋଗ୍ୟ ।

୭. ମନ୍ଦିର ଚତୁଃପାର୍ଶ୍ୱର ବିକାଶ ଓ ମାଷ୍ଟର ପ୍ଲାନ୍‌ର ପ୍ରୟୋଜନ । ଏମାନେ ମଧ୍ୟ ୨୬ ଏକର ଜମି ଓଡ଼ିଶା ସରକାର ହସ୍ତାନ୍ତର କରିବା କଥା କହିଛନ୍ତି ।

ଉଲ୍ଲେଖଯୋଗ୍ୟ, ଏମାନେ ମନ୍ଦିର ଭିତରୁ ବାଲୁକା ନିଷ୍କାସନ ସପକ୍ଷରେ ମତ ଦେଇଛନ୍ତି ।

ଚୂନ ଯୋଡ଼େଇ ଉପଦେଶଟି ଭାରତୀୟ ଶିଳ୍ପନୀତିର ସଂପୂର୍ଣ୍ଣ ବିପରୀତ । ମତ୍ସ୍ୟପୁରାଣରେ ଉପଦେଶ ଅଛି, ପଥରଗୁଡ଼ିକ ଏପରି ଭାବେ କଟାହେବ ଯେପରି ପରସ୍ପର ସଂଲଗ୍ନ ପଥର ମଧ୍ୟରେ କୌଣସି ଫାଙ୍କ ନରହେ ।[୩୦୧] ଉପଦେଶଟି କର୍‌ବେଲିଂ ଗଠନ ରୀତିର ସହାୟକ । ଚୂନ ଅଥବା ସେଇପରି ବସ୍ତୁରେ ପ୍ରସ୍ତରର ଘନତ୍ୱ ନାହିଁ । କର୍ବେଲିଂ ରୀତିର ବିପୁଳ ପାର୍ଶ୍ୱଚାପରେ ଏହାର ସଂକୋଚନ ନିଶ୍ଚିତ, ଯାହା ପ୍ରୟୋଜନୀୟ ସମତା (ବାଲାନ୍‌ସ) ବ୍ୟାହତ କରିବ । ହିନ୍ଦୁ ମନ୍ଦିର ଗଠନ କୌଶଳ ୯୪-୯୬ ପୃଷ୍ଠାରେ ସବିଶେଷ ଆଲୋଚିତ ହୋଇଛି । ଲକ୍ଷ୍ୟ କରିବାର ବିଷୟ, ଦେଶୀ ବିଦେଶୀ ସମସ୍ତ ବିଶେଷଜ୍ଞ କୋଣାର୍କର ସଂରକ୍ଷଣକୁ କୋଠାବାଡ଼ି ସଂରକ୍ଷଣ ଭଳି ଧରି ନେଇଛନ୍ତି, ଏହାର ନାନ୍ଦନିକ ସଂରକ୍ଷଣ କଥା ଚିନ୍ତା ସୁଦ୍ଧା କରି ନାହାନ୍ତି । ତେବେ କାହିଁକି ଏହାକୁ ୱାର୍ଲଡ ହେରିଟେଜ୍‌ର ମାନ୍ୟତା ?

**୧୯୮୮**- ରୁର୍‌କିସ୍ଥିତ କେନ୍ଦ୍ରୀୟ ଗୃହ ନିର୍ମାଣ ଗବେଷଣାଗାରକୁ ଏ.ଏସ୍.ଆଇ. ତରଫରୁ ଅନୁରୋଧ କରାଯାଇଥିଲା Jeoradar ପ୍ରୟୋଗରେ କୋଣାର୍କର ମୂଳଦୁଆର ମୂଲ୍ୟାୟନ କରିବାକୁ । ସେ ରିପୋର୍ଟ ମିଳିଛି । ଆଲୋଚନା ପ୍ରସଙ୍ଗରେ ଭୁବନେଶ୍ୱରସ୍ଥ ସୁପରିଣ୍ଟେଣ୍ଡିଙ୍ଗ୍ ଆର୍କିଓଲୋଜିଷ୍ଟ ଶ୍ରୀ ପଟେଲ୍ ଲେଖକଙ୍କୁ କହିଥିଲେ, ସେ ଅନୁସନ୍ଧାନରେ କୌଣସି ଦୁର୍ବଳତା ଧରାପଡ଼ିଲା ନାହିଁ । ମନମୋହନ ଗାଙ୍ଗୁଲୀ ମଧ୍ୟ ମନ୍ଦିର ମେଜିଆରେ କୌଣସି ଫାଟ ପାଇ ନଥିଲେ, ତନ୍ନ ତନ୍ନ କରି ଦେଖିବା ସତ୍ତ୍ୱେ (O &H.R.-P. 455) ଯେବେ ମୂଳଦୁଆ ଦବୁ ନାହିଁ ଦେବାଲରେ ଫାଟ ଆସିଲା କେଉଁଠାରୁ ? ମନେହୁଏ, ମୋଟ ପଥର ଦେବାଲରେ ଭିତରୁ ଅବକ୍ଷୟ ଫଳରେ ସମତା ନଷ୍ଟ ହୋଇ ଫାଟ ଧରୁଛି । ଜଗମୋହନ ଭିତରୁ ବାଲିକାଢ଼ି ସେ ଦିଗରୁ ସଂରକ୍ଷଣର ପ୍ରୟୋଜନୀୟତା ଥିବାଏହା ସୂଚିତ କରୁଛି ।

**୧୯୯୦**- ଦକ୍ଷିଣ-ପୂର୍ବ କୋଣରେ ପାଇପ୍ ସ୍କାଫୋଲ୍‌ଡିଂ କରାଗଲା, ଯାହା ପରବର୍ତ୍ତୀ ସମୟରେ ଦକ୍ଷିଣ ଦିଗର ଅଧିକାଂଶ ଅଞ୍ଚଳ ଦଖଲ କରିଗଲାଣି । ବର୍ତ୍ତମାନ ସେଇ ଠେକା ଦିଆ କାମ ଚାଲିଛି, କୌଣସି ଦୀର୍ଘସ୍ଥାୟୀ ବ୍ୟବସ୍ଥା କରାଯାଉ ନାହିଁ ।

**୧୯୯୬**- ଇଟାଲୀର ପ୍ରଫେସର୍ ଜି, ଗ୍ରୋସି ମନ୍ଦିରଟି ପରୀକ୍ଷା କରି, "Analysis of detorioration of Jagamohan" ନାମକ ଗୋଟିଏ ରିପୋର୍ଟ ଦାଖଲ କରିଥିଲେ । ଗ୍ରୋସି ମନ୍ଦିର ନିର୍ମାଣ କୌଶଳ ବିଶ୍ଳେଷଣ କରି ସ୍ପଷ୍ଟ ଭାଷାରେ କହିଲେ, ବାଲୁକା ଅପସାରଣ ଆବଶ୍ୟକ, କାରଣ ଜଗମୋହନ ଭିତରକୁ ପ୍ରବେଶ କଲେ ବହୁ ମୂଲ୍ୟବାନ ତଥ୍ୟ ମିଳିବ, ଯାହା ଭିତ୍ତିରେ ସୁରକ୍ଷା ପାଇଁ ସଠିକ୍ ପଦକ୍ଷେପ ନିଆଯାଇ ପାରିବ । ସମ୍ବାଦ, ଏ.ଏସ୍.ଆଇ. ଏହାର ପ୍ରବଳ ବିରୋଧ କରିଥିଲେ ।[୩୦୨]

**୧୯୯୭**- ନଭେମ୍ବର ପୁରୀରେ ବସିଥିବା ଆଉ ଗୋଟିଏ ଆନ୍ତର୍ଜାତିକ ବୈଠକରେ ୟୁନେସ୍‌କୋ କୋଣାର୍କକୁ 'ପ୍ରୋଜେକ୍ଟ ମନୁମେଣ୍ଟ'ର ମାନ୍ୟତା ଦେଲେ । ସେ ବୈଠକରେ ମଧ୍ୟ ସଦସ୍ୟମାନେ ୨୩ଟି ସୁପାରିଶ କଲେ, ଯାହା ମଧ୍ୟରେ ବାଲି କାଢ଼ିବାର ଯୋଜନା ମୁଖ୍ୟ ଥିଲା । ସେମାନଙ୍କ ସୁପାରିଶ ଥିଲା ଗୋଟିଏ କଣା କରି ତାହା ମଧ୍ୟଦେଇ ଭିଡ଼ିଓ କ୍ୟାମେରା ଓ ଅନ୍ୟାନ୍ୟ ଯନ୍ତ୍ରପାତି ଧରି ଜଣେ ମଣଷ ପ୍ରବେଶ କରିବେ ଓ ପ୍ରକୃତ ପରିସ୍ଥିତି ଅନୁଧ୍ୟାନ କରିବେ । ଏ.ଆସ୍.ଆଇ. ତରଫରୁ କୁହାଗଲା, "it can not go ahead with dubious repair technique." ଶେଷରେ ସୁପାରିଶ ଲିପିବଦ୍ଧ ହେଲା, ବର୍ତ୍ତମାନ ଥିବା ଗୋଟିଏ ଭେଣ୍ଟ-ହୋଲ୍ ବାଟ ଦେଇ କ୍ୟାମେରା ଓ ଅନ୍ୟାନ୍ୟ ଯନ୍ତ୍ର ଭିତରକୁ ପଠାଯିବ । ଏହା ମଧ୍ୟ ପରବର୍ତ୍ତୀ ୧୪ ବର୍ଷରେ କାର୍ଯ୍ୟକାରୀ ହୋଇ ପାରିଲା ନାହିଁ ।

**୧୯୯୭** ଜୁଲାଇ ୨୨,୨୩- ଆଉ ଗୋଟିଏ ଆନ୍ତର୍ଜାତିକ ବୈଠକ ବସିଥିବା ଖବର ଇଣ୍ଟରନେଟ୍‌ରୁ ମିଳୁଛି କିନ୍ତୁ ବିବରଣୀ କିଛି ମିଳୁନାହିଁ ।

**୧୯୯୭** ପୂର୍ବେ ପ୍ରଦତ୍ତ ସମସ୍ତ ରିପୋର୍ଟକୁ ଭିତ୍ତି କରି ତଦାନୀନ୍ତନ ଡାଇରେକ୍ଟର୍ ଜେନେରାଲ୍ ଅଜୟ ଶଙ୍କର ଗୋଟିଏ କାର୍ଯ୍ୟକ୍ରମର ଆଦେଶନାମା ଜାରି କଲେ । ସେ ଆଦେଶନାମାର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

୧. ମୃତ୍ତିକାର ଗୁଣ ଓ ମୂଳଦୁଆ ଉପରେ ଅଧିକ ତଥ୍ୟ ସଂଗ୍ରହ । (ରୁର୍‌କି ରିପୋର୍ଟ ପରେ ଆଉ କ'ଣ ବାକି ରହିଲା ?)

୨. ଦବି ଥିବା ମୂଳଦୁଆ ସ୍ଥିତାବସ୍ଥାକୁ ଆସିଥିଲେ ମଧ୍ୟ ଏହାର ବିଭିନ୍ନ ଭାଗରେ ବଢ଼ିଥିବା ଅଂଶର ପରିମାଣ ନିର୍ଦ୍ଧାରଣ । (୧୯୩୮ ଠାରୁ ଏ.ଏସ୍.ଆଇ. କ'ଣ କରୁଥିଲା?)

୩. ମନ୍ଦିରରେ ବ୍ୟବହୃତ ବିଭିନ୍ନ ପ୍ରକାରର ପ୍ରସ୍ତରର ମାନ ମୂଲ୍ୟାୟନ । ଡେରାଡୁନ୍ ସ୍ଥିତ ମନୁମେଣ୍ଟ ଲାବୋରଟୋରୀ ଏତେ ବର୍ଷ କ'ଣ କରୁଥିଲେ? ଲୋମାୟାରେ ଓ ତବାସୋ କମିଟିର ରିପୋର୍ଟ ପରେ ଆଉ କ'ଣ ବାକି ରହିଲା ?

୪. ମନ୍ଦିରର ବିଭିନ୍ନ କୋଣର ଜ୍ୟାମିତିକ ଗଣନା ପଦ୍ଧତିର ସ୍ଥିତି ନିରୂପଣ ।

(ଏତେ ବର୍ଷ ହେଲା ହୋଇନାହିଁ କାହିଁକି ଏବଂ ନିର୍ଭରଯୋଗ୍ୟ ଶିଳ୍ପଶାସ୍ତ୍ରୀୟ ନିର୍ଦ୍ଦେଶ ଏ.ଏସ୍.ଆଇ. ନିକଟରେ ଅଛି କି ?)

୫. ଏହାପରେ ମନ୍ଦିର ଭିତରକୁ ପ୍ରବେଶ ପାଇଁ ପଥ ଓ ପନ୍ଥା ନିରୂପଣ ।

୬. ଜଗମୋହନ ଭିତର କାନ୍ଥର ଜ୍ୟାମିତିକ ପରିମାପ । (ବାଲି କାଢ଼ିବା ସରିଲେ ତ !)

୭. ଜଗମୋହନ ଉପରେ କଳସ ନିର୍ମାଣ ଅନାବଶ୍ୟକ।

୮. ରାଜ୍ୟ ସରକାର ତୁରନ୍ତ ଏ.ଏସ୍.ଆଇ.କୁ ୧୬ ଏକର ଜମି ଦିଅନ୍ତୁ । (୨୬ ଏକରରୁ ୧୬ ହେଲା)

୯. ବର୍ତ୍ତମାନ କୋଣାର୍କ ମାଷ୍ଟର ପ୍ଲାନ୍‌ର ନବୀକରଣ ।

୧୦. ମନ୍ଦିର ପାଖରେ ଥିବା ଦୋକାନ ଘର ଉଚ୍ଛେଦନ।

୧୧. କାରୁକାର୍ଯ୍ୟ ନିର୍ଣ୍ଣୟ ପାଇଁ ସର୍ବୋତ୍କୃଷ୍ଟ ପନ୍ଥା ନିର୍ଣ୍ଣୟ । (ବିଗତ ୭୩ ବର୍ଷରେ କାର୍ଯ୍ୟ ଆରମ୍ଭ ହେଲା ନାହିଁ କାହିଁକି ?)

୧୨. ବର୍ତ୍ତମାନ ଚାଲୁଥିବା ରାସାୟନିକ ପ୍ରକ୍ରିୟାର ଉପଯୁକ୍ତ ବ୍ୟବହାର ।

୧୩. ଲୁପ୍ତ କୀର୍ତ୍ତିରାଜି ପାଇଁ ବାଲୁକାସ୍ତୂପ ଖନନ।

(ବ୍ରିଟିଶ୍ ରାଜୁତି ପରେ ଏତେ ବର୍ଷ ପର୍ଯ୍ୟନ୍ତ କ'ଣ ହେଉଥିଲା।?)

୧୪. ମନ୍ଦିର ଗାତ୍ରକୁ ଆର୍ଦ୍ରତା ଓ ଜଳୀୟ ଅଂଶରୁ ରକ୍ଷା।

୧୫. ଜଗମୋହନ ଉପରକୁ ଚଢ଼ିବା ନିଷିଦ୍ଧ କରିବା ।

୧୬. ନିକଟରେ ଥିବା ଅଟ୍ଟାଳିକାର ମାନ କୋଣାର୍କ ଐତିହ୍ୟ ସହିତ ମିଳୁଥିବା ପ୍ରୟୋଜନ ।[୩୦୩]

ଏହାପରେ ପୁଣି ୧୪ ବର୍ଷ ବିତିଗଲାଣି, ଏକା କଥା ଥରକୁ ଥର ବିଭିନ୍ନ ବିଶେଷଜ୍ଞ କମିଟି ଗାଇ ଚାଲିଛନ୍ତି। କାର୍ଯ୍ୟ କେବେ ହେବ ? ଭାରତ ସରକାର ଅଥବା କେହି ପଚାରିଲେ ନାହିଁ, ଏତେଗୁଡ଼ିଏ କାର୍ଯ୍ୟ ଯେବେ ବାକି ଅଛି ୧୯୩୮ଠାରୁ ଏ.ଏସ୍.ଆଇ. ଏବଂ ଡେରାଡୁନ୍‌ର ମନୁମେଣ୍ଟ ଲାବୋରଟୋରି କରୁଥିଲେ କ'ଣ ଏବଂ ତୁହାକୁ ତୁହା ବିଶେଷଜ୍ଞ ଆସି କଲେ କ'ଣ ?

୧୯/୯/୧୯୯୮- ଉତ୍ତର-ପୂର୍ବ ପଟେ ଗୋଟିଏ ୨ଟନ୍ ଓଜନର ପଥର ଖସିଲା । ପଥରଟିର ଓଜନ ନେଇ ସଂବାଦପତ୍ରରେ ବହୁ ବାଦ-ବିବାଦ ହେଲା, କିନ୍ତୁ କୌଣସି ତଦନ୍ତ ହେଲା ନାହିଁ କାହିଁକି ?

**୨୦୦୫-** ଭାରତ ସରକାର ଆଉ ଗୋଟିଏ ବିଶେଷଜ୍ଞ କମିଟି ବସେଇଲେ। ସେମାନଙ୍କ ସୁପାରିଶ ଇଣ୍ଟରନେଟ୍‌ରୁ ଉପଲବ୍ଧ ହେଉ ନାହିଁ।

**୨୦୦୬-** ସିମ୍‌ଟେକ୍ ନାମକ ଗୋଟିଏ କନ୍‌ସଲ୍‌ଟିଙ୍ଗ୍ ଫାର୍ମ କୋଣାର୍କରେ ଅନୁସନ୍ଧାନ କରି ଗୋଟିଏ ରିପୋର୍ଟ ଦେଲେ। ସେତେବେଳକୁ ବାଲି ୧୬ ଫୁଟ ତଳକୁ ଖସିଗଲାଣି ଅର୍ଥାତ୍ ୧୯୮୭ଠାରୁ ୨୦ ବର୍ଷ ମଧ୍ୟରେ ଆହୁରି ୪ ଫୁଟ୍ ଖସିଛି ଏବଂ ଭିତରେ ବାଲୁକା ଚାପ ଆହୁରି ବଢ଼ୁଛି । ସେମାନେ ମଧ୍ୟ ସୁପାରିଶ କଲେ, ଭିତରୁ ବାଲି କାଢ଼ି ସଂରକ୍ଷଣ କରିବା ଉଚିତ ।

**୨୦୦୭-** ଆଉ ଏକ ବିଶେଷଜ୍ଞ ଦଳ କୋଣାର୍କ ପରିଦର୍ଶନ କରି ସେଇ ବାଲି କାଢ଼ିବାର ପରାମର୍ଶ ଦେଲେ ।

**୨୦୦୯-** କୋଣାର୍କର ଅବକ୍ଷୟ ବଢ଼ି ବଢ଼ି ଚାଲିଥାଏ । କିନ୍ତୁ ଏ.ଏସ୍.ଆଇ. କୌଣସି ମୌଳିକ ପଦକ୍ଷେପ ନେବାକୁ ସାହସ କରୁ ନ ଥିଲେ । ଏ ପରିସ୍ଥିତିରେ ଏ.ଏସ୍.ଆଇ, ପୂର୍ବମଣ୍ଡଳର ଡକ୍ଟର ସତ୍ୟମୂର୍ତ୍ତି ଆଉ ଗୋଟିଏ ବିଶେଷଜ୍ଞ ବୈଠକ ଡାକିଲେ । ସେ ମିଟିଂରେ କ'ଣ ହେଲା ପ୍ରକାଶ କରାଯାଇ ନାହିଁ କିନ୍ତୁ ସମ୍ବାଦପତ୍ରମାନଙ୍କରେ ବାହାରିଲା, ପ୍ରସିଦ୍ଧ ଐତିହାସିକ ଡକ୍ଟର ରାଜେନ୍ଦ୍ର ପ୍ରସାଦ ଦାସ ('ନିଉ ଲାଇଟ୍'ର ସହଯୋଗୀ ଲେଖକ ଓ ଓଡ଼ିଶାର ବିଶିଷ୍ଟ ଐତିହାସିକ) ବାଲି କାଢ଼ି ଭିତରୁ ସଂରକ୍ଷଣ କରିବା ଉପରେ ଜୋର୍ ଦେଇଥିଲେ ।

**୨୦୦୯-** ଡିସେମ୍ବର ୫ ତାରିଖ INTACH ର (Indian National Trust for Cultural Heritage) ଗୋଟିଏ ବୈଠକ ବସିଥିଲା । ମନ୍ଦିରର ଯେଉଁ ଭାସ୍କର୍ଯ୍ୟ ନଷ୍ଟ ହୋଇଯାଇଛି, ସେଠାରେ ପାର୍ଶ୍ୱବର୍ତ୍ତୀ ଭାସ୍କର୍ଯ୍ୟ ସହିତ ତାଳ ରଖି ଖୋଦନ କରି ପଥର ନ ବସାଇ ସାଦା ପଥର ବସେଇ ଦିଆ ଯାଉଛି । ଆଶଙ୍କା ପ୍ରକାଶ ପାଇଲା, କିଛି ଦିନ ପରେ କୋଣାର୍କ ଗୋଟିଏ ସାଦା ପଥରର କୁଢ଼ ହୋଇଯିବ । ଏ.ଏସ୍.ଆଇ.ର ମନ୍ତବ୍ୟ ସେମାନେ ୟୁନେସ୍‌କୋର ଗାଇଡ୍ ଲାଇନ୍ ମାନି ଚଳନ୍ତି । ସେଥିରେ ଶିଳ୍ପକର୍ମ ଦୋହରାଇବାର ନିର୍ଦ୍ଦେଶ ନାହିଁ। ଏହା ଅନ୍ୟତ୍ର ସେଇ ASI ଦ୍ୱାରା ହୋଇଛି । ତାହାର ପ୍ରମାଣ ଲାଲ୍‌କିଲ୍ଲା, ସେଇ ୟୁନେସ୍କୋ ଦ୍ୱାରା କରାଯାଇଥିବା ଇଣ୍ଡୋନେସିଆର ବୋରୋବୋଦୁର ସଂରକ୍ଷଣ ।

**୨୦୧୦-** ଏତେବେଳକୁ ମନ୍ଦିରରୁ ଆହୁରି କେତେଖଣ୍ଡ ପଥର ଖସିଲାଣି । ବର୍ଷାକାଳରେ ବେଢ଼ା ଭିତରେ ଆଣ୍ଠୁଏ ପାଣି ଜମିଲାଣି, ଗଣମାଧ୍ୟମରେ ସମାଲୋଚନାର ଝଡ଼ ଉଠିଲା । ଦେଶବାସୀଙ୍କର କ୍ରୋଧ ନିରସନ କରିବାକୁ ଆଉ ଗୋଟିଏ ଆନ୍ତର୍ଜାତିକ ବୈଠକ ବସାଗଲା କୋଣାର୍କରେ- ମାର୍ଚ୍ଚ, ୨୦-୨୧ରେ । ଦେଶ ବିଦେଶରୁ ୬୫ ଜଣ ବିଶେଷଜ୍ଞ ଠୁଳ ହେଲେ ଯେଉଁମାନଙ୍କ ମଧ୍ୟରେ ଥିଲେ ସେଇସବୁ ବିଦେଶୀ ବିଶେଷଜ୍ଞ ଯେଉଁମାନେ ବିଗତ ୩୨ ବର୍ଷ ଧରି କହି ଆସୁଛନ୍ତି, 'ଭିତରୁ ବାଲୁକା ଅପସାରଣ କରି ମନ୍ଦିର ଭିତରୁ ସଂରକ୍ଷଣ କର ।' ଏଥର ମଧ୍ୟ ସମୂହ ସ୍ୱର ଉଠିଲା, ଆଗରୁ କହି ଆସୁଥିବା କଥା ଏବଂ ଏଥର ମଧ୍ୟ ଏ.ଏସ୍.ଆଇ. ପୂର୍ବବତ୍ ସେ ସୁପାରିଶ୍ ମାନିବାକୁ ନାରାଜ । ହେଲେ କାହିଁକି ରାଜକୋଷରୁ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ କରି ଏ ବର୍ଣ୍ଣାଢ଼୍ୟ ଅନୁଷ୍ଠାନ ? ଯେହେତୁ ଏ.ଏସ୍.ଆଇ. ଏ ବୈଠକଗୁଡ଼ିକର ଆୟୋଜକ, ମିଟିଂର ସୁପାରିଶ

ତ ସେଇମାନେ ହିଁ ଲେଖିବେ ଏବଂ ଏହାକୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ ମଧ୍ୟ ସେମାନଙ୍କର । ପ୍ରବଳ ଚାପ ଫଳରେ ଏପରି କେତେଗୁଡ଼ିଏ ଦୀର୍ଘସୂତ୍ରୀ କାର୍ଯ୍ୟକ୍ରମ ନିଆଗଲା ଯେଉଁଥିରେ କାର୍ଯ୍ୟ ସହଜରେ ଆଗେଇବ ନାହିଁ । ଚାରିଟି ସବ୍ କମିଟି ଓ ଗୋଟିଏ ଉପଦେଷ୍ଟା କମିଟି ଗଠନ କରିବାର ନିର୍ଣ୍ଣୟ ନିଆହେଲା ଏବଂ ଚାପରେ ପଡ଼ି ସବ୍ କମିଟିଗୁଡ଼ିକର ସୁପାରିଶ୍ ଦେବାର ସମୟ ନିର୍ଦ୍ଦିଷ୍ଟ କରି ଦିଆଗଲା ।[୩୦୪]

1. Documents Committee – 9 months
2. Committee on removal of sand from inside Jagamohan – 9 months
3. Committee on conservation of Sculpture – 3 months
4. Committee on water problem – 6 months

ପଚାଶ ଷାଠିଏ ବର୍ଷ ଧରି ଏକା କଥା ଦୋହରାଇବା ପରେ ଏ ନିର୍ଣ୍ଣୟଗୁଡ଼ିକ ପ୍ରକୃତ କାମ ଆରମ୍ଭ ନକରି ଆହୁରି ଖର୍ଚ୍ଚସାପେକ୍ଷ ପିଲା ଭଣ୍ଡେଇବା ଖେଳ । ଗତ ନଭେମ୍ବର ମାସ ପର୍ଯ୍ୟନ୍ତ କୌଣସି କମିଟିର ରିପୋର୍ଟ ଆସି ନଥିଲା କାରଣ INTACH ଓଡ଼ିଶା ବିଭାଗର ମୁଖ୍ୟ ଏବଂ ଓଡ଼ିଶାର ସଂସ୍କୃତି ବିଭାଗର ସଚିବ ଏ ବିଷୟରେ କିଛି ଜାଣି ନ ଥିଲେ । ଏପରିକି ୧୯୧୧ ଜୁଲାଇ ମାସ ସୁଦ୍ଧା କୌଣସି ରିପୋର୍ଟ ଆସି ନଥିବା INTACH ର ରାଜ୍ୟମୁଖ୍ୟ କହିଛନ୍ତି । କେତେଦିନ ଧରି ଚାଲିବ ଏ ପ୍ରହସନ !

## ସଂରକ୍ଷଣ କେବଳ ବୈଷୟିକ ସମସ୍ୟା ନୁହେଁ :

ସଂରକ୍ଷଣ କାର୍ଯ୍ୟର ଆଉ ଗୋଟିଏ ଦିଗ ଅନାଲୋଚିତ ରହିଗଲା । ଏ.ଏସ୍.ଆଇ. ତଥା ବିଦେଶୀ ବିଶେଷଜ୍ଞ ଦଳ କୋଣାର୍କକୁ ଗୋଟିଏ ବୈଷୟିକ ସମସ୍ୟା ଭାବିନେଇ ଦର୍ଶକ କଥା ସଂପୂର୍ଣ୍ଣ ଭୁଲି ଯାଇଛନ୍ତି । ପରିଦର୍ଶକ ବହୁ ବର୍ଷ, ବିନା ବାଧାରେ କୋଣାର୍କ ଦେଖି ଆନନ୍ଦ ପାଇଛନ୍ତି, ପୂର୍ବସୂରୀଙ୍କ କୀର୍ତ୍ତି ପାଇଁ ଗର୍ବ ବୋଧ କରିଛନ୍ତି ।

୨୦ବର୍ଷ ପୂର୍ବେ ଗେଟ୍‌ରେ ଜଗୁଆଳି ରଖି ପ୍ରବେଶ ଶୁଳ୍କ ଧାର୍ଯ୍ୟ ହେଲା । ଆପତ୍ତି ଶୁଳ୍କ ଆଦାୟ ପାଇଁ ନୁହେଁ; ସରକାର ଐତିହ୍ୟ ସଂରକ୍ଷଣ ପାଇଁ ବହୁ ଉପାୟରେ ଶୁଳ୍କ ଆଦାୟ କରି ପାରନ୍ତି, ଆପତ୍ତି ନାନା ବାଟେ ଜନସାଧାରଣଙ୍କୁ ତାଙ୍କ ପୂର୍ବଜଙ୍କ କୀର୍ତ୍ତି ନିକଟକୁ ଯିବାରେ ନାନା ପରିକଳ୍ପିତ ବାଧା ସୃଷ୍ଟିରୁ । ଗର୍ଭଗୃହକୁ ଯିବାପାଇଁ ଉପରୁ ଯେଉଁ ବାଟ ଥିଲା ତାହା ବନ୍ଦ କରି ଦିଆଗଲା, ପରବର୍ତ୍ତୀ ସମୟରେ ପାର୍ଶ୍ୱଦେବତା ତ୍ରୟଙ୍କ ନିକଟକୁ ନ ଯିବା ପାଇଁ ବାଡ଼ ପଡ଼ିଲା । ବହୁ ମୂର୍ତ୍ତି ଓ ଶିଳ୍ପକର୍ମ ବିଭିନ୍ନ ମ୍ୟୁଜିୟମ୍‌ରେ; ଦର୍ଶକ କ'ଣ ଦେଖିବାକୁ କୋଣାର୍କ ଯିବେ ? ପ୍ରତିବର୍ଷ ବର୍ଷାକାଳରେ ବେଢ଼ା ଭିତରେ ଆଣ୍ଠୁଏ ପାଣି ଜମିଲା । ଜଣେ ଆଇନଜୀବୀ ଉଚ୍ଚ ନ୍ୟାୟାଳୟରେ ଗୋଟିଏ ଜନସ୍ୱାର୍ଥ ମାମଲା କଲେ । ଏ.ଏସ୍.ଆଇ. ପ୍ରାୟ ବର୍ଷେ ପରେ ଉଚ୍ଚନ୍ୟାୟାଳୟକୁ ଜଣାଇଲେ, ଦେଢ଼କୋଟି ଟଙ୍କାର ବ୍ୟୟ ଅଟକଳ ଡି.ଜି.ଙ୍କ ଅନୁମୋଦନ ପାଇଁ ଯାଇଛି, ମାତ୍ର ମନ୍ଦିରର ଅବକ୍ଷୟ ଚକ୍ରବୃଦ୍ଧି ହାରରେ ବଢ଼ି ବଢ଼ି ଚାଲିଛି ।

ପରିଷ୍କାର ଦିଶୁଛି ଏ.ଏସ୍.ଆଇ. ଭିତରୁ ବାଲି କାଢ଼ିବାକୁ ଭୟ କରୁଛି । ସେ ଭୀତି ଗୋଟିଏ ଦାୟିତ୍ୱଶୀଳ ଅନୁଷ୍ଠାନ ପକ୍ଷେ କେତେ ଯୁକ୍ତିଯୁକ୍ତ ଭୀତି ଓ କେତେ ଦାୟିତ୍ୱ ନେବାର ଅନିଚ୍ଛା, ତାହା ବିଶ୍ୱ ଦରବାରରେ ଆଲୋଚିତ ହେବାର ପ୍ରୟୋଜନ ଅଛି । କାରଣ କୋଣାର୍କ ବିଶ୍ୱ ଐତିହ୍ୟ, ଏ.ଏସ୍.ଆଇ.ର ବିଭାଗୀୟ ସଂପତ୍ତି ନୁହେଁ ।

୧୯୦୨ ସାଲରେ ତତ୍‌କାଳୀନ ସଂରକ୍ଷକମାନେ ଯେଉଁ ପରିବେଶରେ କାମ କରିଥିଲେ ଏବଂ ସେତେବେଳର ବିଜ୍ଞାନ ତଥା ପ୍ରଯୁକ୍ତି ଯେଉଁ ସ୍ତରର ଥିଲା, ଶହେ ବର୍ଷ ମଧ୍ୟରେ ସେଥିରୁ ବହୁ ଅଗ୍ରଗତି ହେଲାଣି । ବର୍ତ୍ତମାନ ପୁରୁଣା ଇମାରତ୍ ଭୁଶୁଡ଼ି ପଡ଼ିବା ଆଉ ଗୋଟିଏ ସମସ୍ୟା ହୋଇ ରହିନାହିଁ; ସମ୍ପୂର୍ଣ୍ଣ ଇମାରତ୍ ଖଣ୍ଡ ଖଣ୍ଡ କରି କାଟି ସେଇଠାରେ ଅଥବା ଅନ୍ୟତ୍ର ପୁଣି ନୂତନ କରି ଯୋଡ଼ି ଦିଆଯାଇ ପାରୁଛି । ଏ ପ୍ରସଙ୍ଗରେ ଯୋଡ଼ିଏ ଯୋଜନା କଥା ଆଲୋଚନା କରାଯାଇପାରେ । ଯୋଡ଼ିଏଯାକ ଯୋଜନା UNESCO ଦ୍ୱାରା କାର୍ଯ୍ୟକାରୀ କରାଯାଇଥିଲା ।

**ଆବୁସିମ୍ବେଲ** ଗୋଟିଏ ପାହାଡ଼ରୁ ଖୋଦିତ ବିଶାଳ ମିଶରୀୟ ସୂର୍ଯ୍ୟ ମନ୍ଦିର । ଆସୱାନ ଜଳଭଣ୍ଡାର ତଳେ ବୁଡ଼ି ଯିବାର ସମ୍ଭାବନା ଥିବାରୁ ପାହାଡ଼ଟିକୁ ୧୦୫୦ ଖଣ୍ଡରେ କାଟି ୬୯୦ ଫୁଟ୍ ଦୂରରେ ୨୦୦ଫୁଟ୍ ଉଚ୍ଚତାରେ ପୁଣି ନିଖୁଣ ଭାବେ ଯୋଡ଼ି ଦିଆଯାଇଥିଲା । ପ୍ରତିଟି ଖଣ୍ଡର ଓଜନ ଥିଲା ଅନ୍ୟୂନ ୩୩ ଟନ୍ ଓ କାର୍ଯ୍ୟଟି ସମାପ୍ତ ହୋଇଥିଲା ୧୯୬୩ ଠାରୁ ୧୯୬୮ ମଧ୍ୟରେ । ସେ ବିଶାଳ କର୍ମକାଣ୍ଡର ସଚିତ୍ର ବିବରଣୀ ମିଳିବ ନେସନାଲ୍ ଜ୍ୟୋଗ୍ରାଫି ମେ ୧୯୬୯ ସଂଖ୍ୟାରେ ।[୩୦୫] ପରପୃଷ୍ଠାରେ ଏହି ମନ୍ଦିର ସଂପର୍କୀୟ କେତୋଟି ଚିତ୍ର ଦିଆଗଲା ।

**ବୋରୋବୋଦୁର**ର ସଂରକ୍ଷଣ ଥିଲା ଆହୁରି ଜଟିଳ ।[୩୦୬] ଅଷ୍ଟମ ଶତାବ୍ଦୀରେ ଗଠିତ ଇଣ୍ଡୋନେସିଆର ବୌଦ୍ଧ ମଠର ଭିତ୍ତିଭୂମି ୩୮୭ ଫୁଟ୍ × ୩୮୭ ଫୁଟ୍ । ସାତ ଥାକରେ ଗଠିତ ଏ ବୌଦ୍ଧ ବିହାର ଅସଂଖ୍ୟ ସ୍ତୂପ, ବିଗ୍ରହ, ଅଳିନ୍ଦ, ସୋପାନର ବିଶାଳ ସମଷ୍ଟି । ମଠଟିକୁ ଅରଣ୍ୟ ଗ୍ରାସ କରି ଯାଇଥିଲା ଓ ଗଛ ଚେର ପଶି ଭଙ୍ଗାରୁଜା ପଥରର କୁଢ଼ ହୋଇ ଯାଇଥିଲା । ୧୯୭୫ ଠାରୁ ୧୯୮୨ ମଧ୍ୟରେ ଆଠ ଲକ୍ଷ ପ୍ରସ୍ତର ଖଣ୍ଡ ଗୋଟି ଗୋଟି କାଢ଼ି, ବୈଷୟିକ ଉପଚାର ପରେ ପୁନର୍ବାର ଯୋଡ଼ି ଦିଆଗଲା । ବୋରୋବୋଦୁରର ହେଲା ପୁନର୍ଜନ୍ମ । ଯେଉଁ କାରୁକାର୍ଯ୍ୟର କିଛି ଅଂଶ ଲୋପ ପାଇ ଯାଇଥିଲା, ସେ ଅଂଶକୁ ପ୍ରସ୍ତର ଶିଳ୍ପୀ ଲଗେଇ ପୂର୍ବବତ୍ ରୂପ ଦିଆଗଲା, ଯାହା ଆଜି INTACH ର ଦାବି କୋଣାର୍କ କ୍ଷେତ୍ରରେ ।

